# ବିକଳ୍ପ ବିଶ୍ୱ

ଲେଖକ:
**ଡକ୍ଟର ଭଗବାନପ୍ରକାଶ**

ପ୍ରକାଶକ:
ଆମ ଓଡ଼ିଶା
୪ ଆର୍‌୧/୨, ୟୁନିଟ୍-୩
ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ:
ସାକ୍ରେଡ୍ ପ୍ରେସ୍ ସର୍ଭିସ୍
ଭୁବନେଶ୍ୱର

ପ୍ରଥମ ସଂସ୍କରଣ: ଏପ୍ରିଲ ୨୦୧୦


ପ୍ରଚ୍ଛଦ:
ପ୍ରଦୀପ ନାୟକ

ମୂଲ୍ୟ: ଟ୧୮୦/-

BIKALPA BISWA
Writer: Dr. Bhagbanprakash
Publisher: Ama Odisha,
4R 1/2, unit-3, Bhubaneswar-1

Price: Rs. 180/-

# ଲେଖକୀୟ...

ସମାଜ, ଜୀବନ, ପରିବର୍ତ୍ତନ ଓ ବିକାଶଧାରାଠାରୁ ବଳି ରୋମାଞ୍ଚକର କାହାଣୀ ନାହିଁ । ପୃଥିବୀର ଅର୍ଦ୍ଧାଧିକ ଦେଶ, ସେମାନଙ୍କର ବିକାଶ ଓ ପରିବର୍ତ୍ତନ ପ୍ରକ୍ରିୟା ଏବଂ ବିଶ୍ୱ ସମ୍ମିଳନୀ ଦେଖି ଆସିଲା ପରେ ମୋ ଦେଶ ଓ ରାଜ୍ୟର ସମସ୍ୟାଗୁଡ଼ିକୁ ଜାଣିବା, ବୁଝିବା ଓ ସମାଧାନ ସୂତ୍ର ଖୋଜିବା ପାଇଁ ନୂଆ ଉନ୍ମାଦ ସୃଷ୍ଟି ହେଲା ମନରେ । ଆଗରୁ ଇଂରାଜୀରେ ଲେଖୁଥିଲି । ଭାବିଲି ନିଜ ଚିନ୍ତା ଓ ଅନୁଭୂତିକୁ ଏଥର ସରଳ ଓଡ଼ିଆରେ ସମସ୍ତଙ୍କ ସାମନାରେ ରଖିବି । ଲେଖା ମାଧ୍ୟମରେ ପାଠକମାନଙ୍କୁ ଦେଖାକରିବି । ମନକଥା କହିବି । ଏଥିପାଇଁ ସମ୍ପୂର୍ଣ୍ଣ ସହଯୋଗ ଓ ଉତ୍ସାହ ମିଳିଲା 'ସମ୍ବାଦ'ର ସମ୍ପାଦକ, ବିଦ୍ୱାନ୍ ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ ଓ ସୁଲେଖକ, ସାଥୀ ଶ୍ରୀ ଗୌରହରି ଦାସଙ୍କଠାରୁ । ସ୍ତମ୍ଭଟିର ନାମ ରଖାଗଲା "ବିକଳ୍ପ ବିଶ୍ୱ" । ପ୍ରଥମ ଲେଖାଟିର ନାଁ ଥିଲା "କନ୍ୟା ମିଳିବେ ନାହିଁ" । ପାଠକଙ୍କଠାରୁ ମିଳିଲା ଅଜସ୍ର ପ୍ରେରଣା । "ବିକଳ୍ପ ବିଶ୍ୱ" ସ୍ତମ୍ଭର ତିନି ବର୍ଷ ପୂରିଗଲା ପରେ ଲେଖାଗୁଡ଼ିକୁ ସଂକଳନ କରି ଛାପିବା ପାଇଁ ବାରମ୍ବାର ଦାବି ଲାଗି ରହିଲା । ଆଜିର ଏହି ପୁସ୍ତକଟି ସେହି ବିଦଗ୍ଧ ପାଠକମାନଙ୍କ ପ୍ରତି ଉତ୍ସର୍ଗୀକୃତ । ଲେଖାଗୁଡ଼ିକ କ୍ରମାନ୍ୱୟରେ ସମକାଳୀନ ସାମାଜିକ ସମସ୍ୟା ଉପରେ ଆଧାରିତ ଥିବାରୁ ସ୍ଥାନେ ସ୍ଥାନେ ଚର୍ବିତଚର୍ବଣ ଭଳି ଲାଗିପାରେ, କାରଣ ବିକାଶ ପ୍ରକ୍ରିୟାରେ ଗୋଟିଏ ଗୋଟିଏ ସମସ୍ୟା ବାରମ୍ବାର ମୁଣ୍ଡ ଟେକିଥାଏ ଏବଂ ବେଳେବେଳେ ମନ୍ତବ୍ୟ ଓ ସମୀକ୍ଷାକୁ ଦୋହରାଇବାକୁ ପଡ଼େ ।

ମୋର ଧର୍ମପତ୍ନୀ ବିନୋଦିନୀ ଦେବୀ, ଯୁବ ବନ୍ଧୁ ମଧୁସୂଦନ, ପୁଷ୍ପାଞ୍ଜଳି, ସିଦ୍ଧାର୍ଥ ମହାପାତ୍ର, ଅସିତ ମହାନ୍ତି, ପୁଷ୍ପମିତ୍ର ମହାନ୍ତି ଓ ଶିଶିର ସାହୁଙ୍କୁ ମଧ୍ୟ ସହଯୋଗ ପାଇଁ ଆନ୍ତରିକ ଧନ୍ୟବାଦ ।

ଭଗବାନପ୍ରକାଶ

# ଭୂମିକା

## ପ୍ରଫେସର ରାଧାମୋହନଙ୍କ କଲମରୁ...

ରାତିସାରା ଦେହଜୀବୀଙ୍କ ସହ ସମୟ କଟେଇ ସକାଳେ ମୁହଁକୁ ଦର୍ପଣରେ ଦେଖିଲେ ଯେମିତି ଦେଖାଯିବ ଠିକ୍ ସେଭଳି ଆମ ସମାଜର ଚିତ୍ରଟି ସମାଜର ଦର୍ପଣ ଅର୍ଥାତ୍ 'ଖବରକାଗଜ'ରେ ଦେଖାଯାଉଛି । ସକାଳୁ ସକାଳୁ ଆଗ୍ରହରେ ଖବରକାଗଜଟି ଗୋଟେଇ ଆଣି ଆଖି ପକେଇଲେ ଆମେ କ'ଣ ଦେଖୁ, କ'ଣ ପଢୁ? ପଇସା ଖର୍ଚ୍ଚକରି ମନପାଇଁ ଏସବୁ ଖାଦ୍ୟ କାହିଁକି ଯୋଗାଡ଼ କରିବି ? ପୁଣି ନିଶାସକ୍ତ ବ୍ୟକ୍ତି ଯେପରି ତା'ର ନିଶା ସମୟ ଗଡ଼ିଗଲେ ବ୍ୟସ୍ତ ହୋଇପଡ଼େ, ଠିକ୍ ସେଭଳି ଖବରକାଗଜ ଦେବାବେଳ ଗଡ଼ିଗଲେ ବ୍ୟସ୍ତ ଲାଗେ ଓ କେତେଥର କାଗଜ ଦେଲାଣି କି ନାହିଁ ଦେଖିବାକୁ ହୁଏ । ତେଣୁ ଯେମିତି ସବୁ ନିଶା ବର୍ଜନୀୟ ଏ ଖବରକାଗଜ ନିଶାକୁ ମଧ୍ୟ ଛାଡ଼ିବାକୁ ହେବ । ଏ ଯୁକ୍ତିରେ ବାରିପଦାରେ ଥିଲାବେଳେ ୧୯୬୯ ମସିହାରେ ଖବରକାଗଜ ପଢ଼ା ବନ୍ଦ କରିଦେଇଥିଲି । କିନ୍ତୁ ଠିକ୍ ଯେମତି ନିଶାସକ୍ତ ନିଶା ଛାଡ଼ିବାର ଶପଥ ନେଇ ପୁଣି ଭାଂଗିଦିଏ, ଠିକ୍ ସେଇଭଳି ବର୍ଷକ ପରେ କାଗଜ ପଢ଼ା ଆରମ୍ଭ କଲି । ୨୦୦୭ ମସିହାରେ ପୁରୁଣା ଯୁକ୍ତିକୁ ନେଇ ଖବରକାଗଜ ପଢ଼ିବି ନାହିଁ ବୋଲି ଠିକ୍ କଲି । ଏଥର ଅବଶ୍ୟ ଆଉ ଗୋଟିଏ ଅଧିକ ଯୁକ୍ତି ଯୋଡ଼ା ହୋଇଥିଲା । ତାହା ଥିଲା ଖବରକାଗଜରେ ଅନେକ ଅଦରକାରୀ, କ୍ଷତିକାରକ ଓ ଦାମୀ ଜିନିଷର ବିଜ୍ଞାପନ ଦିଆଯାଏ ଏବଂ ସେଗୁଡ଼ିକୁ ନ କିଣିଲେ ବା ବ୍ୟବହାର ନ କଲେ ମଣିଷ ବର୍ତ୍ତମାନ ସମାଜରେ ତାଳଦେଇ ଚାଲିପାରିବ ନାହିଁ ବୋଲି ଏକ ଦୃଢ଼ ଭ୍ରମ ସୃଷ୍ଟି କରାଯାଏ । ଏଭଳି ଭ୍ରାନ୍ତ ପ୍ରଲୋଭନରୁ ମୁକ୍ତ ରହିବା ଆଉ ଗୋଟିଏ ଉଦ୍ଦେଶ୍ୟ ଥିଲା ।

କିନ୍ତୁ ନିଶାସକ୍ତ ବ୍ୟକ୍ତି ନିଶା ଛାଡ଼ିବାପାଇଁ ବାରମ୍ବାର ନିଷ୍ପତ୍ତି ନେଇ ପୁଣି ନିଶାର କବଳରେ ପଡ଼ିବା ଭଳି ପୁଣି ଖବରକାଗଜ ପଢ଼ିବା ଆରମ୍ଭ କଲି । ଏଥର ଅବଶ୍ୟ ବର୍ଷେ ନହୋଇ ଦେଢ଼ବର୍ଷ ଖବରକାଗଜ ନିଶାରୁ ମୁକ୍ତ ରହିଥିଲି । ଏଥର ଖବରକାଗଜ ନପଢ଼ିବା ନିଷ୍ପତ୍ତି ପୁଣି ବଦଳେଇବାର କାରଣ ଅଲଗା ଥିଲା । କାରଣ ହେଲା, ଡକ୍ଟର

ଭଗବାନ ପ୍ରକାଶଙ୍କର 'ସମ୍ବାଦ'ରେ 'ବିକଳ୍ପ ବିଶ୍ୱ' ସ୍ତମ୍ଭର ଉଚ୍ଚକୋଟୀର ଲେଖାଗୁଡ଼ିକ । ବାହାରେ ଲୋକମାନେ କହିଲେ- ଆପଣ ଭଗବାନ ପ୍ରକାଶଙ୍କର ଅମୁକ ଲେଖାଟି ପଢ଼ିଛନ୍ତି ? ଘରେ ପିଲାମାନେ କହିଲେ- ଆଉ କିଛି ନପଢ଼ ପଛେ, କିନ୍ତୁ ସଂପାଦକୀୟ ପୃଷ୍ଠାର ଭଗବାନ ପ୍ରକାଶଙ୍କର ଲେଖାଟିକୁ ପଢ଼ । ତେଣୁ ସେ ଲେଖାଗୁଡ଼ିକ ପଢ଼ିବା ଆରମ୍ଭ କଲି ଏବଂ ଠିକ୍ ଯେପରି ପ୍ରେମର ପରିଣତି ପ୍ରେଗ୍‌ନାନ୍‌ସି, ଠିକ୍ ସେପରି ଭଗବାନବାବୁଙ୍କର ଲେଖାରୁ ଆରମ୍ଭ କରି ବର୍ତ୍ତମାନ ପୂରା ଖବରକାଗଜଟି ପଢ଼ିବାକୁ ହେଲା ।

ବୁଦ୍ଧିଜୀବୀମାନଙ୍କ ବିଷୟରେ ଗୋଟିଏ କଥା ବାରମ୍ବାର ଶୁଣୁ । ତାହା ହେଲା, ବର୍ତ୍ତମାନର ସମାଜ ଯେତେବେଳେ ବି ଭିନ୍ନ, ସଂକଟମୟ ମୁହୂର୍ତ୍ତ ଦେଇ ଗତି କରୁଛି, ସେତେବେଳେ ସେମାନେ ନୀରବ ରହୁଛନ୍ତି । 'କାଦୁଅକୁ ଯିବା କାହିଁକି ଗୋଡ଼ ଧୋଇବା କାହିଁକି' ନ୍ୟାୟରେ ନୀରବତା ଶ୍ରେୟସ୍କର ବୋଲି ବର୍ତ୍ତମାନ ବୁଦ୍ଧିଜୀବୀମାନେ ଧରିନେଇଛନ୍ତି- ଏଭଳି ଧାରଣା ସମାଜରେ ମୋଟାମୋଟି ରହିଛି । ଭଗବାନ ପ୍ରକାଶ ତାଙ୍କର ବଳିଷ୍ଠ ଲେଖାଗୁଡ଼ିକ ମାଧ୍ୟମରେ ଏପରି ଧାରଣା ଯେ ଭୁଲ୍ ତାହା ପ୍ରମାଣିତ କରିଛନ୍ତି । ବିଦ୍ୟାଳୟରେ ଯୌନସ୍ୱାସ୍ଥ୍ୟ ଶିକ୍ଷାର ଆବଶ୍ୟକତା ବିଷୟରେ ହେଉ ବା ଆମ ସମାଜରେ କନ୍ୟା ଭ୍ରୂଣ ହତ୍ୟା ହେଉ- ଏସବୁ ଜଟିଳ, ସ୍ପର୍ଶକାତର ବିଷୟ ଉତ୍‌ଥାପନ କରିବା ଓ ସେଥିରେ ନିଜର ସ୍ପଷ୍ଟ ମତ ପ୍ରକାଶ କରିବାରେ ସେ ଆଦୌ କୁଣ୍ଠା ପ୍ରକାଶ କରି ନାହାନ୍ତି । କାରଣ ସାପ ମରିବନି କି ବାଡ଼ି ଭାଙ୍ଗିବନି ନ୍ୟାୟରେ ସେ ଆଦୌ ବିଶ୍ୱାସ କରନ୍ତିନି ।

ଏ ସ୍ତମ୍ଭରେ ଧର୍ମାନ୍ତରୀକରଣ ଓ କନ୍ଧମାଳ ପ୍ରସଙ୍ଗ ଭଳି କେତେକ ଅତି ସମ୍ବେଦନଶୀଳ ବିଷୟରେ ନିଜ ମତକୁ ସ୍ପଷ୍ଟ ଓ ଦୃଢ଼ ଭାବରେ ଉତ୍‌ଥାପନ କରି ସେ ଅନେକ ସମାଲୋଚନା ଓ କଟୂକ୍ତିର ଶରବ୍ୟ ହୋଇଛନ୍ତି । 'ଦୁଃଖ ସୁଖର ମାପଦଣ୍ଡ' ବା 'ଜନସଂଖ୍ୟା ନା ଜନଶକ୍ତି' ଭଳି ଲେଖା ଜରିଆରେ ଆମ ମନରେ ଥିବା ଚିରାଚରିତ ବିଚାରଧାରାଗୁଡ଼ିକୁ ସେ ଦୋହଲାଇ ଦେଇଛନ୍ତି ।

ବଳଶାଳୀ ଓ ପ୍ରଭାବଶାଳୀ ଅର୍ଥନୀତି ଓ ସଂସ୍କୃତିର ପ୍ରଭାବରେ ପୃଥିବୀର ଦୁର୍ବଳ ଓ ସଂଖ୍ୟାନ୍ୟୂନ ସଂପ୍ରଦାୟମାନଙ୍କର ଭାଷା, ସଂସ୍କୃତି, ଆଚାର-ବ୍ୟବହାର ସବୁ କିପରି ମଳିନ ପଡ଼ିଯାଉଛନ୍ତି ଏବଂ ଶେଷରେ ବିଲୁପ୍ତ ହୋଇଯାଉଛନ୍ତି, ସେ ତାର ସୁନ୍ଦର ଆଲେଖ୍ୟ ରଖିଛନ୍ତି 'ଭାଷା ଭାସି ଯାଉଛି' ପ୍ରବନ୍ଧଟିରେ । 'ଉତପ୍ତ ଧରିତ୍ରୀ ଓ ପାଗ ପରିବର୍ତ୍ତନ' ପ୍ରବନ୍ଧଟି ମଧ୍ୟ ବେଶ୍ ସମୟୋପଯୋଗୀ ହୋଇଛି । ଏଥିରେ ଆମର

ବର୍ତ୍ତମାନର ଚଳଣି ଚାଲୁ ରହିଲେ ଓ ବ୍ୟକ୍ତିଗତ ସ୍ତରରେ ଆମର ଦୈନନ୍ଦିନ ଅଭ୍ୟାସରେ ପରିବର୍ତ୍ତନ ନ ହେଲେ, ପୃଥିବୀର ପ୍ରାଣୀ ଓ ଉଦ୍‌ଭିଦ ଜଗତ ପ୍ରତି ଏବଂ ବିଶେଷଭାବେ ଭାରତ ତଥା ଆଫ୍ରିକା ଭଳି ଅନୁନ୍ନତ ଅଞ୍ଚଳପାଇଁ ଘୋର ବିପଦ ସଂପର୍କରେ ସେ ସତର୍କ କରାଇଦେଇଛନ୍ତି ।

ଆମର ପରିବାରକୁ "ବିଶ୍ୱର କ୍ଷୁଦ୍ରତମ ଗଣତନ୍ତ୍ର" ଆଖ୍ୟା ଦେଇ ବର୍ତ୍ତମାନ ବିଭିନ୍ନ କାରଣରୁ କିପରି ପାରିବାରିକ ଜୀବନ ବିପର୍ଯ୍ୟସ୍ତ ତଥା ରୋଗଗ୍ରସ୍ତ ହୋଇପଡ଼ିଲାଣି ଏବଂ ତା' ଫଳରେ ମଣିଷଜାତିର ଭବିଷ୍ୟତ କିପରି ବିପଦାପନ୍ନ ହେବାକୁ ବସିଲାଣି, ସେ ସଂପର୍କରେ ଆମକୁ ସଚେତନ ତଥା ସତର୍କ କରାଇ ଦେଇଛନ୍ତି ଲେଖକ । ସେମିତି ମଧ୍ୟ ନାଗରିକସମାଜକୁ ସେ ତୃତୀୟ ମହାଶକ୍ତି ଓ ଚତୁର୍ଥ ବିଶ୍ୱ ଆଖ୍ୟା ଦେଇଛନ୍ତି ।

ଘୃଣ୍ୟ ପଶୁବଳି ଓ ଅନାବଶ୍ୟକ ସଂହାରର କୁପ୍ରଭାବ ସଂପର୍କରେ ଚମତ୍କାର ଭାବେ 'ମଣିଷକୁ ସାବଧାନ' ପ୍ରବନ୍ଧରେ ଲେଖକ ଆମର ଦୃଷ୍ଟି ଆକର୍ଷଣ କରିଛନ୍ତି । ସେହିଭଳି 'ସଭ୍ୟଜଗତର ଅସଭ୍ୟ ଲୋକେ' ଓ 'ହେ ପ୍ରଭୁ ଏମାନଙ୍କୁ କ୍ଷମା କରିଦିଅନ୍ତୁ' ପ୍ରବନ୍ଧରେ ଶ୍ରୀମନ୍ଦିରରେ ପଣ୍ଡା-ପୂଜକମାନଙ୍କର ଅତି ଅଶାଳୀନ ଓ ଅଭଦ୍ର ଆଚରଣ, ସମାଜ ତଥା ଧର୍ମ ବଡ଼ପଣ୍ଡାମାନଙ୍କର ଅନୁଚିତ ମୂଲ୍ୟବୋଧ ଓ ତା'ର ଭୟାନକ ପରିଣତି ସଂପର୍କରେ ସ୍ପଷ୍ଟ ତଥା ନିର୍ଭୀକଭାବେ ନିଜସ୍ୱ ମତ ଓ ସମୀକ୍ଷା ଭଗବାନବାବୁ ଉତ୍‌ଥାପିତ କରିଛନ୍ତି । 'କୂପ ମଣ୍ଡୂକ ଓ ସମୁଦ୍ର ବେଙ୍ଗ' ପ୍ରବନ୍ଧରେ ସଂକୀର୍ଣ୍ଣ ଧର୍ମାନ୍ଧତା ଓ ତାର ପରିଣତି ଏବଂ ଧର୍ମ ସଂପର୍କରେ ଏକ ଉଦାର ଓ ବ୍ୟାପକ ଚେତନାର ଆବଶ୍ୟକତା ସଂପର୍କରେ ଲେଖକ ଆମର ଦୃଷ୍ଟି ଆକର୍ଷଣ କରିଛନ୍ତି ବାରମ୍ବାର ଓ ନିର୍ଭୀକ ଭାବରେ ।

'ପୃଥୁଳ ପୃଥିବୀ' ଓ 'ଦାରିଦ୍ର୍ୟ ମ୍ୟୁଜିୟମ୍‌କୁ ଯାଉ' ଦୁଇଟି ପ୍ରବନ୍ଧରେ ଗ୍ରନ୍ଥକାର ଏକ ଦିଗରେ ଅତି ଓ ଅନାବଶ୍ୟକ ଭୋଜନ କରି କିପରି ଉଭୟ ବିକାଶଶୀଳ ଓ ବିକଶିତ ରାଷ୍ଟ୍ରମାନଙ୍କରେ କେତେ ଲୋକ ପୃଥୁଳ ହୋଇ ବିଭିନ୍ନ ସମସ୍ୟାର ସମ୍ମୁଖୀନ ହେଉଛନ୍ତି ଏବଂ ଅପରପକ୍ଷରେ ଅଖାଦ୍ୟ ତଥା ଅପପୁଷ୍ଟି ଯୋଗୁଁ କିପରି ଅକାଳରେ ଅନେକ ଜୀବନହାନି ଘଟୁଛି, ସେ ସଂପର୍କରେ ଅତି ସରଳ ତଥା ସୁନ୍ଦରଭାବେ ଆମ ଆଗରେ ଏକ ଚିତ୍ର ରଖିଛନ୍ତି ।

'ନୀତିହୀନ ରାଜନୀତି', 'ମରିବା ଅଧିକାର, ଇଚ୍ଛାମୃତ୍ୟୁ ଓ ଆତ୍ମହତ୍ୟା', 'ଧର୍ମ ମୋହମୁକ୍ତ ମାନବୀୟ ସମାଜ ସପକ୍ଷରେ' ଭଳି ପ୍ରବନ୍ଧଗୁଡ଼ିକରେ ଆଲୋଚନା

ଯେପରି ଗାମ୍ଭୀର୍ଯ୍ୟପୂର୍ଣ୍ଣ ହୋଇଛି, 'ସୁପ୍ରିମ୍ କୋର୍ଟ ଓ ଇଡ଼ିୟଟ୍', 'ଆଳୁକୁ ଅନ୍ତର୍ଜାତୀୟ ସ୍ୱୀକୃତି ଓ ସମ୍ମାନ', 'ଶ୍ରୀମାନ୍ ଟୟଲେଟ୍', 'କପଡ଼ା କମ୍-ଚମଡ଼ା ବେଶୀ' ଭଳି ପ୍ରବନ୍ଧଗୁଡ଼ିକ ସେପରି ସରସ ଓ ସାବଲୀଳ ହୋଇଛି ।

ମୁଁ ଯେତିକି ଜାଣେ ଓ ଭଗବାନବାବୁଙ୍କଠୁଁ ଯାହା ଶୁଣିଛି, ତାଙ୍କର କେତେକ ଲେଖା ବହୁତ ବିବାଦୀୟ ହୋଇପଡ଼ିଛି ଏବଂ ତାଙ୍କର ପ୍ରବନ୍ଧ ମାଧ୍ୟମରେ ଅନେକ ପରିଚିତି ଓ ବନ୍ଧୁ ସୃଷ୍ଟି ହେବା ସହ କେତେକ ଶତ୍ରୁ ମଧ୍ୟ ସୃଷ୍ଟି ହୋଇଛନ୍ତି । କେତେକ ଲେଖାପାଇଁ ଚିଠି, ଟେଲିଫୋନ୍ ଓ ଇ-ମେଲ୍ ଜରିଆରେ ଭର୍ତ୍ସନା ମଧ୍ୟ କରାଯାଇଛି । ତେଣୁ ସେ ଅଜାତଶତ୍ରୁ ହୋଇ ରହିପାରି ନାହାନ୍ତି ।  ଜଣେ ଅଜାତଶତ୍ରୁ ବା କାହିଁକି ହେବ ? ମାଛିକି ମ ନ କହିଲେ ହିଁ ଶତ୍ରୁ ବାହାରିବେ ନାହିଁ, କିନ୍ତୁ ଜଣେ ଯଦି ସମାଜ ପ୍ରତି ଦରଦୀ ଓ ସମ୍ବେଦନଶୀଳ ହେବ ଏବଂ ମଣିଷଜାତିର ଭବିଷ୍ୟତ ବିଷୟରେ ଚିନ୍ତା କରିବ, ତେବେ ଅନେକ ପ୍ରଶ୍ନ ଉପରେ ନିଜର ସ୍ୱାଧୀନ ବକ୍ତବ୍ୟକୁ ନିର୍ଭୀକ ଓ ସ୍ପଷ୍ଟଭାବେ ରଖିବାକୁ ହେବ । ଜଣେ ସଚ୍ଚା ବୁଦ୍ଧିବାଦୀର ତାହା ହିଁ କର୍ତ୍ତବ୍ୟ । ଗାନ୍ଧୀ, ଗୋପବନ୍ଧୁ, ବୁଦ୍ଧ ଓ ଯୀଶୁ- ଏମାନଙ୍କର ତ ଶତ୍ରୁ କମ୍ ନ ଥିଲେ ! ତେଣୁ ଜଣଙ୍କର ନାଁ ଅଜାତଶତ୍ରୁ ହୋଇପାରେ, କିନ୍ତୁ ଅଜାତଶତ୍ରୁ ହୋଇ ରହିବା ସମାଜର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଅନୁଚିତ ହେବ ।

ଏ ସଂକଳନର ପ୍ରବନ୍ଧଗୁଡ଼ିକର ଆଉ ଏକ ବିଶେଷତ୍ୱ ହେଲା ଯେ ଲେଖକ ନିଜସ୍ୱ ମତାମତ ଦେବା ସହ ଯାହା ଗବେଷଣା ଆବଶ୍ୟକ, ସେ ଗବେଷଣା କରି ପ୍ରବନ୍ଧଗୁଡ଼ିକୁ ତଥ୍ୟ ଓ ପରିସଂଖ୍ୟାନଭିତ୍ତିକ କରିଛନ୍ତି; ଅଥଚ ପରିସଂଖ୍ୟାନ ବା ହିସାବକିତାବ ଦେଇ ପ୍ରବନ୍ଧଗୁଡ଼ିକୁ ଅଯଥା ଭାରାକ୍ରାନ୍ତ କରିନାହାନ୍ତି । ଅନେକ ଲେଖାରେ ଗାଁ, ସହର, ଦେଶ, ବିଦେଶ ଏବଂ ବିଶ୍ୱର ସମସ୍ୟା ଓ ଚିତ୍ରକୁ ଗୋଟିଏ ଜାଗାରେ ରଖିପାରିଛନ୍ତି । ସେଥିପାଇଁ ଲେଖାଗୁଡ଼ିକ ଶିକ୍ଷଣୀୟ ଓ ସୁଖପାଠ୍ୟ ହୋଇଛି ଏବଂ ବିଭିନ୍ନ ବର୍ଗର ପାଠକମାନଙ୍କଦ୍ୱାରା ବେଶ୍ ଆଦୃତ ହୋଇପାରିଛି । ଏହାଦ୍ୱାରା 'ସମ୍ବାଦ'ର ଲୋକପ୍ରିୟତା ବି ବଢ଼ିଛି ।

ମୋର ଓଡ଼ିଆ ସାହିତ୍ୟରେ ବିଶେଷ ପ୍ରଭାବ ନାହିଁ । କିନ୍ତୁ ଖବରକାଗଜମାନଙ୍କରେ ସଦ୍ୟପ୍ରକାଶିତ ପୁସ୍ତକମାନଙ୍କର ଆଲୋଚନାରୁ ଜଣାପଡ଼େ ଯେ କବିତା ବା ଗଳ୍ପ ସଂକଳନ ଯେତେ ପ୍ରକାଶିତ ହେଉଛି, ସେ ତୁଳନାରେ ବିଚାର ଓ ବିକାଶଧର୍ମୀ ପ୍ରବନ୍ଧ ସଂକଳନ ପ୍ରକାଶିତ ହେଉନାହିଁ । ଫଳରେ ସାହିତ୍ୟରେ ଏକ ପ୍ରକାର ମରୁଡ଼ି ଦେଖାଯାଉଛି । ଗବେଷଣାତ୍ମକ, ତଥ୍ୟଭିତ୍ତିକ ଓ କାଳୋପଯୋଗୀ ପ୍ରବନ୍ଧର ଯେଉଁ

ଅଭାବ ଦେଖାଯାଉଛି, ଭଗବାନ ପ୍ରକାଶଙ୍କ ଲଳିତ ପ୍ରବନ୍ଧଗୁଡ଼ିକର ଏ ସଂକଳନ ସେ ଅଭାବ ବା ଶୂନ୍ୟତାକୁ ପୂରଣ କରିବାରେ ସାହାଯ୍ୟ କରିଛି । ମୋ ଜାଣିବାରେ ଓଡ଼ିଶାରେ ନିର୍ଭରଯୋଗ୍ୟ, ତଥ୍ୟଭିତ୍ତିକ ବିକାଶ-ସାହିତ୍ୟର ଏହା ପ୍ରଥମ ପ୍ରଚେଷ୍ଟା ।

ଖବରକାଗଜର ସଂପାଦକ ଓ ପରିଚାଳନା କର୍ତ୍ତୃପକ୍ଷ ସମ୍ବାଦଟିଏ ବା ପ୍ରବନ୍ଧଟିଏ ଛାପିବା ପୂର୍ବରୁ ବିଭିନ୍ନ ଦିଗପ୍ରତି ସତର୍କ ଦୃଷ୍ଟି ଦେଇଥାନ୍ତି; ତା' ନ ହେଲେ ଖବରକାଗଜ ଅଫିସ୍ ଭଂଗାରୁଜା ଓ ଖବରକାଗଜ ପୋଡ଼ି ଇତ୍ୟାଦି ହୋଇଥାଏ । ଡକ୍ଟର ଭଗବାନ ପ୍ରକାଶଙ୍କର ପ୍ରବନ୍ଧଗୁଡ଼ିକ ସମସ୍ତ ପ୍ରକାର ବଦଭ୍ୟାସ, ଅନ୍ଧବିଶ୍ୱାସ, ହୀନମନ୍ୟତା, ସଂକୀର୍ଣ୍ଣତା, ମତାନ୍ଧତା ଓ ରୁଢ଼ିବାଦ ଉପରେ ପ୍ରଚଣ୍ଡ କୁଠାରାଘାତ କରିଥିଲେ ମଧ୍ୟ ବିଭିନ୍ନ ଗୋଷ୍ଠୀର ସଂଭାବ୍ୟ ରୋଷ ପ୍ରତି ଖାତିର ନ କରି 'ସମ୍ବାଦ' ଖବରକାଗଜର ମୁଖ୍ୟ ସଂପାଦକ କମ୍ ଦୃଢ଼ତା ଓ ସାହସିକତାର ପରିଚୟ ଦେଇନାହାନ୍ତି । ବିଭିନ୍ନ ସମୟରେ ପ୍ରବନ୍ଧଗୁଡ଼ିକ ଲେଖି ଶେଷରେ କେବଳ ଗୋଟିଏ ବହି ଆକାରରେ ପ୍ରକାଶିତ ହୋଇଥିଲେ ଆଜି ଯେତେ ଲୋକ 'ସମ୍ବାଦ' ଜରିଆରେ ପଢ଼ିବାର ସୁଯୋଗ ପାଇଲେ ସେତେ ଲୋକ ନିଶ୍ଚିତଭାବେ ସୁଯୋଗ ପାଇ ପାରି ନ ଥାନ୍ତେ । ସେଥିପାଇଁ 'ସମ୍ବାଦ' କର୍ତ୍ତୃପକ୍ଷ ନିଶ୍ଚିତ ରୂପେ ଧନ୍ୟବାଦାର୍ହ ।

ଶେଷକଥା- ଜାତୀୟ ଆନ୍ତର୍ଜାତିକ କ୍ଷେତ୍ରରେ ଓ ଦିଲ୍ଲୀରେ ପାଖାପାଖି ଦୁଇ ଦଶନ୍ଧିରୁ ଉର୍ଦ୍ଧ୍ୱ ସମୟ ରହିସାରିବା ପରେ ଡକ୍ଟର ଭଗବାନ ପ୍ରକାଶ ନିଜ ରାଜ୍ୟରେ ରହି କାମ କରିବାପାଇଁ ଯେତେବେଳେ ଫେରିଲେ, ସେତେବେଳେ ଦେଖିଲେ ତାଙ୍କ ପୁରୁଣା ପ୍ରିୟ ଓଡ଼ିଶାର ପରିବେଶ, ପରିସର ତଥା ମୂଲ୍ୟବୋଧ ଯଥେଷ୍ଟ ବଦଳିଯାଇଛି । ସେ ଖୁବ୍ ନିଃସଙ୍ଗ ହୋଇପଡ଼ିଛନ୍ତି ଓ ବଡ଼ ଅସ୍ୱସ୍ତି ମଧ୍ୟ ଅନୁଭବ କରୁଛନ୍ତି । ଦିଲ୍ଲୀର ପୁରୁଣା ବନ୍ଧୁମାନଙ୍କ ଆକର୍ଷଣ, ସେଠାରେ ତାଙ୍କ କାମର ଆଦର ଓ ଆବଶ୍ୟକତା ଯୋଗୁଁ ମଝିରେ ମଝିରେ କିଛିଦିନ ପାଇଁ ସେଠାକୁ ଚାଲିଯାଉଥିଲେ; କିନ୍ତୁ 'ସମ୍ବାଦ'ରେ ତାଙ୍କର ଧାରାବାହିକ ପ୍ରବନ୍ଧଗୁଡ଼ିକ ପ୍ରକାଶିତ ହେବାପରେ ତାଙ୍କର ପରିଚିତି ଓ ବିଚାର ଏତେ ବ୍ୟାପକ ହେଲା ଏବଂ ଧୀରେଧୀରେ ସେ ଏତେ ଲୋକପ୍ରିୟ ହେଲେ ଯେ କ୍ରମେ ଆନ୍ତର୍ଜାତିକ ସଂଗଠନ ତଥା ଦିଲ୍ଲୀର ସମସ୍ତ ମୋହରୁ ସେ ଏକପ୍ରକାର ମୁକ୍ତ ହୋଇଗଲେ । ତାଙ୍କର ଓଡ଼ିଶା ତଥା ଭୁବନେଶ୍ୱର ରହଣି ନିଶ୍ଚିତ ହୋଇଗଲା । ଲାଭ ସମସ୍ତଙ୍କର ହେଲା । ଆମେ ସମସ୍ତେ ଖୁସି ହେଲୁ । 'ବିକଳ୍ପ ବିଶ୍ୱ'ର ବିଚାର ଆହୁରି ଉଜ୍ଜ୍ୱଳ ତଥା ବ୍ୟାପକ ହେଲା ।

ଶ୍ୟାମାନନ

# ସୂଚୀପତ୍ର

■ ■ ■

# କନ୍ୟା ମିଳିବେ ନାହିଁ

ଟା ଟା 'ବନ୍‌ଜାଇ, ବନ୍‌ଜାଇ' - ଅର୍ଥାତ୍ ୧୦ ହଜାର ବର୍ଷ ଜୀଅଁ, କହି କହି ଜାପାନୀମାନେ ରାସ୍ତାଘାଟରେ ନାଚି ନାଚି, ଗାଇ ଗାଇ ତାଙ୍କ ଶିଶୁ ରାଜକୁମାରଙ୍କୁ ସ୍ୱାଗତ କରିଛନ୍ତି । ଚାଳିଶ ବର୍ଷ ପରେ ଜାପାନୀ ରାଜବଂଶରେ ଏକ ପୁରୁଷ ଉତ୍ତରାଧିକାରୀ ଜନ୍ମ ନେଇଥିବାରୁ ସମଗ୍ର ଜାପାନ୍ ଦେଶରେ ଆନନ୍ଦ ଉଲ୍ଲାସର ଲହଡ଼ି ଖେଳିଯାଇଛି । ଯୁବରାଣୀ କିକୋ ସେପ୍‌ଟେମ୍ବର ୨୦୦୬ରେ ସାଢ଼େ ପାଞ୍ଚ ପାଉଣ୍ଡ ଓଜନର ଏକ ପୁତ୍ର ସନ୍ତାନ ପ୍ରସବ କରି ରାଜଗାଦିକୁ ଆସନ୍ତା ଶହେ ବର୍ଷ ପର୍ଯ୍ୟନ୍ତ ସୁରକ୍ଷିତ କରିଦେଲେ ବୋଲି କୁହାଯାଉଛି । ହାର୍ଭାଡ୍ ଓ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ଶିକ୍ଷାପ୍ରାପ୍ତ ୪୨ ବର୍ଷ ବୟସ୍କା ପ୍ରଥମ ଯୁବରାଣୀ ମାସାକୋ ରାଜବଂଶକୁ ପୁତ୍ର ସନ୍ତାନ ଦେଇ ନ ପାରିବାରୁ ବିଷାଦଗ୍ରସ୍ତ ହୋଇ ଅନେକ ଦିନରୁ ସାଧାରଣ ଜୀବନରୁ ଅପସରି ଯାଇଛନ୍ତି । କିକୋଙ୍କ ସ୍ୱାମୀ ଯୁବରାଜ ଆକିସିନୋଙ୍କ ଉପରେ କିଛିବର୍ଷ ହେଲା ଚାପ ଦିଆ ଯାଉଥିଲା ଯେ ଯଦି କିକୋ ଏଥର ପୁତ୍ର ସନ୍ତାନ ଦେଇ ନ ପାରନ୍ତି ତେବେ ସେ ଏକ ରକ୍ଷିତା (କନ୍‌କୁବାଇନ୍) ରଖନ୍ତୁ ଓ ପୁତ୍ରପାଇଁ ଚେଷ୍ଟା କରନ୍ତୁ ।

ଏ ସମ୍ପର୍କରେ ଜାପାନ୍ ପ୍ରଧାନମନ୍ତ୍ରୀ ଜୁନିସିରୋ କୋଜୁମି ଆଲୋଚନା କରି ବିକଳ୍ପ ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ ବିଶେଷଜ୍ଞମାନଙ୍କର ଏକ ବୈଠକ ଡକାଇଥିଲେ । ଏହି ବୈଠକରେ ତାଙ୍କୁ ପରାମର୍ଶ ଦିଆଯାଇଥିଲା ଯେ ଯୁବରାଣୀ ପୁତ୍ର ପ୍ରସବ ନ କଲେ ରାଜକନ୍ୟା ସିଂହାସନରେ ବସିବେ । ଏହି ଖବର ପାଇ ରକ୍ଷଣଶୀଳ ଗୋଷ୍ଠୀ ବିଚଳିତ ହୋଇ ପଡ଼ିଥିଲେ । ପୁତ୍ର ପ୍ରସବ କରି ଏବେ କିକୋ ଜାପାନୀ ମିଡ଼ିଆ ଓ ଜନସାଧାରଣଙ୍କ ହୃଦୟ ସିଂହାସନରେ ବସିଛନ୍ତି । କିନ୍ତୁ ତାଙ୍କର ପ୍ରଥମ ଓ ଦ୍ୱିତୀୟ କନ୍ୟାଙ୍କ ଜନ୍ମ ବେଳେ ସାରା ଦେଶ ଦୁଃଖରେ ଭାଙ୍ଗି ପଡ଼ିଥିଲା । ଲୋକେ ରାଜବଂଶ ଓ ରାଜାଙ୍କ ପ୍ରତି ସମବେଦନା ଜଣାଇ ପତ୍ର ଲେଖିଥିଲେ । ସତେ ଯେମିତି ଶୋକ ଦିବସ ।

ଇଏ ହେଲା ପୃଥିବୀର ଦ୍ୱିତୀୟ ଅର୍ଥନୈତିକ ମହାଶକ୍ତି ଅତ୍ୟାଧୁନିକ ଜାପାନ୍‌ର ମାନସିକତା । ଇତିହାସରେ ଏଭଳି ବହୁ ଦୃଷ୍ଟାନ୍ତ ରହିଛି । ଇଂଲଣ୍ଡର ମହାରାଜା ହେନ୍‌ରି (୧୫୧୬) ପୁରୁଷ ଉତ୍ତରାଧିକାରୀ ପାଇବା ଆଶାରେ ଛଅ ଥର ବିବାହକରି ମଧ୍ୟ ବିଫଳ ହୋଇଥିଲେ । ଅବଶେଷରେ କନ୍ୟା ଏଲିଜାବେଥ୍ ରାଜସିଂହାସନରେ ବସିଥିଲେ । ତାଙ୍କରି ରାଜତ୍ୱ ସମୟରେ ବିଶ୍ୱ ବିଖ୍ୟାତ ନାଟ୍ୟକାର ଉଇଲିୟମ୍ ସେକ୍ସପିୟର ଓ ବହୁ କବି ଏବଂ କଳାକାର ଇଂଲଣ୍ଡକୁ ସଭ୍ୟତାର ଶିଖର ଦେଶରେ ପହଞ୍ଚାଇଥିଲେ । କିଛି ବର୍ଷ ତଳେ ନେପାଳରେ ଜନଆନ୍ଦୋଳନଦ୍ୱାରା ସ୍ଥିର ହୋଇଥିଲା ଯେ, ଏଣିକି ନେପାଳ ରାଜସିଂହାସନର ଉତ୍ତରାଧିକାରୀ କେବଳ ପ୍ରଥମ ରାଜପୁତ୍ର ନ ହୋଇ ପ୍ରଥମ ସନ୍ତାନ ହେବେ - ଝିଅ ହୁଅନ୍ତୁ ବା ପୁଅ ହୁଅନ୍ତୁ । ଅବଶ୍ୟ ଏ ମଧ୍ୟରେ ରାଜାଙ୍କ ଶାସନ ବି ଉଠିଗଲାଣି ।

ବ୍ରିଟିଶ ଶାସନକାଳରେ ଭାରତରେ ଅପୁତ୍ରିକ ରାଜାମାନଙ୍କ ରାଜ୍ୟ 'ଇଷ୍ଟ ଇଣ୍ଡିଆ କମ୍ପାନି' ନେଇ ଯାଉଥିବାରୁ ଏହି ରାଜାମାନେ ସିପାହୀ ବିଦ୍ରୋହରେ ଯୋଗ ଦେଇ ଦେଶର ପ୍ରଥମ ସ୍ୱାଧୀନତା ଆନ୍ଦୋଳନର ମୂଳଦୁଆ ପକାଇଥିଲେ ଏବଂ ଏପରି ସ୍ୱାର୍ଥଯୋଗୁଁ ଆନ୍ଦୋଳନ ସଫଳ ହୋଇ ପାରିଲା ନାହିଁ । ଏବେ ବି ଦେଶରେ ବିଶେଷ କରି ରାଜସ୍ଥାନରେ କେତେକ ଗାଁ ଅଛି ଯେଉଁଠିକୁ ଗତ ଦେଢ଼ଶହ ବର୍ଷ ହେଲା ବରଯାତ୍ରୀ ଆସିନାହାନ୍ତି ବୋଲି ଲୋକେ ଗର୍ବରେ ଛାତି ଫୁଲାଇ କହନ୍ତି । ଏହାର ଅର୍ଥ ହେଲା ଏ ଗାଁରେ ଜନ୍ମିତ ବା ଜନ୍ମ ଅପେକ୍ଷାରେ ଥିବା କନ୍ୟାଭ୍ରୂଣ ହତ୍ୟା କ୍ରମାଗତ ଚାଲିଛି । ଯେଉଁ ଦେଶ ଲକ୍ଷ୍ମୀ, ପାର୍ବତୀ ଓ ସରସ୍ୱତୀଙ୍କୁ ସୃଷ୍ଟିର ତ୍ରିଶକ୍ତି ଭାବରେ ପୂଜାକରେ ଏବଂ ଅହଲ୍ୟା, ଦ୍ରୌପଦୀ, ତାରା, କୁନ୍ତୀ ଓ ମନ୍ଦୋଦରୀ - ଏହି ପଞ୍ଚକନ୍ୟାଙ୍କୁ ନିତ୍ୟ ସ୍ମରଣ କଲେ ମହାପାତକ ନାଶ ହୁଏ ବୋଲି ବିଶ୍ୱାସ କରେ, ସେ ଦେଶରେ ଏପରି କନ୍ୟା ବିରୋଧୀ ଭାବଧାରା କିପରି ବ୍ୟାପିଗଲା ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

ଭାରତରେ ଗତ ଶହେ ବର୍ଷ ମଧ୍ୟରେ ପୁତ୍ର କନ୍ୟାଙ୍କ ଜନ୍ମ ଅନୁପାତକୁ ଦେଖିଲେ ଏ ସମ୍ପର୍କରେ ଅନୁମାନ କରିହେବ । ୧୯୦୧ ମସିହା ଜନଗଣନାରୁ ଜଣାଯାଏ ଯେ ସେହି ବର୍ଷ ପ୍ରତି ହଜାରେ ପୁଅରେ ଝିଅଙ୍କ ସଂଖ୍ୟା ଥିଲା ୯୭୨ । ଶହେ ବର୍ଷ ପରେ ୨୦୦୧ ଜନଗଣନା ରିପୋର୍ଟ ଅନୁସାରେ କନ୍ୟା ଜନ୍ମ ସଂଖ୍ୟା ୯୭୨ ରୁ ହ୍ରାସପାଇ ୯୩୩ରେ ପହଞ୍ଚିଲାଣି । ଏହାର ଫଳାଫଳ ସ୍ୱରୂପ ହଜାରେ ବିବାହଯୋଗ୍ୟ ପୁରୁଷଙ୍କ ମଧ୍ୟରୁ ୬୭ ଜଣଙ୍କୁ ଅବିବାହିତ ରହିବାକୁ ପଡ଼ିବ । ହରିଆନା, ପଞ୍ଜାବ ଓ ଗୁଜୁରାଟ

ଭଳି ଉନ୍ନତ ରାଜ୍ୟମାନଙ୍କରେ ପୁତ୍ର-କନ୍ୟା ଜନ୍ମ ହାର ଆହୁରି ହ୍ରାସ ପାଇଛି । ହରିଆନାରେ ଏହି ହାର ଏବେ ୮୭୦ । ପଞ୍ଜାବର ଭାଟିନ୍ଦା ଜିଲ୍ଲାର ଜିଡ଼ା ଗ୍ରାମରେ ଭାରତର ସବୁ ଅଞ୍ଚଳଠାରୁ କମ୍ କନ୍ୟା ଜନ୍ମ ହୋଇଛନ୍ତି । ଅନୁପାତ ହେଲା ପ୍ରତି ହଜାରେ ପୁଅରେ ୭୪୩ ଝିଅ । ଅର୍ଥାତ୍ ଏ ଅଞ୍ଚଳରେ ପ୍ରତି ହଜାରେ ପୁଅଙ୍କ ମଧ୍ୟରୁ ୨୫୭ ପୁଅ ବାହା ହୋଇପାରିବେ ନାହିଁ । ଓଡ଼ିଶାର ଅବସ୍ଥା ସର୍ବଭାରତୀୟ ତୁଳନାରେ ଭଲ ଥିଲେ ମଧ୍ୟ ଏଠାରେ ପ୍ରତି ହଜାରେ ପୁଅ ମଧ୍ୟରୁ ୨୮ ଜଣଙ୍କୁ କନ୍ୟା ମିଳିବେ ନାହିଁ । କେବଳ ରାଜ୍ୟର ଅନୁନ୍ନତ ଓ ଆଦିବାସୀ ଅଞ୍ଚଳରେ କନ୍ୟାମାନେ ଏ ପର୍ଯ୍ୟନ୍ତ ହତ୍ୟାକାରୀଙ୍କଠାରୁ ଦୂରରେ ଅଛନ୍ତି । ଏ ପର୍ଯ୍ୟନ୍ତ କନ୍ଧମାଳରେ ପ୍ରତି ହଜାରେ ପୁଅରେ ୧୦୦୮ ଝିଅ, ନୂଆପଡାରେ ୧୦୦୬, କଳାହାଣ୍ଡିରେ ୧୦୦୦, କୋରାପୁଟରେ ୯୯୮, ମାଲକାନଗିରିରେ ୯୯୬ ଓ ନବରଙ୍ଗପୁରରେ ୧୦୦୨ ଝିଅ ଅଛନ୍ତି । କିନ୍ତୁ ସବୁଠାରୁ ସାକ୍ଷର ଜିଲ୍ଲା ଖୋର୍ଦ୍ଧାରେ ପ୍ରତି ହଜାରେ ପୁଅରେ ୯୦୧ ଝିଅ ଅଛନ୍ତି ।

କନ୍ୟା ଭ୍ରୂଣ ହତ୍ୟା କରିଥିବା ବରପିତାମାନେ ଏବେ ସଙ୍କଟରେ ପଡ଼ିଲେଣି । ନିଜ ଜାତିରେ କନ୍ୟା ଅଭାବ ଫଳରେ ବାଡୁଅ ପୁଅଙ୍କପାଇଁ ଏମାନେ କନ୍ୟା ଖୋଜି ଖୋଜି ବିହାର, ଝାଡ଼ଖଣ୍ଡ, ଛତିଶଗଡ ଆଦି ରାଜ୍ୟରେ ବୁଲୁଛନ୍ତି । କନ୍ୟାପିତାମାନଙ୍କୁ ଯୌତୁକ ଯାଚୁଛନ୍ତି ଓ ନାନା ପ୍ରଲୋଭନ ଦେଖାଉଛନ୍ତି । ଯେଉଁ ଝିଅମାନେ ରାଜିହୋଇ ଯାଉଛନ୍ତି, ସେମାନଙ୍କ ମଧ୍ୟରୁ ଅନେକ ଏହି ପୁରୁଷପ୍ରଧାନ ରାଜ୍ୟର ଚାଲିଚଳଣି ଓ ବ୍ୟବହାର ସହିତ ଖାପଖୁଆଇ ଚଳି ନ ପାରିବାରୁ ଅତ୍ୟାଚାରିତ ହୋଇ ଲୁଚି ପଳାଇ ଆସୁଛନ୍ତି ।

ଏହି ସମସ୍ୟା କେବଳ ଭାରତରେ ନୁହେଁ । ପୁତ୍ର ପ୍ରେମୀ ଓ କନ୍ୟାଦ୍ରୋହୀ ସମାଜ ମଧ୍ୟରେ ପଡ଼ୋଶୀ, ସାମ୍ୟବାଦୀ ଚୀନ୍ ଅନ୍ୟତମ । ଟାଇମ୍‌ସ ନିଉଜ୍ ନେଟ୍‌ୱାର୍କ (୧୫.୦୮.୨୦୦୭) ରିପୋର୍ଟ ଅନୁସାରେ ୨୦୨୦ ମସିହା ବେଳକୁ ଚୀନ୍‌ରେ ୨୫୦ ଲକ୍ଷ ଯୁବକ ବାହା ହୋଇ ନ ପାରି ବାଡୁଅ ରହିବେ । ପୁତ୍ର କନ୍ୟା ଜନ୍ମ ଅନୁପାତରେ ଦ୍ରୁତ ହ୍ରାସ ଫଳରେ ଏପରି ଅବସ୍ଥା ସୃଷ୍ଟି ହେବ । ଚୀନ୍ ସରକାରଙ୍କ 'ଏକ ସନ୍ତାନ - ପରିବାର' ନୀତି ଜବରଦସ୍ତ ଲାଗୁ କରାଯାଉଥିବାରୁ ବହୁ ପରିବାର ପ୍ରଥମ କନ୍ୟା ଜନ୍ମ ସମ୍ଭାବନାକୁ ଗର୍ଭପାତଦ୍ୱାରା ନଷ୍ଟ କରି ଦେଉଛନ୍ତି । ଏହା ଫଳରେ ଗ୍ରାମାଞ୍ଚଳରେ ରହୁଥିବା କୃଷକମାନେ ପୁଅପାଇଁ ବୋହୂ ଖୋଜିବା ଉଦ୍ଦେଶ୍ୟରେ ପଡ଼ୋଶୀ କାମ୍ବୋଡ଼ିଆ, ଉତ୍ତରକୋରିଆ ଆଦି ଦେଶକୁ ଯାଇ ଅଜସ୍ର ଅର୍ଥ ବ୍ୟୟ କରି କନ୍ୟା ଆଣୁଛନ୍ତି । ପୃଥିବୀରେ ପ୍ରତି ୧୦୭ ପୁଅପାଇଁ ୧୦୦ ଝିଅ ଥିଲା ବେଳେ ଚୀନ୍‌ରେ ୧୦୦ ଝିଅଙ୍କପାଇଁ ୧୧୯ ଜଣ ପୁଅ ଅଛନ୍ତି । ଏବେ ବେଜିଂ ବିଶ୍ୱବିଦ୍ୟାଳୟର

ଜନସଂଖ୍ୟା ଗବେଷକ ମୁ ଗ୍ୱାଙ୍ଗଝଙ୍ଗ୍ ଚୀନ୍ କମ୍ୟୁନିଷ୍ଟ ପାର୍ଟିର ସର୍ବୋଚ୍ଚ ନୀତି ନିୟାମକ ପରିଷଦରେ ଏ ସମ୍ପର୍କରେ ତାଙ୍କର ଉଦ୍‌ବେଗ ପ୍ରକାଶ କରିବା ସହ ଦେଶକୁ ସତର୍କ କରାଇଛନ୍ତି ।

କନ୍ୟା ଭ୍ରୁଣ ହତ୍ୟା ବା ଗର୍ଭପାତ, ମହିଳା ଶିଶୁ ଜନ୍ମହାର ହ୍ରାସର ଏକମାତ୍ର କାରଣ ନୁହେଁ । ଶିଶୁ କନ୍ୟାଙ୍କପାଇଁ ପୁଷ୍ଟିକର ଖାଦ୍ୟ ନ ମିଳିବା, ଠିକ୍ ସମୟରେ ଟିକା ନ ନେବା, ଅଳ୍ପ ବୟସରେ ବିବାହ, ପ୍ରସବ ଓ ତଦ୍‌ଜନିତ ମୃତ୍ୟୁ ଇତ୍ୟାଦି ଅନେକ କାରଣ ରହିଛି । ସବ୍-ସାହାରା ଆଫ୍ରିକାକୁ ଛାଡିଦେଲେ ଭାରତରେ ମାତୃ ମୃତ୍ୟୁହାର ପୃଥିବୀରେ ସବୁଠାରୁ ଅଧିକ । ଏଠାରେ ପ୍ରତି ଲକ୍ଷେ ପ୍ରସୂତୀଙ୍କ ମଧ୍ୟରୁ ୩୫୮ ଜଣ ମୃତ୍ୟୁ ମୁଖରେ ପଡ଼ିଥାନ୍ତି । ୨୦୦୫ ମସିହାରେ ପ୍ରକାଶିତ 'ସୋସିଆଲ୍ ୱାଚ୍' ରିପୋର୍ଟ ଅନୁସାରେ ଭାରତରେ ପ୍ରତିବର୍ଷ ଜନ୍ମଲାଭ କରୁଥିବା ୧୫୦ ଲକ୍ଷ ଶିଶୁକନ୍ୟାଙ୍କ ମଧ୍ୟରୁ ଏକଚତୁର୍ଥାଂଶ ନିଜର ପଞ୍ଚଦଶ ଜନ୍ମଦିବସ ପର୍ଯ୍ୟନ୍ତ ବଞ୍ଚି ରହିପାରନ୍ତି ନାହିଁ ।

କନ୍ୟାଦ୍ରୋହ ମଫସଲ ଅପେକ୍ଷା ସହରରେ ଅଧିକ, ନିରକ୍ଷରଙ୍କ ଅପେକ୍ଷା ତଥାକଥିତ ଶିକ୍ଷିତ ଓ ସାକ୍ଷର ସମାଜରେ ଅଧିକ, ଗରିବଙ୍କ ଅପେକ୍ଷା ଧନୀକଙ୍କ ମଧ୍ୟରେ ଅଧିକ । ଗତବର୍ଷ ଭାରତର ସବୁଠାରୁ ଧନୀ ଓ ଶିକ୍ଷିତ ନଗରୀ ବମ୍ବେରେ କରାଯାଇଥିବା ଏକ ସର୍ଭେରୁ ଜଣାପଡ଼ିଛି ଯେ ଏହି ନଗରୀରେ ଘଟିଥିବା ଆଠ ହଜାର ଗର୍ଭପାତ ମଧ୍ୟରୁ ସାତହଜାର ନଅ ଶହ ଅନେଶତ ହେଉଛି କନ୍ୟା ଗର୍ଭପାତ । ଓଡ଼ିଶାର ସବୁଠାରୁ ସାକ୍ଷର ଓ ଶିକ୍ଷିତ ଜିଲ୍ଲାମାନଙ୍କରେ କନ୍ୟାଙ୍କ ସଂଖ୍ୟା କମ୍ । ଏହାର କାରଣ ସ୍ପଷ୍ଟ ।

କନ୍ୟା ଭ୍ରୂଣ ହତ୍ୟାକୁ ଭାରତ ସରକାର ବେଆଇନ୍ ଘୋଷଣା କରିଛନ୍ତି ଏବଂ ଯେଉଁସବୁ ମେଡ଼ିକାଲ୍ କ୍ଲିନିକ୍‌ରେ ଡାକ୍ତରମାନେ ଅଧିକ ଅର୍ଥ ଲାଳସାରେ ଏହି "ମୃତ୍ୟୁ-ବ୍ୟବସାୟ"ରେ ଲିପ୍ତ, ସେମାନଙ୍କୁ ଧରପଗଡ଼ କରୁଛନ୍ତି । କିନ୍ତୁ ଏହାର ପ୍ରକୃତ ସମାଧାନ ଆମ ସମାଜର ମାନସିକତାରେ ପରିବର୍ତ୍ତନଦ୍ୱାରା ହୋଇପାରିବ । କନ୍ୟା ଭ୍ରୂଣ ହତ୍ୟା ଏକ ଦେଶଦ୍ରୋହ ଏବଂ ଏହାଦ୍ୱାରା କ୍ରମେ ମାନବ ସମାଜ ଧ୍ୱଂସ ପାଇଯିବ । ଏହା ମାନବ ଜାତି ବିରୁଦ୍ଧରେ ଅପରାଧ । ଏହା ବିରୁଦ୍ଧରେ ସ୍ୱେଚ୍ଛାସେବୀ ସଂସ୍ଥା ଓ ଚିନ୍ତାଶୀଳ ବ୍ୟକ୍ତିମାନେ ସ୍ୱର ଉତ୍ତୋଳନ କରିବା ଆବଶ୍ୟକ । ରାଜନୈତିକ ଦଳମାନେ ସେମାନଙ୍କର ନିର୍ବାଚନ ପ୍ରଚାରରେ ଏହାକୁ ସାମିଲ୍ କରନ୍ତୁ । ଧର୍ମାଧିକାରୀମାନେ ଏହାକୁ ଖୋଲାଖୋଲି ନିନ୍ଦା କରନ୍ତୁ ।

ସବୁଠାରୁ କମ୍ ଶିଶୁକନ୍ୟା ଥିବା ପଞ୍ଜାବର ଜିଦ୍ଦା ଗ୍ରାମ ପଞ୍ଚାୟତରେ ଏହି ପ୍ରକ୍ରିୟା ଆରମ୍ଭ ହେଲାଣି । ଏହି ଅଞ୍ଚଳରେ ଥିବା ଗୁରୁଦ୍ୱାରମାନେ କନ୍ୟା ଭ୍ରୁଣ ହତ୍ୟାକୁ

ପାପ ଓ ଧର୍ମବିରୋଧୀ ବୋଲି ଘୋଷଣା କରିଛନ୍ତି ଏବଂ ଶିଖ୍ ସମ୍ପ୍ରଦାୟକୁ ଏ ପାପରୁ ଦୂରରେ ରହିବାକୁ ପରାମର୍ଶ ଦେଇଛନ୍ତି । ପଶ୍ଚିମ ଉତ୍ତରପ୍ରଦେଶର ଜାଠ ଓ ଗୁଜ୍ଜର ସମ୍ପ୍ରଦାୟର ଲୋକେ ଏକାଠି ହୋଇ ତାଙ୍କ ମହାପଞ୍ଚାୟତରେ ନିଷ୍ପତ୍ତି ନେଇଛନ୍ତି ଯେ, ଏଣିକି ଏହି ସମ୍ପ୍ରଦାୟର ଯେଉଁ ପରିବାର କନ୍ୟା ଭ୍ରୂଣ ହତ୍ୟା କରିବେ ତାଙ୍କୁ ସାମାଜିକ ବାସନ୍ଦ କରାଯିବ । ଏକଦା କୃଷକ ଆନ୍ଦୋଳନର କର୍ଣ୍ଣଧାର ଚୌଧୁରୀ ମହେନ୍ଦ୍ର ସିଂ ଟିକାୟତ ଏହାର ନେତୃତ୍ୱ ନେଇଛନ୍ତି । ଆଇନ୍, ସଚେତନତା ଓ ସକ୍ରିୟ ଜନଆନ୍ଦୋଳନ ଜରିଆରେ ହିଁ ଏହି ସାମାଜିକ ବ୍ୟାଧିର ଉପଚାର କରିହେବ । ହରିଆନାର ବାହା ନ ହୋଇପାରୁଥିବା ଯୁବକମାନେ ଗଢିଲେଣି "କୁଆଁରା ସଙ୍ଘ" ଓ ୨୦୦୯ ବିଧାନସଭା ନିର୍ବାଚନରେ ପ୍ରତିଯୋଗିତା କରୁଥିବା ପ୍ରାର୍ଥୀଙ୍କ ନିକଟରେ, ଭୋଟ୍ ବଦଳରେ ବାହା କରେଇଦିଅ ବୋଲି ଦାବି କଲେଣି - ସ୍ଲୋଗାନ୍ ହେଲା 'ବହୂ ଦିଲାଓ, ଭୋଟ୍ ପାଓ' । ଏ ରାଜ୍ୟର ପ୍ରାୟ ପ୍ରତ୍ୟେକ ପଞ୍ଚାୟତରେ ୫୦୦ରୁ ଅଧିକ ବିବାହଯୋଗ୍ୟ ପୁଅଙ୍କପାଇଁ ଝିଅ ମିଳୁନାହାନ୍ତି । (ଟାଇମ୍ସ ଅଫ୍ ଇଣ୍ଡିଆ-୨୬/୦୯/ ୨୦୦୯) । ଗୁଜୁରାଟର ମେହସାନା ଅଞ୍ଚଳରେ ୧୦୦୦ ପୁଅରେ ଝିଅଙ୍କ ସଂଖ୍ୟା ୭୯୮ । ପ୍ରଭାବୀ ଓ ଧନୀ ପଟେଲ୍‌ମାନେ ଏବେ ଆଦିବାସୀ, ଦଳିତ ପରିବାରରୁ କନ୍ୟା ଆଣି ବିବାହ କରାଉଛନ୍ତି । ଏଠାରେ ଆଉ ଗୋଟିଏ ପରମ୍ପରାର ନାଁ 'ସଟ୍ଟା' - ମାନେ ନିଜ ଘର ଝିଅ ଦେଲେ ଅନ୍ୟ ଘରୁ ଝିଅ ଆଣିପାରିବ, ନହେଲେ ପୁଅ ରହିବ ଅବିବାହିତ । ତଥାପି କନ୍ୟା ଭ୍ରୂଣ ହତ୍ୟା ଚାଲୁ ରହିଛି । ନିଦ ଭାଙ୍ଗି ନାହିଁ ।

ଆମ ଡାକ୍ତର ଭାଇ ଭଉଣୀମାନେ ସକ୍ରେଟିସ ଶପଥ ନେଲା ବେଳେ କନ୍ୟା ଭ୍ରୂଣ ହତ୍ୟା କରିବେ ନାହିଁ ବୋଲି ଶପଥ ନିଅନ୍ତୁ । ଯେଉଁମାନେ ଏହା ସତ୍ତ୍ୱେ ଏ ଅଭ୍ୟାସ ଛାଡୁ ନାହାନ୍ତି, ତାଙ୍କ ମେଡିକାଲ ଡିଗ୍ରୀ ଓ ସାର୍ଟିଫିକେଟକୁ ଅବୈଧ ଘୋଷଣା କରି ପ୍ରତ୍ୟାହାର କରାଯାଉ । କନ୍ୟା ଭ୍ରୂଣ ହତ୍ୟା, ମାତୃ ହତ୍ୟା ସହ ସମାନ । ବିଭିନ୍ନ ଧର୍ମ, ସମ୍ପ୍ରଦାୟର ଗୁରୁ, ଜଗଦ୍‌ଗୁରୁମାନେ ଏହି ଆନ୍ଦୋଳନର ନେତୃତ୍ୱ ନିଅନ୍ତୁ ।

*୭ ଡିସେମ୍ବର, ୨୦୦୬*



# ଶୁଭ, ଲାଭ ଓ କମ୍ପାନିଙ୍କ ସାମାଜିକ ଦାୟିତ୍ୱ

'ଫୋର୍ବେ ଏସିଆ' ପ୍ରତି ଛ ମାସରେ ବିଶ୍ୱ-ଧନୀକମାନଙ୍କର ଏକ ତାଲିକା ପ୍ରକାଶ କରନ୍ତି । ୨୦୦୮ ନଭେମ୍ବର ମାସରେ ଭାରତର ୪୦ ଜଣ ଅତି ଧନପତିଙ୍କ ତାଲିକାରେ ରିଲାଏନ୍‌ସ ଇଣ୍ଡଷ୍ଟ୍ରିଜ୍‌ର ମାଲିକ ମୁକେଶ ଅମ୍ବାନୀ ପ୍ରଥମ ସ୍ଥାନରେ ଅଛନ୍ତି । ଏହା ପୂର୍ବରୁ ଲଣ୍ଡନରେ ରହୁଥିବା ଅଠାବନ ବର୍ଷ ବୟସ୍କ ଏବଂ ପୃଥିବୀର ସବୁଠାରୁ ବଡ ଇସ୍ପାତ କମ୍ପାନି ଶୃଙ୍ଖଳାର ମାଲିକ ଲକ୍ଷ୍ମୀ ନିବାସ ମିତ୍ତଲ ଭାରତୀୟ ଧନୀକଙ୍କ ମଧ୍ୟରେ ପ୍ରଥମ ସ୍ଥାନରେ ଥିଲେ । ମୁକେଶ ଅମ୍ବାନୀଙ୍କ ବୟସ ମାତ୍ର ୫୧ ବର୍ଷ। ଧନର ପରିମାଣ ଅଢେଇ ଲକ୍ଷ କୋଟି ଟଙ୍କା । ସେୟାର ବଜାରରେ ଲକ୍ଷେ କୋଟି ଟଙ୍କା ହରାଇ ସାରିଲା ପରେ ବି । ତାଙ୍କ ସାନ ଭାଇ ଅନୀଲ ଅମ୍ବାନୀ ପ୍ରାୟ ଦେଢ ଲକ୍ଷ କୋଟି ଟଙ୍କା ହରାଇ ସାରିଲା ପରେ ବି ଅଛନ୍ତି ଦ୍ବିତୀୟ ସ୍ଥାନରେ । ଅନ୍ୟମାନଙ୍କ ଭିତରେ ଅଛନ୍ତି ଟାଟା, ଇନ୍‌ଫୋସିସ୍, ୱିପ୍ରୋ ଓ ବିରଳା ଗ୍ରୁପ୍ ଇତ୍ୟାଦି ।

ଭାରତରେ ଧନୀ ଲୋକଙ୍କ ସଂଖ୍ୟା ଦ୍ରୁତ ଗତିରେ ବଢିବାରେ ଲାଗିଛି । ୨୦୦୬ ମସିହାରେ ଦେଶରେ ୪ କୋଟିରୁ ଅଧିକ ଟଙ୍କା ଥିବା ଲୋକଙ୍କ ସଂଖ୍ୟା ଥିଲା ଏକଲକ୍ଷ ପନ୍ଦର ଜଣ । କିନ୍ତୁ ୨୦୦୫ ମସିହାରେ ଏହି ସଂଖ୍ୟା ବଢି ହେଲା ୮୩୦୦୦ । ବର୍ଷକ ମଧ୍ୟରେ ଶତକଡା ୨୦ ଭାଗରୁ ଅଧିକ ବଢିଗଲା । ଏହି ସମୟ ମଧ୍ୟରେ ଚୀନ୍ ଦେଶର ଧନୀକଙ୍କ ସଂଖ୍ୟା ବଢିଥିଲା ଶତକଡା ଆଠ ଭାଗ । 'ୱାର୍ଲଡ ହେଲ୍ଥ ରିପୋର୍ଟ-୨୦୦୮' ଅନୁସାରେ ଏବେ ପୃଥିବୀରେ ଏକ କୋଟି ଦଶ ଲକ୍ଷ 'ଡଲାର ମିଲିଅନେୟାର' ଅଛନ୍ତି ଏବଂ ଏଇ ଦୌଡରେ ପ୍ରଥମ ଧାଡିରେ ଅଛନ୍ତି ଭାରତ, ଚୀନ୍ ଓ ବ୍ରାଜିଲ୍ । ପୁଣି ଏଇ ଧନୀ ତାଲିକାରେ ଅଛନ୍ତି ଲକ୍ଷେ ତିନି ହଜାର ତିନିଶହ

କୋଡିଏ ଜଣ ଅତି ଧନୀ - ଅଲଟ୍ରା ରିଚ୍ । ଏବଂ ପ୍ରତ୍ୟେକଙ୍କ ପାଖରେ ଅଛି ଅତି କମ୍‌ରେ ଦେଢଶହ କୋଟି ଟଙ୍କା । ସବୁଠୁ କମ୍ 'ଅତି ଧନୀକ' ଅଛନ୍ତି ଆଫ୍ରିକାରେ ।

ଏଇ ଧନୀକ ଓ ବଣିକମାନେ ଗଚ୍ଛିତ ଧନକୁ କେମିତି ଖର୍ଚ୍ଚ କରନ୍ତି ? ୟୁରୋପରେ ଏ ପଇସା ଖର୍ଚ୍ଚ ହୁଏ ଦାମିକା କଳା, କାରୁକାର୍ଯ୍ୟପୂର୍ଣ୍ଣ ଦ୍ରବ୍ୟ କିଣିବାରେ, ଦାମିକା ମଟର ଗାଡି, ଉଡାଜାହାଜ, ବୋଟ୍, ଘୋଡା, ବିଦେଶ ଭ୍ରମଣ, ସପ୍ତତାରକା ହୋଟେଲରେ ରହଣି ଓ ବିଳାସ ବ୍ୟସନରେ । ଭାରତ ସମେତ ଏସିଆର ଧନାଢ୍ୟ ବ୍ୟକ୍ତିମାନେ ଏ ଟଙ୍କା ଦେଇ ସୁନା, ହୀରା, ମଣି, ମାଣିକ୍ୟ, ଦାମିକା ଘଣ୍ଟା ଓ ଅତି ଦାମିକା ପୋଷାକ କିଣନ୍ତି । ଏବଂ ବେଳେବେଳେ ଖେଳ ଜଗତର ବିଖ୍ୟାତ ଖେଳାଳି ଓ ରାଜନୈତିକ ନେତାମାନଙ୍କୁ ବି ଖର୍ଦି କରନ୍ତି । ନୀତା ଅମ୍ବାନୀ, ସ୍ୱାମୀ ମୁକେଶ ଅମ୍ବାନୀଙ୍କୁ ଜନ୍ମଦିନରେ ଚାଳିଶ କୋଟି ଟଙ୍କା ମୂଲ୍ୟର ଉଡାଜାହାଜ ଉପହାର ଦେଇଥିଲେ । ଭାରତୀୟ ଧନୀକମାନଙ୍କ ସମୁଦାୟ ସମ୍ପତ୍ତିର ମୂଲ୍ୟ ପୃଥିବୀର ପ୍ରାୟ ୧୦୦ଟି ଦେଶର ସାମୁଦାୟିକ ସମ୍ପତ୍ତିଠାରୁ ଅଧିକ । ଏବଂ ମାତ୍ର ୯୨୦୦୦ ଏକର ଜାଗାରେ ଏ ସମଗ୍ର ସମ୍ପତ୍ତି ଗଚ୍ଛିତ ରହିଛି, ଯାହାକି ବମ୍ବେ ମହାନଗରୀର ଅର୍ଦ୍ଧାଂଶରୁ ଅଧିକ ହେବ ନାହିଁ ।

ତେଣୁ ଆମ ଦେଶରେ ଦୁଇଟି ଭାରତ ଏକାଠି ରହନ୍ତି । ଗୋଟିଏ ହେଲା ପଇସାବାଲାଙ୍କ ଭାରତ ଓ ଅନ୍ୟଟି ହେଲା ଦରିଦ୍ର ଭାରତ । ଦ୍ୱିତୀୟ ଭାରତରେ ବିଶ୍ୱର ଦରିଦ୍ର ଜନତାଙ୍କର ଏକ ତୃତୀୟାଂଶ ରହନ୍ତି । ସଂଖ୍ୟା ପ୍ରାୟ ୪୫ କୋଟି ୬୦ ଲକ୍ଷ। ପ୍ରତି ଦଶ ଜଣରେ ଚାରି ଜଣ । ପ୍ରତ୍ୟେକଙ୍କ ହାରାହାରି ଦୈନିକ ରୋଜଗାର ୫୦ ଟଙ୍କାରୁ କମ୍ । ଓଡ଼ିଶାରେ ଏହି ପରିମାଣ ଅଧାରୁ କମ୍ । ଏଠି ଦରିଦ୍ର ଖାଉଟିଙ୍କ ମୁଣ୍ଡ ପିଛା ଦୈନିକ ଖର୍ଚ୍ଚ ମାତ୍ର ବାର ଟଙ୍କା । ତେଣୁ 'ମୁକେଶ' ଓ 'ମକରା'ଙ୍କ ଭାରତ ଗୋଟିଏ ଦେଶ ନୁହେଁ । ଉଭୟଙ୍କର ସ୍ୱପ୍ନ, ବିଶ୍ୱାସ, ବିଚାର ଓ ବ୍ୟବହାର ଅଲଗା ଅଲଗା ।

ଯେଉଁ ଦେଶର ଉଦ୍ୟୋଗପତି, ଶିଳ୍ପପତି, ଧନୀକ ଓ ବଣିକ ଏକାଠି ହେଲେ ୧୦୦ଟି ଦେଶକୁ କିଣି ପାରିବେ, ସେମାନେ ନିଜ ଦେଶର ଦରିଦ୍ର ଲୋକଙ୍କପାଇଁ କ'ଣ କରୁଛନ୍ତି ? ଏ ପ୍ରଶ୍ନ ବାରମ୍ବାର ପଚରାଗଲାଣି । ଇଂରାଜୀରେ ଏହାର ଅନ୍ୟ ନାମ ହେଲା 'କର୍ପୋରେଟ୍ ସୋସିଆଲ୍ ରେସ୍‌ପନସ୍‌ବିଲିଟି' ବା ବ୍ୟବସାୟୀ ସଂସ୍ଥାଙ୍କ ସାମାଜିକ ଦାୟିତ୍ୱବୋଧ । ମହାତ୍ମା ଗାନ୍ଧୀ କହୁଥିଲେ, ବ୍ୟବସାୟୀମାନେ ହେଲେ ଦେଶରେ ଉତ୍ପାଦିତ ଧନର ଟ୍ରଷ୍ଟି - ମାଲିକ ନୁହଁନ୍ତି । ନିଜ ନିଜର ଆବଶ୍ୟକତା ପୂରଣ

ପରେ ଏହି ବଳକା ଲାଭ ସାଧାରଣ ଜନତାଙ୍କ ଜୀବନ-ଧାରଣ-ମାନ ବଢାଇବାରେ ଖର୍ଚ୍ଚ ହେବା ଦରକାର । ଏବେ ହାର୍ଭାର୍ଡ୍ ବିଜିନେସ୍ ସ୍କୁଲର ପ୍ରଫେସର 'ମାଇକେଲ ପୋର୍ଟର' ଏ ସମ୍ପର୍କରେ ନିଜର ଗବେଷଣାର ଫଳାଫଳକୁ ଉଲ୍ଲେଖ କରି 'ବିଜିନେସ୍ ରିଭିଉ' ପତ୍ରିକାରେ ଲେଖିଛନ୍ତି ଯେ ଯେଉଁ ବ୍ୟବସାୟୀ ସଂସ୍ଥାମାନେ ନିଜର ଲାଭାଂଶ ସମାଜକୁ ଫେରାଇଥାନ୍ତି ସେମାନଙ୍କର ବ୍ୟବସାୟ ଭଲ ଚାଲେ, ସେମାନଙ୍କ ଉପରେ ଖାଉଟିମାନଙ୍କର ଅଧିକ ଆସ୍ଥା ଓ ବିଶ୍ୱାସ ଥାଏ ।

ଦୁର୍ଭାଗ୍ୟର କଥା ଯେ କେବଳ ଟାଟାଙ୍କୁ ଛାଡିଦେଲେ ପ୍ରାୟ ଅନେକ ଭାରତୀୟ କମ୍ପାନିଙ୍କର ସାମାଜିକ ଦାୟିତ୍ୱବୋଧ ନିରୁତ୍ସାହଜନକ ଓ ଦାନ ପରିମାଣ ନଗଣ୍ୟ । ଏଠି ଜଣେ ମହିଳା ନିଜ ସ୍ୱାମୀଙ୍କୁ ୪୦ କୋଟି ଟଙ୍କାର ଜନ୍ମଦିନ ଉପହାର ଦେଇ ପାରନ୍ତି କିନ୍ତୁ ଏକଲକ୍ଷରୁ ଊର୍ଦ୍ଧ୍ୱ ଧନାଢ୍ୟ ବ୍ୟକ୍ତି ଓ କମ୍ପାନିଙ୍କର ସମାଜ କଲ୍ୟାଣପାଇଁ ସାମୁଦାୟିକ ବାର୍ଷିକ ଦାନର ପରିମାଣ ମାତ୍ର ୪୦୦ କୋଟି ଟଙ୍କା । ବରଂ ଭାରତରେ କାମ କରୁଥିବା ବିଦେଶୀ କମ୍ପାନି ମାଇକ୍ରୋସଫ୍ଟ ଓ ସିଟି ବ୍ୟାଙ୍କର ସମାଜ କଲ୍ୟାଣପାଇଁ ବାର୍ଷିକ ଦାନର ପରିମାଣ ଏହାଠାରୁ ଯଥେଷ୍ଟ ଅଧିକ ।

ଏବେ 'କେପିଏମ୍‌ଜି' ୨୭ଟି ବଡ଼ ବଡ଼ ଭାରତୀୟ ବ୍ୟବସାୟୀ ସଂସ୍ଥା ସର୍ଭେ କରି ଜଣାଇଛନ୍ତି ଯେ ଏମାନଙ୍କ ମଧ୍ୟରୁ ମାତ୍ର ତିନିଟି ସଂସ୍ଥା ସମାଜ କଲ୍ୟାଣପାଇଁ କିଛି ପଇସା ଖର୍ଚ୍ଚ କରିଛନ୍ତି । ତେଣୁ ତିନିମାସ ତଳେ ଗୁଜୁରାଟ ମୁଖ୍ୟମନ୍ତ୍ରୀ ନରେନ୍ଦ୍ର ମୋଦୀ ଯେତେବେଳେ କହିଲେ କି ଲାଭରେ ଚାଲିଥିବା କଳ, କାରଖାନା, ବ୍ୟବସାୟ ଓ ସେବା ସଂସ୍ଥା ନିଜ ଲାଭର ୩୫ ପ୍ରତିଶତ ଜନମଙ୍ଗଳ କାର୍ଯ୍ୟରେ ବିନିଯୋଗ କରନ୍ତୁ - ତାଙ୍କର ଏଇ ସୁଚିନ୍ତିତ ମନ୍ତବ୍ୟ ବିରୋଧରେ ପାଟିତୁଣ୍ଡ ଆରମ୍ଭ ହୋଇଗଲା । ପରେ ପ୍ରଧାନମନ୍ତ୍ରୀ ମନମୋହନ ସିଂହଙ୍କ ଏତାଦୃଶ ମନ୍ତବ୍ୟକୁ ମଧ୍ୟ କମ୍ପାନିମାନେ ନାକଚ କରିଦେଲେ ।

ଆମ ସମାଜରେ ଏକ ଉକ୍ତି ଅଛି - 'ଦେବା ଓ ମରିବାକୁ କେହି ଭଲ ପାଆନ୍ତି ନାହିଁ' ଯେତେ ଲାଭ ହେଉ, ଯେତେ ବୟସ ହେଉ । ହିନ୍ଦୁସ୍ତାନ ଟାଇମ୍‌ସର ପ୍ରଖ୍ୟାତ ଓ ଜନପ୍ରିୟ ସ୍ତମ୍ଭକାର ସର୍ଦ୍ଦାର ଖୁସ୍‌ଓ୍ୱନ୍ତ ସିଂ, ସ୍ୱର୍ଗତ କେ.କେ.ବିରଳାଙ୍କ ସ୍ମୃତିରେ ଏକ ଆଲେଖ୍ୟରେ ଉଲ୍ଲେଖ କରିଛନ୍ତି ଯେ, ଯେତେବେଳେ ଶିଳ୍ପପତି ବିରଳା ପ୍ରଥମଥରପାଇଁ ଖୁସ୍‌ଓ୍ୱନ୍ତଙ୍କ ଘରକୁ ଆସି ଦାଣ୍ଡ ଘରେ ଶ୍ରୀଗଣେଶଙ୍କ ମୂର୍ତ୍ତି ଦେଖିଲେ, ପକେଟ୍‌ରୁ ମାତ୍ର ଚାରଣା ପଇସା କାଢି ଦାନ କରିଥିଲେ । ଗଣେଶଙ୍କୁ ଚାରଣା ଚଳିବ, କିନ୍ତୁ ଗଣ ବା ସାଧାରଣ ଜନତାପାଇଁ ଏହା କୃପଣତା ବିବେଚିତ ହେବ । ବିରଳାଙ୍କର ବଦାନ୍ୟତାର ଉଦାହରଣ ବି ରହିଛି ।

ତେଣୁ ପ୍ରାୟ ଦୁଇଶହ ବର୍ଷ ତଳେ ଯୁକ୍ତରାଷ୍ଟ୍ର ଆମେରିକାର ଦ୍ୱିତୀୟ ଧନାଢ୍ୟ ବ୍ୟକ୍ତି 'ୱାରେନ ବୁଫେ' ଯେତେବେଳେ ତାଙ୍କ କମ୍ପାନିର ସବୁତକ ଲାଭ ଜନହିତକର କାମପାଇଁ ପ୍ରତିଷ୍ଠିତ 'ବିଲ୍ ଓ ମେଲିଣ୍ଡା ଗେଟ୍ସ ଫାଉଣ୍ଡେସନ୍'କୁ ଦାନ କରିଦେଲେ, ଏପରି ଛପରଫାଡ୍ ଦାନ ସାରା ବିଶ୍ୱକୁ ଚମକାଇ ଦେଇଥିଲା । ଭାରତୀୟ ଲାଭଖୋର ବ୍ୟବସାୟୀମାନେ ପ୍ରଥମେ ଏ ଖବରକୁ ବିଶ୍ୱାସ କରିନଥିଲେ । କାରଣ ସମଗ୍ର ଦାନର ପରିମାଣ ଥିଲା ୩୨ ବିଲିଅନ୍ ଡଲାର୍ ବା ଏକଲକ୍ଷ ଷାଠିଏ ହଜାର କୋଟି ଟଙ୍କା ।

ଆମେରିକାର ସବୁଠାରୁ ବଡ ଧନୀ ମାଇକ୍ରୋସଫ୍ଟ କମ୍ପାନିର ମାଲିକ 'ବିଲ୍ ଗେଟ୍ସ ଓ ତାଙ୍କ ପତ୍ନୀ ମେଲିଣ୍ଡାଙ୍କଦ୍ୱାରା ପ୍ରତିଷ୍ଠିତ ଏହି ଫାଉଣ୍ଡେସନ୍ ପୃଥିବୀର ଦରିଦ୍ର ଅଞ୍ଚଳରେ ଶିକ୍ଷା, ସ୍ୱାସ୍ଥ୍ୟ ଓ ଜନମଙ୍ଗଳ କାର୍ଯ୍ୟପାଇଁ ବେଶ୍ ପରିଚିତ । ବିଲ୍ ମଧ୍ୟ ତାଙ୍କ କମ୍ପାନିର ଲାଭାଂଶର ଏକ ସିଂହ ଭାଗ ଫାଉଣ୍ଡେସନ୍‌କୁ ଦାନ କରିଛନ୍ତି ଓ ମାଇକ୍ରୋସଫ୍‌ଟରେ ମୁଖିଆ ଦାୟିତ୍ୱରୁ ଅବ୍ୟାହତି ନେଇ ସ୍ୱାମୀ ଓ ସ୍ତ୍ରୀ ଉଭୟେ ଫାଉଣ୍ଡେସନ୍ ଜରିଆରେ ଲୋକହିତକର କାମରେ ବ୍ୟସ୍ତ ଅଛନ୍ତି । ବୁଫେ ପୁଣି ବିଲ୍‌ଙ୍କୁ ପ୍ରତିଶ୍ରୁତି ଦେଇଛନ୍ତି ଯେ ଯଦି ତାଙ୍କ ଦାନର ସଦୁପଯୋଗ ହୁଏ, ତେବେ ସେ ପୁଣି ସେତିକି ପରିମାଣ ଦାନ କରିବେ । ମହାଦାନୀ ବୁଫେ, ଆମ ପୌରାଣିକ ଇତିହାସର ଦାନବୀର କର୍ଣ୍ଣ, ହରିଶ୍ଚନ୍ଦ୍ର ବା ବଳୀଙ୍କଠାରୁ କିଛି କମ୍ ନୁହଁନ୍ତି ।

ପୃଥିବୀରେ ସବୁଠାରୁ ବେଶୀ ଦାନ ମିଳିଥାଏ ଆନ୍ତର୍ଜାତିକ ରେଡ୍‌କ୍ରସ ସଂସ୍ଥାକୁ - ପରିମାଣ ୧୫ ହଜାର କୋଟି ଟଙ୍କା । ଶିକ୍ଷା, ସଂସ୍କୃତି, ପ୍ରଚାର, ପ୍ରସାରପାଇଁ ୟୁନେସ୍କୋକୁ ବର୍ଷକୁ ଅଢେଇ ହଜାର କୋଟି ଟଙ୍କା ଦାନ ମିଳିଥାଏ । ଭାରତୀୟ ବ୍ୟବସାୟୀଙ୍କ ଦାନ ପରିମାଣ ଏହା ତୁଳନାରେ ନଗଣ୍ୟ । ୱାରେନ୍‌ଙ୍କ ପୂର୍ବରୁ ଫୋର୍ଡ, ରକ୍‌ଫେଲର୍ ଓ କାର୍ନେଜି ଫାଉଣ୍ଡେସନ୍ ସବୁଠୁ ବେଶୀ ଦାନ କରୁଥିଲେ । ତେବେ ତିନି ସଂସ୍ଥାର ମିଳିତ ଦାନ ପରିମାଣ ୩୦ ହଜାର କୋଟିରୁ ଅଧିକ ନୁହେଁ । ଏବେ ୱାରେନ୍ ସମସ୍ତଙ୍କୁ ଟପିଗଲେ ।

ସେ କହନ୍ତି, ଲାଭସଞ୍ଚିତ ଧନକୁ ନିଜ ପିଲାଙ୍କୁ ଦେଇ ସେମାନଙ୍କୁ ନଷ୍ଟ, ଭ୍ରଷ୍ଟ କରିବା ଅପେକ୍ଷା ମାନବ କଲ୍ୟାଣରେ ଲଗାଇଲେ ଦେଶ ଓ ବ୍ୟବସାୟ - ଉଭୟଙ୍କର ମଙ୍ଗଳ ହୁଏ । ଆମ ଓଡ଼ିଆରେ ଉକ୍ତି ଅଛି - 'ପିଲା ଯଦି ଯୋଗ୍ୟ ହେଲା ଧନ କାହିଁପାଇଁ ସଞ୍ଚୁ - ପିଲା ଯଦି ଅଯୋଗ୍ୟ ହେଲା ଧନ କାହିଁପାଇଁ ସଞ୍ଚୁ' । ୱାରେନ୍ କହନ୍ତି ସେ ନିଜ ବଂଶରେ ସମ୍ପତ୍ତିକୁ ବାନ୍ଧି ରଖିବାକୁ ଘୃଣା କରନ୍ତି । ଭାରତୀୟ କର୍ପୋରେଟ୍ ମହାରାଜାମାନେ ଶୁଣିବେ କି ?

ଓଡ଼ିଶାରେ ପ୍ରାୟ ଦୁଇଶହରୁ ଅଧିକ କମ୍ପାନି, ବ୍ୟାବସାୟିକ ସଂସ୍ଥା, ଖଣି ଲିଜ୍‌ଧାରୀ, କଳକାରଖାନା ଓ ପ୍ରାୟ ସେତିକି ସଂଖ୍ୟାର ବ୍ୟାଙ୍କ, ସର୍ଭିସ୍ ସେକ୍ଟର ସଂସ୍ଥା କାମ କରି ଆସୁଛନ୍ତି । ଏମାନଙ୍କ ଲାଭର ପରିମାଣ ଓଡ଼ିଶା ବଜେଟ୍‌ରେ ପଚାଶ ଗୁଣରୁ ଅଧିକ । ଏହି ସଂସ୍ଥାମାନେ ନିଜ ଲାଭର ମାତ୍ର ୧୦ ଭାଗ ଅନୁନ୍ନତ ଅଞ୍ଚଳର ଶିକ୍ଷା, ସ୍ୱାସ୍ଥ୍ୟ, ଜୀବନ ଓ ଜୀବିକା ଉନ୍ନୟନରେ ଖର୍ଚ୍ଚ କଲେ ଅଚିରେ ଓଡ଼ିଶାରୁ ଦାରିଦ୍ର୍ୟ ଲୋପ ପାଇବ । ଗ୍ରାମାଞ୍ଚଳରେ କାମ କରୁଥିବା ସଚ୍ଚୋଟ ସ୍ୱେଚ୍ଛାସେବୀ ସଂଗଠନର ସହଯୋଗ ନେଲେ ଏ କାମ ଆହୁରି ତ୍ୱରାନ୍ୱିତ ହୋଇପାରିବ । ଦୁଇ ଚାରିଟି କମ୍ପାନି ଏକାଠି ହୋଇ ଗୋଟିଏ ଲେଖାଏଁ ଜିଲ୍ଲାର ଦାୟିତ୍ୱ ନେଇ ପାରିବେ । ଯୋଜନାବଦ୍ଧ ଭାବରେ କାମ କଲେ ଲୋକେ ଶୀଘ୍ର ଦାରିଦ୍ର୍ୟ ସୀମାରେଖା ଟପିଯିବେ । ଏହା ହେଲେ ସେମାନଙ୍କର କ୍ରୟ ଶକ୍ତି ବଢିବ । କ୍ରୟ ଶକ୍ତି ବଢିଲେ ବାଣିଜ୍ୟ ବ୍ୟବସାୟ ମଧ୍ୟ ବଢିବ । ଦେଶର ସମ୍ପତ୍ତି ବଢିବ । ସମସ୍ତଙ୍କର ଲାଭ, ଶୁଭ ଓ ସମସ୍ତେ ବିଜୟୀ ହେବେ ।

ଯେ ଦିଏ ସେ ଶ୍ରୀ ଓ ସୁନ୍ଦର । ଲକ୍ଷ୍ମୀ ସମସ୍ତଙ୍କୁ ଦିଅନ୍ତି, ତେଣୁ ସେ ସମସ୍ତଙ୍କଠାରୁ ସୁନ୍ଦର । ଏହି କାରଣରୁ ଦାତାଙ୍କୁ କୁହାଯାଏ 'ନବମ ରତ୍ନ' । ଦେଶରେ ହଜାର ହଜାର ମନ୍ଦିରରେ ଲକ୍ଷ୍ମୀଙ୍କ ପୂଜା ହୁଏ । କୁବେରଙ୍କ ନାଁରେ ଗୋଟିଏ ହେଲେ ମନ୍ଦିର ନାହିଁ । ତାଙ୍କର ରୂପ ମଧ୍ୟ କୁତ୍ସିତ । ତେଣୁ ଯେ କେବଳ ଜମା କରି ସମ୍ପତ୍ତି ବଢାଉଥାଏ ସେ କଦାକାର । ତେଣୁ କର୍ପୋରେଟ୍‌ମାନେ ଦାନ କରି ଲକ୍ଷ୍ମୀ ହେବେ କି ଜମା କରି କୁବେର ହୋଇ ରହିବେ ନିଜେ ନିଷ୍ପତ୍ତି ନିଅନ୍ତୁ । ଏହି ନିଷ୍ପତ୍ତି ଉପରେ ସେମାନେଙ୍କର ସାମାଜିକ ପ୍ରତିଷ୍ଠା ଓ ସ୍ୱୀକୃତି ନିର୍ଭର କରିବ ।



# ଧର୍ମାନ୍ତରୀକରଣ :

# ସାପ ନା ପାଳଦଉଡ଼ି ?

ଗତ ତିନି ବର୍ଷ ଧରି ଦରିଦ୍ର କନ୍ଧମାଳକୁ କୁରୁକ୍ଷେତ୍ରରେ ପରିଣତ କରିଥିବା ସଂଗଠନମାନଙ୍କର ଏବେ ଆତ୍ମ-ସମୀକ୍ଷାର ବେଳ ଉପସ୍ଥିତ । ଭୋକର ଭୂଗୋଳରେ ସ୍ଥାନ ପାଇଥିବା ମାଲକାନଗିରି, ଗଜପତି, ରାୟଗଡା ଓ କନ୍ଧମାଳରେ କ୍ଷୁଧା ବିରୋଧରେ ଯୁଦ୍ଧ ପରିବର୍ତ୍ତେ ଜାତି, ସମ୍ପ୍ରଦାୟର ଧର୍ମଯୁଦ୍ଧ ଚାଲିଛି । ଖ୍ରୀଷ୍ଟ ଓ କୃଷ୍ଣ ଉଭୟେ ତାଙ୍କ ଭକ୍ତଙ୍କ ଆଚରଣ ଦେଖି ବ୍ୟଥିତ ହେଉଥିବେ । କଲେଶପେଟାରେ ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀ ଓ ତାଙ୍କ ଶିଷ୍ୟମାନଙ୍କୁ ବର୍ବରୋଚିତ ଭାବରେ ହତ୍ୟା କରିଥିବା କାପୁରୁଷମାନେ ଏବେ ନାଗପୁରର ଚର୍ଚ୍ଚଗୁଡିକ ଉପରେ ଆକ୍ରମଣ କରି ନିଜକୁ ମାଓବାଦୀ ଓ ନକ୍ସଲବାଦୀ ବୋଲି କହୁଛନ୍ତି ।

କୃଷ୍ଣ, ଖ୍ରୀଷ୍ଟ, ମାର୍କ୍ସ, ଲେନିନ୍ ଓ ମାଓଙ୍କ ନାଁରେ ଯେଉଁମାନେ ହିଂସା ଓ ହତ୍ୟା କରୁଛନ୍ତି, ସେମାନେ ଏହି ମହାପୁରୁଷମାନଙ୍କ ଦର୍ଶନ କେତେ ବୁଝିଛନ୍ତି, ସନ୍ଦେହ ହୁଏ । ପୁରାଣରେ ଧର୍ମଗୁରୁ ଓ ଧର୍ମାନୁଷ୍ଠାନ ଉପରେ ହମ୍‌ଲା କରୁଥିବା ଲୋକଙ୍କୁ ରାକ୍ଷସ ବୋଲି ବର୍ଣ୍ଣନା କରାଯାଇଛି । ଏପରିକି ନକ୍ସଲ ଆନ୍ଦୋଳନର ଜନକ ଓ ନେତା ଚାରୁ ମଜୁମଦାର୍, କାହ୍ନୁ ସାନ୍ୟାଲ୍, ଜଙ୍ଗଲ ସାନ୍ତାଳ ଓ ନାଗଭୂଷଣ ପଟ୍ଟନାୟକ; ମଠ ମନ୍ଦିର, ଚର୍ଚ୍ଚ ଆକ୍ରମଣରୁ ଦୂରରେ ରହି ଶୋଷଣ, ଦୁର୍ନୀତି, ଅତ୍ୟାଚାର ବିରୋଧରେ ଲୋକମାନଙ୍କୁ ସଚେତନ ଓ ସଂଗଠିତ କରୁଥିଲେ । ମାଓ ଧର୍ମକୁ ଅଜ୍ଞାନଙ୍କ ଅଫିମ କହି ସମାଲୋଚନା କରୁଥିଲେ, କିନ୍ତୁ ଧର୍ମଗୁରୁଙ୍କୁ ହତ୍ୟା କରୁନଥିଲେ ।

ବ୍ୟକ୍ତିଙ୍କୁ ହତ୍ୟା କଲେ ତାଙ୍କ ବିଚାରଧାରା ମରିଯାଏ ନାହିଁ, ଆହୁରି ବଳିଷ୍ଠ ଓ ବ୍ୟାପକ ହୁଏ । ଶ୍ରୀକୃଷ୍ଣଙ୍କୁ ଜନ୍ମରୁ ମାରିବାପାଇଁ ବାରମ୍ବାର ଚେଷ୍ଟା ହୋଇଥିଲା । ଯୀଶୁଙ୍କୁ

କ୍ରୁଶବିଦ୍ଧ କଲାପରେ ତାଙ୍କ ବିଚାର ପ୍ରମୁଖ ଧର୍ମରେ ପରିଣତ ହେଲା । ଗାନ୍ଧୀ, ଲିଙ୍କନ, ମାର୍ଟିନ୍ ଲୁଥର କିଙ୍ଗଙ୍କ ହତ୍ୟାକାରୀମାନଙ୍କୁ ଲୋକେ ଇତିହାସର ଅଳିଆଗଦାରେ ଫୋପାଡି ଦେଇ ଏହି ମହାତ୍ମାମାନଙ୍କ ବିଚାରକୁ ସମ୍ମାନ ଦେଲେ । କୁଳଗୁରୁ ବଶିଷ୍ଠ, ଆଦି ଶଙ୍କରାଚାର୍ଯ୍ୟ ଓ ବୁଦ୍ଧଙ୍କ ଉପରେ ବାରମ୍ବାର ଆକ୍ରମଣ କରାଯାଇଥିଲା । ବିଶ୍ୱ ବିଖ୍ୟାତ ବୈଜ୍ଞାନିକମାନେ ପ୍ରଥମେ ରକ୍ଷଣଶୀଳ ଚର୍ଚ୍ଚ ଆକ୍ରମଣର ଶିକାର ହୋଇଥିଲେ । ଏହା ଫଳରେ ସେମାନଙ୍କର ଆଧ୍ୟାତ୍ମିକ ଓ ବୈଜ୍ଞାନିକ ବିଚାରଧାରା ଅଟକି ଗଲା ନାହିଁ ।

କନ୍ଧମାଳ କନ୍ଦଳର ଏବେ କାରଣ ଖୋଜା ଚାଲିଛି । ଜାଲିଆତିରେ ଜମି ଚୋରି, ଜାତ ଓ ଧର୍ମ ଚୋରି, ଚାକିରି ଚୋରି, ଶଠତା, ପ୍ରଲୋଭନ, ପ୍ରତାରଣା ଇତ୍ୟାଦି ଅନେକ କାରଣ ଦର୍ଶାଯାଉଛି । ଯେଉଁମାନେ କନ୍ଧମାଳ ଯାଇ ଆସିଲେଣି, ସେମାନଙ୍କ ମଧ୍ୟରୁ ଅନେକ, ଦାରିଦ୍ର୍ୟ ଓ ଶୋଷଣ ମୂଳ କାରଣ ବୋଲି କହୁଛନ୍ତି । ଧର୍ମାନ୍ତର ଓ ପ୍ରତିଧର୍ମାନ୍ତର ଆଉ ଏକ ପ୍ରଧାନ କାରଣ ବୋଲି କୁହାଯାଉଛି । ଗଣମାଧ୍ୟମରେ ମିସନ୍ ଟୁ ଦି ୱାର୍ଲଡ, ଆଡଭେଣ୍ଟିଷ୍ଟ ଚର୍ଚ୍ଚ, ଚର୍ଚ୍ଚ ଅଫ୍ ଖ୍ରୀଷ୍ଟ, ବିଶ୍ୱ ରିଲିଜିଅସ୍ କାଉନ୍‌ସିଲ୍ ଓ ଏଡି-୨୦୦୦ ଆଣ୍ଡ ବିୟଣ୍ଡ ଭଳି ଧାର୍ମିକ ସଂସ୍ଥାମାନଙ୍କର ଭାରତରେ ବ୍ୟାପକ ଧର୍ମାନ୍ତରୀକରଣ ଯୋଜନା ପ୍ରକାଶ ପାଇବା ଫଳରେ ସଂଖ୍ୟାଗରିଷ୍ଠଙ୍କ ମନରେ ଉଦ୍‌ବିଗ୍ନତା ସୃଷ୍ଟି ହୋଇଛି ।

ଏକ ଧାର୍ମିକ ସଂସ୍ଥାଦ୍ୱାରା ଦେଶରେ କେଉଁ ଲୋକମାନେ ଦରିଦ୍ର ଓ ନିର୍ଯ୍ୟାତିତ ଓ ଧର୍ମାନ୍ତରପ୍ରବଣ ସେମାନଙ୍କର ତାଲିକା ପ୍ରସ୍ତୁତ କରାଯାଇଛି ବୋଲି ଟାଇମ୍‌ସ ଅଫ୍ ଇଣ୍ଡିଆ ଖବର ଛାପିଛନ୍ତି (୦୭.୦୯.୨୦୦୮) । ଏହାର ସତ୍ୟାସତ୍ୟ ଅନୁସନ୍ଧାନ ନ କରି ଲୋକେ ବିଶ୍ୱାସ କରିଯାଉଛନ୍ତି । କିନ୍ତୁ ଏ ତାଲିକା ମିଛ ବୋଲି ଏ ପର୍ଯ୍ୟନ୍ତ କୌଣସି ନେତୃସ୍ଥାନୀୟ ଧର୍ମାଧିକାରୀ ଖଣ୍ଡନ କରିନାହାନ୍ତି । ଏହି ତାଲିକାରେ ଯେଉଁ ଧର୍ମାନ୍ତରପ୍ରବଣ ଜାତିମାନଙ୍କୁ ଚିହ୍ନଟ କରାଯାଇଛି, ସେମାନେ ହେଲେ ଗୁଜୁରାଟ ଓ ରାଜସ୍ଥାନର ଭିଲ, ସିକିମ୍‌ର ଭୁଟିଆ ଓ ଓଡ଼ିଶାର ପାଣ ଓ କନ୍ଧ । ଅନ୍ୟମାନେ ହେଲେ ବିଂଝୱାରୀ, କୁମାରୀ, ଲୋବା, ଚେରୋ, ମଝୱାର, ପାଣିକା, ସିନା ଇତ୍ୟାଦି । ଏମାନେ ରହୁଥିବା ଅଞ୍ଚଳର ସାମାଜିକ, ସାଂସ୍କୃତିକ, ଧାର୍ମିକ ଓ ଆର୍ଥିକ ମାନଚିତ୍ର ଓ ଧର୍ମାନ୍ତର ରଣ କୌଶଳ ପ୍ରସ୍ତୁତ ହୋଇସାରିଛି ବୋଲି 'ଟାଇମ୍‌ସ ନିଉଜ୍ ନେଟ୍‌ୱର୍କ' ଖବର ଛାପିଛନ୍ତି । ଏହି ଯୋଜନା ବିରୋଧରେ କେତେକ ହିନ୍ଦୁ ମୌଳବାଦୀ ସଂଗଠନ 'ପ୍ରତିଧର୍ମାନ୍ତରୀକରଣ' ପ୍ରକ୍ରିୟା ଆରମ୍ଭ କରିଛନ୍ତି । ଉଭୟ ଗୋଷ୍ଠୀ ଏହା ସେମାନଙ୍କର

ମୌଳିକ ଅଧିକାର ବୋଲି ଦାବି କରୁଛନ୍ତି । ଏହା ସଙ୍ଗେ ସଙ୍ଗେ ଚର୍ଚ୍ଚ ଓ ଆଶ୍ରମର ସଂଖ୍ୟା ବଢି ଚାଲିଛି ।

ଆଗେ ଗୋଟିଏ ଚର୍ଚ୍ଚ ପ୍ରତିଷ୍ଠାପାଇଁ ଜଣେ ମିସନାରିଙ୍କୁ ଅତି କମ୍‌ରେ ୫ ରୁ ୧୦ ବର୍ଷ କାଳ ଲାଗୁଥିଲା । ସେ ପ୍ରଥମେ ସଂପୃକ୍ତ ଅଞ୍ଚଳର ଲୋକଙ୍କ ସହ ମିଶୁଥିଲେ; ସେମାନଙ୍କ ସମସ୍ୟା ବୁଝିବାକୁ ଚେଷ୍ଟା କରୁଥିଲେ; ଶିକ୍ଷା, ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା କରୁଥିଲେ ଓ ତା'ପରେ ଯୀଶୁ ଓ ବାଇବଲ୍ କଥା କହୁଥିଲେ । ସ୍ୱାମୀ ଲକ୍ଷ୍ମଣାନନ୍ଦଙ୍କୁ ଲୋକଙ୍କ ଆସ୍ଥାଭାଜନ ହେବାପାଇଁ ୪୦ ବର୍ଷ ସମୟ ଲାଗିଥିଲା । ଏବେ ସେ କଥା ହେଉନାହିଁ । ଧର୍ମ ପ୍ରଚାରପାଇଁ ଗଭୀର ଅଧ୍ୟୟନ, ଧାର୍ମିକ ଜ୍ଞାନ, ତତ୍ତ୍ୱ ଓ ତ୍ୟାଗର ଆବଶ୍ୟକତା ପଡୁନାହିଁ । ପାଖରେ ବା ପଡୋଶୀ ଅଞ୍ଚଳରେ ଥିବା ବଡ଼ ବଡ଼ ଚର୍ଚ୍ଚକୁ 'ଆଉଟ୍ ସୋର୍ସ' କରାଯାଉଛି, ଅର୍ଥାତ୍ ଠିକାରେ ନୂଆ ଚର୍ଚ୍ଚ ସ୍ଥାପନ ଓ ଧର୍ମାନ୍ତରୀକରଣ ଦାୟିତ୍ୱ ଦିଆଯାଉଛି । ସଂଖ୍ୟାବୃଦ୍ଧି ଉପରେ ଦକ୍ଷତା, ଯୋଗ୍ୟତା, ସ୍ୱୀକୃତି ଓ ସହାୟତା ନିର୍ଭର କରୁଛି । କୋଟା ପୂରଣ ନ କରିପାରିଲେ ସହାୟତା ବନ୍ଦ ହୋଇଯାଉଛି ।

ଏହିଭଳି ଭାବରେ ଧର୍ମର ବ୍ୟବସାୟୀକରଣ ଉଣା ଅଧିକେ ପ୍ରାୟ ସବୁ ଧର୍ମକୁ ବ୍ୟାପିଲାଣି । ଏହା ସହିତ ତାଳ ଦେଇ ଧର୍ମ କୋଳାହଳ, ଧର୍ମ ବଜାର ସଂଖ୍ୟା ବି ବଢିବାରେ ଲାଗିଛି । ଦେଶର ନଈ, ନାଳ, ପୋଖରୀ, ହ୍ରଦ ଆଦି ଗଣେଶ, ସରସ୍ୱତୀ, ଦୁର୍ଗା, ଗଜଲକ୍ଷ୍ମୀଙ୍କ ମେଢ ଓ ମୂର୍ତ୍ତିର କାଦୁଅକୁ ବକ୍ଷରେ ଧରି ଧରି ଆକ୍ରାନ୍ତ ହୋଇଗଲେଣି । ଧର୍ମ ଗୁରୁ ଓ ପ୍ରଚାରକମାନେ ଅନୁଗତଙ୍କ ସଂଖ୍ୟା ବଢାଇବାପାଇଁ ପ୍ରବଳ ପ୍ରତିଯୋଗିତାରେ ବ୍ୟସ୍ତ, ଧର୍ମ ସଂସ୍କାରପାଇଁ ନୁହେଁ । ପାଶ୍ଚାତ୍ୟ ଦେଶମାନଙ୍କରେ ଶିକ୍ଷା, ବିଜ୍ଞାନ ଓ ଜୀବନ ଯାପନ ଶୈଳୀ ପ୍ରଭାବରୁ ଧାର୍ମିକ ବିଶ୍ୱାସ ବି କମିଗଲାଣି । ଆଉ ସହଜରେ 'ନନ୍' (ସନ୍ନ୍ୟାସିନୀ) ଓ ପାଦ୍ରୀ ମିଳୁନାହାନ୍ତି । ଏ କାମପାଇଁ ଏବେ ତୃତୀୟ ବିଶ୍ୱର ଗରିବ ଦେଶମାନଙ୍କ ଉପରେ ନିର୍ଭର କରିବାକୁ ପଡୁଛି । ତେଣୁ ଭାରତ ଏବେ ଉଭୟ ସଫ୍ଟୱେୟାର ଓ ନନ୍ ବା ସନ୍ନ୍ୟାସିନୀ ରପ୍ତାନି କରୁଛି । ଏମାନଙ୍କ ଯୌନ ନିର୍ଯ୍ୟାତନା ଖବର ବେଳେ ବେଳେ ପ୍ରକାଶ ପାଉଛି ।

ବିଭିନ୍ନ ଦେଶରେ ଧର୍ମ ବିଶ୍ୱାସ ଏବେ ଧର୍ମାନ୍ଧତାରେ ପରିଣତ ହେଲାଣି । ଧର୍ମ ସ୍ୱାଧୀନତା ଧର୍ମ-କଳହକୁ ଜନ୍ମ ଦେଲାଣି । ନିଜ ଧର୍ମ ରକ୍ଷା ନାମରେ ଅନ୍ୟ ଧର୍ମ ବିରୋଧରେ ଜିହାଦ୍ ଓ ଫତୁଆ ଜାରି ହେଉଛି । ଦ୍ୱାଦଶ ଶତାବ୍ଦୀରେ ବିଭିନ୍ନ ଧର୍ମଗୁରୁଙ୍କ ଡାକରାରେ ୧୦୦ ବର୍ଷ ଧରି ଯେଉଁ 'କ୍ରୁସେଡ୍' ବା ଧର୍ମଯୁଦ୍ଧ ଚାଲିଥିଲା, ସେଥିରେ ଲକ୍ଷ ଲକ୍ଷ ଖ୍ରୀଷ୍ଟିଆନ୍, ମୁସଲମାନ ଓ ଇହୁଦୀ ବଳି ପଡିଥିଲେ । ଏହା ପ୍ରକୃତରେ

ଧର୍ମଯୁଦ୍ଧ ନଥିଲା, ଥିଲା ଧର୍ମାନ୍ଧ ମୂର୍ଖମାନଙ୍କ ଯୁଦ୍ଧ । ତେଣୁ କୁହାଯାଏ ପୃଥିବୀରେ କେବଳ ଜଣେ ସଚ୍ଚା ଖ୍ରୀଷ୍ଟିଆନ୍, ଜଣେ ସଚ୍ଚା ମୁସଲମାନ, ଜଣେ ସଚ୍ଚା ବୌଦ୍ଧ ଓ ଜଣେ ସଚ୍ଚା ଗାନ୍ଧିବାଦୀ ଥିଲେ । ସେମାନେ ହେଲେ ଯୀଶୁ, ମହମ୍ମଦ, ବୁଦ୍ଧ, ଓ ଗାନ୍ଧୀ ନିଜେ ।

ଧର୍ମ ଈଶ୍ୱର ନୁହନ୍ତି, ଈଶ୍ୱରବାଦୀଙ୍କ ବିଶ୍ୱାସ । ବିଭିନ୍ନ ଧର୍ମ ସମ୍ପ୍ରଦାୟର ବିଶ୍ୱାସ ଓ ବିଚାର ଅଲଗା ଅଲଗା । ତାକୁ ସମ୍ମାନ ନ ଦେଇ ସମସ୍ତଙ୍କୁ ନିଜ ବିଚାର ଓ ବିଶ୍ୱାସ ଗ୍ରହଣ କରିବାକୁ ପ୍ରବର୍ତ୍ତାଇଲେ ଧର୍ମ କନ୍ଦଳ ସୃଷ୍ଟି ହୁଏ । ଧର୍ମାନ୍ତରୀକରଣ ରୋଗରୁ କୌଣସି ଧର୍ମ ବା ପନ୍ଥା ମୁକ୍ତ ନୁହଁନ୍ତି । ଦକ୍ଷିଣ ପୂର୍ବ ଏସିଆରେ ଲୋକଙ୍କୁ ତିନି ତିନି ଥର ଧର୍ମ ପରିବର୍ତ୍ତନ କରିବାକୁ ପଡିଛି, 'ଆନିମିଜ୍‌ମ୍'ରୁ ହିନ୍ଦୁ, ତାପରେ ବୌଦ୍ଧ ଓ ପରେ ଇସଲାମ ଓ ଖ୍ରୀଷ୍ଟିୟାନିଟି । ଭାରତରେ ସମ୍ରାଟ ଅଶୋକ ସର୍ବପ୍ରଥମେ ଧର୍ମାନ୍ତରୀକରଣ ଉଦ୍ୟମ ଆରମ୍ଭ କରିଥିଲେ । ଭାରତ ଖଣ୍ଡ ବିଖଣ୍ଡ ହେବାର ପ୍ରଧାନ କାରଣ ଥିଲା ଧର୍ମାନ୍ତରୀକରଣ । ତେଣୁ ଏହା ଆମ ଦେଶରେ ଏକ ସ୍ପର୍ଶକାତର ବିଷୟ ।

ଭାରତ ଧର୍ମ ଭିତ୍ତିରେ ବିଭାଜନ ହେଲା । ଯେଉଁମାନେ ସ୍ୱତନ୍ତ୍ର ରାଷ୍ଟ୍ର ଦାବି କଲେ ଓ ନେଲେ ସେମାନଙ୍କ ପୂର୍ବପୁରୁଷ ଥିଲେ ହିନ୍ଦୁ । ଉତ୍ତର ପୂର୍ବ ଭାରତରେ ଖ୍ରୀଷ୍ଟିୟାନ୍, ବୋଡୋ, ଗୁର୍ଖା, ନାଗାମାନେ ସ୍ୱତନ୍ତ୍ର ରାଜ୍ୟ ଓ ରାଷ୍ଟ୍ର ଦାବି ଛାଡି ନାହାନ୍ତି । ଶ୍ରୀଲଙ୍କାରେ ତାମିଲ୍ ହିନ୍ଦୁମାନେ ସ୍ୱତନ୍ତ୍ର ରାଷ୍ଟ୍ରପାଇଁ ଆନ୍ଦୋଳନ ଜାରି ରଖିଛନ୍ତି । କାଶ୍ମୀରରେ ପ୍ରାୟ ସବୁ ମୁସଲମାନ ଯେଉଁମାନେ ଏବେ ଆଜାଦୀ ଆନ୍ଦୋଳନ ଚଳାଇଛନ୍ତି, ଏକଦା ଥିଲେ ହିନ୍ଦୁ । ଇଣ୍ଡୋନେସିଆର ଇଷ୍ଟ୍ ଟିମୋର୍‌ର ଧର୍ମାନ୍ତରିତ ଖ୍ରୀଷ୍ଟିୟାନ୍‌ମାନେ ନିଜ ଦେଶରୁ ଅଲଗା ହୋଇ ନୂଆ ଦେଶ ପ୍ରତିଷ୍ଠା କରିଛନ୍ତି ।

ଆଫ୍ରିକାର ବହୁ ଦେଶରେ ଧର୍ମାନ୍ତରିତ ଲୋକେ ନିଜ ଭାଷା, ସଂସ୍କୃତି ହରାଇଥିବାରୁ ନୃତତ୍ତ୍ୱବିତ୍‌ମାନେ ଉଦ୍‌ବେଗ ପ୍ରକାଶ କରୁଛନ୍ତି । ଯାହା ପିଲାକୁ ସାପ କାମୁଡିଥାଏ, ତା ମା' ପାଳ ଦଉଡି ଦେଖିଲେ ଡ଼ରେ । ଏକଥା ସତ ଯେ କନ୍ଧମାଳରେ ଯେଉଁ ଧର୍ମୀୟ ଲୋକଙ୍କ ସଂଖ୍ୟା ୧୯୫୧ରେ ଶତକଡା ଦୁଇଭାଗ ଥିଲା, ତାହା ଏବେ ୧୮ ଭାଗ ହେଲାଣି । ଏହା କାହିଁକି ଓ କିପରି ହେଲା, ସେ ସମ୍ପର୍କରେ ଆଦିବାସୀ ଓ ହିନ୍ଦୁ ସମାଜରେ ଆତ୍ମ-ସମୀକ୍ଷା ହେବା ଦରକାର । ଘରକୁ ଫେରିବା ଅପେକ୍ଷା ଘର ଛାଡି ନ ଯିବାପାଇଁ ସମାଜ ସଂସ୍କାର ଭାବନା, ଆନ୍ଦୋଳନ ଆବଶ୍ୟକ । ସେହିପରି ସଂଖ୍ୟାଲଘୁ ସଂପ୍ରଦାୟ ମଧ୍ୟ ସଂଖ୍ୟାଗରିଷ୍ଠଙ୍କ ଆଶଙ୍କା, ଉଦ୍‌ବେଗକୁ ବୁଝିବା ଓ ଧ୍ୟାନ ଦେବା ଉଚିତ୍ ହେବ । ଉଭୟେ ନିଜ ନିଜ ଲକ୍ଷ୍ମଣ ରେଖା ସ୍ଥିର କରନ୍ତୁ ।

ଅଯଥା ସାମାଜିକ ସାମ୍ପ୍ରଦାୟିକ ଦ୍ୱନ୍ଦ୍ୱ, ରକ୍ତପାତ ରୋକିବାପାଇଁ ଅନେକ ଦେଶରେ ଧର୍ମାନ୍ତରୀକରଣକୁ ନିଷିଦ୍ଧ କରାଯାଇଛି । ମଧ୍ୟ ଏସିଆର ପ୍ରାୟ ସବୁ ଦେଶ, ଇଜିପ୍ଟ, ଇରାନ୍, ଆଫଗାନିସ୍ତାନ, ପାକିସ୍ତାନ, ମାଳଦ୍ୱୀପ, ବ୍ରୁନେଇରେ ଏଥିପାଇଁ ଫାଶୀଦଣ୍ଡ ବ୍ୟବସ୍ଥା ଅଛି । ଖ୍ରୀଷ୍ଟିୟାନ୍ ବହୁଳ ଦେଶ ଗ୍ରୀସ୍‌ରେ ୧୯୩୦ ମସିହାରୁ ଏହା ନିଷିଦ୍ଧ । ଋଷିଆର 'ଅର୍ଥୋଡକ୍ସ' ଚର୍ଚ୍ଚ, 'ରୋମାନ୍ କ୍ୟାଥଲିକ୍' ଚର୍ଚ୍ଚ ଓ 'ସାଲ୍‌ଭେସନ୍' ଆର୍ମି' ମଧ୍ୟରେ ନିଜ ଧର୍ମ ଭିତରେ ଧର୍ମାନ୍ତରୀକରଣ ନେଇ ପ୍ରବଳ ଦ୍ୱନ୍ଦ୍ୱ ଲାଗି ରହିଛି । ୟୁରୋପରେ ଖ୍ରୀଷ୍ଟ-ଧର୍ମାନ୍ତରୀକରଣ ପରେ ଲୋକେ ଏକ ଧର୍ମ ବିଶ୍ୱାସ ନେଇ ଦୁଇ ଭାଗରେ ବିଭକ୍ତ । ଏଠାରେ ରହୁଥିବା ମୁସ୍‌ଲିମ୍ ବିଶ୍ୱାସ କରନ୍ତି, ପ୍ରତ୍ୟେକ ଶିଶୁ ପ୍ରଥମେ ମୁସଲିମ୍ ହୋଇ ଜନ୍ମ ନେଇଥାଏ ଓ ପରେ ଧର୍ମାନ୍ତରୀକରଣର ଶିକାର ହୁଏ । ଚୀନ୍‌ରେ ୟେଜ୍‌ଦି, ଡ୍ରୁଜ୍, ମାଣ୍ଡିଆନ୍, ଭଳି ସଂଖ୍ୟାଲଘୁ ସମ୍ପ୍ରଦାୟରେ ଅନ୍ୟ ଧର୍ମର ଲୋକଙ୍କୁ ଧର୍ମାନ୍ତରୀକରଣ ମନା । ଇହୁଦୀମାନେ ଧର୍ମାନ୍ତରୀକରଣକୁ ଘୃଣା କରନ୍ତି । ଜୋରୋଷ୍ଟ୍ରିୟାନ୍ ମାନେ କେବଳ ଉତ୍ତମ ଚରିତ୍ର ଓ ଉପଯୁକ୍ତ ଲୋକଙ୍କୁ ନିଜ ଧର୍ମକୁ ସ୍ୱାଗତ କରିଥାନ୍ତି ।

ଭାରତୀୟ ହିନ୍ଦୁମାନଙ୍କର ବିଶ୍ୱାସ ଯେ, ଯିଏ ଜନ୍ମରୁ ହିନ୍ଦୁ ନୁହେଁ, ସେ ଅନ୍ୟ ଧର୍ମରୁ ଆସି ହିନ୍ଦୁ ହୋଇପାରିବ ନାହିଁ । ଅନେକ ଖ୍ରୀଷ୍ଟିୟାନ୍ ବିଶ୍ୱାସ କରନ୍ତି ଯେ ଅଣଖ୍ରୀଷ୍ଟିୟାନ୍‌ମାନେ ନର୍କରେ ଅଛନ୍ତି । ସେମାନଙ୍କୁ ଉଦ୍ଧାର କରି ଖ୍ରୀଷ୍ଟିୟାନ୍ କରିବା ଏକ ପୁଣ୍ୟ କାର୍ଯ୍ୟ । 'ମିଶନାରୀ'ର ପ୍ରକୃତ ଅର୍ଥ ହେଲା ସେହି ଲୋକ ଯିଏ ଖ୍ରୀଷ୍ଟଧର୍ମ ବାହାରେ ଥିବା "ନର୍କରେ" ସଢୁଥିବା ଲୋକଙ୍କୁ ଉଦ୍ଧାର କରି ନିଜ ଧର୍ମକୁ ଆଣନ୍ତି । ଏବେ ଖ୍ରୀଷ୍ଟିୟାନ୍ ଜଗତରେ ଧର୍ମର ଏପରି ସଂଜ୍ଞା ଓ ଧର୍ମାନ୍ତରୀକରଣ ବିରୋଧରେ ବିଜ୍ଞ ଲୋକମାନେ ସ୍ୱର ଉତ୍ତୋଳନ କଲେଣି । ଯେପରି ସବୁ ହିନ୍ଦୁ ବଜରଙ୍ଗ ଦଳର ସମର୍ଥକ ନୁହଁନ୍ତି, ସେପରି ସବୁ ଖ୍ରୀଷ୍ଟୟାନ୍ ଧର୍ମାନ୍ତରୀକରଣ ସପକ୍ଷରେ ନୁହନ୍ତି । ତେଣୁ ଯେପର୍ଯ୍ୟନ୍ତ ଆମେ ପରସ୍ପର ଧର୍ମ, ସଂସ୍କୃତି ଓ ବିଶ୍ୱାସକୁ ସମ୍ମାନ ଦେବା ନ ଶିଖିଛେ, ସେପର୍ଯ୍ୟନ୍ତ ଧର୍ମଗତ କଳହର ଅବସାନ ହେବ ନାହିଁ । ଏପରିକି ଯେଉଁମାନେ ଈଶ୍ୱର ଧର୍ମକୁ ସ୍ୱୀକାର କରନ୍ତି ନାହିଁ, ସେମାନଙ୍କର ସେହି ବିଶ୍ୱାସକୁ ସମ୍ମାନ ଦେବାକୁ ହେବ ।

ପୃଥିବୀ ବଦଳି ଗଲାଣି । ବିଜ୍ଞାନ ଓ ଆଧ୍ୟାତ୍ମିକତା ଧର୍ମର ସ୍ଥାନ ନେଲାଣି । ଧର୍ମ ଏକ ବ୍ୟକ୍ତିଗତ ବିଶ୍ୱାସ । ତେଣୁ ମୁକ୍ତିପାଇଁ କୌଣସି ଧର୍ମ ବା ଗୋଷ୍ଠୀର ଛତା ତଳେ ଠିଆ ହେବାର ଆଉ ଆବଶ୍ୟକତା ନାହିଁ । ଧର୍ମ ବଜାରର କ୍ରେତା ବିକ୍ରେତା ହେବା ଆବଶ୍ୟକ ନାହିଁ । ଧର୍ମପ୍ରଚାର ବନ୍ଦ ହୋଇ ପ୍ରେମ ପ୍ରଚାର ହେଉ, ତ୍ୟାଗ, ନିଷ୍ଠା,

ସହଯୋଗ, ସହଭାଗିତା, ଶାନ୍ତି ସଦ୍‌ଭାବନା ଓ ପ୍ରଗତିପାଇଁ କାର୍ଯ୍ୟ ଆରମ୍ଭ ହେଉ । ଧର୍ମଗୁରୁମାନେ ଏକାଠି ବସି ସବୁ ମଣିଷଙ୍କୁ ଏକାଠି ରଖିବାପାଇଁ ନୂତନ ଦିଗ୍‌ଦର୍ଶନ ଦିଅନ୍ତୁ, ନହେଲେ ସେମାନଙ୍କର ବାଣୀ, ପ୍ରବଚନ, ପ୍ରଚାର ନିରର୍ଥକ ହୋଇଯିବ । ନିଆଁ ଲଗାଉଥିବା ଲୋକଙ୍କ ସଂଖ୍ୟା ବଢ଼ିବ ଓ ନିଆଁ ଲିଭାଉଥିବା ଲୋକଙ୍କ ସଂଖ୍ୟା କମିଯିବ । ଦେଶରେ କନ୍ଧମାଳ ସଂଖ୍ୟା ବଢ଼ିବାରେ ଲାଗିବ । ଧର୍ମ ବ୍ୟବସାୟୀ ଓ ସାମ୍ପ୍ରଦାୟିକ ରାଜନୀତିଜ୍ଞମାନେ ଖୁସି ହେବେ । ନିର୍ଦ୍ଦୋଷ ଲୋକେ ବଳି ପଡିବେ ଜାତି, ଧର୍ମ, କଳହ ବେଦୀରେ ।

*୩୦ ଅକ୍ଟୋବର, ୨୦୦୮*



# ସୁପ୍ରିମ୍ କୋର୍ଟ ଓ 'ଇଡିଅଟ୍'

ନିଜ ଗୋସେଇଁ ଶ୍ୱଶୁରଙ୍କୁ ହତ୍ୟା କରି ସାରିବା ପରେ ନିଜକୁ 'ନିର୍ବୋଧ' ଘୋଷଣା କରି ଆଇନ୍ ହାତରୁ ଖସିଯିବାପାଇଁ ଚେଷ୍ଟା କରୁଥିଲେ ମଧ୍ୟପ୍ରଦେଶର ହରି ସିଂ ଗୋଣ୍ଡ୍ । ଏବେ ସୁପ୍ରିମ୍‌କୋର୍ଟ ନିର୍ବୋଧତାର ସଂଜ୍ଞା ନିରୂପଣ କରି ଗୋଣ୍ଡ୍‌ଙ୍କ ଅପିଲ୍ ଖାରଜ କରିଦେଇଛନ୍ତି । ନିର୍ବୋଧମାନଙ୍କୁ ଇଂରାଜୀ ଭାଷାରେ କୁହାଯାଏ 'ଇଡିଅଟ୍' । ଅକ୍ସଫୋର୍ଡ ଡିକ୍ସିନାରୀ ଅନୁସାରେ ଇଡିଅଟ୍‌ର ପ୍ରକୃତ ସଂଜ୍ଞା ହେଲା ବୋଧଶକ୍ତିହୀନ ଓ ଯୁକ୍ତିସଙ୍ଗତ ଆଚରଣ ପ୍ରଦର୍ଶନପାଇଁ ଅସମର୍ଥ ବ୍ୟକ୍ତି, ଷ୍ଟୁପିଡ୍ ବା ନିର୍ବୋଧ । ସ୍କୁଲରେ ଶିକ୍ଷକ ଓ ଶିକ୍ଷୟିତ୍ରୀ, ଉଭୟ ଭଲ ପାଠ ପଢୁନଥିବା ବା ବୁଝିପାରୁନଥିବା ପିଲାଙ୍କୁ ଗାଳି ଦେଇ କହନ୍ତି - ଗଧ, ବୋକା, ଇଡିଅଟ୍, ଷ୍ଟୁପିଡ୍ । କିନ୍ତୁ ଭାରତୀୟ ପିଙ୍ଗଳ କୋଡ୍ ଧାରା ୮୪ ଅନୁସାରେ ଯଦି ଜଣେ 'ଇଡିଅଟ୍'; ତାର ସବୁ ଦୋଷ, ଅପରାଧ ମାଫ୍ । ତେଣୁ ହରି ସିଂ ଗୋଣ୍ଡ୍ କୋର୍ଟଙ୍କୁ କହିଥିଲେ ସେ ଜଣେ 'ଇଡିଅଟ୍', କିଛି ବୁଝି ପାରନ୍ତି ନାହିଁ, ଆଇନ୍‌କାନୁନ୍ ଓ ତାର ପରିଣାମ ଜାଣନ୍ତି ନାହିଁ, ତାଙ୍କ ମୁଣ୍ଡ ଠିକ୍ ନାହିଁ ।

ନିର୍ବୋଧ' ଶବ୍ଦଟିକୁ ଆମେ ହାଲୁକା ଭାବରେ ବ୍ୟବହାର କରୁଁ । ଏ ଶବ୍ଦର ଅପବ୍ୟବହାର ବି ହୁଏ । କିନ୍ତୁ ସୁପ୍ରିମ୍ କୋର୍ଟଙ୍କ ନୂଆ ସଂଜ୍ଞା ଅନୁସାରେ କୌଣସି ବ୍ୟକ୍ତିଙ୍କୁ ଇଡିଅଟ୍ କହିବା କି କୌଣସି ବ୍ୟକ୍ତି ନିଜେ ଇଡିଅଟ୍ ବୋଲି ଦାବି କରିବା ଆଉ ସମ୍ଭବପର ହେବ ନାହିଁ । ଦେଶରେ ଇଡିଅଟ୍‌ମାନଙ୍କ ସଂଖ୍ୟା ବି କମିଯିବ । ଏହି ନୂଆ ସଂଜ୍ଞା ଅନୁସାରେ ଯେଉଁ ବ୍ୟକ୍ତି ଏକରୁ କୋଡିଏ ପର୍ଯ୍ୟନ୍ତ ଗଣି ପାରୁନଥିବେ, ସପ୍ତାହର ସାତ ଦିନର ନାଁ କହି ପାରୁନଥିବେ, ନିଜ ବାପ, ମା'ଙ୍କ ନାମ ମନେ ରଖିପାରୁନଥିବେ, ମାନସିକ ଦୃଷ୍ଟିରୁ ଅବ୍ୟବସ୍ଥିତ ଥିବେ - ତାଙ୍କୁ 'ଇଡିଅଟ୍' ବା ନିର୍ବୋଧ କୁହାଯିବ । ମାନସିକ ଅସ୍ଥିର ଓ ଅବ୍ୟବସ୍ଥିତ ଲୋକଙ୍କୁ ପୁଣି ଚାରି ଭାଗରେ ବଣ୍ଟାଯାଇଛି - (୧) ଇଡିଅଟ୍ (୨) ଅତ୍ୟନ୍ତ ଅସୁସ୍ଥ (୩) ପାଗଳ ଓ (୪) ନିଶାଗ୍ରସ୍ତ ।

ଗତବର୍ଷ ଓଡ଼ିଶା ବିଧାନସଭାରେ ଜଣେ ବିଧାୟକ, ଶାସକ ଦଳର ଜଣେ ପୁରୁଖା ମନ୍ତ୍ରୀଙ୍କୁ 'ନନ୍‌ସେନ୍‌ସ' କହିବାରୁ ମାନ୍ୟବର ମନ୍ତ୍ରୀ ରାଗି ଯାଇ କହିଥିଲେ ମୁଁ ନନ୍‌ସେନ୍‌ସ ନୁହେଁ, ତମେ ନନ୍‌ସେନ୍‌ସ । ଏବେ ଇଡିଅଟ୍ , ନନ୍‌ସେନ୍‌ସର ସଂଜ୍ଞା ନିର୍ଦ୍ଧାରଣ ପରେ ଆଉ ଏପରି କହିବା ବିପଜ୍ଜନକ ହେବ । ସେହିପରି କଥାକଥାକେ ପିଲାମାନଙ୍କୁ ନିର୍ବୋଧ ବାଳକ, ବାଳିକା, ଘରେ ଚାକରକୁ ଇଡିଅଟ୍ , ସ୍କୁଲ୍‌ରେ ଛାତ୍ରଛାତ୍ରୀମାନଙ୍କୁ ନନ୍‌ସେନ୍‌ସ କହିଲେ କୋର୍ଟରେ ପ୍ରମାଣିତ କରିବାକୁ ପଡିବ । ବାକ୍ ସଂଯମ ନଥିବା ଲୋକେ ହଇରାଣରେ ପଡିବେ । ବିନା ଭାବିଚିନ୍ତି ଗାଳି ଗୁଲଜ କରି ନିଜ ପାଟି ଖରାପ କରୁଥିବା ଲୋକଙ୍କ ଅବସ୍ଥା ଆହୁରି ଖରାପ ହେବ ।

ଇଡିଅଟ୍‌ମାନଙ୍କ ସମ୍ପର୍କରେ ବହୁ ଥଟ୍ଟା, ପରିହାସ, ଜୋକ୍ ସବୁ ଅଛି । ଆମ ଦେଶରେ ହୋଲି ପର୍ବ ଦିନ ଇଡିଅଟ୍‌ମାନଙ୍କ ସମ୍ମିଳନୀ ହୋଇ 'ମହା-ନିର୍ବୋଧ' ଉପାଧି ଦିଆଯାଏ । ଥରେ ଜଣେ ମହିଳା ଖୁବ୍ ରାଗିଯାଇ ତାଙ୍କ ସ୍ୱାମୀଙ୍କୁ କହିଲେ, ତମେ ଜଣେ ଇଡିଅଟ୍ , ସଦାବେଳେ ଇଡିଅଟ୍ ଥିଲ ଓ ଇଡିଅଟ୍ ହୋଇ ରହିବ ଏବଂ ଯଦି ଇଡିଅଟ୍‌ମାନଙ୍କ ଭିତରେ କିଏ ସବୁଠୁ ବଡ ଇଡିଅଟ୍ ଜାଣିବାକୁ ପ୍ରତିଯୋଗିତା ହେବ, ତମେ ସେ ପ୍ରତିଯୋଗିତାରେ ଦ୍ୱିତୀୟ ସ୍ଥାନ ଅଧିକାର କରିବ । ସ୍ୱାମୀ ପଚାରିଲେ ପ୍ରଥମ ନ ହୋଇ ଦ୍ୱିତୀୟ ହେବି କାହିଁକି ? ଉତ୍ତର ଦେଇ ସ୍ତ୍ରୀ କହିଲେ, "କାରଣ ତମେ ଜଣେ ଇଡିଅଟ୍ " ।

ରାଜନୀତି କ୍ଷେତ୍ରରେ 'ଇଡିଅଟ୍' ଶବ୍ଦ ବହୁଳ ଭାବରେ ବ୍ୟବହାର କରାଯାଏ । ଭାରତ ଇତିହାସରେ ଶତକଡା ୬୦ ଭାଗ ଇଡିଅଟ୍‌ମାନଙ୍କର ଇତିହାସ ବୋଲି କୁହାଯାଏ । ବିଭିନ୍ନ ଧର୍ମରେ ଇଡିଅଟ୍‌ଙ୍କ ସଂଖ୍ୟା ଏହାଠାରୁ ଅଧିକ । ଲେନିନ୍‌ଙ୍କ ଚିନ୍ତାଧାରାକୁ ସମର୍ଥନ କରୁଥିବା ୟୁରୋପୀୟ ସାମ୍ୟବାଦିକମାନଙ୍କୁ ସେତେବେଳେ କୁହାଯାଉଥିଲା 'ଇଉଜ୍‌ଫୁଲ୍ ଇଡିଅଟ୍' । ଲେନିନ୍ ନିଜେ ତାଙ୍କର ଜଣେ ପାଶ୍ଚାତ୍ୟ ବାମପନ୍ଥୀ ସମର୍ଥକ ହେଣ୍ଡରସନ୍‌ଙ୍କ ବିଷୟରେ ୧୯୨୨ ମସିହା ଫେବ୍ରୁଆରି ୧୦ ତାରିଖରେ ସହଯୋଗୀ ଜର୍ଜିଙ୍କୁ ଲେଖିଥିଲେ - 'ହେଣ୍ଡରସନ୍ ଜଣେ ଷ୍ଟୁପିଡ୍ ଲୋକ ଏବଂ ସେଇ କାରଣରୁ , କିଛି ନ ଜାଣି ସେ ଆମକୁ ଅନ୍ଧ ସମର୍ଥନ କରୁଛନ୍ତି । ଏ ଉକ୍ତି ଏବେ ବି ବିବାଦୀୟ ହୋଇ ରହିଛି ।

୧୯୩୦ ଦଶକରେ ଇଂଲଣ୍ଡରେ ମୁଦ୍ରାସ୍ଫୀତି ଓ ଦୀର୍ଘକାଳୀନ ଅର୍ଥନୈତିକ ଦୁରବସ୍ଥା ଦେଖି ଷ୍ଟାଲିନ୍ ନିଜର ଜଣେ ଅନୁଗତ ସହଯୋଗୀଙ୍କୁ ଲଣ୍ଡନ ପଠାଇ ସେଠା କଳକାରଖାନାରେ କାମ କରୁଥିବା ଶ୍ରମିକମାନଙ୍କୁ କମ୍ୟୁନିଷ୍ଟ ଆନ୍ଦୋଳନରେ ଯୋଗ

ଦେବାପାଇଁ କ୍ଷେତ୍ର ପ୍ରସ୍ତୁତ କରିବାକୁ କହିଥିଲେ । ଇଂଲଣ୍ଡରୁ ଫେରି ସେ ଷ୍ଟାଲିନ୍‌ଙ୍କୁ ପରାମର୍ଶ ଦେଇଥିଲେ ଯେ ଫ୍ୟାକ୍‌ଟ୍ରି ଅପେକ୍ଷା ବିଶ୍ୱବିଦ୍ୟାଳୟର ବୁଦ୍ଧିଜୀବୀ ଶିକ୍ଷକ, ଛାତ୍ରଙ୍କୁ ଆକୃଷ୍ଟ କଲେ ସାମ୍ୟବାଦୀ ଆନ୍ଦୋଳନ ମଜବୁତ ହେବ । ଉତ୍ତରରେ ଷ୍ଟାଲିନ୍ କହିଥିଲେ, 'ଆମେ ପ୍ରଥମେ ଇଡିଅଟ୍‌ମାନଙ୍କୁ ଖୋଜିବା ଓ ବାଛିବା', ତାପରେ ବୁଦ୍ଧିଆମାନଙ୍କୁ ପ୍ରଭାବିତ କରିବାକୁ ଚେଷ୍ଟା କରିବା ।

ଜର୍ଜ ବୁଶ୍ ବଡ ବଡ ଦେଶର ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରପତିଙ୍କ ନାଁ ମନେ ରଖି ପାରୁନଥିଲେ - ବହୁ କଷ୍ଟରେ ସେ ଅଟଳ ବିହାରୀ ବାଜପେୟୀଙ୍କ ଲମ୍ବା ନାଁଟି ଘୋଷି ଘୋଷି ମନେ ରଖିଥିଲେ । ତାଙ୍କର କେତେକ ରାଜନୈତିକ ବିରୋଧୀ ତାଙ୍କୁ କହୁଥିଲେ 'ଇଡିଅଟ୍' । ବୁଶ୍ ଏହାକୁ ହସି ଉଡେଇ ଦେଉଥିଲେ । ୨୦୦୩ ମସିହାରେ ଜଣେ ରକ୍ଷଣଶୀଳ ସାମ୍ବାଦିକ ମୋନା ଚାରେନ୍ ଯେଉଁ ବହୁ ଚର୍ଚ୍ଚିତ ପୁସ୍ତକ ଲେଖିଥିଲେ ତା ନାଁ 'ଇଉଜ୍‌ଫୁଲ୍ ଇଡିଅଟ୍' । ଏହି ପୁସ୍ତକରେ ସେ ଆମେରିକାକୁ ପ୍ରତି କଥାରେ ଗାଳି ଦେଉଥିବା ଉଦାରପନ୍ଥୀମାନଙ୍କୁ 'ଇଡିଅଟ୍' ବୋଲି ଉଲ୍ଲେଖ କରିଛନ୍ତି । ୧୧ ସେପ୍ଟେମ୍ବର ୨୦୦୧ରେ ବିଶ୍ୱ ବାଣିଜ୍ୟ ମୁଖ୍ୟାଳୟକୁ ଉଡାଇ ଦେଇଥିବା ଇସ୍‌ଲାମିକ୍ ଆତଙ୍କବାଦୀ ସଂଗଠନମାନଙ୍କ ପ୍ରତି କୋହଳ ନୀତିପାଇଁ ଓକିଲାତି କରୁଥିବା ବ୍ୟକ୍ତିମାନଙ୍କୁ କୁହାଯାଉଥିଲା 'ଇଡିଅଟ୍' ।

ଭାରତୀୟ ଭାଷାରେ 'ଇଡିଅଟ୍'ମାନଙ୍କର ଅନ୍ୟନାମ ହେଲା - 'ମୂଢ଼' । ସୁପ୍ରିମ୍‌କୋର୍ଟ ମୂଢ଼ମାନଙ୍କର ଚାରୋଟି ଲକ୍ଷଣ ସ୍ଥିର କରିଥିବା ବେଳେ ପ୍ରାଚୀନ ଭାରତୀୟ କୂଟନୀତି ବିଶାରଦ ମହର୍ଷି ଚାଣକ୍ୟ ମୂଢ଼ମାନଙ୍କର ତିନୋଟି ଲକ୍ଷଣ ବର୍ଣ୍ଣନା କରିଛନ୍ତି । ଏହି ତିନୋଟି ଲକ୍ଷଣ ସୁପ୍ରିମ୍‌କୋର୍ଟଙ୍କ ନିର୍ଦ୍ଧାରିତ ଲକ୍ଷଣଠାରୁ ସମ୍ପୂର୍ଣ୍ଣ ଅଲଗା । ପ୍ରଥମ ଲକ୍ଷଣଟି ହେଲା - ଯେଉଁ ବ୍ୟକ୍ତି ନିମନ୍ତ୍ରଣ ବା ଡାକରା ବିନା ଅନ୍ୟ ଘରେ ପଶି ଯାଆନ୍ତି । ହିନ୍ଦୀ ଭାଷାରେ ଏକ ଉକ୍ତି ଅଛି - "ତୁ ମାନ୍ ୟା ନା ମାନ୍ , ମେ ତେରା ମେହେମାନ୍" । ଦ୍ୱିତୀୟ ଲକ୍ଷଣଟି ହେଲା, ଯେଉଁ ବ୍ୟକ୍ତି ବିନା ପଚରା ଉତ୍ତରାରେ ଉପରେ ପଡି ନିଜର ମନ୍ତବ୍ୟକୁ ବଇର ବଜର ହୋଇ କହି ଚାଲିଥାନ୍ତି । ଅପୃଷ୍ଟୋ ବହୁଭାଷତେ । ଏହିପରି 'ଇଡିଅଟ୍' ବା ମୂଢ଼ମାନଙ୍କୁ ଜାଣିବାର ତୃତୀୟ ଲକ୍ଷଣଟି ହେଲା, ଏମାନେ ବାରମ୍ବାର ଧୋକା ଖାଇଲା ପରେ ବି ଠକ ଓ ଅବିଶ୍ୱସ୍ତ ଲୋକଙ୍କ ଉପରେ ଅତୁଟ ବିଶ୍ୱାସ ଓ ଭରସା ରଖିଥାନ୍ତି ।

ମନେହୁଏ ସୁପ୍ରିମ୍ କୋର୍ଟ ଚାଣକ୍ୟଙ୍କ ଅର୍ଥଶାସ୍ତ୍ର ନ ପଢି ଇଡିଅଟ୍‌ମାନଙ୍କ ସଂଜ୍ଞା ନିରୂପଣ କରିଦେଇଛନ୍ତି । ତେଣୁ ସୁପ୍ରିମ୍ କୋର୍ଟଙ୍କ ରାୟ ଅନୁସାରେ ଇଡିଅଟ୍‌ଙ୍କ ସଂଖ୍ୟା ହ୍ରାସ ଦ୍ରୁତ ଗତିରେ ବଢିବାରେ ଲାଗିଛି । ତେବେ ଏହି କଥା ବି ସତ ଯେ 'ଇଡିଅଟ୍'ମାନେ ନଥିଲେ ସାମାଜିକ ଓ ସାଂସ୍କୃତିକ ଜୀବନ ନିରସ ହୋଇଯାଏ । ବିଜ୍ଞ ବ୍ୟକ୍ତିମାନେ ବି ବେଳେ ବେଳେ ବୋକା ଭଳି ବ୍ୟବହାର କରିଥାନ୍ତି । ଆଇନଷ୍ଟାଇନ୍ ତ ଏଥିପାଇଁ ବିଖ୍ୟାତ ଥିଲେ । ଟେଲିଭିଜନ ସିରିଏଲ ସବୁ ମୁଖ୍ୟତଃ ଇଡିଅଟ୍ ଦର୍ଶକମାନଙ୍କ ଉପରେ ନିର୍ଭର କରି ବର୍ଷ ବର୍ଷ ଧରି ଚାଲିଥାଏ । ତେଣୁ ଟେଲିଭିଜନର ଅନ୍ୟ ନାମ ହେଲା 'ଇଡିଅଟ୍ ବକ୍ସ' । ସିରିଆଲ୍ ଓ ପ୍ରଚାରସବୁକୁ ସତ ଭାବି ନିର୍ବୋଧ ଦର୍ଶକମାନେ ସେହିପରି ଆଚରଣ କରିଥାନ୍ତି । ଛୋଟ ପିଲାଙ୍କ ଉପରେ ଏହାର କୁପ୍ରଭାବ ବେଶୀ ପଡିଥାଏ । ସମାଜରେ "ଇଡିଅଟ୍"ଙ୍କ ସଂଖ୍ୟା ବଢ଼ିଥାଏ ।

*୧୫ ଅକ୍ଟୋବର, ୨୦୦୮*



# ବୁଦ୍ଧ, 'ବନ୍ଦ' ଓ ବିଚାର ସଙ୍କଟ

ଛବିଶ ଶହ ବର୍ଷ ପୂର୍ବେ ଶାକ୍ୟମୁନି ବୁଦ୍ଧଦେବଙ୍କ ବାଣୀ ଥିଲା "କାମନାର ବିନାଶରେ ଦୁଃଖର ବିନାଶ" । ଅଗଷ୍ଟ ୨୫ ତାରିଖ ଦିନ କଲିକତାରେ ଉଦ୍ୟୋଗପତିମାନଙ୍କ ସଭାରେ ସାମ୍ୟବାଦର ନୂଆ 'ପୋଷ୍ଟରବୟ' ବୁଦ୍ଧଦେବ ଭଟ୍ଟାଚାର୍ଯ୍ୟଙ୍କ ନୂତନ ବାଣୀ ହେଲା 'ବନ୍ଦ'ର ବିନାଶରେ ବେରୋଜଗାରି ବିନାଶ ଓ ଦେଶର ବିକାଶ । ଅର୍ଥାତ୍ ବିକାଶପାଇଁ ବନ୍ଦ, ଧାରଣା, ଧର୍ମଘଟ ବନ୍ଦ କରିବାକୁ ହେବ । ମୁଖ୍ୟମନ୍ତ୍ରୀ ହେବା ଦିନଠାରୁ ବୁଦ୍ଧଦେବ ଉଦାରୀକରଣର ପକ୍ଷଧର ରୂପେ ମାର୍କସ୍‌ଧର୍ମୀ କମ୍ୟୁନିଷ୍ଟ ଓ ଅନ୍ୟ ବାମପନ୍ଥୀ ଦଳରେ ହଲଚଲ ସୃଷ୍ଟି କରି ଆସୁଛନ୍ତି । ତାଙ୍କୁ ଭାରତୀୟ କମ୍ୟୁନିଷ୍ଟ ଆନ୍ଦୋଳନର 'ଡେଙ୍ଗ୍‌ସିଆଓ ପିଙ୍ଗ୍' ବୋଲି କୁହାଯାଉଛି । ଚୀନ୍‌ରେ ମାଓବାଦୀକୁ କବର ଦିଆଯାଇ ଏବେ ଡେଙ୍ଗ୍‌ଙ୍କ ବିଚାରଧାରାରେ ସାମ୍ୟବାଦ ଓ ପୁଞ୍ଜିବାଦର ସୁସ୍ୱାଦୁ ଖେଚେଡ଼ି ଗୋଟିଏ ଡେକ୍‌ଚିରେ ରନ୍ଧା ହୋଇ ପରଷା ଯାଉଛି । ଏକଦା ସାମ୍ୟବାଦର ଲାଲଝଣ୍ଡାକୁ ବିଦ୍ରୂପ କରି ଡେଙ୍ଗ୍ କହୁଥିଲେ ବିରାଡ଼ି ଲାଲରଙ୍ଗ କି କଳାରଙ୍ଗ ହେଲେ କିଛି ଯାଏ ଆସେ ନାହିଁ , ଦେଖିବାକୁ ହେବ ସେ ପ୍ରକୃତରେ ମୂଷା ମାରି ପାରୁଛି କି ନାହିଁ ।

ନିଜର ସ୍ୱାଧୀନ ମତଯୋଗୁ ଡେଙ୍ଗ୍ ମାଓଙ୍କ କ୍ରୋଧର ଶିକାର ହୋଇଥିଲେ । କିନ୍ତୁ ମାଓଙ୍କ ପରେ ଡେଙ୍ଗ୍‌ଙ୍କ ଦର୍ଶନକୁ ଚୀନ୍ କମ୍ୟୁନିଷ୍ଟ ପାର୍ଟି ଗ୍ରହଣ ଓ ଅନୁସରଣ କରି ଆଜି ପୃଥିବୀର ଦ୍ୱିତୀୟ ମହାଶକ୍ତି ହୋଇ ଠିଆ ହୋଇଛି । ଯେଉଁ ଚୀନ୍‌କୁ ଅଲମ୍ପିକ୍‌ରେ ପୂରାଇ ଦିଆ ହେଉନଥିଲା, ସେ ଦେଶ ଗତ ଅଲିମ୍ପିକ୍‌ରେ ସବୁଠାରୁ ଅଧିକ ପଦକ ହାସଲ କରିଛି । ଏପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିବା ସବୁ ଅଲିମ୍ପିକ୍‌ଠାରୁ ବେଜିଂ ଅଲିମ୍ପିକ୍ ଥିଲା ସର୍ବଶ୍ରେଷ୍ଠ, ସୁନିଯୋଜିତ ଓ ଚିତ୍ତାକର୍ଷକ ଘଟଣା । ଏଥିପାଇଁ ଚୀନ୍ ଖର୍ଚ୍ଚ କରିଥିଲା ଏକଲକ୍ଷ ବୟାଅଶି ହଜାର କୋଟି ଟଙ୍କା । ସାମ୍ୟବାଦର ମହାନ୍ ମାନବୀୟ ଦର୍ଶନ, ପୁଞ୍ଜିବାଦର ସୃଜନାତ୍ମକ ପ୍ରୟୋଗ, କଠୋର ଶୃଙ୍ଖଳା ଓ ଦୃଢ ଶାସନର ଅପୂର୍ବ ସମନ୍ୱୟ

ଫଳରେ ଏହା ସମ୍ଭବପର ହେଲା । ସବୁଦିନ ବନ୍ଦ, ହରତାଳ, ଧର୍ମଘଟ, ତାଲାବନ୍ଦ, ଚକାଜାମ୍ ଚାଲିଥିଲେ, ଚୀନ୍ ପ୍ରଗତିର ଏଭଳି ଉଚ୍ଚସ୍ତରକୁ ଉଠିପାରିନଥାନ୍ତା ।

ଏବେ ସିଙ୍ଗୁରରେ ଲକ୍ଷେ ଟଙ୍କିଆ ଛୋଟ କାର୍ କାରଖାନାପାଇଁ ଭୂମି ଗ୍ରହଣ ସପକ୍ଷ ଓ ବିପକ୍ଷବାଦୀ ଦଳ ଡେରା ପକାଇବା ଫଳରେ ପରିସ୍ଥିତି ଉଦ୍‌ବେଗଜନକ ହୋଇଥିଲା । ଟାଟା କର୍ମଚାରୀଙ୍କୁ ନିଜ ଅଫିସ୍‌କୁ ଯାଇ କାମ କରିବାକୁ ଦିଆଗଲା ନାହିଁ । ମାରଧର କରାଗଲା, ଧମକଚମକ ଦିଆଗଲା । ୧୯୭୦ ଦଶକରେ ସ୍ୱୟଂ ବାମପନ୍ଥୀମାନଙ୍କର ଏଭଳି ଆଚରଣ ଯୋଗୁଁ ଅଧିକାଂଶ ଉଦ୍ୟୋଗପତି କଲିକତାରୁ ନିଜ କଳକାରଖାନା ଉଠାଇ ନେଇଥିଲେ । ପଶ୍ଚିମବଙ୍ଗରେ ପୁଞ୍ଜି ନିବେଶପାଇଁ ଶିଳ୍ପପତିମାନେ ରାଜି ହେଉନଥିଲେ । ବୁଦ୍ଧଦେବ ମୁଖ୍ୟମନ୍ତ୍ରୀ ହେଲା ପରେ ଦେଶ ବିଦେଶ ବୁଲି ନିଜ ରାଜ୍ୟରେ ପୁଞ୍ଜିନିବେଶ କରିବାପାଇଁ ନିମନ୍ତ୍ରଣ ଓ ସବୁ ପ୍ରକାର ସୁବିଧା ସୁଯୋଗ ଦେବାପାଇଁ ପ୍ରତିଶ୍ରୁତି ଦେବା ପରେ ଅନେକ ଶିଳ୍ପୋଦ୍ୟୋଗୀ ପଶ୍ଚିମବଙ୍ଗକୁ ଫେରୁଥିଲେ ଏବଂ ନାମକରା ତଥା ଅପେକ୍ଷାକୃତ ନିର୍ମଳ ଭାବମୂର୍ତ୍ତି ଥିବା ଟାଟା କମ୍ପାନି ସିଙ୍ଗୁରରେ 'ନାନୋ' କ୍ଷୁଦ୍ରକାର୍ କାରଖାନା ସ୍ଥାପନ କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । ଏବେ ରତନ ଟାଟା, ଟାଟା କର୍ମଚାରୀଙ୍କ ନିରାପତ୍ତାକୁ ଦୃଷ୍ଟିରେ ରଖି ସେ କାରଖାନାଟି ଅନ୍ୟତ୍ର ଉଠାଇ ନେଇଗଲେଣି । ରିଲିଆନ୍‌ସ, ଇନ୍‌ଫୋସିସ୍ ଭଳି ବଡ ବଡ କମ୍ପାନିମାନେ ରତନ ଟାଟାଙ୍କୁ ସମର୍ଥନ କରି ବିବୃତି ଦେଇଛନ୍ତି । ଫଳରେ ଉଦ୍ୟୋଗ ମାଧ୍ୟମରେ ବେକାରୀ ଓ ଗରିବୀ ହଟାଇବାପାଇଁ ବୁଦ୍ଧଦେବଙ୍କ ସବୁ ଚେଷ୍ଟା ବିଫଳ ହୋଇଯାଉଛି, କାରଣ ଗତ ୩୦ ବର୍ଷ ଧରି ପଶ୍ଚିମବଙ୍ଗରେ ସି.ପି.ଏମ୍. ନେତୃତ୍ୱରେ ଚାଲିଥିବା ସରକାର ଅମଳରେ ବେକାରୀ ସମସ୍ୟା ବଢିବାରେ ଲାଗିଥିବାରୁ ବୁଦ୍ଧ ଚିନ୍ତିତ ।

ରତନ ଟାଟାଙ୍କ ଘୋଷଣାରେ ଶଙ୍କିତ ବୁଦ୍ଧଦେବ ଉଦ୍ୟୋଗପତିମାନଙ୍କ ସମ୍ମିଳନୀରେ ଯାହା କହିଛନ୍ତି ତାହାର ସାରାଂଶ ହେଲା – ସେ ବନ୍ଦ, ହରତାଳ, ଧର୍ମଘଟର ବିରୋଧୀ, ଏହା ବିକାଶ ବିରୋଧୀ ଜାଣି ମଧ୍ୟ ସେ ଦଳୀୟ ନୀତିଯୋଗୁଁ ଚୁପ୍ ରହୁଥିଲେ, ଏଣିକି ଏହା ବିରୋଧରେ ମୁହଁ ଖୋଲିବେ । ବୁଦ୍ଧଙ୍କ ଏପରି ଜ୍ଞାନୋଦୟ ଓ ପ୍ରବଚନ ଶୁଣି ତାଙ୍କ ଦଳ ଲୋକେ ଛାନିଆଁ ହୋଇ ପ୍ରବଳ ପ୍ରତିବାଦ କଲେଣି । ସବୁଠାରୁ ଅସୁବିଧା ହେଲା ଶୋଭାଯାତ୍ରା, ଧର୍ମଘଟ ଓ ବନ୍ଦ ଯେଉଁ ଦଳର ଥିଲା ପ୍ରଧାନ ରାଜନୈତିକ ଅସ୍ତ୍ର, ସେହି ଅସ୍ତ୍ରଶସ୍ତ୍ରଗୁଡିକୁ ତୃଣମୂଳ କଂଗ୍ରେସ ବାଲା ଚୋରି କରି ତାଙ୍କୁ ହିନସ୍ତା କଲେଣି । କଣ୍ଟକେନୈବ କଣ୍ଟକମ୍ । ଦଳର କେନ୍ଦ୍ରରେ ବହୁରାଷ୍ଟ୍ରୀୟ କମ୍ପାନିଙ୍କୁ ବିରୋଧ ଓ ପଶ୍ଚିମବଙ୍ଗ ଏବଂ କେରଳରେ ସେମାନଙ୍କୁ ସ୍ୱାଗତ ନୀତିଯୋଗୁଁ ବୁଦ୍ଧଦେବ ଧୋକାରେ ଥିଲେ । ସାମ୍ୟବାଦୀ ବାଚସ୍ପତି ସୋମନାଥ ବି ସେମିତି ଧୋକାରେ ରହି ଶେଷରେ ଦଳରୁ ବହିଷ୍କୃତ ହେଲେ । ଦଳ ସର୍ବସାଧାରଣରେ ଘୋଷଣା କଲେ ଯେ ବାଚସ୍ପତି ନିଜ

ପଦରେ ରହିବେ କି ନାହିଁ, ନିଷ୍ପତ୍ତି ନିଜେ ସ୍ୱାଧୀନ ଭାବରେ ନେବେ ଏବଂ ଯେତେବେଳେ ସୋମନାଥ ଏକଥା ବିଶ୍ୱାସ କରି ସ୍ୱାଧୀନ ନିଷ୍ପତ୍ତି ନେଲେ, ତାଙ୍କୁ ଦଳରୁ ବାହାର କରି ଦିଆଗଲା । ଜ୍ୟୋତିବସୁଙ୍କୁ ପ୍ରଧାନମନ୍ତ୍ରୀ ହେବା ସକାଶେ ଅନୁମତି ନ ମିଳିବାରୁ ସେ କହିଥିଲେ ଏହା ଦଳର ଐତିହାସିକ ନିର୍ବୋଧତା ବା ତ୍ରୁଟି । ହିଷ୍ଟରିକ୍ ବ୍ଲଣ୍ଡର୍ । ସ୍ୱାଧୀନତା ଆନ୍ଦୋଳନ ବେଳେ ଗାନ୍ଧୀଙ୍କୁ ବିରୋଧ କରି ଓ ପରେ ଇମର୍ଜେନ୍ସିକୁ ସମର୍ଥନ କରି ଦଳ ଐତିହାସିକ ତ୍ରୁଟି କରିଥିଲା ।

ଚୀନ୍ ଓ ଭିଏତନାମ ଭଳି କଠୋରପନ୍ଥୀ କମ୍ୟୁନିଷ୍ଟ ଦେଶ ସବୁ ପରିବର୍ତ୍ତିତ ପରିସ୍ଥିତିରୁ ଲାଭ ଉଠେଇବାପାଇଁ ନିଜର ନୀତି ପରିବର୍ତ୍ତନ କଲେ । ଭାରତୀୟ ବାମପନ୍ଥୀ ଦଳମାନଙ୍କ ଉପରେ ଏହାର କୌଣସି ପ୍ରଭାବ ପଡିଲା ନାହିଁ । ଯଦି ବି କେତେକ ସମ୍ମାନାସ୍ପଦ ନେତା ଆଲୋଚନାର ସୂତ୍ରପାତ କରିବାକୁ ଚାହିଁଲେ, ତାଙ୍କୁ ଚୁପ୍ କରିଦିଆଗଲା । 'ବନ୍ଦ' ବିରୋଧରେ ନିଜ ବିଚାରର ତୀବ୍ର ପ୍ରତିକ୍ରିୟା ଦେଖି ବୁଦ୍ଧଦେବ ବି ଚୁପ୍ ହୋଇଗଲେ । ଦର୍ଦ୍ଦୁର ରବ ଶୁଣି ନୀରବ ପିକ, ମୂର୍ଖ ସଭାରେ ମୂକ ଯଥା ଧାର୍ମିକ । ପ୍ରଗତିର ପରାଜୟ ହେଉ ପଛେ, ବନ୍ଦ୍ ର ବିଜୟ ବାନା ଉଡୁଥାଉ ।

ବିଭିନ୍ନ ସର୍ବେକ୍ଷଣରୁ ଜଣାପଡେ ଯେ, ଦେଶର ଶତକଡା ୯୦ ଭାଗ ନାଗରିକ 'ବନ୍ଦ'ର ବିରୋଧୀ । ଦେଶର ବିଭିନ୍ନ ଉଚ୍ଚ ନ୍ୟାୟାଳୟ ଓ ସୁପ୍ରିମ୍‌କୋର୍ଟ 'ବନ୍ଦ' ବିରୁଦ୍ଧରେ ମତ ଓ ମନ୍ତବ୍ୟ ଦେଇ ସାରିଲେଣି । ଭାରତରେ ପ୍ରତିବର୍ଷ ବନ୍ଦ ଓ ଧର୍ମଘଟଯୋଗୁଁ ଯେଉଁ କ୍ଷତି ହୁଏ, ତାହାର ମୂଲ୍ୟ ୫୦ ହଜାର କୋଟି ଟଙ୍କାରୁ ଅଧିକ । ସିଙ୍ଗୁରଠାରେ ତୃଣମୂଳ କଂଗ୍ରେସର ବନ୍ଦ୍ ଓ ରାସ୍ତାରୋକ ଆନ୍ଦୋଳନ ଫଳରେ ଜାତୀୟ ରାଜପଥରେ ଅଟକି ରହିଥିବା ୨୫୦୦୦ ଟ୍ରକ୍ ଡ୍ରାଇଭରମାନେ ବିକ୍ଷୋଭ ଓ 'ବନ୍ଦ୍' ଡାକରା ଦେଲେ । ଏହା ଫଳରେ ପ୍ରତିଦିନ ୫୦ ଲକ୍ଷ ଟଙ୍କା କ୍ଷତି ହେଲା । ମାଲ ନ ପହଞ୍ଚିବାରୁ ଫଳ, ପନିପରିବା, ତେଲ, ଡାଲି ଓ ଅନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟର ଆକାଶଛୁଆଁ ଦରବୃଦ୍ଧି ଫଳରେ ଖାଉଟିମାନେ ହରତାଳ, ଶୋଭାଯାତ୍ରା, ବିକ୍ଷୋଭ ଓ 'ବନ୍ଦ୍' ପ୍ରଦର୍ଶନ କଲେ । ଡାକ୍ତରଖାନାରେ ରୋଗୀମାନେ ଖାଦ୍ୟ ଓ ଔଷଧ ନ ପାଇ ଛଟପଟ ହେଲେ । କେତେକ ମୃତ୍ୟୁମୁଖରେ ପଡିଲେ ।

ବନ୍ଦ୍ ଏକ ବିଷଚକ୍ର - ଏବଂ କେତେକ ଦଳ ଓ ବ୍ୟକ୍ତିଙ୍କପାଇଁ ଏକ ଲାଭଜନକ ବ୍ୟବସାୟରେ ପରିଣତ ହେଲାଣି । କଲିକତାର ଅନ୍ୟ ନାମ ହେଲା ବନ୍ଦନଗରୀ । ୧୯୭୦ ଦଶକରେ ବମ୍ବେ ନଗରୀରେ ବନ୍ଦ ଓ ହରତାଳ, ମାଫିଆମାନଙ୍କ କବଳକୁ ଚାଲି ଯାଇଥିଲା । ଫଳରେ ବହୁ କଳ କାରଖାନା ବନ୍ଦ ହୋଇଗଲା ଓ ଲକ୍ଷାଧିକ ଲୋକ ନିଜର ଦାନାପାଣି ହରାଇଲେ, ଆତ୍ମହତ୍ୟାର ସଂଖ୍ୟା ବଢିଗଲା । ଶିଳ୍ପ ଓ ଶିଳ୍ପପତି ଉଭୟଙ୍କ ବିରୁଦ୍ଧରେ କ୍ରମାଗତ ଆନ୍ଦୋଳନ ଫଳରେ ଯୁବ ଉଦ୍ୟୋଗୀମାନେ ନୂଆ ଉଦ୍ୟୋଗରୁ ପଛଘୁଞ୍ଚା ଦେଇ ଚାକିରି ଖୋଜିବାରେ

ଲାଗିଲେ । ଚାକିରି ନ ପାଇ ଆତଙ୍କବାଦୀ ଆନ୍ଦୋଳନରେ ଯୋଗଦେଲେ । ସେତେବେଳର କୋଟା ପରମିଟ୍ କଣ୍ଟ୍ରୋଲ ରାଜରେ ଆତ୍ମ ସମ୍ମାନ ସହ ଓ ବିନା ଲାଞ୍ଚରେ ଧାଁ ଧପଡରେ ନୂଆ ଉଦ୍‌ଯୋଗ ଅସମ୍ଭବ ହୋଇପଡିଥିଲା । ଏପରି ଅବସ୍ଥା ଦେଖି ଷ୍ଟେଟ୍‌ସମ୍ୟାନ୍ ଖବରକାଗଜ ଏକ କାର୍ଟୁନ୍ ପ୍ରଥମ ପୃଷ୍ଠାରେ ଛାପିଥିଲେ । ଏକ ବ୍ୟସ୍ତ, ବିବ୍ରତ ଯୁବ ଉଦ୍ୟୋଗୀଙ୍କ ଚିତ୍ର ତଳେ ଲେଖା ଥିଲା 'କଲିକତାରେ ହଠାତ୍ ଏକ ଯୁବ ଉଦ୍ୟୋଗୀଙ୍କ ଆବିର୍ଭାବ !! ଏହାର କାରଣ ଜାଣିବାପାଇଁ ବାମ ସାମ୍ମୁଖ୍ୟ ସରକାରଙ୍କ ତଦନ୍ତ ଆଦେଶ !!'

'ବନ୍ଦ୍' ନାଗରିକ ସ୍ୱାଧୀନତା ଓ ମାନବାଧିକାର ଉପରେ ଦିନ ଦ୍ୱିପ୍ରହରେ ଆକ୍ରମଣ । ରାସ୍ତାରୋକ, ଜଳାପୋଡା, ଯୋରଜବରଦସ୍ତି ଦୋକାନ ବଜାର ବନ୍ଦ କରିବା, ଚକା ଜାମ୍ ଓ ମାନୁ ନଥିବା ଲୋକଙ୍କ ବିରୁଦ୍ଧରେ ଦଙ୍ଗା, ଫସାଦ ସମଗ୍ର ମାନବ ସମାଜ ବିରୁଦ୍ଧରେ ଅପରାଧ । ସରକାରରେ ଥାଇ ବନ୍ଦ ଡାକରା ଦେଉଥିବା ଦଳର ସରକାରରେ ରହିବାର କୌଣସି ଅଧିକାର ନାହିଁ । ବିଭିନ୍ନ ଦଳରେ ଥିବା ବିଜ୍ଞ ଲୋକେ ବୁଦ୍ଧଦେବଙ୍କ ଭଳି ଏହାର ପ୍ରତିବାଦ କରନ୍ତୁ ଓ ସବୁ ଦଳଙ୍କ ମଧ୍ୟରେ ଏହି ବିଷୟରେ ଶୀଘ୍ର ରାଜନୈତିକ ବୁଝାମଣା ହେଉ । ଔଦ୍ଧତ୍ୟ ସହ ପୁରୁଣା ବିଚାରକୁ ଅପରିବର୍ତ୍ତନୀୟ, ଏକମାତ୍ର ସତ୍ୟ ବୋଲି କହିବା ବା ବିଶ୍ୱାସ କରିବା, ଅନ୍ୟ ମତ ବା ପ୍ରମାଣକୁ ଅନୁଧାନ ନ କରି ସଦାସର୍ବଦା ନିଜକୁ ଠିକ୍ ବୋଲି କହୁଥିବା, ଅବୁଝା ଏକଜିଦିଆ ଲୋକଙ୍କୁ ଖାଣ୍ଟି ଓଡ଼ିଆରେ 'ବାୟା' ଓ କେତକ ସ୍ଥଳରେ 'ଆଡବାୟା' ବୋଲି କୁହାଯାଏ । ସେହିଭଳି ଆଚରଣ କରୁଥିବା ଦଳ ପ୍ରତି ମଧ୍ୟ ଏଇ ବିଶେଷଣ ପ୍ରଯୁଜ୍ୟ । ବୁଦ୍ଧଙ୍କ ବିଦ୍ରୋହର ସ୍ୱରକୁ ବାୟାମାନେ ବୁଝିବାକୁ ଚେଷ୍ଟା କରନ୍ତୁ । ଆଦର୍ଶ ଓ ବିଚାରକୁ 'ଅପରିବର୍ତ୍ତନୀୟ' ଆଖ୍ୟା ଦେଲେ ଦଳ ହୋଇଯିବ ସମ୍ପ୍ରଦାୟ, ବିଚାର ହୋଇଯିବ 'ଧର୍ମ' ଓ ଦଳପତିମାନେ ହୋଇଯିବେ 'ଧର୍ମାଧିକାରୀ' ।

*୧୧ ସେପ୍ଟେମ୍ବର, ୨୦୦୮*



# ଚାଚା, ଚାମ୍ଚା ଓ ପାଳିତପଶୁମାନେ

ଆମ ଦେଶରେ ଚାଚା, ଚାମ୍ଚା ପରାଙ୍ଗପୁଷ୍ଟ ଓ ପାଳିତ ପଶୁମାନଙ୍କ ସଂଖ୍ୟା ଦ୍ରୁତଗତିରେ ବଢୁଥିବା ଲକ୍ଷ୍ୟ କରି ଏବେ ଟାଇମ୍ସ ଅଫ୍ ଇଣ୍ଡିଆ ନିଜ ସମ୍ପାଦକୀୟରେ ଏ ସମ୍ପର୍କରେ ବିଭିନ୍ନ ରାଜନୈତିକ ଦଳ ଓ ନାଗରିକ ସମାଜକୁ ସତର୍କବାଣୀ ଶୁଣାଇଛନ୍ତି । ସ୍ୱୟଂ ରାହୁଲ ଗାନ୍ଧୀ ବାରମ୍ବାର କହିଲେଣି - ତାଙ୍କୁ ରାଜକୁମାର, ମାଏ ବାପ୍ କହି ଖୋସାମତିଆମାନେ ଭାରତୀୟ ସମ୍ବିଧାନ ଓ ଗଣତନ୍ତ୍ରକୁ ଅପମାନିତ ନ କରନ୍ତୁ । ତଥାପି ବୟସ୍କ ଓ ବଳିଷ୍ଠ ନେତାଏ ପୁରୁଣା ଅଭ୍ୟାସ ଛାଡୁନାହାନ୍ତି । ପଦ, ପଦବୀ, କ୍ଷମତା ହାସଲ ଓ ରକ୍ଷାପାଇଁ ଚାମଚାଗିରି ଏକ ବହୁ ପରୀକ୍ଷିତ ଅମୋଘ ଅସ୍ତ୍ର ବୋଲି ବିଚାର କରାଯାଉଛି । ଚାମଚାଗିରିରେ କେତେକ ଶିକ୍ଷାବିତ୍ ବି ଆଗୁଆ । ଏବେ ମାଡ୍ରାସ୍ ବିଶ୍ୱବିଦ୍ୟାଳୟର ନୂଆ କୁଳପତି (୨୦୦୯) ରାଜ୍ୟ ମୁଖ୍ୟମନ୍ତ୍ରୀଙ୍କର 'ମହାନ୍' ଜୀବନ ଦର୍ଶନ ଉପରେ ଅଧ୍ୟୟନ, ଗବେଷଣାପାଇଁ ଏକ ସ୍ନାତକୋତ୍ତର ବିଭାଗ ଖୋଲିବାକୁ ପ୍ରସ୍ତାବ ରଖିଛନ୍ତି ବୋଲି ଖବର ପ୍ରକାଶ ପାଇଛି । ତେଣୁ ଏପରି ମନୋବୃତ୍ତି କୌଣସି ଗୋଟିଏ ରାଜନୈତିକ ଦଳରେ ବା ସଂସ୍ଥାରେ ସୀମିତ ନୁହେଁ । ଏହା କ୍ରମେ ଶାସନ ଓ ସମାଜର ଏକ ସଂସ୍କୃତି ହୋଇଗଲାଣି ।

କୌଣସି ଯୋଗ୍ୟ ବ୍ୟକ୍ତିଙ୍କୁ ପ୍ରଶଂସା କରିବାରେ ଅସୁବିଧା ନାହିଁ, କିନ୍ତୁ ସେହିଭଳି ପ୍ରଶଂସା ନିଜ ସ୍ୱାର୍ଥରକ୍ଷାପାଇଁ କରାଯାଉଥିଲେ ତାକୁ କୁହାଯାଏ ଚାମଚାଗିରି । ଏହାଛଡା, ଅନେକ ବ୍ୟକ୍ତି ଆତ୍ମସମୀକ୍ଷାପାଇଁ ଅନିଚ୍ଛୁକ ଓ ସତ୍ୟକୁ ସାମ୍ନା କରିବାପାଇଁ ପ୍ରସ୍ତୁତ ନୁହଁନ୍ତି, ସମାଲୋଚନାକୁ ସହି ପାରନ୍ତି ନାହିଁ ଓ ଅତି ପ୍ରଶଂସାର 'କମ୍ଫର୍ଟ ଯୋନ' ବା ଆରାମଦାୟକ ପରିବେଶ ଭିତରେ ରହିବାକୁ ପସନ୍ଦ କରନ୍ତି । ନିର୍ବାଚନ ହାରିଗଲେ, ବଡ ଚାକିରିରୁ ଅବସର ନେଇଗଲେ, ଚାମଚା ଓ ପାଳିତ ପଶୁମାନେ ନୂତନ ସ୍ୱାମୀ ଚାଚା ଓ ଶକ୍ତିକେନ୍ଦ୍ର ଅନ୍ୱେଷଣରେ ବାହାରିଯାଆନ୍ତି, ପୁରୁଣା ସ୍ୱାମୀଙ୍କୁ ଛାଡି ନୂତନ ପତି ଅନ୍ୱେଷଣରେ । ଏଭଳି ଜଣେ ପାଳିତ ପଶୁଙ୍କୁ ବହୁଦିନ ଧରି ଏକ ନୂତନ ସ୍ୱାମୀଙ୍କ ପାଖଲୋକ ହେବାପାଇଁ ଧାଁ ଧପଡ କରୁଥିବା ଦେଖି କାରଣ ପଚାରିଲି । କହିଲେ,

ଅସ୍ତଗାମୀ ସୂର୍ଯ୍ୟଙ୍କୁ କେବଳ ବୋକା ଲୋକେ ନମସ୍କାର କରନ୍ତି । ଉଦୀୟମାନ ସୂର୍ଯ୍ୟଙ୍କୁ କୋଟି ନମସ୍କାର ବି ଯଥେଷ୍ଟ ନୁହେଁ ।

ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କୁ ଲୋକେ 'ମହାତ୍ମା ଗାନ୍ଧୀ' ଡାକିବାରୁ ସେ ଖୁବ୍ ଅସନ୍ତୁଷ୍ଟ ହେଉଥିଲେ । ପଣ୍ଡିତ ନେହ୍ରୁ ସ୍ୱାଧୀନତା ସଂଗ୍ରାମ ସମୟରେ ଛଦ୍ମ ନାମରେ ନିଜେ ନିଜକୁ ସମାଲୋଚନା କରି ବାରମ୍ବାର ଲେଖାମାନ ଖବରକାଗଜରେ ଛାପୁଥିଲେ । ଲେଖାଗୁଡିକର ସାରାଂଶ ଥିଲା - ଲୋକେ 'ଜବାହରଲାଲଙ୍କୁ' ଅନ୍ଧଭାବରେ ଅନୁସରଣ କଲେ ସେ ଦିନେ ଏକଛତ୍ରବାଦୀ ହୋଇଯିବାର ଭୟ ରହିଛି   ଇତ୍ୟାଦି । ରାଜୀବ ଗାନ୍ଧୀ ବମ୍ବେ କଂଗ୍ରେସ ଅଧିବେଶନରେ ଦଳରୁ  ଖୋସାମତିଆ ଓ 'ପାୱାର ବ୍ରୋକର' ମାନଙ୍କୁ ହଟାଇବାକୁ ଆହ୍ୱାନ ଦେଇଥିଲେ । ପ୍ରଧାନମନ୍ତ୍ରୀ ହେବା ପରେ ତାଙ୍କ ପୁଅକୁ ଡବଲ ପ୍ରମୋଶନ ମିଳିଥିବା ଖବର ପାଇଲା ପରେ ଲାଲବାହାଦୁର ଶାସ୍ତ୍ରୀ ପ୍ରମୋଶନ ଅର୍ଡରକୁ ବାତିଲ କରିବାପାଇଁ ନିର୍ଦ୍ଦେଶ ଦେଇଥିଲେ । ସେ ସଦାବେଳେ ଚାଟା, ଚାମଚାମାନଙ୍କୁ ଦୂରରେ ରଖୁଥିଲେ । ଇମର୍ଜେନ୍‌ସି ବେଳେ ଇନ୍ଦିରାଗାନ୍ଧୀ ତାଙ୍କ ଅନୁଗତ ଗଣମାଧ୍ୟମର ବ୍ୟବହାରରେ ଆଶ୍ଚର୍ଯ୍ୟ ହୋଇ କହୁଥିଲେ ମୁଁ ତୁମମାନଙ୍କୁ ଟିକିଏ ନଇଁ ଯିବାକୁ ସିନା କହିଥିଲି, କିନ୍ତୁ ତମେ ସବୁ ଗୁରୁଣ୍ଡିଲ କାହିଁକି ? ଏପରି ଆନୁଗତ୍ୟ  ମୁଁ ଆଶା  କରିନଥିଲି ।

କିମ୍ବଦନ୍ତୀ ଅଛି, ମହାମାନ୍ୟ ଚାଣକ୍ୟ ମହାରାଜା ଚନ୍ଦ୍ରଗୁପ୍ତଙ୍କୁ ତାଙ୍କ ଆଗରେ ଅତି ପ୍ରଶଂସା କରୁଥିବା ଏକ ଚାଟୁକାରର ଉଦ୍ଦେଶ୍ୟ ବୁଝି ପାରି ତତ୍‌କ୍ଷଣାତ୍ ବନ୍ଦୀ କରି ଜେଲ୍‌ଖାନାକୁ ପଠାଇଦେଇଥିଲେ । ପରେ ଜଣାପଡିଲା ଏହି ଚାଟୁକାର ପ୍ରକୃତରେ ଚନ୍ଦ୍ରଗୁପ୍ତଙ୍କୁ ହତ୍ୟା କରିବାପାଇଁ ଷଡଯନ୍ତ୍ରରେ ଲିପ୍ତ ଥିଲା ।

ମଧ୍ୟଯୁଗରେ ରାଜା ମହାରାଜାମାନେ ଦରମା ଦେଇ ଚାଟୁକାର ଓ ଚାମଚା ରଖୁଥିଲେ । ଏମାନେ ଛାମୁଙ୍କ ଶୂଳେଇ ବିଜେ ଓ ପହଡ ଭାଙ୍ଗିବାପାଇଁ ମଧ୍ୟ ସ୍ତୁତିଗାନ କରୁଥିଲେ । ଏପରି ବଡ ବଡ କବି, ଲେଖକମାନେ ରାଜାଙ୍କ ଆଶୀର୍ବାଦପାଇଁ ତାଙ୍କୁ ସ୍ତୁତି କରି ପୁସ୍ତକ, କାବ୍ୟମାନ ରଚନା କରୁଥିଲେ, ପୁରସ୍କାର ପାଉଥିଲେ । ବିଭୀଷଣ, ରାବଣଙ୍କ ସ୍ତୁତିଗାନ କରିବାକୁ ମନା କରିବାରୁ ଲଙ୍କା ଛାଡିବାକୁ ପଡିଥିଲା । ସର୍ପ ରୂପରେ ସଇତାନ (ସାଟନ) ଆଦାମ୍ ଓ ଇଭ୍‌ଙ୍କୁ ନିଜ ଚାଟୁବାଣୀଦ୍ୱାରା ପ୍ରଭାବିତ କରିବା ଯୋଗୁଁ ଉଭୟେ ପାପଗ୍ରସ୍ତ ହୋଇ ପାରାଡାଇଜ୍ ବା ସ୍ୱର୍ଗରୁ ବହିଷ୍କୃତ ହୋଇଥିଲେ । ରୋମ୍ ସେନାବାହିନୀର ସୈନିକମାନେ ଦେଶ ପ୍ରତି ଆନୁଗତ୍ୟକୁ ପ୍ରାଧାନ୍ୟ ନ ଦେଇ ଅପାରଗ ସେନାପତିମାନଙ୍କୁ ଖୁସି କରିବାରେ ବ୍ୟସ୍ତ ରହିବାରୁ ରୋମ୍ ସାମ୍ରାଜ୍ୟ ଭୁଶୁଡି

ପଡିଥିଲା । ସେକ୍ସପିଅର୍ ତାଙ୍କର ଐତିହାସିକ ନାଟକ ଜୁଲିଅସ୍ ସିଜରରେ ବ୍ରୁଟସ୍‌ଙ୍କ ଚରିତ୍ର ବର୍ଣ୍ଣନା କରି ଲେଖିଛନ୍ତି, ବ୍ରୁଟସ୍ ଦେଶ ପ୍ରତି ଆନୁଗତ୍ୟ ଓ ଅନ୍ତରଙ୍ଗ ବନ୍ଧୁ ଜୁଲିଅସ୍‌ଙ୍କ ପ୍ରତି ଆନୁଗତ୍ୟ ମଧ୍ୟରୁ ଦେଶ ପ୍ରତି ଆନୁଗତ୍ୟକୁ ପ୍ରାଧାନ୍ୟ ଦେଇଥିଲେ । ଏହି କାରଣରୁ ସେ ରୋମ୍‌ରେ ଜନପ୍ରିୟ ଥିଲେ । ଦେଶ ପ୍ରତି ଆନୁଗତ୍ୟ ପ୍ରକାଶ ଓ ଏହା ପ୍ରମାଣିତ କରିବାପାଇଁ ବ୍ୟକ୍ତି ବେଳେ ବେଳେ ନିଜର ବନ୍ଧୁ, ସ୍ୱଜନଙ୍କୁ ପରିତ୍ୟାଗ କରିଥାନ୍ତି ।

ପୃଥିବୀର ବିଭିନ୍ନ ଦେଶରେ ନିର୍ବାଚିତ ଜନ ପ୍ରତିନିଧି ଓ ସାମ୍ବିଧାନିକ ପଦପଦବୀରେ ନିଯୁକ୍ତ ବ୍ୟକ୍ତିମାନେ ଶପଥ ଗ୍ରହଣ ବେଳେ ନିଜ ଦେଶ ଓ ସମ୍ବିଧାନ ପ୍ରତି ଆନୁଗତ୍ୟର ଶପଥ ନେଇଥାନ୍ତି, କୌଣସି ବ୍ୟକ୍ତି ବା ପରିବାର ପ୍ରତି ନୁହେଁ । ସେହି ପରି ରାଜନୈତିକ ଦଳର ସଭ୍ୟମାନେ ଦଳ ପ୍ରତି ଆନୁଗତ୍ୟ ପ୍ରକାଶ କରିଥାନ୍ତି । ଦଳ ଓ ଦଳପତିଙ୍କ ପ୍ରତି ଶ୍ରଦ୍ଧା, ସମ୍ମାନ ସ୍ୱାଭାବିକ; କିନ୍ତୁ ଦଳର ଚାଚା, 'ଡାଡି' ବା 'ଗଡ୍ ଫାଦର' ଓ ସେମାନଙ୍କ ପିଲା କବିଲାଙ୍କୁ ଦଳ ଓ ଦେଶଠାରୁ ଉପରେ ରଖି ଚାମଚାଗିରି କରିବା କେବଳ ଅମେରୁଦଣ୍ଡୀ ପ୍ରାଣୀମାନଙ୍କ ପକ୍ଷରେ ସମ୍ଭବ । ଦେଶର ଦୁର୍ଭାଗ୍ୟ ଯେ, ଏବେ ଏହିପରି ଆମେରୁଦଣ୍ଡୀ ପ୍ରାଣୀଙ୍କ ସଂଖ୍ୟା ବୃଦ୍ଧି ହେବାରେ ଲାଗିଛି । ଯୀଶୁଖ୍ରୀଷ୍ଟ କହୁଥିଲେ "ଜଣେ ବ୍ୟକ୍ତି ଏକ ସମୟରେ ଈଶ୍ୱର ଓ ସଇତାନ - ଉଭୟଙ୍କର ଅନୁଗତ ହୋଇପାରିବ ନାହିଁ । (ମାଥ୍ୟୁ ୬.୨୪) । ଆମେ ଏକ ସମୟରେ କେବଳ ଈଶ୍ୱରଙ୍କ ଆନୁଗତ୍ୟ, ପୂଜା ଓ ତାଙ୍କ ସନ୍ତାନମାନଙ୍କର ସେବା କରିପାରିବା ।"

'ସାଇକୋଫାଣ୍ଟ' ବା ତୋଷାମଦିଆମାନଙ୍କର ବିଭିନ୍ନ ରୂପ ଓ ସଂଜ୍ଞା ଅଛି । ଗୋଟିଏ ସଂଜ୍ଞା ଅନୁସାରେ ଏମାନେ ନିଜ ପାଦରେ ନ ଚାଲି ପେଟରେ ଚାଲନ୍ତି ଓ ପେଟ ଓଲଟାଇଲେ ଗୋଇଠା ଖାଆନ୍ତି । ନିଜ ସ୍ୱାର୍ଥ ରକ୍ଷାପାଇଁ ଚାମଚାଗିରିକୁ ଇଂରାଜୀରେ କହନ୍ତି 'ଲଜିକାଲ୍ ଫାଲାସି' । ସକ୍ରେଟିସ୍‌ଙ୍କ ଅନୁସାରେ ତୋଷାମଦି ଏକ ଲୋକ ଦେଖାଣିଆ ପନ୍ଥା, ବନ୍ଧୁତ୍ୱ ଓ ଛଳନା । ସଚ୍ଚୋଟ, ନିଷ୍ଠାପର, ପରିଶ୍ରମୀ, ବୁଦ୍ଧିମାନ୍ ଓ ଦୃଢନିଶ୍ଚୟ ବ୍ୟକ୍ତିଙ୍କୁ ଚାମଚା ଓ ଚାଚାମାନେ ପ୍ରଭାବିତ କରିପାରନ୍ତି ନାହିଁ । ମ୍ୟାନେଜମେଣ୍ଟ ଗୁରୁ ପିଟର୍ ଡ୍ରକର୍ କହନ୍ତି, ଯାହାର ଦୂରଦୃଷ୍ଟି ଓ ସମଦୃଷ୍ଟିର ଅଭାବ, ଜ୍ଞାନ, କୌଶଳ ଓ ପ୍ରଫେସନାଲିଜିମ୍‌ର ଅଭାବ, ବ୍ୟକ୍ତିତ୍ୱ ଓ ନେତୃତ୍ୱ ଦୁର୍ବଳ ସେ ଚାମଚାଗିରି କରି ଉପରକୁ ଉଠିବାପାଇଁ ଚେଷ୍ଟା କରିଥାନ୍ତି । ପ୍ରକୃତ ନେତୃତ୍ୱ ହେଲା - ଉପରିସ୍ଥ ହାକିମଙ୍କୁ ଅତି ପ୍ରଶଂସା ନ କରି କର୍ମଠ ଅଧସ୍ତନ କର୍ମଚାରୀଙ୍କ କାମକୁ ପ୍ରଶଂସା ଓ ଉତ୍ସାହିତ କରିବା ।

'ମୋଟିଭେଟ୍' ବା ଉତ୍ସାହିତ କରିବାର ଆଠଟି ଉପାୟରୁ ଏହା ଗୋଟିଏ ଉପାୟ । ଯେଉଁମାନେ ଚାମଚାଗିରି କରନ୍ତି, ସେମାନଙ୍କୁ ଜଣା, କ'ଣ କହିଲେ ହାକିମଙ୍କୁ, ବଡ଼ ନେତାଙ୍କୁ, ଚାଚାଙ୍କୁ ଭଲ ଲାଗିବ ଏବଂ ସେ ଯାହା କହିବେ ସବୁଥିରେ କେମିତି ହଁ

ମାରିବାକୁ ହେବ । ଚତୁର ପ୍ରେମିକମାନେ ଏ ବିଦ୍ୟାରେ ପାରଙ୍ଗମ । "ଯୋ ତୁମ୍ କୋ ହୋ ପସନ୍ଦ, ୱହି ବାତ୍ କରେଙ୍ଗେ - ତୁମ ଦିନ୍‌କୋ ଅଗର ରାତ୍ କହୋ, ତୋ ରାତ୍ କହେଙ୍ଗେ" । ଆଉ ଏକ ପ୍ରକାର ଖୋସାମତିକୁ କହନ୍ତି - 'ପଏଜନ୍‌ଡ ଫ୍ଲାଟେରି' ବା ବିଷାକ୍ତ ଚାଟୁ । ଏହାକୁ ବିଶ୍ୱାସ କରିବା ଲୋକେ ଖାଲରେ ପଡିଥାନ୍ତି । ଅଭ୍ୟାସଗତ ଭାବରେ ଚାମଚାଗିରି କରୁଥିବା ଲୋକଙ୍କୁ 'କ୍ରନିକସାଇକୋଫାଣ୍ଟ' ବୋଲି କୁହାଯାଏ - ସତେ ଯେମିତି ଏହା ତାଙ୍କ ଡି.ଏନ୍.ଏ.ର ଅଂଶ ।

ଯେଉଁମାନେ ବୁଦ୍ଧିଆ ଚାଟୁକାର, ସେମାନେ ଶିବଙ୍କୁ ସନ୍ତୋଷ କରିବା ପୂର୍ବରୁ ଆଗ ତାଙ୍କ ବାହାନ ନନ୍ଦିଙ୍କୁ ହାତ କରି ନିଅନ୍ତି । ମାଙ୍କୁ ପ୍ରଭାବିତ କରିବାପାଇଁ ତାଙ୍କ ପିଲାଙ୍କୁ ଖୁସି କରିବାକୁ ଚେଷ୍ଟା କରନ୍ତି । ଆଚରଣ ପରିବର୍ତ୍ତନ କରିବାପାଇଁ ଏମାନଙ୍କୁ ଯେତେ ବୁଝେଇଲେ ବୁଝନ୍ତି ନାହିଁ । ତେଣୁ ଚନ୍ଦ୍ରଗୁପ୍ତଙ୍କ ଆଗରେ ଚାମଚାଗିରି କରୁଥିବା ଚାରଣଙ୍କୁ ଚାଣକ୍ୟ ଯେମିତି ଜେଲ୍ ପଠାଇ ଦେଇଥିଲେ ସେହିଭଳି କଲେ ବା ଏପରି ମିଥ୍ୟାଚାଟୁକାରିତାକୁ ଦଣ୍ଡନୀୟ ଅପରାଧ କରିଦେଲେ ହୁଏତ ପରିବର୍ତ୍ତନ ଆସିପାରେ । ଏକ ସଚେତନ, ଶୃଙ୍ଖଳିତ, ସଭ୍ୟ ସମାଜରେ ଚାମଚାଗିରି ଉଧେଇ ପାରେ ନାହିଁ । ଆଜିର ଯୁବପିଢିରୁ ଅନେକେ, ପାଦଚଟାଙ୍କୁ ଘୃଣା କରନ୍ତି । ଏମାନେ ଏକ ନୂତନ ସକାଳ, ନୂତନ ମୂଲ୍ୟବୋଧ ଓ ନୂତନ ସମ୍ମାନଜନକ ଜୀବନର ସନ୍ଧାନରେ ଅଛନ୍ତି । ଚାଚା, ଚାମଚା ଓ ପାଳିତ ପଶୁମାନଙ୍କ ପ୍ରଭାବରୁ ଏମାନଙ୍କୁ ଦୂରରେ ରଖିବାପାଇଁ ଉତ୍ସାହିତ କରିବା ଆମର ଏକ ସାମାଜିକ ଦାୟିତ୍ୱ ।

*୧୦ ଜୁଲାଇ, ୨୦୦୮*



# ବିଚରା ପୁରୁଷ !

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଉଦ୍ଭିଦ ବିଜ୍ଞାନ ବିଭାଗର ଜନୈକ ପ୍ରଫେସରଙ୍କ ବିରୁଦ୍ଧରେ ଜଣେ ଛାତ୍ରୀ ଆଣିଥିବା ଯୌନ ନିର୍ଯ୍ୟାତନା ଅଭିଯୋଗକୁ 'ରାଜ୍ୟ ମହିଳା କମିଶନ' ତଦନ୍ତ କରି ଏହା ଅମୂଳକ ଓ ଏଥିରେ କୌଣସି ସତ୍ୟତା ନାହିଁ ବୋଲି ରିପୋର୍ଟ ଦେଇଛନ୍ତି । ଏହାର ତିନିମାସ ପୂର୍ବେ ନନ୍ଦିଗ୍ରାମ ପଞ୍ଚାୟତ ନିର୍ବାଚନ ବେଳେ ଶାନ୍ତିରକ୍ଷା ଓ ନିର୍ବାଚନରେ ଅବୈଧ ରାଜନୈତିକ ହସ୍ତକ୍ଷେପ ଓ ହିଂସାଚରଣ ରୋକିବା ଦାୟିତ୍ୱରେ କେନ୍ଦ୍ର ସୁରକ୍ଷାବଳର ଡିଜି ଆଲୋକ ରାଜ୍‌ଙ୍କ ବିରୁଦ୍ଧରେ ସିପିଏମ୍ ଦଳର ଦୁଇ ଜଣ ମହିଳା କର୍ମୀ ଯୌନ ନିର୍ଯ୍ୟାତନା ଅଭିଯୋଗ ଆଣିଥିଲେ । ଏହାର କାରଣ ଥିଲା ଆଲୋକ ରାଜ୍ ସ୍ଥାନୀୟ ସିପିଏମ୍ ଲୋକସଭା ସଦସ୍ୟ ଲକ୍ଷ୍ମଣ ସେଠ୍‌ଙ୍କ ଇଙ୍ଗିତ ଓ ଇସାରାରେ କାମ କରିବାକୁ ମନା କରୁଥିଲେ । ଆଲୋକ ରାଜ୍ ନିଜେ ଏହାର ତଦନ୍ତ ଦାବି କରିଥିଲେ ଓ ତଦନ୍ତ ପରେ ସେ ନିର୍ଦ୍ଦୋଷ ଓ ଅଭିଯୋଗ ନିରାଧାର ପ୍ରମାଣିତ ହେଲା ।

ଏପରି ଘଟଣାମାନଙ୍କରୁ ସ୍ପଷ୍ଟ ଯେ ମହିଳାମାନଙ୍କ ସୁରକ୍ଷା ଓ ସମ୍ମାନ ରକ୍ଷାପାଇଁ ଯେଉଁ ଆଇନ୍ ତିଆରି ହୋଇଥିଲା ଏବେ ସେହି ଆଇନ୍‌କୁ ଓ ସେହି ମହିଳାଙ୍କୁ ବ୍ୟବହାର କରି ନିର୍ଦ୍ଦୋଷ ପୁରୁଷଙ୍କୁ ହଇରାଣ ହରକତ କରାଯାଉଛି, ଅପମାନିତ କରାଯାଉଛି । ଏବେ (୭/୮/୨୦୦୮) ଓଡ଼ିଶା ରାଜ୍ୟ ମାନବ ଅଧିକାର କମିଶନ ବିଧାନସଭା ଯୌନ ନିର୍ଯ୍ୟାତନା ମାମଲାରେ ଅଭିଯୁକ୍ତ ପୂର୍ବତନ ବାଚସ୍ପତି ମହେଶ୍ୱର ମହାନ୍ତିଙ୍କୁ ଦୋଷମୁକ୍ତ କରିଛନ୍ତି । କାରଣ କେବଳ ଗାୟତ୍ରୀ ପଣ୍ଡାଙ୍କ ବ୍ୟତୀତ ଆଉ ସବୁ ସାକ୍ଷୀ ଅଭିଯୋଗକୁ ଖଣ୍ଡନ କରିଛନ୍ତି (ସମ୍ବାଦ, ୮-୮-୦୮) କିନ୍ତୁ ପୋଲିସ୍ ତଦନ୍ତ ଚାଲୁ ରହିବ । ପ୍ରକୃତରେ ଏହା ମହେଶ୍ୱରଙ୍କ ନିର୍ଯ୍ୟାତନା ନା ସତରେ ଗାୟତ୍ରୀଙ୍କ ନିର୍ଯ୍ୟାତନା - ଏ ନିଷ୍ପତ୍ତିପାଇଁ ଦୀର୍ଘଦିନ ଅପେକ୍ଷା କରିବାକୁ ପଡ଼ିବ । ମହିଳା ସଶକ୍ତୀକରଣପାଇଁ ସଂଶୋଧିତ ନୂଆ ଆଇନ୍ ଅନୁସାରେ ଏବେ ଯେ କୌଣସି ମହିଳା ଯେ

କୌଣସି ପୁରୁଷଙ୍କ ବିରୋଧରେ ଯୌନ ନିର୍ଯ୍ୟାତନା ଅଭିଯୋଗ ଆଣିଲେ, ପୁରୁଷକୁ ସାବ୍ୟସ୍ତ କରିବାକୁ ହେବ ଯେ ସେ ନିର୍ଦ୍ଦୋଷ । ଯେପରିକି ପୋଲିସ୍ ମାନସିକତାରେ ସବୁ ନାଗରିକ ଚୋର, ସଚ୍ଚୋଟ ହୋଇଥିଲେ ବି ସଂପୃକ୍ତ ବ୍ୟକ୍ତିଙ୍କୁ ପ୍ରମାଣ କରିବାକୁ ହେବ ଯେ ସେ ଚୋର ନୁହଁନ୍ତି । ସେ ପର୍ଯ୍ୟନ୍ତ ନିଜର ସ୍ୱାଭିମାନ ହାଟରେ ପଡ଼ି ଦାଣ୍ଡରେ ଗଡୁଥିବ । ପୁରୁଷ ବିରୋଧୀ ଆଇନ୍ ତିଆରି କରିବାରେ ଅତି ଉତ୍ସାହଦ୍ୱାରା ଆଇନ୍ ଓ ନାରୀ ଉଭୟଙ୍କ ମର୍ଯ୍ୟାଦା ହାନି ହେବ ।

ଯୌତୁକ ଆଇନ୍‌ରେ ବି ସେହି ବ୍ୟବସ୍ଥା । ବିବାହର ବହୁବର୍ଷ ପରେ ବି ଜଣେ ସ୍ତ୍ରୀ, ସ୍ୱାମୀ ଓ ତାଙ୍କ ପରିବାରର ଲୋକଙ୍କ ବିରୁଦ୍ଧରେ ଯୌତୁକଜନିତ ନିର୍ଯ୍ୟାତନା ଅଭିଯୋଗ ଆଣିପାରିବେ । ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ସାଧାରଣ ଦାମ୍ପତ୍ୟ କଳହକୁ ଯୌନ ବା ଯୌତୁକ ନିର୍ଯ୍ୟାତନା ଭାବରେ ଚିତ୍ରଣ କରି ଅଭିଯୋଗମାନ କୋର୍ଟ କଚେରୀକୁ ଆସିଲାଣି । ଏହାଛଡ଼ା ସ୍ୱାଭାବିକ ଯୌନ ସମ୍ପର୍କକୁ 'ରେପ୍' ବା ଧର୍ଷଣ କହି ଜଣେ ସ୍ତ୍ରୀ ସ୍ୱାମୀଙ୍କୁ ହଇରାଣ ହରକତ କରିପାରିବ । ଏବେ ଦେହ ବ୍ୟବସାୟ ସମ୍ପର୍କରେ ଭାରତର ମହିଳା ଓ ଶିଶୁ କଲ୍ୟାଣ ମନ୍ତ୍ରଣାଳୟର ଏକ ଆଇନ୍-ଚିଠାକୁ ମିଳିତ ଜାତିସଂଘ ନାପସନ୍ଦ କରିଛନ୍ତି । ଏହି ପ୍ରସ୍ତାବିତ ଚିଠା-ଆଇନ୍ ଅନୁସାରେ ମହିଳା-ଦେହ ବ୍ୟବସାୟୀ ବା ଯୌନକର୍ମୀ (ସେକ୍‌ସ ୱର୍କର)ଙ୍କ ସହ ସମ୍ପର୍କ ରଖୁଥିବା ପୁରୁଷମାନଙ୍କୁ ଆଗେ ଦୋଷୀ ସାବ୍ୟସ୍ତ କରି ଦଣ୍ଡ ଦିଆଯିବ । ଏହାଦ୍ୱାରା ନିଜ ପେଷାରୁ ମହିଳା ଯୌନକର୍ମୀ ବଞ୍ଚିତ ହେବେ କହି ବିରୋଧ ଆରମ୍ଭକଲେଣି । ସମ୍ପୃକ୍ତ ପୁରୁଷମାନଙ୍କ ଭିତରେ ଭାଳେଣି ପଡିଲାଣି । ଏସିଆରେ ପ୍ରାୟ ଏକ କୋଟି ମହିଳା ଦେହ ବ୍ୟବସାୟୀ ଓ ସାଢ଼େ ସାତ କୋଟି 'ରେଡ୍‌ଲାଇଟ୍ ଭିଜିଟର୍ ପୁରୁଷ' ଅଛନ୍ତି । ଆଇନ୍ ପାଶ୍ ହେଲେ ଏହି ପୁରୁଷମାନେ ଆତ୍ମଗୋପନ କରିବେ ବୋଲି ରାଷ୍ଟ୍ରସଂଘ ଏଡ୍‌ସ ନିୟନ୍ତ୍ରଣ ସଂସ୍ଥାର ମୁଖ୍ୟ ପିଟର୍ ପିଅଟ୍ ଆଶଙ୍କା ପ୍ରକାଶ କରିଛନ୍ତି ।

ଭାରତକୁ ଏକ ପୁରୁଷପ୍ରଧାନ ଦେଶ ବୋଲି କୁହାଯାଏ । ଏଠାରେ କନ୍ୟାଭ୍ରୂଣ ହତ୍ୟା ଏକ ସାମାଜିକ ରୋଗ । କାରଣ ପୁଅ ହେଲେ ବାପ ମାଙ୍କୁ 'ପୁତ୍' ନାମକ ନର୍କରୁ ଉଦ୍ଧାର କରିବ ବୋଲି ଅନ୍ଧବିଶ୍ୱାସ ବ୍ୟାପକ । ପୁଅ ମୁଖାଗ୍ନି ଦେଲେ ବାପ ମା ସିଧା ସ୍ୱର୍ଗକୁ ଯିବେ । ବିଚରା ପୁତ୍ର ! 'ମନୁ' ତ ଏ ବିଷୟରେ ପୁରୁଷପାଇଁ ନିୟମ ତିଆରି କରିଦେଇଛନ୍ତି । ପୁରୁଷ ପିତା ଭାବରେ ପୁତ୍ରୀକୁ ରକ୍ଷା କରିବ, ସ୍ୱାମୀ ଭାବରେ ସ୍ତ୍ରୀକୁ ରକ୍ଷା କରିବ ଓ ପୁତ୍ର ଭାବରେ ବୃଦ୍ଧା ମାତାଙ୍କୁ ରକ୍ଷା କରିବ । ରାକ୍ଷୀ ପୂର୍ଣ୍ଣିମା ଦିନ ଭଉଣୀମାନେ ଭାଇ ହାତରେ ରାକ୍ଷୀ ବାନ୍ଧି ଆଶା କରନ୍ତି ଯେ ପୁରୁଷ ଭାଇ ଭଉଣୀର

ବି ରକ୍ଷା କରିବ । ପୁ'ଣି ଛାଡପତ୍ର ଦେଲା ପରେ ବି ଭୂତ ସ୍ତ୍ରୀର ଭରଣ ପୋଷଣ କରିବ । ବିଚରା ପୁରୁଷ ! ଆଶା କରାଯାଏ ଯେ, ପୁରୁଷ ସ୍ତ୍ରୀ କଥା ଶୁଣିବ ନାହିଁ, ଶୁଣିଲେ ସେ ମାଇଚିଆ 'ହେନ୍‌ପେକ୍‌ଡ'; କାହାକୁ ଡରିବ ନାହିଁ, ନଇଁବ ନାହିଁ, ନଇଁଲେ ଲୋକେ କହିବେ, ସେ ମର୍ଦ୍ଦ ନୁହେଁ, ଚୁଡି ପିନ୍ଧିବା ଦରକାର ।

କାନ୍ଦିବ ନାହିଁ, ମା ଆଗରେ ବି ନୁହେଁ । ଲୋକେ କହିବେ ଦୁର୍ବଳ, ସ୍ତ୍ରୀ ଲୋକ ଭଳି କାନ୍ଦୁଛି । ପିଲା ନ ହେଲେ ନଂପୁସକ, ପ୍ରତିଶୋଧ ନ ନେଲେ କାପୁରୁଷ, ସ୍ତ୍ରୀକୁ ପୋଷି ନ ପାରିଲେ ଅପଦାର୍ଥ, ପିଲାଙ୍କୁ ଖାଇବାକୁ ନ ଦେଇ ପାରିଲେ ଭିକାରୀ, ଅଣ୍ଟାରେ ପଇସା ନଥିଲେ ଅଯୋଗ୍ୟ । ବିଚରା ପୁରୁଷ ! ପୁରୁଷ ହେବାର ଅହଙ୍କାର ଏତେ ଦୁର୍ବଳ ଓ ଅସ୍ଥି ମଜ୍ଜାଗତ ଯେ ସାମାଜିକ 'ପ୍ରେସର୍' ଓ ମୂଲ୍ୟବୋଧ ଏତେ ନକାରାତ୍ମକ ଯେ, ତାହାର ପ୍ରଭାବରେ ସ୍ତ୍ରୀ ଓ କନ୍ୟାଠାରୁ ସାହାଯ୍ୟ ନେବା ଲଜ୍ଜାଜନକ ! ଝିଅ ଘରେ ଖାଇଲେ ରହିଲେ ପାପ । ସ୍ତ୍ରୀ ରୋଜଗାରରେ ଚଳିଲେ ନର୍କ, ସ୍ତ୍ରୀର ଯୋଗ୍ୟତା, ରୋଜଗାର ସ୍ୱାମୀଙ୍କଠାରୁ ଅଧିକ ହେଲେ ପୁରୁଷତ୍ୱରେ ଆଞ୍ଚ ଲାଗେ । ଘର କାମ କରି, ପିଲା ସମ୍ଭାଳି ହାଉସ୍ ହଜବ୍ୟାଣ୍ଡ ହେବାକୁ ଲାଜ ଲାଗେ । ପିଲାଦିନୁ ପୁରୁଷ ମାନସରେ ଏହିସବୁ 'ଭାଇରସ୍' ବା ଭୂତାଣୁ ଭର୍ତ୍ତି କରିଦିଆଯାଇଥାଏ । ଏହି ପୁରୁଷର ସାରା ଜୀବନ ନିଜର ପୁରୁଷତ୍ୱ, ପିତୃତ୍ୱ, ଭ୍ରାତୃତ୍ୱ, ସ୍ୱାମୀତ୍ୱ, ପୁତ୍ରତ୍ୱ ପ୍ରମାଣ କରିବାରେ କଟିଯାଏ ।

ସାଇନ୍‌ସ ଓ ସମାଜର ପୁରୁଷତ୍ୱ ଉପରେ ସିଦ୍ଧାନ୍ତ ଅଲଗା । ସମାଜ କହେ ପୁରୁଷ ସବଳ, ନାରୀ ଅବଳା । ଈଶ୍ୱର ଓ ପ୍ରକୃତିର ଯୋଜନା କିନ୍ତୁ ଅଲଗା । ଏହି ଯୋଜନା ଅନୁସାରେ ପ୍ରତି ହଜାରେ ପୁଅରେ ୯୪୫ରୁ ୯୫୩ ଝିଅ ଜନ୍ମ ହୋଇଥାନ୍ତି କାରଣ ଜନ୍ମର ଏକ ବର୍ଷ ଭିତରେ ଦୁର୍ବଳତା ହେତୁ ପ୍ରାୟ ହଜାରକେ ୫୦ରୁ ୫୫ ପୁଅ ପିଲା ମରିଯାନ୍ତି । ତେଣୁ ଯେ ଜନ୍ମରୁ ଦୁର୍ବଳ ତାକୁ ସବଳ ଓ ଯେ ସବଳା ତାକୁ ଦୁର୍ବଳା ଚିତ୍ର କରି ସମାଜ ପୁରୁଷ ଉପରେ ଅଧିକ ବୋଝ ଓ ଦାୟିତ୍ୱ ଲଦି ଦିଏ । ବିଚରା ପୁରୁଷ ! ଏହାକୁ ସତ ଭାବି ସେ ସେହିଭଳି ନାଟକରେ ବ୍ୟସ୍ତ ରହେ । ସତକଥା ହେଲା, ଏକ ସ୍ୱାଭାବିକ ପରିବେଶରେ ପୁରୁଷ ଅପେକ୍ଷା ସ୍ତ୍ରୀ ଅଧିକ ବର୍ଷ ବଞ୍ଚିଥାନ୍ତି । କନ୍ୟାଶିଶୁ ଅପେକ୍ଷା ପୁତ୍ରଶିଶୁ ମୃତ୍ୟୁହାର ଅଧିକ ହୋଇଥାଏ ।

ପୁରୁଷ କିପରି କ୍ରମେ ଦୁର୍ବଳ ଓ ନିଷ୍ପ୍ରଭ ହୋଇଯାଉଛି, ସେ କଥା ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି ବିଖ୍ୟାତ ଅଷ୍ଟ୍ରେଲୀୟ ନୃତତ୍ତ୍ୱବିତ୍ ମ୍ୟାକ୍ ଆଲିଷ୍ଟାର ତାଙ୍କ ନୂଆ ବହି "ମ୍ୟାନ୍‌ଥ୍ରୋପୋଲୋଜି : ସାଇନ୍‌ସ ଅଫ୍ ଇନାଡିକ୍ୱେଟ୍ ମଡର୍ଣ୍ଣ ମେଲ୍"ରେ ।

ଏହି ଅଧ୍ୟୟନ ଅନୁସାରେ ପ୍ରାକ୍-ଐତିହାସିକ ବୟସ୍କ ପୁରୁଷର ଶକ୍ତି ତୁଳନାରେ ଏବକାର ଅଲିମ୍ପିକ୍ ରେକର୍ଡ ଭାଙ୍ଗୁଥିବା ଯୁବ ପୁରୁଷ ଖେଳାଳୀଙ୍କ ଶକ୍ତି ଯଥେଷ୍ଟ କମ୍ । ଅତୀତରେ କେବଳ ଅଧ୍ୟୟନ ଓ ଗବେଷଣାରତ ପାଶ୍ଚାତ୍ୟ ପୁରୁଷଙ୍କୁ ଥଟ୍ଟାରେ କୁହାଯାଉଥିଲା "ଡେଡ୍ ହ୍ୱାଇଟ୍ ୟୁରୋପିଆନ୍ ମେଲ୍" - ବା ମୃତପ୍ରାୟ ଶ୍ୱେତକାୟ ୟୁରୋପୀୟ ମରଦ । ଏବେ ଜଣା ପଡିଲାଣି ଯେ - ଆଧୁନିକ ଜୀବନଶୈଳୀ ପ୍ରଭାବରେ ପୁରୁଷତ୍ୱର ମୌଳିକ ପରିଚୟ ଶୁକ୍ରାଣୁ ଦ୍ରୁତ ଗତିରେ ହ୍ରାସ ପାଇବାରେ ଲାଗିଛି । ଏଥିପାଇଁ ଚିପା ପୋଷାକ, ମୋବାଇଲ୍ ଫୋନ୍, ଲ୍ୟାପଟପ୍, ବିଷାକ୍ତ ଖାଦ୍ୟ, ଧୂମପାନ, ମଦ୍ୟପାନ ଓ ମୋଟାପାକୁ ଦାୟୀ କରାଯାଉଛି । ଏହା ସାଙ୍ଗକୁ ଏବେ ଇଂଲଣ୍ଡବାସୀ କରିମ୍ ନ୍ୟାୟେର୍ଣିଆ ତାଙ୍କ ଲାବୋରେଟୋରୀରେ ସୃଷ୍ଟି କଲେଣି କୃତ୍ରିମ ଶୁକ୍ରାଣୁ । ଫଳରେ କାଳକ୍ରମେ ପ୍ରଜନନ କ୍ରିୟାରେ ମଧ୍ୟ ପୁରୁଷର ଆବଶ୍ୟକତା ଓ ପ୍ରାଧାନ୍ୟ ଲୋପ ପାଇବ ବୋଲି ଆଶଙ୍କା ହେଲାଣି । ତେଣୁ ପୁରୁଷ ସାବଧାନ୍ ।

ଅନ୍ୟାନ୍ୟ ଗବେଷଣାରୁ ଜଣାପଡେ, ସ୍ତ୍ରୀ ଅପେକ୍ଷା ପୁରୁଷର ସହ୍ୟ ଶକ୍ତି କମ୍ , ଧୈର୍ଯ୍ୟ କମ୍, ଦୂରଦୃଷ୍ଟି କମ୍, ସ୍ନେହ, ଶ୍ରଦ୍ଧା, ତ୍ୟାଗ ଶକ୍ତି କମ୍ । ତେଣୁ ମହିଳା ସଶକ୍ତୀକରଣଠାରୁ ପୁରୁଷ ସଶକ୍ତୀକରଣର ଆବଶ୍ୟକତା ବେଶି । ତେଣୁ ପୁରୁଷଙ୍କ କଥା ବୁଝିବାକୁ ମହିଳା କଲ୍ୟାଣ ଭଳି ପୁରୁଷ କଲ୍ୟାଣ ବିଭାଗ ବା ମନ୍ତ୍ରଣାଳୟର ଆବଶ୍ୟକତା ରହିଛି । ମହିଳା ସ୍ୱାସ୍ଥ୍ୟପାଇଁ ଗାଇନୋକୋଲୋଜି ବିଭାଗ ରହିଛି, ସେମିତି ପୁରୁଷ ସ୍ୱାସ୍ଥ୍ୟ ପାଇଁ ମଧ୍ୟ ସ୍ୱତନ୍ତ୍ର ବିଭାଗ ଓ ଡାକ୍ତର ଦରକାର । ସ୍ୱତନ୍ତ୍ର ଗବେଷଣା ଦରକାର । ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷାନୁଷ୍ଠାନମାନଙ୍କରେ ପୁରୁଷ ଶିକ୍ଷକଙ୍କ ସଂଖ୍ୟା ହ୍ରାସ ଓ ମହିଳା ଶିକ୍ଷୟିତ୍ରୀଙ୍କ ସଂଖ୍ୟା ବୃଦ୍ଧି ଫଳରେ କିଶୋର ଛାତ୍ରମାନଙ୍କ ବ୍ୟକ୍ତିଗତ ଓ ଶାରୀରିକ ସମସ୍ୟା ଶୁଣିବାପାଇଁ ଶିକ୍ଷକ ନାହାନ୍ତି ।

ଏହି ପ୍ରକ୍ରିୟାରେ ଏକବିଂଶ ଶତାବ୍ଦୀ ସରିଲା ବେଳକୁ କେବଳ ଭାରତ ନୁହେଁ ପୃଥିବୀରୁ ବିଭିନ୍ନ କର୍ମକ୍ଷେତ୍ର, ବ୍ୟବସାୟ, ବାଣିଜ୍ୟ, ସେବାକ୍ଷେତ୍ରରୁ ପୁରୁଷମାନେ ହଟିଯିବେ । ଓଡ଼ିଶାରେ ଓ ଭାରତରେ ଝିଅମାନେ ଶିକ୍ଷା-ସଫଳତା କ୍ଷେତ୍ରରୁ ପୁଅମାନଙ୍କୁ ହଟାଇ ସାରିଲେଣି । 'ନାନୋ' ପ୍ରୟୋଗ ବିଦ୍ୟାର ପ୍ରସାର ଫଳରେ ବିଭିନ୍ନ ଯନ୍ତ୍ରପାତି ଅତି କ୍ଷୁଦ୍ର ହେବ ଓ ବାହୁବଳର ଆବଶ୍ୟକତା କମିଯିବ । ନାରୀ ସଶକ୍ତୀକରଣ ଆଇନ୍ ସଂଖ୍ୟା ଯେତେ ବଢିବ, ବିବାହ କରୁଥିବା ପୁରୁଷଙ୍କ ସଂଖ୍ୟା ସେତିକି କମିବ । ସମଲିଙ୍ଗୀ ଯୌନ ସମ୍ପର୍କ ସେତିକି ବଢିବ । ଧର୍ଷଣ ସଂଖ୍ୟା ବଢିବ ଓ ଧର୍ଷଣ-କୈନ୍ଦ୍ରିକ ହତ୍ୟା ସଂଖ୍ୟା ବୃଦ୍ଧି ହେବ । ଆଫ୍ରିକା, ଇଉରୋପ ଓ କାରିବୀୟ ଦେଶର ସମାଜ ବିଜ୍ଞାନୀମାନେ ଏ ବିଷୟରେ ଚିନ୍ତିତ ହୋଇ ପଡିଲେଣି । ଏ ଦେଶମାନଙ୍କରେ ଗୋଟିଏ

ସ୍ତ୍ରୀ ସହ ସାରା ଜୀବନ ବିତାଉଥିବା ପୁରୁଷକୁ ଥଟ୍ଟା ତାମସା କରାଯାଏ, ନାମର୍ଦ୍ଦ ବୋଲି କୁହାଯାଏ ।

ତ୍ରିନିଡାଡ୍ ଓ ଟବାଗୋ, ଉଗାଣ୍ଡା, ଦକ୍ଷିଣ ଆଫ୍ରିକା, ସିଙ୍ଗାପୁର ଭଳି ଦେଶରେ ତଥାକଥିତ ନାରୀ ସଶକ୍ତୀକରଣ ଆନ୍ଦୋଳନକୁ ସମାଜ, ସଭ୍ୟତା, ସଂସ୍କୃତି ଓ ପରିବାରକୁ ଧ୍ୱଂସ କରିବାପାଇଁ ପାଶ୍ଚାତ୍ୟ ଶ୍ୱେତକାୟଙ୍କ ଷଡଯନ୍ତ୍ର ବୋଲି କୁହାଯାଉଛି । ଆମ ଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟରେ 'ଜେଣ୍ଡର ଷ୍ଟଡି' ବିଭାଗମାନ ଖୋଲାଯାଇଛି । ଏମାନେ ପୁରୁଷକୁ ରାକ୍ଷସ ଓ ସ୍ତ୍ରୀକୁ ପରୀ ମାନସିକତାରୁ ଉର୍ଦ୍ଧ୍ୱକୁ ଉଠି ସ୍ତ୍ରୀ-ପୁରୁଷ ପରିବାରରେ ଓ ସମାଜରେ କିଭଳି ଶାନ୍ତି ଓ ଆନନ୍ଦରେ ରହିବେ, ସେ ସମ୍ପର୍କରେ ଅଧିକ ଗବେଷଣା କରନ୍ତୁ । ବିଦେଶୀ ବିଚାର ଅପେକ୍ଷା ଦେଶୀ ଉପାୟ ଅନ୍ୱେଷଣ କରନ୍ତୁ । ଦେଶୀ ସାହିତ୍ୟ ସୃଷ୍ଟି କରନ୍ତୁ । ଯେଉଁ ଦେଶର ଲୋକେ ନିଜ ପରିବାର ଓ ସମାଜକୁ ଧ୍ୱଂସ କରି ସାରିଲେଣି, ସେମାନେ ଆମକୁ ପରିବାର, ଅଧିକାର ଓ ପୁରୁଷ-ସ୍ତ୍ରୀ ସମ୍ପର୍କ ବିଷୟରେ କ'ଣ ଆଉ ଶିଖାଇବେ ? ସ୍ତ୍ରୀ ଶକ୍ତି ସମ୍ପର୍କରେ ଭାରତର ସମୃଦ୍ଧ ସାଂସ୍କୃତିକ ଓ ସାମାଜିକ ପରମ୍ପରାକୁ ପୁନରୁଦ୍ଧାର କରାଯାଇ ତା'ର ପ୍ରଚାର, ପ୍ରସାର, ବିଚାର ଓ ବ୍ୟବହାର କରାଯାଉ ।

*୧୪ ଅଗଷ୍ଟ, ୨୦୦୮*

■ ■ ■

# ନୀତିହୀନ ରାଜନୀତି

ରାଷ୍ଟ୍ରପିତା ଯେଉଁ ସାତୋଟି ପାପରୁ ଦୂରରେ ରହିବାପାଇଁ ଦେଶବାସୀଙ୍କୁ କହିଥିଲେ ସେଥିରୁ ଗୋଟିଏ ହେଲା 'ନୀତିହୀନ ରାଜନୀତି' (ପଲିଟିକ୍ସ ଉଇଦାଉଟ୍ ପ୍ରିନ୍ସିପଲ୍) । ଏବେ ଦେଶର ସର୍ବୋଚ୍ଚ ନ୍ୟାୟାଳୟ କହିଲେ ଯେ ସ୍ୱୟଂ ଈଶ୍ୱର ବି ଏ ଦେଶକୁ ନୀତିହୀନ ରାଜନୀତିରୁ ରକ୍ଷା କରିପାରିବେ ନାହିଁ । କେନ୍ଦ୍ର ଓ ରାଜ୍ୟରେ ଯେଉଁ ନେତା ଓ ବଡ଼ ହାକିମମାନେ କ୍ଷମତାରୁ ଯିବା ପରେ ମଧ୍ୟ ସରକାରୀ ବଙ୍ଗଳା ସବୁ ମାଡି ବସି ଛାଡୁନାହାନ୍ତି, ସେମାନଙ୍କୁ ହଟେଇବାପାଇଁ ସୁପ୍ରିମ୍‌କୋର୍ଟ ସରକାରଙ୍କୁ ଭାରତୀୟ ପିଙ୍ଗଳ କୋଡ୍ ୪୪୧ ଧାରା ସଂଶୋଧନ କରି ଏପରି ନୀତିହୀନ କାର୍ଯ୍ୟକୁ ଦଣ୍ଡନୀୟ ଅପରାଧ ଘୋଷଣା କରିବାକୁ କେନ୍ଦ୍ର ଓ ରାଜ୍ୟ ସରକାରଙ୍କୁ ପରାମର୍ଶ ଦେଇଥିଲେ ।

କିନ୍ତୁ ଏବେ କେନ୍ଦ୍ର ସରକାର କହିଛନ୍ତି ଏହା ସମ୍ଭବପର ନୁହେଁ । କାରଣ ସ୍ପଷ୍ଟ । ନିର୍ବାଚନ ପୂର୍ବରୁ ବିରୁଡି ବସାରେ ହାତ ମାରିବାକୁ କେନ୍ଦ୍ର ବା ରାଜ୍ୟ ସରକାର କେହି ପ୍ରସ୍ତୁତ ନୁହନ୍ତି । ନୀତି, ନିୟମ, ଆଇନ୍, କାନୁନ୍, ଚୁଲିକି ଯାଉ – ଆମେ କ୍ଷମତାରେ ଥାଉ । କୌଣସି ରାଜନୈତିକ ଦଳ ଏ ମାନସିକତାରୁ ଉର୍ଦ୍ଧ୍ୱରେ ନାହାନ୍ତି । ଦେଶର ସର୍ବୋଚ୍ଚ ନୀତି ଓ ବିଧାନ ମନ୍ଦିର ପାର୍ଲାମେଣ୍ଟରେ ମାନ୍ୟବରମାନେ ନୋଟ୍ ବିଡାକୁ ଉଠେଇ ଫୋପାଡିବା ପରେ ଆମ ଗଣତନ୍ତ୍ରକୁ ଅନ୍ୟ ଦେଶମାନେ ଅପେରା ପାର୍ଟି ଓ ବହୁ ଉପଯୋଗୀ ସର୍କସ ବୋଲି କହିଲେଣି । ଏହି ସର୍କସର ସର୍ଦ୍ଦାର ସାମ୍ବିଧାନିକ ପରମ୍ପରା ଓ ନୀତିପ୍ରଶ୍ନ ଉଠେଇବାରୁ ନିଜ ଦଳରୁ ବହିଷ୍କୃତ ହୋଇଛନ୍ତି ଏବଂ ଏହି ସର୍କସ ଖେଳାଳୀମାନଙ୍କର ଘନ ଘନ ମତ ଓ ଦଳ ପରିବର୍ତ୍ତନ ଦେଖି ଅଣୁବୀକ୍ଷଣ ଯନ୍ତ୍ରରେ 'ଅମୋବା'ମାନଙ୍କର ବ୍ୟବହାର ଭଳି ଲାଗେ । କ୍ଷମତା ଓ ଭୋଟ୍‌ପାଇଁ ପୃଥିବୀର ବୃହତ୍ତମ ଗଣତନ୍ତ୍ର ରାଷ୍ଟ୍ରର ପ୍ରଧାନମନ୍ତ୍ରୀ ପଦକୁ ମଧ୍ୟ ନିଲାମିରେ ଲଗାଇବାକୁ

ମାନ୍ୟବରମାନଙ୍କୁ ସଙ୍କୋଚ ଲାଗୁନାହିଁ । ଲୋକସଭାରେ ପ୍ରଶ୍ନ ପଚାରିବାକୁ ଲାଞ୍ଚ, ଭୋଟ୍ ଦେବା ବା ନ ଦେବାପାଇଁ ଲାଞ୍ଚ, ଏମ୍‌ପି. ଲାଡ୍‌ରୁ ଲାଞ୍ଚ ଏପରି ଜାତିଧର୍ମ ସମ୍ପ୍ରଦାୟକୁ ନେଇ ଭୋଟ ବ୍ୟାଙ୍କ ରାଜନୀତି ଆଦି ଦେଖିଥିଲେ ଗାନ୍ଧିଜୀ ନିଶ୍ଚୟ ଦ୍ୱିତୀୟ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ କରିଥାନ୍ତେ ।

୧୯୫୬ ମସିହାରେ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ କ୍ଷମତା ରାଜନୀତିକୁ ଘୃଣା କରି ଇସ୍ତଫା ଦେଇଥିଲେ ଏବଂ କାନ୍ଧରେ ଖଦୀ ଝୁଲା ପକାଇ ପାଦରେ ଚାଲି ଚାଲି ସେକ୍ରେଟାରୀଏଟ୍‌ରୁ ବାହାରି ଯାଇଥିଲେ । ଗାଡି ଓ ବଙ୍ଗଳାକୁ ସେହିଦିନ ଫେରାଇ ଦେଇ ସର୍ବୋଦୟ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେହି ଦିନୁ ପଛକୁ ଫେରି ଚାହିଁ ନାହାନ୍ତି, ବିରୋଧୀ ଦଳରେ ବା ଅସନ୍ତୁଷ୍ଟ ଗୋଷ୍ଠୀରେ ଯୋଗ ଦେଇ ଶାସକଦଳ ବା ସରକାରଙ୍କୁ ଭାଙ୍ଗିବାପାଇଁ ଚେଷ୍ଟା ନକରି ଗରିବ ଓ ଦଳିତଙ୍କ ଶିକ୍ଷା ଓ ଉନ୍ନତି କାର୍ଯ୍ୟରେ ଅବଶିଷ୍ଟ ଜୀବନ ବିତାଇ ଦେଇଥିଲେ ସେ । ତାଙ୍କ ସହଧର୍ମିଣୀ ଓ ସହକର୍ମିଣୀ ସ୍ୱର୍ଗତା ମାଳତୀ ଚୌଧୁରୀ ଦଣ୍ଡି ପଲା ଧରି ଆଶ୍ରମର ପନିପରିବା ବିକି, ବିଦ୍ୟାର୍ଥୀମାନଙ୍କର ଭରଣପୋଷଣପାଇଁ ଅର୍ଥ ସଂଗ୍ରହ କରୁଥିଲେ ।

ଗୋପବନ୍ଧୁ, ମଧୁବାବୁ, ଗୋଦାବରୀଶ, ହରିହର ଓ ତାଙ୍କ ଭଳି ଅନେକ, ସାରା ଜୀବନ ଦେଶପାଇଁ ଉତ୍ସର୍ଗ କରିଥିଲେ । ବିନୋବାଙ୍କର ସ୍ଲୋଗାନ୍ ଥିଲା - ଭୂମିଦାନ, ଗ୍ରାମଦାନ, ଜୀବନଦାନ ଓ ଜୟ ଜଗତ୍ । ସାବରମତୀ ଆଶ୍ରମରେ ସେତେବେଳର ଦିଗ୍‌ଗଜ ନେତାମାନେ ଆଟିକା, ଅଣକ ଧରି ପାଇଖାନା ସଫା କରୁଥିଲେ, ବିନା ପରିଶ୍ରମରେ ଭୋଜନ ମନା ଥିଲା । ପଣ୍ଡିତ ନେହରୁ, ଜୟପ୍ରକାଶ ନାରାୟଣଙ୍କୁ ଭାରତର ଭାବୀ ପ୍ରଧାନମନ୍ତ୍ରୀ ବୋଲି ବାରମ୍ବାର ଘୋଷଣା କଲାପରେ ମଧ୍ୟ ସେ ଏହି ପଦପାଇଁ ଲେଶ ମାତ୍ର ଆଗ୍ରହ ପ୍ରକାଶ କରିନଥିଲେ ।

କ୍ରମାଗତ ଭାବରେ ତିନିଥର ପ୍ରଧାନମନ୍ତ୍ରୀ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ବ୍ରିଟେନ୍‌କୁ ବିଜୟୀ କରାଇଥିବା ପ୍ରଧାନମନ୍ତ୍ରୀ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ଭାରତର ସ୍ୱାଧୀନତାକୁ ପ୍ରଚଣ୍ଡ ଭାବରେ ବିରୋଧ କରିଥିଲେ । ତେଣୁ ବିଶ୍ୱଯୁଦ୍ଧ ପରେ ତାଙ୍କ ଉତ୍ତରାଧିକାରୀ ପ୍ରଧାନମନ୍ତ୍ରୀ ଅଟଲୀଙ୍କ ସମୟରେ ଭାରତର ସ୍ୱାଧୀନତା ଓ କ୍ଷମତା ହସ୍ତାନ୍ତର ସମ୍ଭବପର ହୋଇଥିଲା । ଚର୍ଚ୍ଚିଲ୍ ନିଜ ମତ ଓ ପକ୍ଷ ସମର୍ଥନ କରି କହିଥିଲେ ସ୍ୱାଧୀନତା ପରେ ଭାରତରେ କ୍ଷମତା ଯୁଦ୍ଧ ଓ କନ୍ଦଳ ଆରମ୍ଭ ହୋଇଯିବ ଏବଂ ଦେଶର ଶାସନ ପାଜୀ, ଗୁଣ୍ଡା, ଠକ, ବଦ୍‌ମାସ୍ ଓ ଦର୍ନୀତିଗ୍ରସ୍ତ ଲୋକଙ୍କ ହାତକୁ ଚାଲିଯିବ । ତାଙ୍କର ଏପରି ଉକ୍ତିକୁ ସେତେବେଳେ ଭାରତୀୟମାନେ ପ୍ରବଳ ବିରୋଧ କରିଥିଲେ । ଆଜିର

ନୀତିହୀନ ରାଜନୀତିକୁ ଦେଖି କବର ତଳେ ଥାଇ ଚର୍ଚ୍ଚିଲ୍ ହସୁଥିବେ । କାରଣ ଚର୍ଚ୍ଚିଲ୍‌ଙ୍କ ଉକ୍ତିକୁ ତୀବ୍ର ସମାଲୋଚନା କରୁଥିବା ପଣ୍ଡିତ ଜବାହରଲାଲ ନେହରୁଙ୍କ ଲୋକସଭା ନିର୍ବାଚନ ମଣ୍ଡଳୀକୁ ଯେଉଁ ମାନ୍ୟବର ଏବେ ପ୍ରତିନିଧିତ୍ୱ କରୁଛନ୍ତି - ସେ ଜଣେ 'ହିଷ୍ଟରି ସିଟର୍' ଓ ତାଙ୍କ ନାଁରେ ୪୨ଟି ଅପରାଧର କେଶ୍ ଚାଲିଛି ବୋଲି ପ୍ରକାଶ ପାଇଛି । ଗାନ୍ଧିଜୀଙ୍କ ଜନ୍ମସ୍ଥାନ ପୋର ବନ୍ଦର ଏବେ ସୈତାନଙ୍କ ଆଡ୍‌ଡାସ୍ଥଳ। ଲୋକସଭାରେ ଶତକଡା ୩୦ ଭାଗରୁ ଅଧିକ ସଭ୍ୟଙ୍କ ଅପରାଧ ଇତିହାସ ରହିଛି ।

ଏବେ କର୍ଣ୍ଣାଟକ ବିଧାନସଭାକୁ ନୂତନ ନିର୍ବାଚିତ ୨୨୪ ଜଣ ଏମଏଲ୍‌ଏଙ୍କ ମଧ୍ୟରୁ ୪୦ ଜଣଙ୍କ କ୍ରିମିନାଲ ରେକର୍ଡ ଅଛି । ଏହା ମଧ୍ୟରୁ ୪ ଜଣ ହେଉଛନ୍ତି ଚାରିଭାଇ - ସମସ୍ତେ ଅପରାଧୀ । ସୁବିଧାରେ ଧନ୍ଦା ଚଳାଇବାପାଇଁ ବିଭିନ୍ନ ରାଜନୈତିକ ଦଳରୁ ଟିକଟ ହାସଲ କରି ଚାରି ଭାଇରୁ ତିନି ଭାଇ ନିର୍ବାଚନ ଜିତି ଆସିଛନ୍ତି । ସବୁ ବଡ ପାର୍ଟିରେ ଜଣେ ଲେଖାଏଁ ଅଛନ୍ତି । ବିହାର, ଉତ୍ତରପ୍ରଦେଶ, ରାଜସ୍ଥାନ, ହରିଆନା, ଗୁଜୁରାଟ, ଦିଲ୍ଲୀ ବିଧାନସଭାମାନଙ୍କରେ ଅପରାଧ ଇତିହାସ ଥିବା ସଭ୍ୟଙ୍କ ସଂଖ୍ୟା ଗତ ୨୦ ବର୍ଷ ଭିତରେ ବଢି ଆସୁଥିଲା । କିନ୍ତୁ ଏବେ ସେମାନଙ୍କ ସଂଖ୍ୟା ୨୦୬ ରୁ କମି ୧୬୦ ରେ ପହଞ୍ଚିଛି ବୋଲି ଗର୍ବର ସହ ପ୍ରଚାର ହେଉଛି । ପୂର୍ବତନ କେନ୍ଦ୍ର ରେଳବାଇ ମନ୍ତ୍ରୀ ଜାଫର ସରିଫ୍ ନିଜ ଅପରାଧୀ ଭାଇ ସାମିଉଲ୍ଲାଙ୍କୁ ଟିକଟ ନ ମିଳିବାରୁ କଂଗ୍ରେସ ଦଳ ବିରୁଦ୍ଧରେ ବିଷୋଦ୍‌ଗାର କରିଥିଲେ । କେରଳରେ ପୂବତନ ମୁଖ୍ୟମନ୍ତ୍ରୀ କରୁଣାକରନ୍ ନିଜ ବଦନାମୀ ପୁତ୍ରକୁ କ୍ଷମତାରେ ରଖିବାପାଇଁ ଚେଷ୍ଟା ଜାରି ରଖିଛନ୍ତି ।

କିନ୍ତୁ ଶୁଭ ଖବର ଯେ, ଦେଶରେ ନୀତିହୀନ ରାଜନୀତି ବିରୁଦ୍ଧରେ ପ୍ରତିବାଦର ସ୍ୱର ଦୃଢରୁ ଦୃଢତର ହେଉଛି । 'ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମ୍ୟାନେଜମେଣ୍ଟ'ର କେତେକ ପ୍ରଫେସର ଏକାଠି ହୋଇ 'ଗଣତାନ୍ତ୍ରିକ ସଂସ୍କାର ସଙ୍ଘ' ନାମରେ ଏକ ସଂସ୍ଥା ଗଠନ କରି କାମ ଆରମ୍ଭ କରିଛନ୍ତି । ୧୯୯୯ ମସିହାରେ ଏହି ସଙ୍ଘ ଦିଲ୍ଲୀ ହାଇକୋର୍ଟରେ ଏକ ଜନସ୍ୱାର୍ଥ ମାମଲା ରୁଜୁ କରି ନିବେଦନ କରିଥିଲା ଯେ, ନିର୍ବାଚନ ପୂର୍ବରୁ ପ୍ରତ୍ୟେକ ପ୍ରାର୍ଥୀ ନିଜର ସମ୍ପତ୍ତି ଓ ଆପରାଧିକ ଇତିହାସ ସତ୍ୟପାଠ ମାଧ୍ୟମରେ ଭୋଟରମାନଙ୍କୁ ଜଣାଇବାପାଇଁ ନିର୍ବାଚନ କମିଶନ ନିର୍ଦ୍ଦେଶ ଜାରୀ କରନ୍ତୁ । ହାଇକୋର୍ଟ ଏହା ସପକ୍ଷରେ ରାୟ ଦେବାରୁ ସରକାର ଏହା ବିରୁଦ୍ଧରେ ସୁପ୍ରିମ୍‌କୋର୍ଟରେ ଅପିଲ୍ କରିଥିଲେ । ସୁପ୍ରିମ୍‌କୋର୍ଟ ମଧ୍ୟ ହାଇକୋର୍ଟଙ୍କ ରାୟ କାୟମ ରଖିବାରୁ ୨୧ଟି ରାଜନୈତିକ ଦଳ ଏକାଠି ହୋଇ ଏହି ନିଷ୍ପତ୍ତି ବିରୁଦ୍ଧରେ ଅର୍ଡିନାନ୍‌ସ ବା ଅଧ୍ୟାଦେଶ ଜାରି କରିବାକୁ କେନ୍ଦ୍ର ସରକାର ଉପରେ ପ୍ରବଳ ଚାପ ପକାଇଲେ । ନାଚାର ସରକାର

ଅର୍ଡିନାନ୍ସ ଜାରି ବି କଲେ । କିନ୍ତୁ ସୁପ୍ରିମ୍‌କୋର୍ଟ ଅର୍ଡିନାନ୍‌କୁ ନାକଚ କରି ଦେବାରୁ ନୀତିହୀନ ରାଜନୀତି ସପକ୍ଷରେ ବହୁଦଳୀୟ ମିଳିତ ଉଦ୍ୟମ ଫସର ଫାଟିଗଲା । ଦୁଃଖର କଥା ଯେ, ଅତୀତରେ ଆମ ଦେଶର ବିଚାରାଳୟମାନେ ମାନବାଧିକାର, ସମାଜ ରାଜନୀତିକୁ ବିବାଦ ଓ ଦୁର୍ନୀତିମୁକ୍ତ ରଖିବାପାଇଁ ଯେଉଁ ରାୟ ସବୁ ଦେଇଛନ୍ତି, ସେ ସବୁକୁ ଅର୍ଡିନାନ୍ସ ଜାରି କରି ରଦ୍ଦ କରିବାକୁ ଚେଷ୍ଟା କରାଯାଇଛି । ତଥାକଥିତ ବିଚାରବନ୍ତ ଲୋକେ ଏହା ବିରୁଦ୍ଧରେ ପାଟି ଫିଟାଉ ନାହାନ୍ତି । ତେବେ ଆମର ଗଣମାଧ୍ୟମ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କଯୋଗୁଁ ଏ ସବୁ ସମସ୍ୟା ବେଳେ ବେଳେ ଲୋକଲୋଚନକୁ ଆସୁଛି ।

ଏବେ ଖବର ମିଳିଛି ଯେ ଦେଶର ବାରଶହ ସ୍ୱେଚ୍ଛାସେବୀ ସଂସ୍ଥା 'ଇଲେକ୍‌ସନ୍ ୱାଚ୍' ନାମରେ ଏକ ନୂଆ ସଂସ୍ଥା ଗଢି ନିର୍ବାଚନ ଲଢୁଥିବା ପ୍ରାର୍ଥୀମାନଙ୍କ ଅପରାଧର ରେକର୍ଡ ଭୋଟରମାନଙ୍କ ସାମନାରେ ରଖିବାକୁ ଉଦ୍ୟମ ଆରମ୍ଭ କରିଛନ୍ତି । ନେତା ଓ ଦଳମାନେ ନିର୍ବାଚନରେ କେତେ ଅର୍ଥ ବ୍ୟୟ କରୁଛନ୍ତି ଓ ସେ ଅର୍ଥ କୋଉଠୁ କେମିତି ଆଣୁଛନ୍ତି, ତା ଉପରେ ଏହି ସଂଗଠନ ନଜର ରଖିବ । ଏଥିପାଇଁ ସୂଚନା ଅଧିକାର ଆଇନ୍‌ର ପୂର୍ଣ୍ଣ ଉପଯୋଗ କରାଯିବ । ତେବେ ଏ ସମ୍ପର୍କରେ ବିଭିନ୍ନ ରାଜନୈତିକ ଦଳଙ୍କର ମତ ହେଲା ଯେହେତୁ ଧାରଣା, ବନ୍ଦ, ରାଲି ହେଉଛି ଆଇନସମ୍ମତ ଗଣତାନ୍ତ୍ରିକ ଅଧିକାର ଏବଂ ଏହି ଅଧିକାର ପ୍ରୟୋଗ ବେଳେ ନେତାମାନେ ଗିରଫ ହେଉଛନ୍ତି ଓ ପୋଲିସ୍ ଏହାକୁ ରେକର୍ଡରେ ଅପରାଧ ଭାବରେ ଦର୍ଶାଉଛି, ପ୍ରାର୍ଥୀମାନେ ଏହାଦ୍ୱାରା ଅଯଥା ଅସୁବିଧାରେ ପଡିବେ । କିନ୍ତୁ ସତକଥା ହେଲ, କ୍ଷମତାରେ ଥିବା ଦଳୀୟ ସଭ୍ୟଙ୍କ ପ୍ରଭାବ ଏତେ ବେଶୀ ଯେ ସହଜରେ ତାଙ୍କ ନାଁରେ କେଶ୍ କରିହୁଏ ନାହିଁ । କିଛିଦିନ ତଳେ ଓଡ଼ିଶାର ଜଣେ ବିଧାନସଭା ସଦସ୍ୟ ଜେଲ୍‌ରୁ ଜବରଦସ୍ତ ନିଜ ସମର୍ଥକ କଏଦୀମାନଙ୍କୁ ମୁକ୍ତ କରି ଆଣିଥିବା ଖବର ପ୍ରକାଶ ପାଇଥିଲା ।

ଚାରୋଟି କାରଣରୁ ରାଜନୀତିକ ଦଳମାନେ ରୋଗ୍ ବା ଦାଗୀମାନଙ୍କୁ ନିର୍ବାଚନରେ ପ୍ରାର୍ଥୀ କରାଇଥାନ୍ତି । ସେଗୁଡିକ ହେଲା ବାହୁବଳ, ଧନବଳ ଓ ଶସ୍ତ୍ରବଳ ଏବଂ ଏହି ସବୁ କାରଣରୁ ନିର୍ବାଚନ ଜିତିବାର ଶକ୍ତି । କିନ୍ତୁ ଲୋକଶକ୍ତି ଏକଜୁଟ ହେଲେ ନିଶ୍ଚୟ ଦିନେ ନୀତିହୀନ ରାଜନୀତି ବନ୍ଦ ହେବ । ଏପରିକି ବିଭିନ୍ନ ରାଜନୈତିକ ଦଳରେ ଥିବା ଅନେକ ସଭ୍ୟ ମଧ୍ୟ ଏ ବିଷୟରେ ସ୍ୱର ଉତ୍ତୋଳନ

କଲେଣି । ନିର୍ବାଚନ କମିଶନ ନୂଆ ନୂଆ ଅଙ୍କୁଶ ଲଗାଇଲେଣି । ଏଣୁ ଆଗାମୀ ଦିନମାନଙ୍କରେ ଆମ ଦେଶର ରାଜନୀତି ପୂର୍ବାପେକ୍ଷା ଅଧିକ ନିର୍ମଳ ହେବାର ଆଶା ସଞ୍ଚାର ହେଲାଣି । ସଚ୍ଚୋଟ, ନୀତିବାନ୍ ଲୋକେ ସକ୍ରିୟ ଓ ସଚେତନ ରହିଲେ ଦିନେ ଅବସ୍ଥା ସୁଧୁରିବ ଓ ଲୋକେ ନୀତିବାନ ନେତାଙ୍କପାଇଁ ଗର୍ବ ଅନୁଭବ କରିବେ । ଏ ଦିଗରେ ପ୍ରଥମ ପଦକ୍ଷେପ ହେବ ବିଦ୍ୟାଳୟମାନଙ୍କରେ ନୀତି ଶିକ୍ଷା ଓ ନେତାମାନଙ୍କ ତାଲିମପାଇଁ ନେତୃତ୍ୱ ଓ ନୀତି ବିଦ୍ୟାଳୟ ପ୍ରତିଷ୍ଠା ।

*୨୮ ଅଗଷ୍ଟ, ୨୦୦୮*



# 'ପଛୁଆ' ପ୍ରତିଯୋଗିତା ଓ ଜାତିମୁକ୍ତ 'ଜୀବନ'

ଆଗୁଆ - ପଛୁଆ ରାଜନୀତିରେ ଭାରତୀୟ ଜନତା କ୍ଲାନ୍ତ ଶ୍ରାନ୍ତ ହୋଇ ପଡ଼ିଲେଣି । କେନ୍ଦ୍ର, ରାଜ୍ୟ ମଧ୍ୟରେ, ଦଳ ଦଳ ମଧ୍ୟରେ କଳହ । ଓଡ଼ିଶାରେ କେତେ ଲୋକ ବିପିଏଲ ବା ଦାରିଦ୍ର୍ୟ ସୀମାରେଖା ତଳେ ଅଛନ୍ତି ସେ ନେଇ ଏବେ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ମଧ୍ୟରେ ବିବାଦ ବିତର୍କ ସୃଷ୍ଟିହୋଇଛି । କେନ୍ଦ୍ର ସରକାରଙ୍କ ହିସାବରେ ଓଡ଼ିଶାରେ ୩୪.୬୩ ଲକ୍ଷ ପରିବାର ବିପିଏଲ, ଓଡ଼ିଶା ସରକାର କହୁଛନ୍ତି ୪୪ ଲକ୍ଷ ୯୩ ହଜାର । ଓଡ଼ିଶା ସରକାର ଲୋକଙ୍କୁ କହୁଛନ୍ତି ଆମେ ବହୁତ ଆଗେଇଛୁ, କେନ୍ଦ୍ର ସରକାରଙ୍କୁ କହୁଛନ୍ତି ଆମେ ବହୁତ ପଛରେ । ଏହା ଦେଖି ଅନ୍ୟ ରାଜ୍ୟମାନେ କହିଲେଣି, ଆମ ରାଜ୍ୟର ଦରିଦ୍ର ଓ ପଛୁଆଙ୍କ ସଂଖ୍ୟା ବଢାଅ, ଆଗୁଆଙ୍କ ସଂଖ୍ୟା କମାଅ । ଆମ ଦେଶରେ ପଛୁଆ ହେବାପାଇଁ ପ୍ରତିଯୋଗିତା ଓ ରାଜନୀତି ପ୍ରାୟ ସବୁ ଦଳଙ୍କୁ ଗ୍ରାସ କଲାଣି ।  ସରକାର ଦାରିଦ୍ର୍ୟ ସୀମାରେଖା ଉପରେ ଥିବା ପରିବାରକୁ ବିପିଏଲ ତାଲିକାରେ ସାମିଲ କରି ଯୋଗ୍ୟ ହିତାଧିକାରୀଙ୍କୁ ସେଥିରୁ ବଞ୍ଚିତ କରୁଛନ୍ତି ବୋଲି ଅଭିଯୋଗ ହେଉଛି ।

ଏସବୁ ଦେଖି ପିଲାଦିନେ ଆମ ଗାଁ ସ୍କୁଲର ଏକ ଖେଳକୁଦ ପ୍ରତିଯୋଗିତା କଥା ମନେ ପଡେ । ଦୁଇଟି ପିଲାଙ୍କର ଗୋଟିଏ ଲେଖାଏଁ ଗୋଡ ଏକାଠି ବାନ୍ଧି ଦେଇ କିଏ କେତେ ଶୀଘ୍ର ପଛକୁ ଦୌଡି ପାରିବେ ଦେଖିଲା ପରେ ପ୍ରାଇଜ୍ ଘୋଷଣା କରାଯାଏ । ଥରେ ସ୍କୁଲ ଭିଜିଟ୍‌ରେ ଆସିଥିବା ଇନ୍‌ସପେକ୍ଟର ଆମ ସାଧାରଣ ଜ୍ଞାନ ପରୀକ୍ଷାପାଇଁ ପିଲାଙ୍କୁ ପଚାରିଲେ, ପାଦେ ଆଗକୁ ଓ ଦି ପାଦ ପଛକୁ ପକାଇ ଚାଲିଲେ କେମିତି ଘରୁ

ସ୍କୁଲରେ ପହଞ୍ଚିବ ? ପଛ ସିଟ୍‌ରେ ବସିଥିବା ମାତ୍ର ଜଣେ ଛାତ୍ର ହାତ ଟେକିଲେ ଓ ପଚାରିବାରୁ କହିଲେ ମୁଁ ସ୍କୁଲ ଆଡକୁ ମୁହଁ ନ କରି ଘର ଆଡକୁ ମୁହଁ କରି ପଛୁଆ ଚାଲିଲେ ସ୍କୁଲରେ ପହଞ୍ଚିବି । ଗତ ଏକ ବର୍ଷ ଧରି କନ୍ଧମାଳ ଜିଲ୍ଲାରେ ଯେଉଁ ଅଶାନ୍ତି ଲାଗି ରହିଛି ତା'ର ଏକ ମୁଖ୍ୟ କାରଣ ହେଲା ମିଥ୍ୟା ପ୍ରମାଣ ପତ୍ର ଜରିଆରେ ସମାଜର ସବୁଠାରୁ ପଛୁଆବର୍ଗ ଆଦିବାସୀଙ୍କ ତାଲିକାରେ ନିଜ ନାମକୁ ସାମିଲ କରି ଚାକିରି ଓ ବିଭିନ୍ନ ସୁବିଧା ହାସଲ କରିବା ମନୋବୃତ୍ତି ଓ ଚେଷ୍ଟା । ଏବେ ଉତ୍ତରପ୍ରଦେଶର ମଥୁରା, ଆଗ୍ରା, ଇଟାଓ୍ବା, ଫିରୋଜାବାଦ୍, ଆଲିଗଡ, କାନପୁର ଓ ମୋରାଦାବାଦ ଜିଲ୍ଲାମାନଙ୍କରେ ଜାଲ୍ ସାର୍ଟିଫିକେଟ୍ ଦେଖାଇ ହଜାର ହଜାର ଲୋକ ଅନୁସୂଚିତ ଜାତି ତାଲିକାରେ ନିଜ ନାମ ଚଢାଇଥିବା ରାକେଟ୍‌ରେ ଧରାପଡିଛନ୍ତି ।

ସାଧାରଣ ବର୍ଗ ଲୋକେ ପଛୁଆ ଜାତିରେ ପଶିବାକୁ ଚେଷ୍ଟା, ପଛୁଆ ବର୍ଗଙ୍କର ଅନୁସୂଚିତ ଜାତି ତାଲିକାରେ ଆସିବାକୁ ଉଦ୍ୟମ ଓ ସୀମିତ କ୍ଷେତ୍ରରେ ଅନୁସୂଚିତ ଜାତିର କେତେକ ଲୋକ ଆଦିବାସୀ ତାଲିକାରେ ମିଶିବାକୁ ପ୍ରଚେଷ୍ଟା ଦେଖି ମନେହୁଏ ଆମ ଦେଶରେ ପଛୁଆ ଓ ଅତି ପଛୁଆ ହେବାପାଇଁ ଆଗୁଆଙ୍କ ମଧ୍ୟରେ ପ୍ରବଳ ପ୍ରତିଯୋଗିତା ଆରମ୍ଭ ହୋଇଗଲାଣି । ଉଦାହରଣ ସ୍ୱରୂପ, ରାଜସ୍ଥାନ ଓ ଉତ୍ତର ଭାରତରେ ବସବାସ କରୁଥିବା ଗୁର୍ଜରମାନେ ନିଜକୁ ଆଦିବାସୀ ତାଲିକାରେ ମିଶେଇବା ପାଇଁ ଆନ୍ଦୋଳନ ଓ ଜୀବନଦାନ କଲେଣି । ମିନା ସମ୍ପ୍ରଦାୟର ଲୋକେ ଏହା ବିରୋଧରେ ସଂଗ୍ରାମ ଆରମ୍ଭ କରିଛନ୍ତି । ସେହିପରି ଯେଉଁ ଦଳିତମାନେ ଖ୍ରୀଷ୍ଟିୟାନ୍ ହୋଇଯାଇଛନ୍ତି, ସେମାନଙ୍କୁ ଦଳିତମାନଙ୍କପାଇଁ ଉଦ୍ଦିଷ୍ଟ ସଂରକ୍ଷଣର ସୁଯୋଗ ଦେବା ପାଇଁ ଦୀର୍ଘଦିନ ଧରି ଦାବି ହୋଇ ଆସୁଛି । ଏହା ଦେଖି ଦଳିତ ମୁସଲିମ୍‌ମାନେ ମଧ୍ଯ ସେପରି ସ୍ୱୀକୃତି ଓ ସୁଯୋଗପାଇଁ ରାଜନୈତିକ ଚାପ ସୃଷ୍ଟି କଲେଣି । ପ୍ରକୃତ ଦଳିତ ବର୍ଗର ଅନେକ ଲୋକ ଏହାଦ୍ୱାରା ସେମାନଙ୍କପାଇଁ ଉଦ୍ଦିଷ୍ଟ ସଂରକ୍ଷଣ ବ୍ୟବସ୍ଥା ସଙ୍କୁଚିତ ହୋଇଯିବା ଆଶଙ୍କାରେ ପ୍ରତିବାଦର ସ୍ୱର ଉଠାଇଲେଣି । ଏବେ ଆନ୍ଧ୍ରପ୍ରଦେଶର ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀଙ୍କୁ ଭେଟି ଅନୁସୂଚିତ ଜାତି ତାଲିକାରେ ଥିବା ବିଭିନ୍ନ ଉପଜାତିଙ୍କପାଇଁ ଅଲଗା ଅଲଗା ସଂରକ୍ଷଣ ବ୍ୟବସ୍ଥା କରିବାପାଇଁ ସମ୍ବିଧାନ ସଂଶୋଧନ ସକାଶେ ପ୍ରସ୍ତାବ ରଖିଛନ୍ତି । ଆନ୍ଧ୍ରପ୍ରଦେଶରେ ଏକ ନିର୍ଦ୍ଦିଷ୍ଟ ଦଳିତ ଉପଜାତି ସଂରକ୍ଷଣର ଅଧିକାଂଶ ସୁବିଧା ସୁଯୋଗ ପକେଟସ୍ଥ କରୁଥିବାରୁ ସେଠାରେ ଏଥିରୁ ବଞ୍ଚିତ ଅନ୍ୟ ବର୍ଗ ଓ ଉପଜାତିଙ୍କ ମଧରେ ଅସନ୍ତୋଷ ବ୍ୟାପିଲାଣି । କର୍ଣ୍ଣାଟକ, ତାମିଲନାଡୁ, ବିହାର, ଉତ୍ତର ପ୍ରଦେଶ ଓ ମହାରାଷ୍ଟ୍ରରେ ବିଭିନ୍ନ ଉପଜାତିଙ୍କପାଇଁ ଅଲଗା ସଂରକ୍ଷଣ ଦାବି

କ୍ରମେ ବଳବତ୍ତର ହେଉଛି । ତଥାକଥିତ 'ଉଚ୍ଚଜାତି'ମାନେ ପଛୁଆ ଜାତିରେ ମିଶିବା ପାଇଁ ରାଜନୈତିକ ଦଳମାନଙ୍କ ପଛରେ ଲାଗିବାରୁ ଏବେ 'ଉଚ୍ଚଜାତି'ଙ୍କ ଭୋଟ୍ ହାତେଇବାପାଇଁ ସଂରକ୍ଷଣ ସ୍ଲୋଗାନ୍ ଦିଆଗଲାଣି । ଏହି ପ୍ରକ୍ରିୟା ଜାରି ରହିଲେ ଦିନେ ସବୁ ଚାକିରି ବାକିରି ଦେଶର ୫ ହଜାରରୁ ଅଧିକ ଜାତି ଉପଜାତି ମଧ୍ୟରେ ବାଣ୍ଟି ଦେବାକୁ ପଡିବ । ସଂରକ୍ଷଣ ସପକ୍ଷ, ବିପକ୍ଷ ଆନ୍ଦୋଳନ ବନ୍ଦ ହୋଇ ବଣ୍ଟାବଣ୍ଟି ହିସାବ ଆରମ୍ଭ ହୋଇଯିବ । କାହା ଭାଗରେ କେତେ ଟୁକୁଡା ସେ ନେଇ ମରାମରି, କୋର୍ଟ କଚେରୀ ହେବ ।

ପୁରୀରେ ଯେତେବେଳେ ଗରିବ ବ୍ରାହ୍ମଣ ପିଲାମାନଙ୍କ ପାଠପଢାପାଇଁ ବ୍ରାହ୍ମଣ ସମିତି ହେଲା, ତାହା ଶୁଣି ଗୋପବନ୍ଧୁ ମର୍ମାହତ ହୋଇଥିଲେ । ବାବା ସାହେବ ଆମ୍ବେଦକର ଯେତେବେଳେ ଔରଙ୍ଗାବାଦରେ ଏକ ମହାବିଦ୍ୟାଳୟ (ପରେ ହେଲା ମରାଠାୱାଡା ବିଶ୍ୱବିଦ୍ୟାଳୟ) ସ୍ଥାପନ କଲେ ସେତେବେଳେ କେବଳ ଦଳିତ ବର୍ଗରୁ ଅଧ୍ୟାପକ ବାଛିବାପାଇଁ ତାଙ୍କ ଉପରେ ଚାପ ଦିଆଯାଇଥିଲା । ଏହାକୁ ପ୍ରତ୍ୟାଖ୍ୟାନ କରି ସେ କହିଥିଲେ, ମୋ କଲେଜପାଇଁ ଭଲ ଅଧ୍ୟାପକ ଦରକାର - ସେ ଯେଉଁ ଜାତିର ହୁଅନ୍ତୁ । ଅସ୍ପୃଶ୍ୟତା ଓ ଜାତିପ୍ରଥା ଲୋପ କରିବାପାଇଁ ଓ ଉଚ୍ଚବର୍ଗଙ୍କ ଅହଙ୍କାର ଭାଙ୍ଗିବା ପାଇଁ ମହାତ୍ମାଗାନ୍ଧୀ ସାବରମତୀ ଆଶ୍ରମରେ ଦୁଇ ଜଣ ଦଳିତଙ୍କୁ ରୋଷେଇ ଦାୟିତ୍ୱ ଦେଇଥିଲେ । ଜଗଜ୍ଜୀବନ ରାମଙ୍କୁ ନିଜର ମାନସପୁତ୍ର ବୋଲି କହିଥିଲେ, ଦଳିତ ବସ୍ତିରେ ରାତ୍ରି ଯାପନ କରୁଥିଲେ ଏବଂ ପୁନର୍ଜନ୍ମ ହେଲେ ଦଳିତ ହୋଇ ଜନ୍ମ ନେବାକୁ ଇଚ୍ଛା ପ୍ରକାଶ କରିଥିଲେ ।

ସମାଜକୁ ଜାତିବାଦର ବିଷ ସଂକ୍ରମଣ ଓ ଜାତିର ରାଜନୈତିକୀକରଣ ପୂର୍ବରୁ ବିଭିନ୍ନ ଜାତିର ପଛୁଆ ବର୍ଗର ଲୋକେ ଆଗୁଆ ହେବାକୁ ଚେଷ୍ଟା କରୁଥିଲେ । ପ୍ରସିଦ୍ଧ ସମାଜଶାସ୍ତ୍ରୀ ଏମ୍.ଏନ୍.ଶ୍ରୀନିବାସ ଏହି ପ୍ରକ୍ରିୟାକୁ କହୁଥିଲେ 'ସଂସ୍କୃତୀକରଣ' । ଏହି ପ୍ରକ୍ରିୟାରେ ରାଜପୁତମାନେ କ୍ଷତ୍ରିୟ ହୋଇଗଲେ । ହରିଆନା, ପଶ୍ଚିମ-ଉତ୍ତର ପ୍ରଦେଶ, ବିହାର, ଓଡ଼ିଶାର ଜାଠ, ପାଇକ, ଖଣ୍ଡାୟତ ଭଳି ଅନେକ ଗୋଷ୍ଠୀ କ୍ଷତ୍ରିୟ ଭାବରେ ସ୍ୱୀକୃତି ପାଇବାକୁ ଆନ୍ଦୋଳନ ଆରମ୍ଭ କରିଥିଲେ । କିନ୍ତୁ ଜାତି ଶିଡିର ପାହାଚ ଚଢି ଉପରକୁ ଉଠିବା ପ୍ରକ୍ରିୟା ବନ୍ଦ ହୋଇ ଏବେ ତଳକୁ ଏବଂ ସମ୍ଭବ ହେଲେ ସବାତଳକୁ ଓହ୍ଲାଇବା ଅଧିକ ଲାଭଦାୟକ ହେଲା । ଏବଂ ସବୁଠାରୁ ଦୁଃଖର କଥା, ଯେଉଁମାନେ ଏଥିରୁ ଫାଇଦା ନେଲେ, ସେମାନେ ତାଙ୍କ ତଳେ ଥିବା ଲୋକଙ୍କୁ ବାଟ ଛାଡିଲେ ନାହିଁ । ଥରେ ରେଳଗାଡିରେ ଚଢିଗଲା ପରେ ଅନ୍ୟମାନଙ୍କପାଇଁ ଦୁଆରଖୋଲା ରଖିବାକୁ ରାଜି ହେଲେ ନାହିଁ । ସୁପ୍ରିମ୍‌କୋର୍ଟ ତା ନାଁ ଦେଲେ 'କ୍ରିମିଲେୟର' ବା

କ୍ଷୀର ଉପର ସର । ଏହା ପୂର୍ବରୁ ଉଚ୍ଚବର୍ଗର ଲୋକେ ବି ଏମିତି 'କ୍ରିମିଲେୟର' ହୋଇ ରହିଥିଲେ ତାଙ୍କ ତଳ ବର୍ଗଙ୍କୁ ବାଟ ଛାଡୁନଥିଲେ । ମାଲେସିଆରେ ଚୀଇନିଜ୍ ଓ ଶ୍ରୀଲଙ୍କାରେ ତାମିଲ୍‌ମାନେ ଥିଲେ ଏଭଳି ଏକ 'କ୍ରିମିଲେୟର' । ଏହି 'ସର'କୁ କାଢିନେଲା ପରେ ପୁଣି ସେଇ କ୍ଷୀରରେ ନୂଆ ସର ପଡିଗଲାଣି । ବିଭିନ୍ନ ଜାତିର ବିଜ୍ଞ ଲୋକେ ଏହି ବିଷୟରେ ନୀରବ ରହୁଛନ୍ତି, ନିଜ ସଂଜ୍ଞାରୁ ଉପରକୁ ଉଠି ଦେଶ ଓ ସମାଜର ସମୂହ ସ୍ୱାର୍ଥ ଦେଖି ପାରୁନାହାନ୍ତି । ଆମ ଦୃଷ୍ଟି, ଜାତିର ପରଳ ଓ ଧର୍ମର ମୋତିଆବିନ୍ଦୁଦ୍ୱାରା ଏବେ ଆକ୍ରାନ୍ତ ।

୧୯୮୦ ମସିହାରେ ଓଡ଼ିଶାରେ ଏକ ଜାତିମୁକ୍ତ ସମାଜ ଗଠନପାଇଁ ଆନ୍ଦୋଳନ ଆରମ୍ଭ ହୋଇଥିଲା । ସେତିକିବେଳେ ମୁଁ ଓ କେତେକ ସମଭାବାପନ୍ନ ବନ୍ଧୁ ନିଜ ନାମରୁ ଜାତିସୂଚକ ଲାଞ୍ଜଟି କାଟି ଦେଇଥିଲୁ । ଏହି ପ୍ରକ୍ରିୟାକୁ ଦୃଢ କରିବାପାଇଁ ନାଁ ଲେଖା ବେଳେ କୌଣସି ଛାତ୍ର ଛାତ୍ରୀଙ୍କର ଜାତିସୂଚକ ସରନେମ୍ ବା ସାଙ୍ଗିଆ ନ ରଖିବାକୁ ସେତେବେଳର ମୁଖ୍ୟମନ୍ତ୍ରୀଙ୍କୁ ଏକ ସର୍କୁଲାରପାଇଁ ଆବେଦନ କରାଯାଇଥିଲା । ପରେ ଓଡ଼ିଶାରେ ଏହି ଆନ୍ଦୋଳନ ମଉଳିଗଲା । କିନ୍ତୁ ଏବେ ସୁଦୂର କେରଳରେ ସେହି ପ୍ରକ୍ରିୟାଟି ଆରମ୍ଭ ହୋଇଛି । ପାଠ୍ୟକ୍ରମରେ ଏହି ବିଚାରକୁ ସ୍ଥାନ ଦିଆଯାଇଛି । ଅଠାବନ ଶବ୍ଦବିଶିଷ୍ଟ ଏହି ପାଠ୍ୟବସ୍ତୁର ନାଁ ହେଲା; 'ଜାତିମୁକ୍ତ ଜୀବନ' । ବିଷୟଟି ଏପରି : ଆଡମିଶନ୍‌ପାଇଁ ବାପା ଅନୱାର ସରିଫ୍ ଓ ମା ଲକ୍ଷ୍ମୀଦେବୀ ପୁଅ 'ଜୀବନ'କୁ ନେଇ ସ୍କୁଲ ଆସିଛନ୍ତି । ପ୍ରଧାନ ଶିକ୍ଷକ ବାପା, ମାଙ୍କୁ ପଚାରିଲେ ଆଡ୍‌ମିଶନ୍ ରେଜିଷ୍ଟରରେ 'ଜୀବନ'ର ଧର୍ମ କ'ଣ ଲେଖିବି ? ଉଭୟ ଜବାବ ଦେଲେ କୌଣସି ଧର୍ମ ନୁହେଁ । ପ୍ରଧାନଶିକ୍ଷକ ଚିନ୍ତିତ ଓ ଗମ୍ଭୀର ହୋଇ ପଚାରିଲେ, ପିଲାଟି ଯେତେବେଳେ ବଡ ହୋଇଯିବ ଓ ଧର୍ମର ଆବଶ୍ୟକତା ଅନୁଭବ କରିବ ? ଅନୱାର ସରିଫ୍ ଓ ଲକ୍ଷ୍ମୀଦେବୀ ସେମିତି ଗମ୍ଭୀର ସ୍ୱରରେ ଉତ୍ତର ଦେଇ କହିଲେ, ସେତେବେଳେ ଜୀବନ ନିଜ ଇଚ୍ଛାନୁସାରେ ନିଜପାଇଁ ଧର୍ମ ବାଛି ପାରିବ । ତା'ର କର୍ମ ହେବ ତା'ର ଜାତି ଏବଂ ଯେତେବେଳେ କର୍ମ ପରିବର୍ତ୍ତନ ହେବ, ଜାତି ବଦଳିଯିବ ଆପେ ଆପେ ଓ କ୍ରମେ ଲୋପ ପାଇଯିବ ।

ଏହି ପ୍ରକ୍ରିୟାରେ ସର୍ଭିସ୍ ଓ ପ୍ରଫେସନାଲ୍ ମହାସଙ୍ଘ ହୋଇଯିବେ ନୂଆ ନୂଆ ମହାଜାତି । ଭାରତରେ ଏବେ ଉଚ୍ଚ ଶିକ୍ଷାପ୍ରାପ୍ତ ପ୍ରାୟ ଦଶଭାଗ ଲୋକେ ଅନ୍ୟ ଜାତି ଓ ଅନ୍ୟ ଧର୍ମରେ ବିବାହ କଲେଣି । ତେଣୁ ଆଶା କରାଯାଉଛି ଏକବିଂଶ ଶତାବ୍ଦୀର ଶେଷଭାଗ ସୁଦ୍ଧା ଭାରତରୁ ଜାତିପ୍ରଥା ମନକୁ ମନ ଲୋପ ପାଇଯିବ ଓ ବିଭିନ୍ନ

ଧର୍ମାବଲମ୍ବୀଙ୍କ ମଧ୍ୟରେ ଦୂରତା କମିଯିବ । ଦେଶ ବିକଶିତ ହୋଇଗଲେ ଓ ସବୁ ବର୍ଗ ଶିକ୍ଷିତ ଓ ସ୍ୱଚ୍ଛଳ ହୋଇଗଲେ ଜାତି କୈନ୍ଦ୍ରିକ ସଂରକ୍ଷଣପାଇଁ ରାଜନୀତିକ ଆନ୍ଦୋଳନ, ବିଭାଜନ ବନ୍ଦ ହୋଇଯିବ । ରାଜନୀତି ପଶାପାଲିରେ ଜାତି, ଧର୍ମ ଗୋଟି ଚଳାଇବା କ୍ରମେ କଷ୍ଟକର ହେବ । ଗୋପବନ୍ଧୁ, ଗାନ୍ଧୀ ଓ ଆମ୍ବେଦକରଙ୍କ ସ୍ୱପ୍ନ ସାକାର ହେବ । ବର୍ଣ୍ଣ ବଦଳରେ ପୁଣି କର୍ମ ତା'ର ପ୍ରାଧାନ୍ୟ ଫେରି ପାଇବ । ଜାତି ଓ ଧର୍ମ ଚଷମା ଲଗାଇ ବ୍ୟକ୍ତିର ଗୁଣ ଓ ଯୋଗ୍ୟତା ପରଖିବାକୁ ପଡିବ ନାହିଁ । ଜୀବନ ଜାତିମୁକ୍ତ ହେଲେ ପଛୁଆ ତାଲିକାରେ ନାମ ଲେଖାଇବାପାଇଁ ପ୍ରତିଯୋଗିତା ବନ୍ଦ ହୋଇଯିବ । ସବୁ ଲୋକେ ସ୍ୱଚ୍ଛଳ ଓ ସମ୍ମାନିତ ଜୀବନଯାପନ କରିବେ । ଜାତି କଳହର ଚେର ଉପୁଡିଯିବ ।

■ ■ ■

*୩୧ ଜୁଲାଇ, ୨୦୦୮*

# 'ଧର୍ମ'ମୋହମୁକ୍ତ ମାନବୀୟ ସମାଜ ସପକ୍ଷରେ

ଧର୍ମ ନାମରେ 'ରାସ୍ତାରୋକୋ' ରେଳଗାଡି, ବସ୍‌ପୋଡି, ବନ୍ଦ, ଚକାଜାମ୍, ଶୋଭାଯାତ୍ରା, ସାମ୍ପ୍ରଦାୟିକ ଦଙ୍ଗା ଆମ ଦେଶରେ ଲାଗି ରହିଛି । ଡେରା ସଚ୍ଚାସୌଦା ଓ ଶିଖ୍ ସମ୍ପ୍ରଦାୟ ମଧ୍ୟରେ ଏବେ ଚାଲିଥିବା ବିବାଦ ତା'ର ସଦ୍ୟତମ ନମୁନା । ପ୍ରାୟ ପ୍ରତି ତୃତୀୟ ଦିନ ଆମ ଗଣମାଧ୍ୟମରେ ବିଭିନ୍ନ ଧର୍ମାବଲମ୍ବୀଙ୍କ ମଧ୍ୟରେ ବିବାଦ ଓ ହିଂସାର ଖବର ବାହାରେ । ଏକ ବହୁଧର୍ମୀ ଓ ପନ୍ଥ ନିରପେକ୍ଷ ଦେଶରେ ଏଭଳି ଘଟଣାମାନ ଦେଖି ମୁଣ୍ଡ ତଳକୁ ନଇଁଯାଏ କ୍ଷୋଭ ଓ ଲଜ୍ଜାରେ । ତସଲିମା ନସରିନ୍‌ଙ୍କ 'ଲଜ୍ଜା' ପଢିଲା ପରେ ବି ଧର୍ମ ଠିକାଦାରମାନଙ୍କୁ ଲାଜ ମାଡୁନାହିଁ । ମଧ୍ୟଯୁଗରେ ଧର୍ମ ଯୁଦ୍ଧ, କ୍ରୁସେଡ, ଜିହାଦ ନାମରେ ଲକ୍ଷ ଲକ୍ଷ ନିରୀହ ଲୋକ ବଳି ପଡିଥିଲେ । ଏହାର ନେତୃତ୍ୱ ନେଇଥିଲେ ଧର୍ମଗୁରୁମାନେ । ଏକାଦଶରୁ ପଞ୍ଚଦଶ ଶତାବ୍ଦୀ ମଧ୍ୟରେ ଆଠଟି ଧର୍ମ ମହାଯୁଦ୍ଧ ଘଟିଥିଲା । ୧୦୯୬ ମସିହାରେ ପ୍ରଥମ ଧର୍ମଯୁଦ୍ଧରେ ୧୨୦୦୦ ଇହୁଦୀ ବଳି ପଡିଥିଲେ । ଏହା ପରେ ପରେ ସ୍ପାନିଆର୍ଡ ଓ ମୁର୍‌ଙ୍କ ମଧ୍ୟରେ, ଉତ୍ତର ଇଉରୋପୀୟ ଓ ପ୍ରୁଷିଆ, ଲିଥୁଆନିଆ ମଧ୍ୟରେ, ହେରାକ୍ଲିସ୍ ଓ ପାରସ୍ୟ ମଧ୍ୟରେ, ମୁସଲିମ୍, ଖ୍ରୀଷ୍ଟୟାନ୍ ଓ ଇହୁଦୀଙ୍କ ମଧ୍ୟରେ ଧର୍ମ ଓ ସଂସ୍କୃତି ରକ୍ଷା ନାମରେ ବହୁବାର ଯୁଦ୍ଧ ଓ ଗଣହତ୍ୟା ଲାଗି ରହିଥିଲା ।

ଧାର୍ମିକ ଅସହିଷ୍ଣୁତା ଓ ହିଂସା ଏତେ ପ୍ରବଳ ଥିଲା ଯେ ୟୁରୋପର ଜଣେ ଧର୍ମଯାଜକ ସେଣ୍ଟ ଉଇଲ୍‌ବାଲ୍‌ଡ ତୀର୍ଥଯାତ୍ରାରେ ଜେରୁଜେଲମ୍‌ରେ ପହଞ୍ଚିବାକୁ ୭ ବର୍ଷ ଲାଗିଥିଲା - ୭୨୨ ମସିହାରୁ ୭୨୯ ମସିହା ପର୍ଯ୍ୟନ୍ତ । ସେତେବେଳେ ଧର୍ମ ବିଶ୍ୱାସକୁ ବଞ୍ଚାଇବାକୁ ଲକ୍ଷ ଲକ୍ଷ ଲୋକ ନିଜ ଭିଟାମାଟି ଛାଡି ପଳାଇଥିଲେ । ଏହି

କାରଣରୁ ଜୋରୋଷ୍ଟ୍ରିୟାନ୍ (ପାର୍ଶି) ମାନେ ପାରସ୍ୟ ଛାଡି ଭାରତ ପଳାଇ ଆସିଥିଲେ, ଦଲାଇଲାମା ଓ ତାଙ୍କ ଅନୁଗାମୀ ତିବ୍ବତ ଛାଡି ଭାରତ ପଳାଇ ଆସିଥିଲେ । ଇଣ୍ଡୋନେସିଆର ହିନ୍ଦୁମାନେ ବାଲିଦ୍ୱୀପକୁ ପଳାଇ ଯାଇ ଆତ୍ମରକ୍ଷା କରିଥିଲେ । ଯୀଶୁଙ୍କୁ କ୍ରୁଶବିଦ୍ଧ କରାଯାଇଥିଲା । ବାଲ୍ୟ କାଳରୁ କୃଷ୍ଣଙ୍କ ଉପରେ କଂସ ବାରମ୍ବାର ଆକ୍ରମଣ କରିଥିଲା । ଗୌତମ ବୁଦ୍ଧ ଓ ଆଦି ଶଙ୍କରାଚାର୍ଯ୍ୟଙ୍କ ଉପରେ ବାରମ୍ବାର ଆକ୍ରମଣ କରାଯାଇଥିଲା । କୁଳଗୁରୁ ଋଷି ବଶିଷ୍ଠ ହିଂସାର ଶିକାର ହୋଇଥିଲେ । ମୁନି, ଋଷିମାନଙ୍କୁ ରାକ୍ଷସ ପ୍ରକୃତିର ଲୋକେ ଧର୍ମାନୁଷ୍ଠାନ କରାଇ ଦେଉନଥିଲେ । ବହୁ ବୈଜ୍ଞାନିକ ଧର୍ମଗୁରୁଙ୍କଦ୍ୱାରା ଦଣ୍ଡିତ ହେବା ଘଟଣା ବିଂଶ ଶତାବ୍ଦୀରେ ବି ଘଟୁଥିଲା । ଏବେ ଧର୍ମର ଅର୍ଥ ହେଲାଣି ଗୋଳା ବାରୁଦ, ବନ୍ଧୁକ, ବୋମା, ଛୁରୀ, ଫତୁଆ ଓ ଆତଙ୍କ ।

ଆମ ଦେଶରେ ବିଭିନ୍ନ ଧର୍ମ ସମ୍ପ୍ରଦାୟ, ପନ୍ଥମାନଙ୍କ ବିଷୟରେ ପାଠ୍ୟ ପୁସ୍ତକ ନୀରବ ରହିବାରୁ ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ଭାବନା ସମ୍ପର୍କରେ ନାଗରିକମାନଙ୍କର ଜ୍ଞାନ ଅସମ୍ପୂର୍ଣ୍ଣ ଥାଏ । ଗାଈ, ଘୁଷୁରୀଙ୍କୁ କେନ୍ଦ୍ର କରି ମଣିଷମାନେ ମରାମରି ହୁଅନ୍ତି, ଦଙ୍ଗା ହୁଏ । 'ଧର୍ମ ନିରପେକ୍ଷତା' ଶବ୍ଦ ନେଇ ବି ଦେଶରେ ବିବାଦ ରହିଛି । ଧର୍ମର ଅର୍ଥ ନ ଜାଣି କିଏ କେତେ ଧର୍ମନିରପେକ୍ଷ, ସେ ସମ୍ପର୍କରେ ଦେଖେଇ ହେବାପାଇଁ ରାଜନୀତିକ ଦଳମାନଙ୍କରେ ପ୍ରଚଣ୍ଡ ପ୍ରତିଯୋଗିତା । ସୁଡୋ ସେକ୍ୟୁଲାର, ସର୍ବଧର୍ମ ସମଭାବ ଇତ୍ୟାଦି ବହୁ ଶବ୍ଦ ବ୍ୟବହାର ହୁଏ - ଧର୍ମର ସଂଜ୍ଞା ବିଷୟରେ । ୧୯୭୬ ମସିହାରେ ଇନ୍ଦିରା ଗାନ୍ଧି ଇମରଜେନ୍‌ସି ଲାଗୁ କରି ସମ୍ବିଧାନର ଭୂମିକା ବା ପ୍ରିୟାମ୍ବଲ୍‌ରେ ଡେମୋକ୍ରେଟିକ୍ ରିପବ୍ଲିକ୍ ସହିତ ଆଉ ଦୁଇଟି ସଂଜ୍ଞା ଯୋଡିଥିଲେ । ସେ ଦୁଇଟି ହେଲା ସେକ୍ୟୁଲାର୍ ଓ ସୋସିଆଲିଷ୍ଟ । ସେକ୍ୟୁଲାର୍ ଶବ୍ଦଟିର ଅନୁବାଦ କରି କୁହାଗଲା 'ଧର୍ମନିରପେକ୍ଷ' ।

ଏ ସଂଜ୍ଞା ସମ୍ପର୍କରେ ଏବେ ବି ଦେଶରେ ବିବାଦ ରହିଛି । କାରଣ ଧର୍ମର ପ୍ରକୃତ ଅର୍ଥ ହେଲା ନୀତି, ନିଷ୍ଠା ଓ ବିଧିସମ୍ମତ ଆଚରଣ । ଏଥିରେ ହିଂସା, ବର୍ବରତା, କ୍ରୂରତା, ଲୋଭ, ମିଥ୍ୟା ଓ ଅହଙ୍କାରର ସ୍ଥାନ ନଥାଏ । ଏବେ ଯାହାକୁ ଆମେ ଧର୍ମ ଭାବରେ ବୁଝୁଛେ, ତାହା ପ୍ରକୃତରେ ହେଲା ପନ୍ଥ ଅର୍ଥାତ୍ ଦିବ୍ୟଜ୍ଞାନପାଇଁ ବିଭିନ୍ନ ପଥ । ତେଣୁ ସେକ୍ୟୁଲାର ଶବ୍ଦଟିକୁ ସମ୍ବିଧାନର ହିନ୍ଦୀ ଅନୁବାଦରେ କୁହାଯାଇଛି ପନ୍ଥ ନିରପେକ୍ଷ-ଧର୍ମ ନିରପେକ୍ଷ ନୁହେଁ । ନୀତି, ନିଷ୍ଠା ଓ ବିଧିସମ୍ମତ ଆଚରଣ ସମ୍ପର୍କରେ କୌଣସି ଦେଶ ବା ପନ୍ଥ କେମିତି ନିରପେକ୍ଷ ରହିପାରିବ ? ପାଠ୍ୟପୁସ୍ତକ କେମିତି ନୀରବ ରହିବେ ? ଭଗବତ୍ ଗୀତାରେ ଯେଉଁ ସ୍ୱଧର୍ମରେ ନିଧନ ଶ୍ରେୟ ଓ ପରଧର୍ମ

ଭୟାବହ କଥା କୁହାଯାଇଛି, ତାର ପ୍ରକୃତ ଅର୍ଥ ହେଲା ନିଜର ନୀତି, ନିଷ୍ଠା, କର୍ତ୍ତବ୍ୟ ଓ ଆଦର୍ଶପାଇଁ ଜୀବନ ଉତ୍ସର୍ଗ ବରଂ ଶ୍ରେୟସ୍କର । ବିଭିନ୍ନ 'ପନ୍ଥ'ର ପ୍ରବର୍ତ୍ତକମାନେ ବୋଧହୁଏ ଭାବି ପାରିନଥିଲେ ଯେ ତାଙ୍କର ଅନୁଗାମୀମାନେ ଏହାକୁ ଦୁରୁପଯୋଗ କରିବେ; ହିଂସା, ହତ୍ୟା, ରକ୍ତପାତକୁ ଉତ୍ସାହିତ କରିବେ । ଯେତେବେଳେ ପୃଥିବୀରେ ସୀମା ସରହଦ, ଦେଶ, ରାଜ୍ୟ, ସମ୍ବିଧାନ, ଆଇନ୍‌କାନୁନ୍ ନଥିଲା, ସେତେବେଳେ ମଣିଷର ଆଚରଣକୁ ଲଗାମ ଦେଇ ଶୁଦ୍ଧ, ସଭ୍ୟ, ସଂସ୍କୃତ ଜୀବନଯାପନପାଇଁ ବିଭିନ୍ନ ଅଞ୍ଚଳରେ 'ପନ୍ଥ'ର ସୃଷ୍ଟି ହୋଇଥିଲା । ଯାହାକୁ ଆମେ ଏବେ କହୁଛେ 'ଧର୍ମ' । କିନ୍ତୁ ଏବେ ଏକ ଆଧାତ୍ମିକ, ବୈଜ୍ଞାନିକ ଓ ମାନବୀୟ ସମାଜ ଗଢିବାର ସମୟ ଆସିଛି ।

ଏ ବିଷୟରେ ଏକ ବ୍ୟକ୍ତିଗତ ଅନୁଭୂତି ଉଲ୍ଲେଖ କରିବା ପ୍ରାସଙ୍ଗିକ ହେବ । ପ୍ରାୟ ସାତ ଆଠ ବର୍ଷ ତଳର କଥା । ରାଜ୍ୟ ଗୋଷ୍ଠୀ ଏସିଆ ଦେଶମାନଙ୍କ ଦାୟିତ୍ୱରେ ଥାଏ । ଏସିଆରେ ଆଠଟି ଦେଶ ରାଜ୍ୟଗୋଷ୍ଠୀର ସଭ୍ୟ - ଭାରତ, ପାକିସ୍ତାନ, ବାଂଲାଦେଶ, ଶ୍ରୀଲଙ୍କା, ମାଳଦ୍ୱୀପ, ମାଲେସିଆ, ବ୍ରୁନେଇ, ଦାରୁସଲାମ ଓ ସିଙ୍ଗାପୁର । ଏହି ଦେଶମାନଙ୍କୁ ବର୍ଷକେ ଦୁଇ ତିନିଥର ଯିବାକୁ ପଡେ । ଦକ୍ଷିଣ ପୂର୍ବ ଏସିଆ ଦେଶଗୁଡିକୁ ସିଙ୍ଗାପୁର ଚାଙ୍ଗି ଏୟାରପୋର୍ଟ ହୋଇ ଯିବାକୁ ହୁଏ । ସିଙ୍ଗାପୁରର ପୁରୁଣା ନାଁ ହେଲା ସିଂହପୁରମ୍ । ଏକ କ୍ଷୁଦ୍ର ଦେଶ କିନ୍ତୁ ଭାରତ ଭଳି ବିଭିନ୍ନ ପନ୍ଥର ଲୋକେ ଏକାଠି ରହନ୍ତି । ବୁଦ୍ଧିଷ୍ଟ, ମୁସଲିମ୍, ହିନ୍ଦୁ, ଖ୍ରୀଷ୍ଟିୟାନ୍, ଚାଇନିଜ୍, ମାଲେ, ଇଣ୍ଡିଆନ୍, ଆଙ୍ଗ୍ଲୋ ଇତ୍ୟାଦି । କିନ୍ତୁ ସାମ୍ପ୍ରଦାୟିକ ଦଙ୍ଗା ଫସାଦ ବିରଳ । ଲୋକେ ଦେଶପ୍ରେମୀ, ଆଇନ୍‌କାନୁନ୍ ମାନି ଚଳନ୍ତି । ମୁଣ୍ଡପିଛା ଆୟ ପ୍ରାୟ ବାର୍ଷିକ ବାର ଲକ୍ଷ ଟଙ୍କା ।

ନଦୀ, ପର୍ବତ, ଖଣି, ପାଣି ନାହିଁ । ପିଇବା ପାଣି ଜାହାଜରେ ବୁହା ହୋଇ ଅନ୍ୟ ଦେଶରୁ ଆସେ । ଶତକଡା ୮୦ ଭାଗ ଲୋକେ ସର୍ଭିସ୍ ସେକ୍ଟରରେ କାମ କରନ୍ତି । ଚାଙ୍ଗ ଏଆରପୋର୍ଟ ଓ ସିଙ୍ଗାପୁର ଏଆରଲାଇନ୍ ନିଜ ଦକ୍ଷତାପାଇଁ ପୃଥିବୀ ପ୍ରସିଦ୍ଧ । ମାଟ୍ରିକ୍ ପରେ ପୁଅ ପିଲାଙ୍କପାଇଁ ଦୁଇବର୍ଷ ନାସ୍‌ନାଲ୍ ମିଲିଟାରି ଟ୍ରେନିଂ ବାଧ୍ୟତାମୂଳକ । ରାସ୍ତାଘାଟ ସଫାସୁତୁରା, ଶତକଡା ଅଶୀଭାଗ ଜାଗାରେ ନିର୍ମାଣ ମନା । କାର୍‌ରେ ନଯାଇ ମେଟ୍ରୋରେ ଯିବାପାଇଁ ଲୋକଙ୍କୁ ଉତ୍ସାହିତ କରାଯାଏ । ଏହାଦ୍ୱାରା ପରିବେଶ ପ୍ରଦୂଷଣମୁକ୍ତ ରହେ । ଯେଉଁମାନେ ବାପା ମାଙ୍କ ନିକଟବର୍ତ୍ତୀ ଅଞ୍ଚଳରେ ରହିବାକୁ ଚାହାନ୍ତି, ତାଙ୍କୁ ଆଗ ଘର ଦିଆଯାଏ । ପୁଅ ଝିଅଙ୍କୁ ସଂଯତ ବୈବାହିକ ଜୀବନଯାପନ ପାଇଁ ଉତ୍ସାହିତ କରାଯାଏ, ଆଗ ପିଲା ହେଲେ ଅଧିକ ଭତ୍ତା ମିଳେ । ସ୍ତ୍ରୀମାନଙ୍କ ସାମାଜିକ ସ୍ଥିତି ସେ ଅଞ୍ଚଳର ଅନ୍ୟ ଦେଶମାନଙ୍କ ଅପେକ୍ଷା ଭଲ ।

ମୋର ସେଦିନ ସିଙ୍ଗାପୁରରେ ରହି ତା'ଆରଦିନ ଅଷ୍ଟ୍ରେଲିଆ ହୋଇ ସଲୋମନ୍ ଆଇଲାଣ୍ଡ୍ ଯିବାର ଥାଏ କମନ୍‌ୱେଲ୍‌ଥ ଯୁବକଲ୍ୟାଣ ମନ୍ତ୍ରୀମାନଙ୍କ ସମ୍ମିଳନୀରେ ଯୋଗ ଦେବାକୁ । ଚାଙ୍ଗ୍ ଏୟାରପୋର୍ଟରୁ ବାହାରି ଯେଉଁ ରେଡିଓ ଟାକ୍ସିରେ ବସିଲି ତା'ର ଡ୍ରାଇଭରଙ୍କ ନାଁ ମଧ୍ୟ ଥିଲା ଚାଙ୍ଗ୍ । ସେଠାକାର ଟାକ୍ସି ଡ୍ରାଇଭରମାନେ ଅତ୍ୟନ୍ତ ଭଦ୍ର ଓ ମାର୍ଜିତ । ତାଙ୍କ ପରିବାର କଥା ପଚାରିଲି । ସ୍ତ୍ରୀ କାମ କରନ୍ତି ମଲ୍‌ରେ, ଦୁଇଟି ଝିଅ ସ୍କୁଲରେ ପଢନ୍ତି । ନିଜେ ଚାଇନିଜ୍, ସ୍ତ୍ରୀ ହେଉଛନ୍ତି ମାଲେ - ମାଲେସିଆନ୍ । ସିଙ୍ଗାପୁରର ଅଧିକାଂଶ ଚାଇନିଜ୍ ହେଉଛନ୍ତି ବୌଦ୍ଧ ଧର୍ମାବଲମ୍ବୀ । ଅତି ସନ୍ତର୍ପଣରେ ପଚାରିଲି "ଚାଙ୍ଗ୍, ତମେ ବୁଦ୍ଧିଷ୍ଟ ହୋଇଥିବ" । ମୁଣ୍ଡ ହଲାଇ କହିଲେ 'ନାଁ' ମୁଁ ବୁଦ୍ଧିଷ୍ଟ ନୁହେଁ । ତାହେଲେ କ'ଣ ଖ୍ରୀଷ୍ଟିୟାନ୍ ? ପୁଣି ମୁଣ୍ଡ ହଲାଇ କହିଲେ 'ନାଁ' । ତମ ସ୍ତ୍ରୀ ମାଲେସିଆନ୍, ତାହେଲେ ତମେ ନିଶ୍ଚୟ ମୁସଲିମ୍ । ଅଳ୍ପ ହସି କହିଲେ ନାଁ, ଆଦୌ ନୁହେଁ । 'ତମ ଦେଶରେ ହିନ୍ଦୁଙ୍କ ସଂଖ୍ୟା ସବୁଠୁ କମ୍ ଏବଂ ତମେ ଚାଇନିଜ୍, ତେଣୁ କେବେହେଲେ ହିନ୍ଦୁ, ଜୈନ ବା ଶିଖ୍ ହୋଇନଥିବ' । କହିଲେ 'ୟୁ ଆର୍ ଆବ୍‌ସଲ୍ୟୁଟ୍‌ଲି କରେକ୍ଟ, ମୁଁ ହିନ୍ଦୁ 'ରିଲିଜନ୍' ବିଷୟରେ ଅଧ୍ୟୟନ କରିଛି, କିନ୍ତୁ ମୁଁ ହିନ୍ଦୁ ନୁହେଁ । ମୁଁ ମନେ ମନେ ଭାବିଲି, ବୋଧହୁଏ ନାସ୍ତିକ ହୋଇଥିବେ । ପଚାରିଲି ଈଶ୍ୱରଙ୍କ ଉପରେ ବିଶ୍ୱାସ କର ? କହିଲେ 'ହଁ', ମୋର ଈଶ୍ୱରଙ୍କ ଉପରେ ଗଭୀର ବିଶ୍ୱାସ । ତାହେଲେ ତମ ପ୍ରକୃତ ରିଲିଜନ୍ କ'ଣ ? ସାଙ୍ଗେ ସାଙ୍ଗେ ପଛକୁ ମୁହଁ ବୁଲାଇ ହସି ହସି କହିଲେ 'ଆଇ ଆମ୍ ଏ ଫ୍ରି ଥିଙ୍କର' ବା ମୁକ୍ତ ଚିନ୍ତକ । ମୁଁ କୌଣସି ରିଲିଜନ୍‌ର ବନ୍ଧନରେ ବାନ୍ଧି ହୋଇ ରହିବାକୁ ପସନ୍ଦ କରେ ନାହିଁ । ମୁଁ ମୁକ୍ତ ଚିନ୍ତା, ବିଚାରର ସମର୍ଥକ, ମାନବବତାବାଦରେ ବିଶ୍ୱାସ କରେ । ସିଙ୍ଗାପୁରରେ ଆମ ଭଳି ଲୋକଙ୍କ ସଂଖ୍ୟା କମ୍, କିନ୍ତୁ ୬୦ ରୁ ଅଧିକ ଦେଶରେ ଆମର ଶାଖା ଅଛି, ସଭ୍ୟଙ୍କ ସଂଖ୍ୟା ବଢୁଛି, ସମୟ ଆସିବ, ଦିନେ ପୃଥିବୀର ଲୋକେ ନିଜ ନିଜ ପନ୍ଥ, ସମ୍ପ୍ରଦାୟ, ଜାତି, ଭାଷା ଓ ରାଜ୍ୟର ସୀମା ଡେଇଁ ଏକ ମୁକ୍ତ ମାନବୀୟ ସମାଜ ଗଢିବେ ।

ସିଙ୍ଗାପୁରର ଜଣେ ଟାକ୍ସି ଡ୍ରାଇଭରଙ୍କ ଜୀବନ ଦର୍ଶନ ଶୁଣି ବିସ୍ମୟ ଓ ଆନନ୍ଦରେ ମୋ ପେଟ ପୂରିଗଲା । ରବୀନ୍ଦ୍ରନାଥ ଠାକୁର ନିଜର ଏକ ପଦ୍ୟରେ ଏହି ବିଶ୍ୱ ମାନବୀୟ ସମାଜର ସ୍ୱପ୍ନ ଓ ବୀଜ ବପନ କରିଥିଲେ । ଲେଖିଥିଲେ :- "ହେ ପ୍ରଭୁ ମୋତେ ସେଇ ରାଜ୍ୟକୁ ନେଇ ଯାଅ, ଯେଉଁଠି ମନ ଓ ବୁଦ୍ଧି ମୋହମୁକ୍ତ, ଯେଉଁଠି ମସ୍ତକ ସଦା ଉନ୍ନତ, ଯେଉଁଠି ହସ୍ତରେ ନାହିଁ ଶୃଙ୍ଖଳ, ଯେଉଁଠି ମୁକ୍ତ ଚିନ୍ତା ଓ ବିଚାରର ନିର୍ଭୟ ପରିବେଶ ।" ଏକ ଶାନ୍ତିପୂର୍ଣ୍ଣ, ସଭ୍ୟ, ସମୃଦ୍ଧ ସମାଜ କେବଳ 'ଫ୍ରି

ଥିଙ୍କର'ମାନଙ୍କ ସଂଖ୍ୟା ବଢିଲେ ହିଁ ସମ୍ଭବପର ହେବ । ମୌଳବାଦୀ, ଧର୍ମନିରପେକ୍ଷବାଦୀମାନେ ନିଜ ବିଚାରକୁ ପ୍ରମାଣ କରିବାପାଇଁ ପ୍ରତିଯୋଗିତା କରିବେ ନାହିଁ । ରାଜନୀତିରୁ 'ସମ୍ପ୍ରଦାୟ' ଉଷ୍ମତା କମିଯିବ । ଧର୍ମରକ୍ଷାପାଇଁ ହିଂସା, ହତ୍ୟା, ଆବଶ୍ୟକ ହେବ ନାହିଁ । ଏକ ପନ୍ଥମୋହ ମୁକ୍ତ ମାନବୀୟ ସମାଜ ହେବ ବ୍ୟକ୍ତି ସ୍ୱାଧୀନତାର ପ୍ରକୃତ ରକ୍ଷା କବଚ । ମହାନ୍ ଭାରତୀୟ ସଂସ୍କୃତି, ପରମ୍ପରା ଓ ଭାବନାରେ ମୁକ୍ତ ଚିନ୍ତା ଓ ସ୍ୱାଧୀନ ଭାବରେ ସତ୍ୟ ଅନ୍ୱେଷଣର ବୀଜ ରହିଛି । ଉକ୍ତି ଅଛି - ସତ୍ୟ ଅନ୍ୱେଷଣ କରୁଥିବା ବ୍ୟକ୍ତିଙ୍କୁ ଅନୁସରଣ କର ଏବଂ ସତ୍ୟ ଓ ଈଶ୍ୱରଙ୍କୁ ପାଇଛନ୍ତି ବୋଲି ଦାବି କରୁଥିବା ବ୍ୟକ୍ତି ଯେତେ ମହାନ୍ ଓ ଜ୍ଞାନୀ ହେଲେ ବି ତାଙ୍କୁ ଆଗ ତ୍ୟାଗ କର । ଅନ୍ଧ ଅନୁସରଣ କଲେ ଅନ୍ଧାରରେ ରହିଥିବ ।

*୨୬ ଜୁନ୍, ୨୦୦୮*

■ ■ ■

# ସାମାଜିକ ପାପ-ପୁଣ୍ୟର ନୂଆ ତାଲିକା

ପ୍ରାୟ ୧୫ ଶହ ବର୍ଷ ପରେ ଗତ ମାର୍ଚ୍ଚ ୨୦୦୮ରେ ରୋମାନ୍ କାଥଲିକ୍‌ମାନଙ୍କ ଧାର୍ମିକ ରାଜଧାନୀ ଭାଟିକାନ୍ ନଗରୀରେ ସାତଟି ନୂଆ ସାମାଜିକ ପାପର ତାଲିକା ପ୍ରସ୍ତୁତ କରାଯାଇ ମାନବ ସମାଜକୁ ଏହି ପାପଗୁଡ଼ିକଠାରୁ ଦୂରରେ ରହିବାପାଇଁ ଆହ୍ୱାନ ଦିଆଯାଇଥିଲା । ଚୋରି, ପଡ଼ୋଶୀଙ୍କୁ ନିର୍ଯାତନା, ପରସ୍ତ୍ରୀହରଣ ଇତ୍ୟାଦି ପୁରୁଣା ପାପର ତାଲିକାରେ ଯେଉଁ ନୂଆ ପାପ ସବୁ ଯୋଡ଼ାଗଲା, ସେଗୁଡ଼ିକ ହେଲା - ନିଶା ଔଷଧ ସେବନ, ପରିବେଶ ପ୍ରଦୂଷଣ, ଅତି ସମ୍ପତ୍ତି, ଦାରିଦ୍ର୍ୟ ସୃଷ୍ଟି, ଧନୀ-ଦରିଦ୍ର ମଧ୍ୟରେ ଦୂରତ୍ୱ ବୃଦ୍ଧି , ଷ୍ଟେମ୍ ସେଲ୍‌ର ଅନୈତିକ ପରୀକ୍ଷା-ନିରୀକ୍ଷା ଓ ସ୍ୱାଭାବିକ ପ୍ରଜନନ ପ୍ରକ୍ରିୟା ନିରୋଧ ଇତ୍ୟାଦି । ଏହାର ଠିକ୍ ପନ୍ଦର ଦିନ ପରେ ମାର୍ଚ୍ଚ ୨୯ ତାରିଖରେ ବିଭିନ୍ନ ଧର୍ମଗୁରୁମାନଙ୍କୁ ନେଇ ଏକ ସର୍ବଧର୍ମ ସଂସଦ ଅନୁଷ୍ଠିତ ହେଲା ଏବଂ ଏହି ସଂସଦରେ ବିଭିନ୍ନ ଧର୍ମର ପ୍ରତିନିଧିମାନେ ସାତଟି ସାମାଜିକ ପୁଣ୍ୟର ପ୍ରଚାର, ପ୍ରସାର ପାଇଁ ଶପଥ ନେଲେ ।

ଏଗୁଡ଼ିକ ହେଲା (୧) 'ଇଣ୍ଟରକାଷ୍ଟ' ବିବାହ ବା ସବର୍ଣ୍ଣ-ଅସବର୍ଣ୍ଣ ବିବାହକୁ ପ୍ରୋତ୍ସାହନ ଦେଇ ଏକ ଜାତିବିହୀନ ସମାଜ ସୃଷ୍ଟି (୨) କନ୍ୟାଭ୍ରୁଣ ହତ୍ୟା ବିରୋଧ, ଯୌତୁକ ପ୍ରଥାର ସକ୍ରିୟ ବିରୋଧ ଓ ସ୍ତ୍ରୀ-ପୁରୁଷର ସମାନ ଅଧିକାର (୩) ସାମ୍ପ୍ରଦାୟିକ ସଦ୍‌ଭାବ, ସର୍ବଧର୍ମ ସମଭାବ ଓ ମିଳିତ ଭାବରେ ବିଭିନ୍ନ ଧାର୍ମିକ ଉତ୍ସବ ପାଳନ (୪) ନିଶାଦ୍ରବ୍ୟ ସେବନ ଓ ଏହାକୁ ପ୍ରୋତ୍ସାହିତ କରୁଥିବା ସରକାରୀ ନୀତିର ବିରୋଧ (୫) ଅନ୍ଧବିଶ୍ୱାସର ବିରୋଧ ଓ ବୈଜ୍ଞାନିକ ମନୋବୃତ୍ତିକୁ ଉତ୍ସାହ (୬) ସାଧାରଣ ଜୀବନରୁ ଦୁର୍ନୀତିର ମୂଳୋତ୍ପାଟନ ଓ (୭) ସମାଜରୁ ଦାରିଦ୍ର୍ୟ, ଶୋଷଣ, ଅନ୍ୟାୟ ଓ ଶିଶୁ ଶ୍ରମରୁ ମୁକ୍ତ ରଖିବାପାଇଁ ଅଭିଯାନ । ଏହାଛଡ଼ା ସାମାଜିକ ଉନ୍ନତିପାଇଁ କାମ କରୁଥିବା ଧର୍ମଗୁରୁମାନେ ପ୍ରଦୂଷଣ ଓ ପ୍ରତିରକ୍ଷା ବ୍ୟୟ ବିରୁଦ୍ଧରେ ମଧ୍ୟ ସ୍ୱର ଉତ୍ତୋଳନ

କରିଥିଲେ । ଏବେ ଦାରୁଲ୍ ଉଲୁମ୍ ଦେଓବାନ୍ଦର ସମର୍ଥକ ସହସ୍ରାଧିକ ମୁସ୍‌ଲିମ୍ ଧର୍ମଗୁରୁ ଓ ପ୍ରତିନିଧିମାନେ ଏକତ୍ରିତ ହୋଇ ଆତଙ୍କବାଦକୁ ମାନବ ସମାଜ ବିରୋଧରେ ପାପ ବୋଲି ଘୋଷଣା କରିଛନ୍ତି ।

ଏହା ପୂର୍ବରୁ ପ୍ରାୟ ୨୫ ବର୍ଷ ତଳେ ମିଳିତ ରାଷ୍ଟ୍ରସଙ୍ଘ ପ୍ରଗତି ପଥରେ ବାଧା ସଦୃଶ ଠିଆ ହୋଇଥିବା ସାତୋଟି 'ଡେଭଲପ୍‌ମେଣ୍ଟ ସିନ୍'ର ତାଲିକା ପ୍ରସ୍ତୁତ କରିଥିଲେ । ଯେଉଁ ବିକାଶ ପ୍ରକ୍ରିୟାରେ ମହିଳା ଓ ଯୁବବର୍ଗ ସାମିଲ ନାହାନ୍ତି, ସାଧାରଣ ଲୋକେ ସକ୍ରିୟ ଅଂଶ ଗ୍ରହଣ କରନ୍ତି ନାହିଁ, ଭିତିଭୂମି ଓ ସମ୍ବଳ ନଥାଏ, ତାହାକୁ ପ୍ରଗତିର ଦୁର୍ଗତି ବା ପାପ ବୋଲି ପ୍ରଥମଥରପାଇଁ ମିଳିତ ରାଷ୍ଟ୍ରସଙ୍ଘ ସ୍ୱୀକାର କଲା, କିନ୍ତୁ ଏହାର ବହୁ ବର୍ଷ ପୂର୍ବରୁ ଓ ଭାରତର ସ୍ୱାଧୀନତା ଆନ୍ଦୋଳନ ସମୟରେ ମହାତ୍ମାଗାନ୍ଧୀ ସାତୋଟି ସାମାଜିକ ପାପର ଏକ ତାଲିକା ତିଆରି କରିଥିଲେ ଏବଂ ବିଭିନ୍ନ ସଭାସମିତିରେ, ପ୍ରାର୍ଥନାସଭାରେ ଲୋକମାନଙ୍କୁ ବୁଝାଇଥିଲେ ।

ସେହି ସାତୋଟିରୁ ଗୋଟିଏ ପାପ ହେଲା, କାମ ନ କରି ଧନୀ ହେବା ଓ ଧନୀ ହୋଇ କାମ ନ କରିବା ପ୍ରବୃତ୍ତି । ଆମ ସମାଜରେ ଅନେକ ଲୋକ ବିନା ପରିଶ୍ରମରେ ରାତାରାତି ମାଲେମାଲ ହେବାକୁ ଚାହାନ୍ତି ଓ ଏହି ଉପାୟରେ ଅର୍ଜିଥିବା ଧନକୁ ସତ୍ କାର୍ଯ୍ୟରେ ଲଗାନ୍ତି ନାହିଁ । ଦ୍ୱିତୀୟ ସାମାଜିକ ପାପଟି ହେଲା ତ୍ୟାଗ ଭାବନା ରହିତ ପୂଜା । ଦିନରାତି ପୂଜା, ପ୍ରାର୍ଥନା, ସ୍ତୁତିଗାନ କଲେ କ'ଣ ହେବ, ସମାଜପାଇଁ, ଦୁଃଖୀ ରଙ୍କିଙ୍କପାଇଁ ସାମାନ୍ୟତମ ସ୍ୱାର୍ଥତ୍ୟାଗ କରିବାକୁ କୁଣ୍ଠା, ଅନିଚ୍ଛା ହେଉଛି ଏକ ପାପ । ତୃତୀୟ ପାପଟିକୁ ଗାନ୍ଧିଜୀ ଇଂରାଜୀରେ କହିଥିଲେ 'ୱାର୍ଡ ଉଇଦାଉଟ୍ ଆକ୍‌ସନ୍' ବା କାମ ନ କରି କେବଳ କଥା । ଏହାର ଅର୍ଥ ହେଉଛି ଉଚ୍ଚାରଣ ଓ ଆଚରଣ ଭିତରେ ଫରକ୍ ।

ଚତୁର୍ଥ ପାପଟିକୁ ଗାନ୍ଧି କହୁଥିଲେ - ନୀତିହୀନ ରାଜନୀତି । ପଞ୍ଚମଟି ହେଲା - 'ପାୱାର ଉଇଦାଉଟ୍ ରେସପନ୍‌ସିବିଲିଟି' । ଯାହାର ଅର୍ଥ ହେଲା, ଉତ୍ତରଦାୟିତ୍ୱ ନ ଥାଇ କେବଳ କ୍ଷମତାର ଉପଯୋଗ । ଦେଶ, ସମ୍ବିଧାନ ଓ ଗଣତନ୍ତ୍ରପାଇଁ ଏହା ଏକ ନୂଆ ବିପଦ । ସେମିତି ବ୍ୟବସାୟ ବାଣିଜ୍ୟରେ ଠକେଇ, ହେରଫେର ଓ ଅପମିଶ୍ରଣକୁ ଗାନ୍ଧି କହିଥିଲେ, 'କମର୍ସ ଉଇଦାଉଟ୍ ମୋରାଲିଟି', ଅର୍ଥାତ୍ ନୀତିହୀନ ବ୍ୟବସାୟ । ଗାନ୍ଧିଙ୍କ ମତରେ ଏହା ମଧ୍ୟ ଏକ ଗର୍ହିତ ସାମାଜିକ ପାପ । ସପ୍ତମ ସାମାଜିକ ପାପଟିକୁ ସେ କହୁଥିଲେ, ବିବେକବିହୀନ ବିଜ୍ଞାନ ବା 'ସାଇନ୍‌ସ୍ ଉଇଦାଉଟ୍ କନ୍‌ସାଇନ୍‌ସ୍' । ବିଜ୍ଞାନକୁ ସମାଜ ଓ ବିଶ୍ୱକଲ୍ୟାଣପାଇଁ ବ୍ୟବହାର ନ କରି ହିଂସା, ହତ୍ୟା ଓ ଅନୈତିକ

କାମରେ ଲଗାଇବା । ବ୍ୟକ୍ତି, ସମାଜ ଓ ଦେଶମାନେ ଏହି ସାତୋଟି ସାମାଜିକ ପାପରୁ ଦୂରରେ ରହି ପାରିଲେ 'ମିଲିନିୟମ୍ ଡେଭଲପ୍‌ମେଣ୍ଟ ଗୋଲ୍'ପାଇଁ ଏତେ ଯୋଜନା ଓ ଅର୍ଥବ୍ୟବସ୍ଥା ଆବଶ୍ୟକ ହେବ ନାହିଁ । ଦୁର୍ନୀତି, ଦୁରାଚାର, ଦାରିଦ୍ର୍ୟ କ୍ରମେ ହଟିଯିବ । ଏହା ନ କରି ଗାନ୍ଧିଙ୍କ ପ୍ରତିମାକୁ ଫୁଲମାଳରେ ପୋତି ଦେଇ, ତାଙ୍କ ଆଦର୍ଶକୁ ରାଜଘାଟରେ ସମାଧି ଦେବା ଭାରତପାଇଁ ଏକ ଅଷ୍ଟମ ସାମାଜିକ ପାପ ହେବ ।

କିନ୍ତୁ ସୁଖର କଥା ଯେ, ଏବେ ପାପପୁଣ୍ୟକୁ ଧର୍ମଗ୍ରନ୍ଥ ପୃଷ୍ଠାରୁ ମୁକୁଳାଇ ବିକାଶ ପ୍ରକ୍ରିୟାରେ ଯୋଡିବାପାଇଁ ଉଦ୍ୟମ ଆରମ୍ଭ ହୋଇଛି । ଭାରତ ସମେତ ୧୩ଟି ବିକଶିତ ଓ ବିକାଶଶୀଳ ଦେଶର ଅର୍ଥନୈତିକ ପ୍ରଗତି ପ୍ରକ୍ରିୟାକୁ ଅଧ୍ୟୟନ କଲା ପରେ, ନୋବେଲ ପୁରସ୍କାରପ୍ରାପ୍ତ ବିଖ୍ୟାତ ଅର୍ଥନୈତିଜ୍ଞ ମାଇକେଲ୍ ସ୍ପେନ୍‌ସଙ୍କ ଅଧକ୍ଷତାରେ ଗଠିତ "ଗ୍ରୋଥ୍ ଆଣ୍ଡ୍ ଇକୋନୋମିକ୍ ଡେଭଲପ୍‌ମେଣ୍ଟ କମିଶନ" ପାଞ୍ଚଟି ପୁଣ୍ୟ ଓ ବାରଟି ପାପ ବା ବ୍ୟାଡ୍ ଆଇଡିଆର ତାଲିକା ପ୍ରସ୍ତୁତ କରିଛନ୍ତି । ମିରାକଲ୍ ଇକନମି ବା ଅଦ୍ଭୁତ ଓ ଦ୍ରୁତ ଅଗ୍ରଗତି କରୁଥିବା ଦେଶମାନଙ୍କରେ ଯେଉଁ ପାଞ୍ଚଟି ପ୍ରକ୍ରିୟାଦ୍ୱାରା ଏହା ସମ୍ଭବପର ହେଲା, ସେଗୁଡିକ ହେଲା କ୍ରମାଗତ ଅର୍ଥନୈତିକ ସ୍ଥିରତା, ଦେଶର ବୃହତ୍ତର ସ୍ୱାର୍ଥ ହାସଲପାଇଁ ଜଗତୀକରଣ ପ୍ରକ୍ରିୟାରେ ସମ୍ପୂର୍ଣ୍ଣ ସାମିଲ ହେବା, ଉଚ୍ଚ ହାରରେ ସଞ୍ଚୟ, ବିଭିନ୍ନ ଉତ୍ପାଦକ ଯୋଜନାରେ ବିପୁଳ ଅର୍ଥ ବିନିଯୋଗ ଏବଂ ଏକ ପ୍ରତିବଦ୍ଧ ଓ ସମର୍ଥ ସରକାର । କମିଶନ ପୁଣି କହିଛନ୍ତି, ଦ୍ରୁତ ପ୍ରଗତିପାଇଁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଫର୍ମୁଲା ନାହିଁ ଏବଂ ବିକାଶପାଇଁ ଉତ୍ସୁକ ଦେଶମାନେ ତାଙ୍କ ଦେଶ ପାଇଁ କେଉଁ ଫର୍ମୁଲା କାମ କରିବ, ତାକୁ ପରୀକ୍ଷା କରି ବାଛିବା ଆବଶ୍ୟକ । କିନ୍ତୁ ଯେଉଁ ବାରଟି କାରଣରୁ ଦ୍ରୁତ ପ୍ରଗତି ହୋଇ ପାରୁନାହିଁ, ଅର୍ଥନୀତି ବାରମ୍ବାର ଫେଲ୍ ମାରୁଛି, ସେଗୁଡିକ ଜାଣି ତାଠାରୁ ଦୂରରେ ରହିଲେ ଭଲ । କମିଶନଙ୍କ ଭାଷାରେ 'ବ୍ୟେଲ୍‌ଭ ଆଇଡିଆଜ'କୁ ଲୋକପ୍ରିୟ ଅର୍ଥନୀତିଜ୍ଞ ଓ ସ୍ତମ୍ଭକାର ସ୍ୱାମୀନାଥନ୍ ଅଙ୍କଲେସାରିଆ ଆୟର୍ ଗାନ୍ଧିଙ୍କ ଢଙ୍ଗରେ ଦ୍ୱାଦଶ ପାପ ବୋଲି ନାମକରଣ କରିଛନ୍ତି ।

ସଂକ୍ଷେପରେ ଏହି ପାପଗୁଡିକ ହେଲା (୧) ବିଜୁଳି, ପେଟ୍ରୋଲ ଗ୍ୟାସପାଇଁ ସବ୍‌ସିଡି । ଭାରତୀୟ ରାଜନୀତିଆମାନେ ଭୋଟ୍ ପୂର୍ବରୁ ଏଭଳି ପାପପାଇଁ ସର୍ବଦା ଉତ୍ସୁକ । (୨) ବେକାରୀ ଦୂରୀକରଣପାଇଁ ସରକାରୀ ବାବୁଙ୍କ ଉପରେ ଭରସା ଓ ସରକାରୀ ଚାକିରି ସଂଖ୍ୟା ବୃଦ୍ଧି । (୩) ଦେଶର ବୃହତ୍ତର ସ୍ୱାର୍ଥପାଇଁ ଅତ୍ୟାବଶ୍ୟକ ଭିତ୍ତିଭୂମି ଓ ଶିକ୍ଷା, ସ୍ୱାସ୍ଥ୍ୟ ଭଳି ସୋସିଆଲ୍ ସେକ୍ଟର ବା ସାମାଜିକ କ୍ଷେତ୍ରରୁ ଅର୍ଥ କାଟ୍ କରି ବର୍ତ୍ତମାନ ଅର୍ଥନୈତିକ ସଙ୍କଟରୁ କିଛି କ୍ଷଣପାଇଁ ମୁକ୍ତି ପାଇବାର ଉଦ୍ୟମ ।

(୪) ବ୍ୟବସାୟ, ବାଣିଜ୍ୟ, ଚାକିରି ଓ ରୋଜଗାରକୁ ପ୍ରତିଯୋଗିତାରୁ ଦୂରରେ ରଖିବା । (୫) ଦରବୃଦ୍ଧିର ପ୍ରକୃତ କାରଣକୁ ଉପେକ୍ଷା କରି ଦରମା ଉପରେ କୃତ୍ରିମ ନିୟନ୍ତ୍ରଣ । (୬) ଉତ୍ପାଦକକୁ ଉପେକ୍ଷା କରି ଖାଉଟିଙ୍କ ସ୍ୱାର୍ଥରକ୍ଷା, (୭) ସହରୀକରଣ ଓ ସହର ଉନ୍ନୟନକୁ ଉପେକ୍ଷା (୮) ପ୍ରଗତି ପ୍ରକ୍ରିୟା ଆରମ୍ଭରୁ ପରିବେଶକୁ ଉପେକ୍ଷା (୯) ଶିକ୍ଷାଗୃହ ନିର୍ମାଣ ଓ ଛାତ୍ର ଉପସ୍ଥାନ ବଢାଇବାପାଇଁ ଅତ୍ୟଧିକ ଆଗ୍ରହ କିନ୍ତୁ ପ୍ରକୃତ ଶିକ୍ଷାର ଗୁଣାତ୍ମକ ବିକାଶକୁ ହତାଦର । (୧୦) ଶିକ୍ଷକ, ବୁଦ୍ଧିଜୀବୀ, କର୍ମଚାରୀମାନଙ୍କୁ ମାର୍କେଟ ମୂଲ୍ୟଠାରୁ କମ୍ ଦରମା ଦେଇ ଅଧିକ କାମ ହାସଲ । (୧୧) ବ୍ୟାଙ୍କମାନଙ୍କ କାର୍ଯ୍ୟପ୍ରଣାଳୀରେ ଅଯଥା ହସ୍ତକ୍ଷେପ ଓ (୧୨) କୃଷି ଓ ଶିଳ୍ପ ଉତ୍ପାଦନ ବୃଦ୍ଧିକୁ ଉପେକ୍ଷା କରି ମୁଦ୍ରା ବିନିମୟ ହାର ବଢାଇବା ।

ଭାରତ ଭଳି ଅନେକ ଦେଶ ଏହି ପାପର ନର୍କକୁଣ୍ଡରେ ବୁଡି ରହିଛନ୍ତି । ଦେଶରେ ବିଶିଷ୍ଟ ଅର୍ଥନୀତିଜ୍ଞ, ସମାଜବିଜ୍ଞାନୀ, ବୁଦ୍ଧିଜୀବୀ, ସ୍ୱେଚ୍ଛାସେବୀ ଅନୁଷ୍ଠାନ, ବିଶ୍ୱବିଦ୍ୟାଳୟ, ରାଜନୀତିଜ୍ଞମାନେ ଏକାଠି ବସି ଏ ସମ୍ପର୍କରେ ବିଶଦ ଆଲୋଚନା କରନ୍ତୁ; ଦଳ, ମତ, ପନ୍ଥ ନିର୍ବିଶେଷରେ । ନିରାପତ୍ତା ପରିଷଦରେ ସଭ୍ୟ ହେବା ଯେତିକି ଆବଶ୍ୟକ, ତାଠାରୁ ଅଧିକ ଜରୁରୀ ଆବଶ୍ୟକତା ହେଉଛି କିପରି ଦ୍ରୁତ ଉନ୍ନୟନ ଜରିଆରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଓଡ଼ିଶାରେ ୪୦% ଓ ଭାରତର ୨୪% ଲୋକଙ୍କୁ ସୀମାରେଖା ଉପରକୁ ଉଠାଇବା ଓ ଏକ ଆତ୍ମସମ୍ମାନର ଜୀବନଯାପନ ପାଇଁ ସେମାନଙ୍କୁ ସଶକ୍ତ କରିବା । ଏହି ପୁଣ୍ୟ କାମଗୁଡିକ ହେଲେ, ସମାଜରୁ ପାପ ଓ ପାପାଚାରୀଙ୍କ ସଂଖ୍ୟା ହ୍ରାସହେବ । ପ୍ରଗତିର ବାଟରେ ପଡିଥିବା କଣ୍ଟା ହଟିଯିବ । ସାଧାରଣ ଲୋକଙ୍କର ହତାଶା ଦୂର ହୋଇ ଆତ୍ମବିଶ୍ୱାସ ବଢିବ । ଏହି ପାପ ସବୁକୁ ଚିହ୍ନଟ କରି ପୁନର୍ବାର ସେଗୁଡିକୁ ନ ଦୋହରାଇଲେ ଅଚିରେ ଦେଶରୁ ଦାରିଦ୍ର୍ୟ ଦୂର ହେବ ।

*୧୨ ଜୁନ୍, ୨୦୦୮*



# ବିଦେଶରେ ଶାଢ଼ି ଓ ଭାରତ ପ୍ରେମ

କପଡ଼ା କମ୍ ଓ ଚମଡ଼ା ବେଶିପାଇଁ ପ୍ରସିଦ୍ଧ ବଲିଉଡ୍‌ର ଶ୍ୟାମା ସୁନ୍ଦରୀ ବିପାଶା ବସୁ ବଙ୍ଗଳା ଫିଲ୍ମ 'ସବ୍ ଚରିତ୍ର କାଳ୍ପନିକ'ରେ ଲମ୍ବା ଶାଢ଼ି ପିନ୍ଧି ଅଭିନୟ କରୁଥିବା ଖବର ବହୁଦିନ ଧରି ଗଣ ମାଧ୍ୟମରେ ଚର୍ଚ୍ଚା ହେଲା । ସୁଟିଂ ସମୟରେ ବିପାଶା ଚଟ୍‌ପଟ୍ ଶାଢ଼ି ବଦଳାଇ କୁଆଡେ ସମସ୍ତଙ୍କୁ ଚକିତ କରିଦେଉଥିଲେ । ଏ ଖବର ପଢ଼ି ଏକ ବହୁବର୍ଷର ପୁରୁଣା ଅନୁଭୂତି ମନେ ପଡିଲା । ୧୯୮୭ ମସିହା କଥା । ତତ୍‌କାଳୀନ ସୋଭିଏତ୍ ୟୁନିଅନ୍‌ରେ ଚାଲିଥାଏ ଇଣ୍ଡିଆ ଫେଷ୍ଟିଭାଲ - ଭାରତ ଉତ୍ସବ । ଏକ ୧୬୬ ଜଣିଆ ଭାରତୀୟ ଯୁବ କଳାକାର ଗ୍ରୁପ୍‌ର ନେତୃତ୍ୱ ନେଇ ମୁଁ ଯାଇଥାଏ ସୋଭିଏତ୍ ୟୁନିଅନ - ଏବକାର ରୁଷିଆ ଓ ଆଉ ୧୬ଟି ଦେଶର ସମଷ୍ଟି । 'ଏଆର ଇଣ୍ଡିଆ'ର ଏକ ସ୍ୱତନ୍ତ୍ର ବିମାନରେ ଆମେ ସମସ୍ତେ ଯାଉଥାଉ । ଏହି କଳାକାର ଦଳରେ ଥାଆନ୍ତି ସିନେମା ଓ ଥିଏଟର ଜଗତର ଯୁବ କଳାକାର, ଯୁବ କବି ଓ ସଙ୍ଗୀତକାର, ଗାୟକ-ଗାୟିକା ଓ ଯୋଗାସନ ବିଶେଷଜ୍ଞ । ଏଇ ୧୬୬ ଜଣିଆ ଦଳର ନେତୃତ୍ୱ ନେଇଥାନ୍ତେ ପଶ୍ଚିମବଙ୍ଗର ତତ୍‌କାଳୀନ ଯୁବ ଓ ସଂସ୍କୃତି ମନ୍ତ୍ରୀ ସୁବାସ ଚକ୍ରବର୍ତ୍ତୀ । କିନ୍ତୁ ହଠାତ୍ ପଶ୍ଚିମବଙ୍ଗରେ ବନ୍ୟା ହେତୁ ଶେଷ ମୁହୂର୍ତ୍ତରେ ଶ୍ରୀ ଚକ୍ରବର୍ତ୍ତୀ ନିଜ ପ୍ରୋଗ୍ରାମ ରଦ୍ଦ କରିଦେଲେ । ସେତେବେଳକୁ ଆମେ ପ୍ଲେନ୍‌ରେ ଚଢି ସାରିଥିଲୁ ଏବଂ ଆମକୁ ସ୍ୱାଗତ କରିବାପାଇଁ ତାସକେଣ୍ଟ ଏଆରପୋର୍ଟରେ ଉଜ୍‌ବେକିସ୍ତାନର ଶାସନମୁଖ୍ୟ ଓ ତାସକେଣ୍ଟ ନଗରୀର ମେୟର ପହଞ୍ଚି ଯାଇଥିଲେ । ତେଣୁ ଅଗତ୍ୟା, ପ୍ଲେନ୍ ଭିତରେ ମୋତେ କଳାକାର ଦଳର ମୁଖ୍ୟ ପ୍ରତିନିଧି ଭାବରେ ଘୋଷଣା କରାଗଲା - ପ୍ରୋଟୋକଲ୍ ଆବଶ୍ୟକତା ଦୃଷ୍ଟିରୁ । ମୁଁ ନିଜେ କଳାକାର ନ ହୋଇଥିବାରୁ ଖୁବ୍ ଅଡୁଆ ଲାଗିଲା ।

ଆମେ ଦୁଇଘଣ୍ଟା ଭିତରେ ତାସ୍‌କେଣ୍ଟ ବିମାନ ବନ୍ଦରରେ ପହଞ୍ଚିଗଲୁ । ସ୍ୱାଗତ କରିବାକୁ ଆସିଥିଲେ ଅସଂଖ୍ୟ ଲୋକ । ଆମକୁ ପାଛୋଟି ନିଆଗଲା ଏକ ମଞ୍ଚ ଉପରକୁ । ଉପରେ ହେଲିକପ୍ଟର ଉଡି ପୁଷ୍ପ ବୃଷ୍ଟି କରୁଥିଲେ । ମୋ ବାମ ପଟେ ବସିଥିଲେ ନଗରପାଳ, ଡାହାଣପଟେ ତାସକେଣ୍ଟର ମୁଖ୍ୟମନ୍ତ୍ରୀ ଓ ତାଙ୍କ ସାଥୀମାନେ । ସ୍ୱାଗତ ଭାଷଣ ସରିଲା ପରେ ଆମକୁ ନେବାକୁ ଆସିଥିବା ୫୦ରୁ ଅଧିକ ଗାଡିରେ

ଶୋଭାଯାତ୍ରା କରି ଆମକୁ ହୋଟେଲ ପର୍ଯ୍ୟନ୍ତ ନିଆଗଲା । ରାସ୍ତାର ଉଭୟ ପଟେ ଲୋକେ ଭାରତ ଓ ସୋଭିଏତ୍ ୟୁନିଅନର ଛୋଟ ଛୋଟ ପତାକା ଉଡାଇ କହୁଥିଲେ 'ଇଣ୍ଡିଆ, ଇଣ୍ଡିଆ' । ପୃଥିବୀର ବହୁ ଦେଶ ବୁଲିଛି, କିନ୍ତୁ ଭାରତ ପ୍ରତି ଏତେ ସ୍ନେହ ଶ୍ରଦ୍ଧା ମୁଁ ଅନ୍ୟ କୌଣସି ଦେଶରେ ଦେଖିନାହିଁ । ହୋଟେଲରେ ପହଞ୍ଚିବା ପରେ ପ୍ରୋଟୋକଲ୍ ଦାୟିତ୍ୱରେ ଥିବା ନାବାଏଭ୍ ମୋତେ ଏକାକୀ ଭେଟିବାକୁ ଚାହିଁଲେ । ଆମେ ଭିତରୁ ରୁମ ବନ୍ଦ କରି ଏକାଠି ବସିଲୁ । କହିଲେ 'ଆପଣ ଯଦି ଖରାପ ନ ଭାବିବେ ମୁଁ ଗୋଟିଏ ଛୋଟ ଅନୁରୋଧ କରିବି ।' ମୁଁ କହିଲି, 'କରନ୍ତୁ' । ସେ କହିଲେ 'ଆମ ଦେଶ ଲୋକେ ଭାରତୀୟ ସିନେମା ଭାରି ପସନ୍ଦ କରନ୍ତି ଓ ତାଠାରୁ ଆହୁରି ଭଲପାନ୍ତି ଶାଢ଼ି ପିନ୍ଧିଥିବା ଭାରତୀୟ ମହିଳାଙ୍କୁ, କିନ୍ତୁ ଆପଣଙ୍କ ଦଳରେ କେହି ଜଣେ ହେଲେ ମହିଳା ଶାଢ଼ି ପିନ୍ଧି ନଥିବାରୁ ଆମ ଲୋକେ ନିରାଶ ହେଉଛନ୍ତି । କାରଣ ଶାଢି ପିନ୍ଧା ଭାରତୀୟ ମହିଳା ଭାରି ସୁନ୍ଦର ଦିଶନ୍ତି । ଯଦି ଆପଣ ସାଙ୍ଗରେ ଥିବା ମହିଳାମାନଙ୍କୁ ଶାଢ଼ି ପିନ୍ଧିବାକୁ ପ୍ରବର୍ତ୍ତାଇ ପାରନ୍ତେ, ଖୁବ୍ ଭଲ ହୁଅନ୍ତା । ମୁଁ ନାବାଏଭ୍‌ଙ୍କୁ କହିଲି, 'ନିଶ୍ଚୟ ଚେଷ୍ଟା କରିବି' । ଆମ ପ୍ରତିନିଧି ଦଳରେ ୬୨ ଜଣ ମହିଳା ଥାନ୍ତି । ସମସ୍ତଙ୍କୁ ଡାକି ଏକଥା କହିଲି ଓ ସହଯୋଗ କରିବାପାଇଁ ଅନୁରୋଧ କଲି । କିନ୍ତୁ ଅଧାରୁ ଅଧିକ ମହିଳାଙ୍କ ପାଖରେ ଶାଢ଼ି ନଥିଲା । ଅନ୍ୟମାନେ ଦୁଇ ତିନିଖଣ୍ଡ ଲେଖାଏଁ ଶାଢ଼ି ଆଣି ଆସିଥିଲେ । ସମସ୍ତେ ତାକୁ ଇ ବାଣ୍ଟିକୁଣ୍ଟି ପିନ୍ଧି ବାହାରିଲେ । ସେମାନଙ୍କୁ ଶାଢ଼ି ବେଶରେ ଦେଖି ଲୋକେ ଖୁବ୍ ଖୁସି ହୋଇଗଲେ । ଅନେକ ମନେ ମନେ ଭାବିଲେ ଏମାନେ ସମସ୍ତେ ବଲିଉଡ୍‌ର ହିରୋଇନ୍ । ନାବାଏଭ୍ ଧନ୍ୟବାଦ ଦେଇଗଲେ । ମୁଁ ଭାବୁଥିଲି କି ବିଡମ୍ବନା ! ଆମ ଦେଶ ମହିଳାଙ୍କୁ ଆମ ଦେଶୀ ଶାଢ଼ି ପିନ୍ଧିବାକୁ ସୋଭିଏତ୍ ୟୁନିଅନ ଲୋକଙ୍କୁ କହିବାକୁ ପଡିଲା । ମହିଳାଙ୍କୁ ଦେଖି ଆମ ଦଳରେ ଥିବା ପୁରୁଷମାନେ ବି ଦେଶୀ ପୋଷାକ ପିନ୍ଧି ବୁଲିଲେ ।

ମଧ୍ୟ ଏସିଆର ମଧ୍ୟଭାଗରେ ତାସ୍‌କେଣ୍ଟ ନଗରୀ - ଟୁରିଷ୍ଟମାନେ କହନ୍ତି ଇଷ୍ଟର୍ଣ୍ଣ ପର୍ଲ । ଉଜ୍‌ବେକିସ୍ତାନ ଚାରିପଟେ ଘେରି ରହିଛନ୍ତି ଆଉ ୪ଟି ଦେଶ - କାଜାକ୍‌ସ୍ତାନ, କିରଗିଜ୍‌ସ୍ତାନ, ତାଜିକିସ୍ତାନ ଓ ଆଫଗାନିସ୍ତାନ । ଅଢ଼େଇ ହଜାର ବର୍ଷର ପୁରୁଣା ସଂସ୍କୃତି । ଲୋକମାନେ ଯେତିକି ସୁନ୍ଦର ସେତିକି ସାହସୀ । ବିଶ୍ୱବିଜୟୀ ଆଲେକ୍‌ଜାଣ୍ଡାରଙ୍କ ବିଶ୍ୱ ଜୟଯାତ୍ରାକୁ ବର୍ଷ ବର୍ଷ ଧରି ଏମାନେ ରୋକି ଦେଇଥିଲେ । ଭାରତୀୟ ଇତିହାସରେ ନିନ୍ଦିତ ତୈମୁରଲଙ୍ଗ ଏଠାକାର ସୁପର ହିରୋ । କିନ୍ତୁ ଗତ ପ୍ରାୟ ଦୁଇଶହ ବର୍ଷ ଧରି ବିଭିନ୍ନ ଦେଶ ଓ ସାମ୍ରାଜ୍ୟ ଅଧୀନରେ ରହି ୧୯୯୧ ମସିହାରେ ନିଜ ସ୍ୱାଧୀନତା ଫେରି ପାଇଲେ । ସେପ୍ଟେମ୍ବର ୧ ତାରିଖ ଏଠାରେ

ସ୍ୱାଧୀନତା ଦିବସ ପାଳନ କରାଯାଏ । କାରଣ, ଏହି ଦିନ ଉଜ୍‌ବେକିସ୍ତାନ ସୋଭିଏତ୍ ୟୁନିଅନଠାରୁ ସ୍ୱତନ୍ତ୍ର ହୋଇ ଯାଇଥିଲା । ଜାନୁଆରି ୨୦୦୮ରୁ ଏ ଦେଶରେ ମୃତ୍ୟୁଦଣ୍ଡ ଉଠାଇ ଦିଆଯାଇଛି । ୪୪୭ ହଜାର ୪୦୦ ବର୍ଗ କିଲୋମିଟର ଅଞ୍ଚଳକୁ ନେଇ ଉଜ୍‌ବେକିସ୍ତାନ ପୃଥିବୀର ୫୬ତମ ବୃହତ୍ ରାଷ୍ଟ୍ର । ପେଟ୍ରୋଲ, ପ୍ରାକୃତିକ ଗ୍ୟାସ, କୋଇଲା, ତମ୍ବା, ରୂପା, ସୁନା ଓ ୟୁରାନିୟମ୍ ଭଳି ମୂଲ୍ୟବାନ ଖଣିଜ ସମ୍ପଦରେ ଭରପୂର । ଲୋକସଂଖ୍ୟା ଓଡ଼ିଶାଠାରୁ ପ୍ରାୟ ଏକ କୋଟି କମ୍ । କିନ୍ତୁ ପ୍ରାୟ ସମସ୍ତେ ସାକ୍ଷର - ୯୯.୩% । ଭାରତ ଭଳି ପ୍ରାୟ ସବୁ ବଡ ସହରକୁ ରେଳରାସ୍ତା ରହିଛି । ଆମେ ତାସକେଣ୍ଟରେ ଯେଉଁ ଟ୍ରେନ୍‌ରେ ଯାଉଥିଲୁ ତା ନାଁ ରଖାଯାଇଥିଲା 'ମୈତ୍ରୀ' - ଭାରତ ଓ ତତ୍କାଳୀନ ସୋଭିଏତ୍ ୟୁନିଅନ ମଧ୍ୟରେ ଥିବା ମିତ୍ରତାର ପ୍ରତୀକ ଭାବରେ ।

ଭାରତୀୟମାନଙ୍କପାଇଁ ତାସକେଣ୍ଟର ଅନ୍ୟ ଏକ ଦର୍ଶନୀୟ ସ୍ଥାନ ହେଲା 'ଲାଲବାହାଦୁର ଶାସ୍ତ୍ରୀ ସଂସ୍କୃତି କେନ୍ଦ୍ର' । ଯୁଦ୍ଧ ପରେ ଭାରତ-ପାକିସ୍ତାନ ମଧ୍ୟରେ ଶାନ୍ତି ପାଇଁ ଏଇଠି ଭାରତର ଦ୍ୱିତୀୟ ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀ ଓ ପାକିସ୍ତାନ ରାଷ୍ଟ୍ରପତି ଆୟୁବ୍ ଖାଁଙ୍କ ମଧ୍ୟରେ ୧୯୬୫ ମସିହାରେ ତାସକେଣ୍ଟ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ସେଇଦିନ ରାତିରେ ଶାସ୍ତ୍ରୀଜୀ ତାସକେଣ୍ଟରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ଆୟୁବ୍ ଖାଁ ଓ କୋସିଜିନ୍ ତାଙ୍କ ମର ଶରୀରକୁ କାନ୍ଧେଇ ଶେଷ ସମ୍ମାନ ପ୍ରଦର୍ଶନ କରିଥିଲେ । ତାଙ୍କରି ସ୍ମୃତି ରକ୍ଷାପାଇଁ ଏଠାରେ ଉଭୟ ଭାରତ ଓ ସୋଭିଏତ୍ ନୃତ୍ୟ, ସଙ୍ଗୀତ ଭାଷା ପଢାଯାଏ । ବର୍ଷସାରା କାର୍ଯ୍ୟକ୍ରମ ଲାଗି ରହିଥାଏ । ଆମେ ଏଠାରେ ପହଞ୍ଚିଲୁ ଦିନ ଏଗାରଟାରେ । ରାସ୍ତାର ଉଭୟ ପଟେ ସଂସ୍କୃତି କେନ୍ଦ୍ରରେ ପଢୁଥିବା ପିଲାମାନେ 'ସ୍ୱାଗତମ୍' 'ସ୍ୱାଗତମ୍' କହି ପାଛୋଟି ନେଲେ । କେନ୍ଦ୍ରର ଅଧ୍ୟକ୍ଷା ହିନ୍ଦୀରେ ଏକ ଲମ୍ବା ଭାଷଣ ଦେଇ ଭାରତକୁ ସୋଭିଏତ୍ ୟୁନିଅନର "ସୁଖ-ଦୁଃଖର ସାଥୀ" କହି ବକ୍ତବ୍ୟ ଶେଷ କଲେ ।

ତାପରେ ଉଜ୍‌ବେକୀ ଝିଅମାନେ ଶାଢ଼ି ପିନ୍ଧି ଯେଉଁ ହିନ୍ଦୀ ଫିଲ୍ମ ଗୀତଟି ଗାଇଲେ ସେଇଟି ତାଙ୍କ ଦେଶରେ ସବୁଠୁ ଲୋକପ୍ରିୟ ଥିଲା - 'ମେରା ଜୁତା ହେ ଜାପାନୀ, ପତଲୁନ ଇଂଲିଶସ୍ତାନୀ, ସରପେ ଲାଲ ଟୋପି ରୁଷି ଫିର୍ ଭି ଦିଲ୍ ହେ ହିନ୍ଦୁସ୍ତାନୀ' । ଶାଢ଼ି ପିନ୍ଧି ରୁଷି-ଉଜବେକୀ ଝିଅ ଓ ସେମାନଙ୍କ ହିନ୍ଦୀ ଗୀତ ଓ ଭାଷା ଶୁଣି ଲାଗିଲା ସତେ ଯେମିତି ଏ ଦେଶ ସହିତ ଆମର ଯୁଗଯୁଗର ବନ୍ଧନ । ମୋ ପାଖରେ ଥିବା ରୁଷି ଗାଇଡ୍ କହିଲେ - ଭାରତ ଛଡା ସେ ଆଉ କୋଉଠି ଶାଢ଼ି ଦେଖି ନାହାନ୍ତି । ଏହାର ଲୋକପ୍ରିୟତାର ରହସ୍ୟ କ'ଣ ? ମୁଁ ଉତ୍ତର ଦେଇ କହିଲି "ସ୍ତ୍ରୀଙ୍କ ଶାଢ଼ି ଓ ପୁରୁଷଙ୍କ ଧୋତି ପୃଥିବୀରେ ଏକମାତ୍ର ପୋଷାକ, ଯାହା ସିଲାଇ ହୁଏ ନାହିଁ, ଦର୍ଜି

ଦରକାର ପଡେ ନାହିଁ, ଏହା ପଗଡି, ଲୁଙ୍ଗି, ଅଙ୍ଗବସ୍ତ୍ର, ଉତ୍ତରୀୟ, ଦୁପଟ୍ଟା, ଓଢଣା, ଚାଦର, ଠେକା, ଗାମୁଛା, କଚ୍ଛା ଏପରି ଭାବେ ପାଞ୍ଚ ହଜାରରୁ ଅଧିକ ଡିଜାଇନ୍‌ରେ ବିନା ସିଲାଇରେ ପିନ୍ଧି ହୁଏ । ପାର୍ଟି, ଅଫିସ୍, ବାହାଘର, ସଭା, ଉତ୍ସବ ସବୁଠି ଚଳେ । ଏହା ପ୍ରାଚୀନ ଭାରତୀୟ ସଂସ୍କୃତି ଓ ସଭ୍ୟତାର ନିତ୍ୟ ନୂତନ ଫେସନ୍ ଷ୍ଟେଟମେଣ୍ଟ । ସବୁଠୁ ପୁରାତନ, ପୁଣି ସବୁଠୁ ଆଧୁନିକ । ପୃଥିବୀର ଅଦ୍ୱିତୀୟ ପୋଷାକ - ଆମ ଚାଲିଚଳଣ, ଅର୍ଥନୀତି, ମୂଲ୍ୟବୋଧ, ଜଳବାୟୁ ଓ ପରିବେଶର ସଖା । ପିନ୍ଧିବା ଯେତିକି ସହଜ, ଖୋଲିବା ତାଠାରୁ ଅଧିକ ସହଜ - ଜଷ୍ଟ ୱାନ୍ ପିସ୍ ଅଫ୍ କ୍ଲଥ୍ । ଏସବୁ ଶୁଣି ସେ ଖୁବ୍ ଖୁସି ହୋଇଗଲେ ଓ କହିଲେ ମୋ ସ୍ତ୍ରୀଙ୍କୁ କହିବି, ଆସି ଶିଖିଯିବେ । ସତରେ ଭାରତଠାରୁ ଆମର ଅନେକ କଥା ଶିଖିବାର ଅଛି । ଆପଣଙ୍କ 'ଇଣ୍ଡିଆ ଫେଷ୍ଟିଭାଲ ଇନ୍ ସୋଭିଏତ୍ ୟୁନିଅନ'କୁ ଆମ ଲୋକେ ଭାରି ପସନ୍ଦ କରୁଛନ୍ତି । ୟୁରୋପ, ଆମେରିକାରେ ଧୋତି ଓ ଶାଢ଼ି କ୍ରମେ ଜନପ୍ରିୟ ହେଉଛି । ଛୋଟ ଛୋଟ ଟ୍ରେଣ୍ଡି ପୋଷାକ ଆମ ଝିଅଙ୍କପାଇଁ ଠିକ୍ ନୁହେଁ । ଆପଣମାନେ ଶାଢି, ଧୋତି, କୁର୍ତ୍ତା ପରମ୍ପରା ବଜାୟ ରଖନ୍ତୁ ।

ଏବେ ରୁଷିଆର ପ୍ରଧାନମନ୍ତ୍ରୀ ଭିକ୍ଟର ଜୁବକୋଭ୍ ଦିଲ୍ଲୀଠାରେ କହିଗଲେ, ନୂଆ ବନ୍ଧୁ ଅନ୍ୱେଷଣରେ ଭାରତ ଭଳି ଏକ ପୁରୁଣା ବନ୍ଧୁକୁ ଆମେ ଭୁଲି ପାରିବୁ ନାହିଁ । ନବନିର୍ବାଚିତ ରାଷ୍ଟ୍ରପତି ମେଡ୍‌ଭେଡେଭ୍ ଭାରତ ସହ ବନ୍ଧୁତ୍ୱ ଆହୁରି ଦୃଢ କରିବାକୁ ଘୋଷଣା କରିଛନ୍ତି । ଭାରତୀୟ ସଙ୍ଗୀତ, ନୃତ୍ୟ, ସାହିତ୍ୟ, କଳା ଓ ରାନ୍ଧଣା ରୁଷିଆରେ ଖୁବ୍ ଲୋକପ୍ରିୟ । ପ୍ରାୟ କୋଡିଏ ବର୍ଷ ପରେ ଆଉ ଥରେ ରୁଷିଆରେ ଭାରତ ଉତ୍ସବ ଓ ଭାରତରେ ରୁଷିଆ ଉତ୍ସବ ପାଳିତ ହେବ ବୋଲି ନିଷ୍ପତ୍ତି ହୋଇଛି । ୨୦୦୮ ମସିହାକୁ ରୁଷିଆରେ ଭାରତ ବର୍ଷ - 'ଇଅର ଅଫ୍ ଇଣ୍ଡିଆ' ଓ ଭାରତରେ ରୁଷିଆ ବର୍ଷ - 'ଇଅର ଅଫ୍ ରୁଷିଆ' ଭାବରେ ପାଳନ କରାଯାଉଛି । ଏହି ଉପଲକ୍ଷେ ଉଭୟ ଦେଶରେ ଦେଢଶହ ଲେଖାଏଁ କାର୍ଯ୍ୟକ୍ରମ ଆୟୋଜିତ ହୋଇଛି - ସଂସ୍କୃତିଗତ ଆଦାନ ପ୍ରଦାନ ପାଇଁ । ଏହାଦ୍ୱାରା ନୂଆ ଭାରତ ଓ ନୂଆ ରୁଷିଆ ପରସ୍ପର ଅଧିକ ନିକଟବର୍ତ୍ତୀ ହୋଇଛନ୍ତି । ହିନ୍ଦୀ ଭାଷା, ସଙ୍ଗୀତ ଓ ଶାଢ଼ି ପୁଣି ଥରେ ରୁଷିଆରେ ଲୋକପ୍ରିୟତା ଜମାଇବେ । ବହୁ ଭାରତୀୟ ନାରୀ ଶାଢ଼ି ଫିଙ୍ଗି ଦେଲେଣି - ମୋ ସାଙ୍ଗରେ ଥିବା ସବୁ ମହିଳାଙ୍କୁ ବିଦେଶୀମାନେ ଶାଢି ପିନ୍ଧାଇଲେ, ତାଙ୍କଠୁ ଶାଢି ପିନ୍ଧା ଶିଖିଲେ । ଆମ ଦେଶର ଦେଶୀ ମହିଳାଙ୍କୁ କିଏ ଶିଖାଇବ ?

*୩ ଏପ୍ରିଲ, ୨୦୦୮*



# ବାଡ଼ି ଚାଷ, ବ୍ରେଡ୍ ଓ ଫୁଟବଲ୍

ଫରଘନା, ବୁଖାରା, ସମରକନ୍ଦ ଯାତ୍ରା ସାରି ଆମେ ଫେରୁଥିଲୁ 'ମୈତ୍ରୀ ରେଳଗାଡ଼ିରେ ତାସକେଣ୍ଟକୁ । ସେତେବେଳକୁ ସୋଭିଏତ୍ ୟୁନିଅନ୍‌ରେ ୨୦ ଦିନ ବିତି ଯାଇଥାଏ, କିନ୍ତୁ ତାସକେଣ୍ଟରେ ପହଞ୍ଚିଲା ଦିନ ମୋ ସ୍ତ୍ରୀଙ୍କୁ ଯେଉଁ ପତ୍ର ଲେଖିଥିଲି, ତାହା ୨୦ ଦିନ ପରେ ମଧ୍ୟ ଭାରତରେ ପହଞ୍ଚି ନଥାଏ । ରେଳ କୋଚ୍‌ରେ ଆମ ସାଥିରେ ଥାନ୍ତି ଜଣେ ଋଷୀୟ ପ୍ରଫେସର ପାନ୍‌କୋଭ୍ ଓ ଜଣେ ଅନୁବାଦକ । ତାଙ୍କୁ ପଚାରିଲି ଏଆର୍ ମେଲ୍‌ରେ ପଠାଇଥିବା ମୋ ଚିଠିକୁ ତିନି ସପ୍ତାହ ହେଲାଣି, କିନ୍ତୁ ଏ ପର୍ଯ୍ୟନ୍ତ ଘରେ ପହଞ୍ଚି ନାହିଁ । ସେ କହିଲେ ଆଉ ତିନି ସପ୍ତାହ ଲାଗିବ, କାରଣ ଆପଣ କ'ଣ ସବୁ ଲେଖିଛନ୍ତି, ଚିଠି ଖୋଲି ଆମ ଡାକ ବିଭାଗ ଆଗ ଯାଞ୍ଚ କରିବେ । ଆଗରୁ ସୋଭିଏତ୍ ୟୁନିଅନ୍‌କୁ "ଆଇରନ୍ କର୍ଟେନ୍" (ଲୌହ ପରଦା) ଓ ଚୀନ୍‌କୁ 'ବାମ୍ବୁ ପରଦା'ର ଦେଶ କୁହାଯାଉଥିବା କଥା ଶୁଣିଥିଲି - ଏବେ ଅଙ୍ଗେ ନିଭେଇଲି । କାରଣ ମୁଁ ଘରକୁ ଯେଉଁ ଚିଠି ପଠାଇଥିଲି, ଛଅ ସପ୍ତାହ ପରେ ଓ ଭାରତ ଫେରିବାର ଏକ ସପ୍ତାହ ପରେ ସେ ଚିଠି ଦିଲ୍ଲୀରେ ପହଞ୍ଚିଥିଲା । ଉଜ୍‌ବେକିସ୍ତାନରେ ଯେଉଁଠି ଯେଉଁଠି ରହିଥିଲୁ ଓ ସଭା, ଉତ୍ସବରେ ଯୋଗ ଦେଇଥିଲୁ, ସବୁଠି ଜଣେ ଋଷୀୟ ଆମ ସାଙ୍ଗରେ ଥିଲେ ଏବଂ ବିଭିନ୍ନ ନିଷ୍ପତ୍ତିପାଇଁ ଲୋକେ ତାଙ୍କୁ ଅପେକ୍ଷା କରୁଥିଲେ । ଏହା ଥିଲା ସେତେବେଳର ସରକାରଙ୍କ ନୀତି । ଋଷୀୟ ଗୁପ୍ତଚର ସଂସ୍ଥା କେ.ଜି.ବି. ସମସ୍ତଙ୍କ ଉପରେ ନଜର ରଖିଥାନ୍ତି । ବିଦେଶୀ ଲୋକେ ରହୁଥିବା ହୋଟେଲ୍‌ରେ ବି ସେନ୍‌ସର ଲଗାଯାଇଥାଏ । ସେତେବେଳର ସବୁ ମିଡିଆ ଥିଲା ସରକାରୀ, ସବୁ ଅଫିସରମାନେ କମ୍ୟୁନିଷ୍ଟ ପାର୍ଟିର ଲୋକ । ସୋଭିଏତ୍ ୟୁନିଅନ୍ ଭୁଶୁଡ଼ି ପଡ଼ିବାର ଏହା ଏକ ପ୍ରଧାନ କାରଣ ଥିଲା ।

ପାବ୍‌କୋଭ୍‌ଙ୍କୁ ସେଠାକାର ଉଚ୍ଚ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ପଚାରିଲି । କହିଲେ ଆମ ବିଶ୍ୱବିଦ୍ୟାଳୟ, ମେଡିକାଲ, ଇଞ୍ଜିନିୟରିଂ ଅନୁଷ୍ଠାନମାନଙ୍କରେ ଛାତ୍ର ଅଭାବ, ତେଣୁ କମ୍ପିଟିସନ୍ ଓ କ୍ୱାଲିଟି ନାହିଁ । ମୁଁ କହିଲି ଆମ ଦେଶରେ ତ ପାଞ୍ଚ ହଜାର ଛାତ୍ରଙ୍କ ମଧ୍ୟରୁ ଜଣେ ଆଇଆଇଟିରେ ସିଟ୍ ପାଆନ୍ତି । କହିଲେ "ଆମ ଦେଶରେ ସେକେଣ୍ଡାରୀ ଶିକ୍ଷା ପରେ ସବୁ ପିଲାଙ୍କପାଇଁ ଚାକିରି ବ୍ୟବସ୍ଥା ସୁରକ୍ଷିତ ଏବଂ ଜଣେ ମାଟ୍ରିକ୍ ଓ ଇଞ୍ଜିନିୟରିଂ ବା ଡାକ୍ତରଙ୍କ ଦରମାରେ ବିଶେଷ ଆଖିଦୃଶିଆ ପ୍ରଭେଦ ନାହିଁ । ତେଣୁ ୨୦୦ ରୁବଲ ଅଧିକ ପାଇବାପାଇଁ ଅନେକ ପିଲା ଆଉ ଅଧିକା ପାଞ୍ଚବର୍ଷ ପଢିବାକୁ ରାଜି ହୁଅନ୍ତି ନାହିଁ । ଏକ ସାମ୍ୟବାଦୀ ଦେଶ ହୋଇଥିବାରୁ ଏଠାରେ ବିଭିନ୍ନ ସ୍ତରରେ କାମ କରୁଥିବା ଲୋକଙ୍କ ଦରମାରେ ବିଶେଷ ଫରକ, ନୀତି ବିରୁଦ୍ଧ । ସବୁ କ୍ଷେତ୍ରରେ ଏହି ରାଜନୈତିକ ଦର୍ଶନର ପ୍ରଭାବ ରହିଛି । ମୁଁ ଜଣେ ପ୍ରଫେସର, କିନ୍ତୁ ବ୍ୟାଚେଲର । ତେଣୁ ଆମ ବିଶ୍ୱ ବିଦ୍ୟାଳୟର ଲାବରେଟୋରୀ ଆଟେଣ୍ଡାଣ୍ଟଙ୍କୁ ୪ଟି ବେଡ୍‌ରୁମ୍ ମିଳିଥିବା ବେଳେ ମୋ କ୍ୱାର୍ଟରରେ ଦୁଇଟି ବେଡ୍‌ରୁମ୍, କାରଣ ଆଟେଣ୍ଡାଣ୍ଟର ଛ'ଟି ପିଲା, ତାର ଆବଶ୍ୟକତା ମୋଠାରୁ ବେଶୀ । ସେହିପରି ଆମ କମ୍ୟୁନ୍‌ରେ ଦୁଇଟି ପରିବାରର ଦୁଇଜଣ ବ୍ୟକ୍ତି ଦିନକୁ ଦଶ ଘଣ୍ଟା ଖଟିଲେ ମଧ୍ୟ ଯାହାଙ୍କର ପିଲା ଅଧିକ ତାଙ୍କୁ ଅଧିକ ଗହମ, ଡାଲି ଓ ପନିପରିବା ମିଳେ ।"

ପୁଣି ଅତି ସନ୍ତର୍ପଣରେ ଓ ଚାପା ଗଳାରେ କହିଲେ, ଆମ କମ୍ୟୁନ୍ ବ୍ୟବସ୍ଥା ଫେଲ୍ ମାରିଲାଣି । କାରଣ ଲୋକେ ସମାନ ପରିଶ୍ରମପାଇଁ ସମାନ ଭାଗ ନ ମିଳିଲେ ମନ ଦେଇ କାମ କରିବାକୁ ରାଜି ହେଉନାହାନ୍ତି । ତେଣୁ ଏବେ ଆମକୁ ବାହାର ଦେଶମାନଙ୍କରୁ ଖାଦ୍ୟ ଶସ୍ୟ ଆମଦାନୀ କରିବାକୁ ପଡୁଛି । ପୂର୍ବତନ ରାଷ୍ଟ୍ରପତି ନିକିତା କ୍ରୁଶ୍ଚେଭ୍‌ଙ୍କ ସମୟରେ ଓ ତା'ପରେ ଚାଷୀମାନଙ୍କୁ ବଳକା ସମୟରେ ନିଜ ବାଡିରେ ଚାଷ କରିବା ଓ ତା'ର ସମ୍ପୂର୍ଣ୍ଣ ଆଦାୟ ଓ ବିକ୍ରୀର ସ୍ୱାଧୀନତା ମିଳିବା ପରେ ଏବେ ଅବସ୍ଥା ସୁଧୁରିଛି । ଚାଷୀଙ୍କ ନିଜ ବାଡିର ଉତ୍ପାଦନ କମ୍ୟୁନ୍ ଉତ୍ପାଦନଠାରୁ ବହୁ ଅଧିକ ହେଉଛି । ରାସ୍ତାକଡରେ ବସି ଏବେ ସେମାନେ ଶସ୍ୟ ଓ ପନିପରିବା ବିକି ନିଜ ଆକାଉଣ୍ଟରେ ଲାଭ ପଇସା ରଖିପାରୁଛନ୍ତି । ସାମ୍ୟବାଦ ଏକ ମହାନ୍ ରାଜନୈତିକ ଦର୍ଶନ, କିନ୍ତୁ ବିନା ପ୍ରୋତ୍ସାହନ ଓ ମୋଟିଭେସନ୍‌ରେ କେବଳ ଦର୍ଶନଦ୍ୱାରା ଉତ୍ପାଦନ ବଢେ ନାହିଁ । କିନ୍ତୁ ସେ ଦେଶରେ ଆମେ ଯୁଆଡେ ଯାଇଛୁ ସବୁଠି ଲୋକେ ଥିଲେ, ସ୍ୱାସ୍ଥ୍ୟବାନ୍, ସାକ୍ଷର ଓ ଏମ୍ପ୍ଲଏଡ୍ । ଏହି କାରଣରୁ ସବୁ କମ୍ୟୁନିଷ୍ଟ ଦେଶରେ ହ୍ୟୁମାନ୍ ଡେଭଲପମେଣ୍ଟ ଇଣ୍ଡିକେଟର ଉଚ୍ଚ ସ୍ତରରେ । ବଞ୍ଚିବାପାଇଁ ସର୍ବନିମ୍ନ ଆବଶ୍ୟକତା ସବୁ ପୂରଣ ହେଉଥିବାରୁ ଏ ଦେଶମାନଙ୍କରେ ଦରିଦ୍ରଙ୍କ ସଂଖ୍ୟା ସବୁଠୁ କମ୍ । ଏହା ସାମ୍ୟବାଦର ଅମୂଲ୍ୟ ଅବଦାନ ।

ଆମେ ଯେତେବେଳେ ସୋଭିଏତ୍ ୟୁନିଅନ୍‌ରେ ଥିଲୁ ସେତେବେଳେ ରାଷ୍ଟ୍ରପତି ଥିଲେ ଗୋର୍ବାଚୋଭ୍ - ପରେ ଶାନ୍ତିପାଇଁ ନୋବେଲ ପୁରସ୍କାର ପାଇଲେ । ତାଙ୍କର ନୂଆ ନୀତି 'ପେରେସ୍ତ୍ରୋଇକା' ଓ 'ଗ୍ଲାସ୍‌ନୋଷ୍ଟ' ପୃଥିବୀର ସବୁଠୁ ଚର୍ଚ୍ଚିତ ବିଷୟ ଥିଲା । ଗୋର୍ବାଚୋଭ୍ ସୋଭିଏତ୍ ୟୁନିୟନ୍‌ର ଲୁହା ପରଦା ଭାଙ୍ଗି ରାଜନୀତି ଓ ଅର୍ଥନୀତିକୁ ଏକ ନୂଆ ମୋଡ ଓ ରୂପ ଦେଉଥିଲେ ଓ ଏକ ଖୋଲା, ଗଣତାନ୍ତ୍ରିକ ପଦ୍ଧତିର ପକ୍ଷଧର ଥିଲେ । ପାବ୍‌କୋଭ୍‌ଙ୍କୁ ଏ ସମ୍ପର୍କରେ ପଚାରିବାରୁ କହିଲେ - ଏହା ପଛରେ ଏକ ବିଶେଷ କାରଣ ରହିଛି । ସେଇଟି ହେଲା : "ଗୋର୍ବାଚୋଭ୍ ଦିନେ କାର୍‌ରେ ବସି ଯାଉଥିବା ବେଳେ ପାଖରେ ଥିବା ଏକ ପଡିଆରେ ପିଲାମାନେ ଏକ ଚାରିକଣିଆ ବସ୍ତୁକୁ ଫୁଟବଲ୍ କରି ଖେଳୁଥିବା ଦେଖି ଡ୍ରାଇଭରକୁ ଗାଡି ଅଟକାଇବାକୁ କହିଲେ । ଫୁଟବଲ୍ ତ ଗୋଲ୍, କିନ୍ତୁ ଏ ଚାରିକଣିଆ ଫୁଟବଲ୍ କେଉଁଠୁ ଆସିଲା ? ଆଉ ଟିକେ ପାଖକୁ ଯାଇ ଦେଖିଲେ ସେଇଟି ପ୍ରକୃତରେ ଫୁଟବଲ୍ ନୁହେଁ - ଏକ ବଡ ବ୍ରେଡ୍ । ହାଇ ସବ୍‌ସିଡି ମିଳୁଥିବାରୁ ବ୍ରେଡ୍ ଖୁବ୍ ଶସ୍ତା - ଫୁଟବଲ ମହଙ୍ଗା, ସହଜରେ ସବୁଠାରେ ମିଳେ ନାହିଁ । ତେଣୁ ଖେଳପ୍ରେମୀ ପିଲାଏ ବ୍ରେଡ୍‌କୁ ଫୁଟବଲ୍ କରି ଖେଳୁଥିଲେ । ଏହି ଦୃଶ୍ୟ ଦେଖିଲା ପରେ ଗୋର୍ବାଚୋଭ୍, ସୋଭିଏତ୍ ଅର୍ଥନୀତିରେ ପରିବର୍ତ୍ତନ ପ୍ରକ୍ରିୟା ଆରମ୍ଭ କରିଦେଇଥିଲେ । ଖାଦ୍ୟଶସ୍ୟ ଅଭାବରୁ ବାହାରୁ ଉଚ୍ଚମୂଲ୍ୟରେ ଆମଦାନୀ କରି ତା'ଉପରେ ସବ୍‌ସିଡି ଦେଇ କମ୍ ମୂଲ୍ୟରେ ଖାଉଟିମାନଙ୍କୁ ପବ୍ଲିକ୍ ଡିଷ୍ଟ୍ରିବ୍ୟୁସନ୍ ସପ୍‌ଦ୍ୱାରା ବିକ୍ରି କରାଯାଉଥିବାରୁ ଏହି ଦୋକାନ ସାମ୍‌ନାରେ ସର୍ବଦା ଶହ ଶହ ଲୋକଙ୍କ ଲାଇନ୍ ଲାଗି ରହୁଥିଲା । ଏହାଛଡା ସାମ୍ୟବାଦ ବିରୋଧୀ ଦେଶଙ୍କ ସହ କ୍ରମାଗତ ପ୍ରତିଯୋଗିତା, ବିବାଦ, ସାମରିକ ପ୍ରସ୍ତୁତି, କ୍ରମାଗତ ଉତ୍ପାଦନ ହ୍ରାସ, ଅସହନୀୟ ବଣ୍ଟନ ପ୍ରଣାଳୀ, ପଲିଟିକାଲ୍ ବ୍ୟୁରୋକ୍ରାସି ଓ କ୍ଷମତା କେନ୍ଦ୍ରୀକରଣ ଫଳରେ ଆମ ଦେଶ ଦୁର୍ବଳ ହୋଇଯାଉଛି ।" ପାବ୍‌କୋଭ୍ ପୁଣି କହିଲେ ଏହା ତାଙ୍କର ବ୍ୟକ୍ତିଗତ ସମୀକ୍ଷା ଓ ମତ । ଏବଂ ତାଙ୍କର ଅନେକ ବୁଦ୍ଧିଜୀବୀ ବନ୍ଧୁ ଏହା ସହ ଏକମତ, କିନ୍ତୁ ପାର୍ଟି ଲୋକଙ୍କୁ ଡରି ଚୁପ୍ ରହିଛନ୍ତି । ଆମେ ଭାରତ ଫେରିବାର ୪ ବର୍ଷ ଭିତରେ ଯେତେବେଳେ ସୋଭିଏତ୍ ୟୁନିଅନ୍ ଭାଙ୍ଗି ୧୬ ଭାଗ ହୋଇଗଲା, ମୁଁ ଖୁବ୍ ଆଶ୍ଚର୍ଯ୍ୟ ହୋଇ ନଥିଲି ।

ପରବର୍ତ୍ତୀ କାଳରେ ବହୁ ସାମ୍ୟବାଦୀ ଦେଶରେ ମାର୍କ୍ସଙ୍କ ମହାନ୍ ମାନବୀୟ ଦର୍ଶନ ଲୋପ ପାଇଗଲା । ଚୀନ୍‌ରେ ଡେଙ୍ଗ୍‌ସିଆଓ ପେଙ୍ଗ ମାଓ ପ୍ରତିଷ୍ଠିତ ସାମ୍ୟବାଦୀ ଅର୍ଥନୈତିକ ବ୍ୟବସ୍ଥାକୁ ହଟାଇ ଦେଲେ । ତାଙ୍କର ଯୁକ୍ତି ଥିଲା, ବିରାଡିର ରଙ୍ଗ ଲାଲ ବା ନୁହେଁ ଏତେଟା ଗୁରୁତ୍ୱପୂର୍ଣ୍ଣ ନୁହେଁ, ଦେଖିବାକୁ ହେବ ସେଇ ବିରାଡିଟି ମୂଷା ଧରି

ପାରୁଛି କି ନାହିଁ । ଚୀନ୍‌ରେ ଉଦାରୀକରଣର ବହୁବର୍ଷ ପରେ ଭାରତର ଚେତା ପଶିଲା । ଏବେ ଭାରତୀୟ ବିରାଡିମାନଙ୍କୁ ମୂଷା ଧରିବା କୌଶଳ ଶିଖାଯାଉଛି । କେବଳ ଆଦର୍ଶବାଦର ଅନ୍ଧ ଅନୁସରଣରେ ପେଟ ପୂରେ ନାହିଁ । ତେଣୁ ବିଶ୍ୱ ପୃଷ୍ଠରୁ ବଡ ବଡ ଆଦର୍ଶବାଦ ଲୋପ ପାଇଯାଉଛି । ପ୍ରତ୍ୟେକ ଦେଶ ନିଜର ବାସ୍ତବ ପରିସ୍ଥିତିକୁ ବିଚାରକୁ ନେଇ ସେଇ ମୂଳଦୁଆ ଉପରେ ଆଦର୍ଶର ମିନାର ଗଢିଲେ ତାହା ସହଜରେ ଭୁଶୁଡିବ ନାହିଁ । ଭାରତୀୟ ସାମ୍ୟବାଦର ମଞ୍ଜି ବେଦ ଓ ଉପନିଷଦରେ ଭରି ରହିଛି । ଏହି ଆଧାର ଉପରେ ମାର୍କସ୍, ମାଓ ଓ ଲେନିନ୍‌ଙ୍କ ବିଚାରଧାରାକୁ ବୁଝିବାକୁ ପଡିବ । ମନେ ମନେ ଭାବୁଥିଲି, ସାମ୍ୟବାଦକୁ ସତ୍ୟ ଓ ଅହିଂସାର କବଚ ପିନ୍ଧାଇ ଦେଇଥିଲେ ଏ ଦେଶ ପ୍ରକୃତ ମହାଶକ୍ତି ହୋଇପାରିଥାନ୍ତା ।

ଆମ ଭାରତ ଫେରିବାର ପୂର୍ବଦିନ ଭାରତୀୟ ଦଳକୁ ଏକ ବିଦାୟ ସମ୍ବର୍ଦ୍ଧନା ଦିଆଯାଇଥିଲା । ତା' ପୂର୍ବରୁ ତାସକେଣ୍ଟର ମେୟର ମତେ ଏକ ସରକାରୀ ସୁପରବଜାରକୁ ନେଇଯାଇ କହିଲେ ଏଠାରେ ଯେଉଁସବୁ ଜିନିଷ ଆପଣଙ୍କ ପସନ୍ଦ ବାଛନ୍ତୁ । ସେ ସବୁ ଆମେ ଉପହାର ଭାବରେ ଆପଣଙ୍କୁ ଦେବୁ । ମନେ ମନେ ଭାବିଲି, ଯଦି ଏ ପ୍ରସ୍ତାବରେ ରାଜି ହୋଇଯିବି, ଏ ଦେଶ ଲୋକେ ଭାବିବେ ଭାରତୀୟମାନେ ଭାରି ଲୋଭୀ । ତେଣୁ ତାଙ୍କୁ କହିଲି, ବହୁତ ଧନ୍ୟବାଦ, ଆପଣମାନଙ୍କର ଭାରତ ପ୍ରତି ଏମିତି ସ୍ନେହ ଓ ସଦିଚ୍ଛା ରହିଥାଉ, ସେଇ ହେଉଛି ଆମର ପ୍ରକୃତ ଉପହାର ।

*୯ ମେ, ୨୦୦୮*



# ଶ୍ରୀମାନ୍ ଟଏଲେଟ୍, ଶ୍ରୀମତୀ ପାଇଖାନା

ଦକ୍ଷିଣ କୋରିଆବାସୀ ସିମ୍-ଯେ-ଡକ୍ ଏବେ ତାଙ୍କ ଦେଶରେ ମିଷ୍ଟର ଟଏଲେଟ୍ ବା ପାଇଖାନା ଭାବରେ ସୁପରିଚିତ । ଗତ ଦଶବର୍ଷ ହେଲା ସେ ଜୀବିକାପାଇଁ ନୁହେଁ, ନିଜର ଆନନ୍ଦପାଇଁ ଦେଶର ସାର୍ବଜନୀନ ଶୌଚାଳୟଗୁଡିକୁ ସୁନ୍ଦର ଭାବରେ ସଜାଇବା କାମରେ ବ୍ୟସ୍ତ ଅଛନ୍ତି ଏବଂ ନିଜେ ରହିବାପାଇଁ ଆଧୁନିକ ପାଇଖାନା ଭଳି ଡିଜାଇନ୍‌ର ଏକ ଦି'ମହଲା ଘର ତୋଳିଛନ୍ତି । ସ୍ତ୍ରୀ ଓ ପୁରୁଷଙ୍କ ମଧ୍ୟରେ ଶୌଚାଳୟ ସଚେତନତା ବଢାଇବା ବିଶ୍ୱ ଟଏଲେଟ୍ ଆସୋସିଏସନ୍ ଏହାକୁ ଏକ ଆଦର୍ଶ ପଦକ୍ଷେପ ଭାବେ ସ୍ୱୀକାର କରି ନିକଟରେ ସିଓଲରେ ଅନୁଷ୍ଠିତ ବିଶ୍ୱ ଟଏଲେଟ୍ ସମ୍ମିଳନୀରେ ପ୍ରଶଂସା କରିଛନ୍ତି ଓ ତାଙ୍କୁ ସମ୍ମିଳନୀର ସଭାପତି ମନୋନୀତ କରିଛନ୍ତି । ଏହି ସମ୍ମିଳନୀରେ ନଭେମ୍ବର ୧୯ ତାରିଖକୁ ବିଶ୍ୱ ଟଏଲେଟ୍ ଦିବସ ଭାବରେ ପାଳନ କରିବାପାଇଁ ଭାରତୀୟ ପ୍ରତିନିଧିମାନେ ପ୍ରସ୍ତାବ ରଖିଛନ୍ତି ।

ପୃଥିବୀରେ ଅଢେଇଶହ କୋଟି ଲୋକ ପାଣି ଓ ପାଇଖାନା ସୁବିଧାରୁ ବଞ୍ଚିତ । ତେଣୁ ଗତ ନଭେମ୍ବର ଏକୋଇଶରୁ ପଚିଶ; ଏଇ ପାଞ୍ଚ ଦିନ ଧରି ଅନୁଷ୍ଠିତ ଏହି ସମ୍ମିଳନୀରେ ଷାଠିଏଟି ଦେଶର ତେରଶହ ପ୍ରତିନିଧି ଏକ ଟଏଲେଟ୍ ବା ପାଇଖାନା ଆନ୍ଦୋଳନ ଓ ଅଭିଯାନପାଇଁ ସରକାର ଓ ନାଗରିକ ସମାଜକୁ ଆହ୍ୱାନ ଦେଇଛନ୍ତି । ସମ୍ମିଳନୀ ପରିସର ମଧ୍ୟରେ ବିଭିନ୍ନ ପ୍ରକାରର ଓ ରଙ୍ଗ ବେରଙ୍ଗର ଆକର୍ଷଣୀୟ ପାଇଖାନା ପ୍ରଦର୍ଶନୀ ଖୋଲାଯାଇଛି । ଛୋଟ ପିଲାମାନଙ୍କୁ ଆକୃଷ୍ଟ କରିବାପାଇଁ ବିସ୍କୁଟ୍, ଚକ୍‌ଲେଟ୍, କାଣ୍ଡିରେ ତିଆରି ଟଏଲେଟ୍ ରଖାଯାଇଛି ଓ ଠିକ୍ ଭାବରେ ଫ୍ଲସ୍ କରିପାରୁଥିବା ପିଲାଙ୍କୁ ଉପହାର ଭାବରେ ତାହା ଦିଆଯାଉଛି । ବଡ଼ଙ୍କପାଇଁ ଏକ ଟଏଲେଟ୍ 'ଗ୍ୟାଲେରୀ କାଫେ'ରେ ବସି ମାଗଣା ଚା'ପାନର ବ୍ୟବସ୍ଥା ହୋଇଛି । ଉନ୍ନତ ଡିଜାଇନ୍‌ର ଏ ଟଏଲେଟ୍‌ରେ ବସିଲେ ଶରୀରରେ ଥିବା ବାକ୍‌ଟେରିଆ ଓ ବ୍ଲଡ୍ ସୁଗାର ଲେଭେଲ ଜଣାପଡୁଛି ।

ଏହି ପ୍ରସଙ୍ଗରେ ୨୦୦୦ ମସିହା ଶେଷ ଭାଗରେ ବିଖ୍ୟାତ ମାଗାଜିନ୍ 'ଫୋକସ୍'ଦ୍ୱାରା କରାଯାଇଥିବା ଏକ ବିଶ୍ୱବ୍ୟାପୀ ଅନୁଧ୍ୟାନ ଉଲ୍ଲେଖଯୋଗ୍ୟ । ଏଇ ସର୍ଭେରେ ପୃଥିବୀର ବିଭିନ୍ନ ଅଞ୍ଚଳରୁ ଏବଂ ବିଭିନ୍ନ ବର୍ଗକୁ ପ୍ରତିନିଧିତ୍ୱ କରୁଥିବା ଏକ ହଜାର ନମୁନା ବଛା ଯାଇଥିଲା । ସେମାନଙ୍କ ଭିତରେ ଥିଲେ ବୈଜ୍ଞାନିକ, ଗବେଷକ, ଅଧ୍ୟାପକ, ସମାଜସେବୀ, ମ୍ୟାନେଜର, ବ୍ୟାଙ୍କର୍, ଶ୍ରମଜୀବୀ, କୃଷକ ଓ ଗରିବ ଶ୍ରେଣୀର ଲୋକେ । ପ୍ରତ୍ୟେକଙ୍କୁ  କୁହାଯାଇଥିଲା, ଗତ ଦୁଇଶହ ବର୍ଷ ଭିତରେ ମାନବ ସଭ୍ୟତାର ବିକାଶ ଯାତ୍ରା ତ୍ୱରାନ୍ୱିତ କରିଥିବା ଶହେଟି ଗୁରୁତ୍ୱପୂର୍ଣ୍ଣ ବୈଜ୍ଞାନିକ ଉଦ୍ଭାବନକୁ ନେଇ ପ୍ରାଥମିକତା ଭିତ୍ତିରେ  ଏକ ତାଲିକା ପ୍ରସ୍ତୁତ କରି ପଠାଇବାପାଇଁ । ଏହି ଅନୁଧ୍ୟାନର ନାମ ଥିଲା 'ହଣ୍ଡ୍ରେଡ୍ ଇନ୍‌ଭେନ୍‌ସନ୍‌ସ ଦାଟ୍ ଚେଂଜଡ୍ ଦି ୱାର୍ଲଡ' ।

ଏହି ପ୍ରଶ୍ନ ପତ୍ରର ଉତ୍ତର ସବୁ ସଂକଳନ, ସଂଗ୍ରହ ଓ ବିଶ୍ଳେଷଣ ପୂର୍ବରୁ ଅନେକ ଭାବିଥିଲେ, ଶହେଟି ଉଦ୍ଭାବନରୁ ହୁଇଲ୍ ବା ଚକ କିମ୍ବା ଫାୟାର୍ ବା ଅଗ୍ନି ବୋଧେ ପ୍ରଥମ ସ୍ଥାନ ଅଧିକାର କରିବ । ଆଉ କେହି କେହି ଭାବିଥିଲେ କମ୍ପ୍ୟୁଟର ବା ଆଣବିକ ଶକ୍ତି ପ୍ରଥମ ସ୍ଥାନ ଅଧିକାର କରିପାରନ୍ତି । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ସର୍ବେକ୍ଷଣର ଉତ୍ତର ଦେଇଥିବା ଅଧିକାଂଶ ବ୍ୟକ୍ତି ଆଧୁନିକ ଟଏଲେଟ୍ ସିଷ୍ଟମ୍‌କୁ ଉଦ୍ଭାବନ ମଧ୍ୟରେ ସର୍ବପ୍ରଥମ ସ୍ଥାନ ଦେଇଥିଲେ । କମ୍ପ୍ୟୁଟର ଦ୍ୱିତୀୟ ଓ ପ୍ରିଣ୍ଟିଙ୍ଗ୍ ମେସିନ୍ ତୃତୀୟ ସ୍ଥାନ ଅଧିକାର କରିଥିଲେ । ଆଣବିକ ଶକ୍ତି ରହିଲା ବତିଶ ନମ୍ବରରେ । ରେଫ୍ରିଜେରେଟର, ମାଇକ୍ରୋଓଭେନ୍ ଓ ଟଫ୍‌ଲନ୍ ଯଥାକ୍ରମେ ୧୨, ୮୮ ଓ ୯୫ । କଫି ଥିଲା ସବା ଶେଷ ସ୍ଥାନରେ (୧୦୦ତମ), ଲୋକପ୍ରିୟ ଚା ନିଜ ସ୍ଥାନ ହରାଇଥିଲା ।

ନିଆଁ, କୃଷି, ଛାପାଖାନା ଓ ଚକ ନିଶ୍ଚିତ ଭାବରେ ମାନବ ସଭ୍ୟତାର ଅଭ୍ୟୁଦୟରେ ଗୁରୁତ୍ୱପୂର୍ଣ୍ଣ ମାଇଲଖୁଣ୍ଟ । କିନ୍ତୁ ଆଧୁନିକ ଶୌଚାଳୟ, ନର୍ଦ୍ଦମା ଓ ଆବର୍ଜନା ନିଷ୍କାସନ ବ୍ୟବସ୍ଥା ଆମକୁ ସଭ୍ୟଜଗତରେ ପ୍ରବେଶ କରିବାର ପ୍ରଥମ ଦ୍ୱାର ଭାବରେ କାମ କରିଛି । କୋଟି କୋଟି ଲୋକଙ୍କୁ ମୁଣ୍ଡରେ ମଇଳା ବୋହିନେବା ଅପମାନ ଓ ଲଜ୍ଜାରୁ ମୁକ୍ତି ପ୍ରଦାନ କରି ଏକ ନିର୍ମଳ ନିରୋଗ ପରିବେଶ ଗଢିବାରେ ସାହାଯ୍ୟ କରିଛି । ଗରିବ ଶ୍ରେଣୀ ଓ ଗ୍ରାମାଞ୍ଚଳର ମହିଳାମାନେ ଶୌଚାଳୟ ଅଭିଯାନ ଦ୍ୱାରା ବିଶେଷ ଭାବରେ ଉପକୃତ ହେଉଛନ୍ତି । ପାଣି ଓ ଶୌଚ ବ୍ୟବସ୍ଥାର ଅଭାବ ଗ୍ରାମାଞ୍ଚଳରେ ରୋଗ ଓ ମୃତ୍ୟୁର ପ୍ରଧାନ କାରଣ । ପ୍ରତିବର୍ଷ ଅଠର ଲକ୍ଷ ଲୋକଙ୍କର ମୃତ୍ୟୁ ଏହି କାରଣରୁ ହୁଏ । ଏମାନଙ୍କ ମଧ୍ୟରୁ ଅଧିକାଂଶ ମହିଳା ।

ସାନିଟେସନ୍ ବା ପରିମଳ ଅବସ୍ଥା ମାପିବାପାଇଁ ଯେଉଁ ଇନ୍‌ଡେକ୍ସ ବା ମାପଦଣ୍ଡ ତିଆରି କରାଯାଇଛି, ସେଥିରେ ଭାରତର ସ୍ଥାନ କେବଳ ଆଫଗାନିସ୍ଥାନ ଓ ପାକିସ୍ଥାନ ଉପରେ ଅଛି । ରାଜୀବ ଗାନ୍ଧି ନାସନାଲ୍ ୱାଟର ମିଶନଙ୍କ ରିପୋର୍ଟ ଅନୁସାରେ ଆମ ଦେଶର ପ୍ରାୟ ତିନି କୋଟି ଲୋକ ସାନିଟେସନ୍ ବା ପରିମଳ ସଂପର୍କୀୟ ରୋଗରେ ପୀଡିତ । ଓଡ଼ିଶାରେ ମାତ୍ର ୧୮ ରୁ ୨୦ ଭାଗ ଘରେ ଶୌଚାଳୟ ଅଛି । ସହରାଞ୍ଚଳରେ ଏହି ଅନୁପାତ ୭୫ ଭାଗ । କିନ୍ତୁ ୧୯୮୧ ମସିହାରେ କେବଳ ଶତକଡା ଏକ ଭାଗ ଲୋକଙ୍କର ଟଏଲେଟ୍ ଥିଲା । ଏକ ଭାଗରୁ ବଢି ୨୦ ଭାଗ ହେବାକୁ ଲାଗିଲାଣି ୨୭ ବର୍ଷ । ତେଣୁ ସରକାର ଓ ଯୋଜନା କମିଶନ ଏଥିପାଇଁ ନୂଆବାଟ ଖୋଜୁଛନ୍ତି ।

ମିଳିତ ଜାତିସଙ୍ଘର ହିସାବ ଅନୁସାରେ ଯଦି ପ୍ରତିବର୍ଷ ୧୪ କୋଟି ଲୋକଙ୍କ ପାଇଁ ଶୌଚାଳୟ ବ୍ୟବସ୍ଥା କରାଯାଇପାରିବ, ତେବେ ୨୦୧୫ ମସିହା ସୁଦ୍ଧା ଶତକଡା ଶହେ ଘର ଓ ପରିବାର ପାଇଖାନା ପାଇଯିବେ । ଓଡ଼ିଶାରେ ପଞ୍ଚାୟତ, ଯୁବକ ସଙ୍ଘ ଓ ସ୍ୱେଚ୍ଛାସେବୀ ସଂଗଠନମାନେ ସରକାରଙ୍କ ସହଯୋଗରେ ଏ କାମକୁ ଆହୁରି ତ୍ୱରାନ୍ୱିତ କରିପାରିବେ । ପଶ୍ଚିମବଙ୍ଗ, କର୍ଣ୍ଣାଟକ, ମହାରାଷ୍ଟ୍ର, ଏହି ଅଭିଯାନରେ ଆଗୁଆ ଅଛନ୍ତି । ଆମ ରାଜ୍ୟରେ କେତେକ ସ୍ୱେଚ୍ଛାସେବୀ ସଂଗଠନ ଏହି କ୍ଷେତ୍ରରେ ଖୁବ୍ ଭଲ କାମ କରି ନିଜର ପାରଦର୍ଶିତା ଦେଖାଇ ସାରିଛନ୍ତି । ସୁଲଭ ଶୌଚାଳୟର ଅବଦାନ ଏବେ ସାରା ବିଶ୍ୱରେ ସ୍ୱୀକୃତ ଏବଂ ଏ ସଂସ୍ଥା ଏବେ ୧୧୦୦ ସହର, ୪୫୫ ଜିଲ୍ଲାରେ ବାରଲକ୍ଷ ଲାଟ୍ରିନ୍ ବସାଇ ସାରିଲେଣି ।

ପରିମଳ ଅଭିଯାନର ସଫଳତାପାଇଁ ପ୍ରଥମ ଆବଶ୍ୟକତା ହେଲା ସ୍ୱଭାବ ପରିବର୍ତ୍ତନ । ବିଭିନ୍ନ ଦେଶରେ ଏ ସମ୍ପର୍କରେ ପରୀକ୍ଷା ନିରୀକ୍ଷା ଚାଲିଛି । ଭିଏତ୍‌ନାମ୍, କାମ୍ବୋଡିଆ ଓ ଇଣ୍ଡୋନେସିଆରେ ସଫାସୁତୁରା ଘରର ସଂଜ୍ଞା ହେଲା ଯେଉଁଠି ଦୁର୍ଗନ୍ଧ ନଥିବ, ମଶା, ଡାଉଁଶ, ମାଛି ଉଡୁନଥିବେ । ଥାଇଲାଣ୍ଡ ଏହି ସଂଜ୍ଞାକୁ ପ୍ରଚାର କରି, ଏବେ ଶତକଡା ଶହେ ଘରେ ଶୌଚାଳୟ ବ୍ୟବସ୍ଥା କରିବାରେ ସଫଳ ହୋଇଛି । ବାଂଲାଦେଶ ଓ ଚୀନ ସମ୍ପୂର୍ଣ୍ଣ ପରିମଳ ଅଭିଯାନରେ ଭାରତଠାରୁ ଆଗରେ ଅଛନ୍ତି । ବ୍ରାଜିଲ୍, ମେକ୍ସିକୋ ଓ ମାନିଲାର ଗତି ଆମରି ଭଳି । ଦିଲ୍ଲୀର ୫୬୦୦ କିଲୋମିଟର ଫିଡର୍ ସିୱେରେଜ୍ ଲାଇନ୍‌ରୁ ଅଧାରୁ ଅଧିକ ପଙ୍କଦ୍ୱାରା ଅଚଳ ହୋଇଗଲାଣି । ଭୁବନେଶ୍ୱର ସହରରେ ସିୱେଜ ଓଭର ଫ୍ଲୋ ଏକ ଦୈନନ୍ଦିନ ଘଟଣା । ଅଧିକାଂଶ କଲୋନିରେ ନାଳ ନର୍ଦ୍ଦମା ଅଚଳ । ଅର୍ବାନ୍ ରିନୁଆଲ୍ ମିଶନ୍ ବା ନଗର

ପୁନର୍ନବୀକରଣ ମିଶନ୍‌ର ସହାୟତା ନେଇ ଶୀଘ୍ର ପଦକ୍ଷେପ ନ ନେଲେ ମନ୍ଦିର ଓ ପ୍ରାସାଦମାଳିନୀ ଭୁବନେଶ୍ୱର ନଗରୀ ଏକ ନର୍ଦ୍ଦମା-ନାଳିନୀ-ନର୍କ କୁଣ୍ଡ ହୋଇଯିବ । ଆଫ୍ରିକା ମହାଦେଶର ଅନେକ ସହରରେ ଠିକ୍ ଏହିପରି ଅବସ୍ଥା ।

ଏ ଅବସ୍ଥା ସୁଧାରିବାପାଇଁ ୪ଟି ଉପାୟ । ପ୍ରଥମଟି ହେଲା ରାଜନୈତିକ ନେତୃତ୍ୱ ଓ ପ୍ରତିବଦ୍ଧତା ଏବଂ ଶୌଚାଳୟକୁ ପଲିଟିକାଲ୍ ଏଜେଣ୍ଡାରେ ପ୍ରାଥମିକତା ଦେବା । ଦ୍ୱିତୀୟଟି ହେଲା ଜନସାଧାରଣଙ୍କ ଓ ସେମାନଙ୍କ ଅନୁଷ୍ଠାନଗୁଡ଼ିକୁ ଏ କାମରେ ନେତୃତ୍ୱ ଦେବା ଓ ଏହାକୁ ଜନ ଆନ୍ଦୋଳନର ରୂପ ଦେବା । ତୃତୀୟଟି ହେଲା ଏହି ଶୌଚାଳୟ ଆନ୍ଦୋଳନ ଆଗେଇ ନ ପାରିବାର କାରଣ ଅନୁଧ୍ୟାନ କରି ତୁରନ୍ତ ପ୍ରତିକାର ବ୍ୟବସ୍ଥା କରିବା । ପରିମଳ ଶିଡ଼ିର ସବା ତଳେ ଅଛି ପିଟ୍ ଲାଟ୍ରିନ୍, ସବା ଉପରେ ଆଧୁନିକ ଶୌଚ ବ୍ୟବସ୍ଥା । ତଳ ଶିଡ଼ିଠାରୁ ଉପର ଶିଡ଼ିର ଖର୍ଚ୍ଚ ୨୦ ଗୁଣରୁ ଅଧିକ । ପାଣିଖର୍ଚ୍ଚ ବେଶୀ । ଗରିବ ଲୋକଙ୍କ ପାଖେ ଉଭୟ ପାଣି ଓ ପଇସାର ଅଭାବ । ଅଭ୍ୟାସ ପରିବର୍ତ୍ତନ ଆଉ ଏକ ଅନ୍ତରାୟ ।

ଏ କାମରେ ସ୍ୱେଚ୍ଛାସେବୀ ସଂଗଠନମାନେ ସାହାଯ୍ୟ କରିପାରିବେ । ଚତୁର୍ଥଟି ହେଲା - ଆନ୍ତର୍ଜାତିକ ସହଯୋଗ । ମଳ, ମୂତ୍ର, ଆବର୍ଜନା ନିଷ୍କାସନ ବ୍ୟବସ୍ଥା ଏ ପର୍ଯ୍ୟନ୍ତ କୌଣସି ବିଶ୍ୱ ସମ୍ମିଳନୀରେ ପ୍ରାଥମିକତା ପାଇନାହିଁ । ପୃଥିବୀର ସବୁ ଲୋକଙ୍କ ପାଇଁ କେବଳ ପିଟ୍ ଲାଟ୍ରିନ୍ ବ୍ୟବସ୍ଥା କରିବାକୁ ମାତ୍ର ୩୯ ହଜାର କୋଟି ଟଙ୍କା ଦରକାର । ଆଧୁନିକ ଶୌଚାଳୟପାଇଁ ଦରକାର ଏକ ଲକ୍ଷ ଚବିଶ ହଜାର କୋଟି ଟଙ୍କା । ଯୁକ୍ତରାଷ୍ଟ୍ର ଆମେରିକା ଇରାକର ଅନ୍ତର୍ଯୁଦ୍ଧ ନିୟନ୍ତ୍ରଣପାଇଁ ଗତବର୍ଷ ଏହାର ଦୁଇଗୁଣ ଟଙ୍କା ଖର୍ଚ୍ଚ କରିଛି ଏବଂ ସାରା ପୃଥିବୀର ବାର୍ଷିକ ମିଲ୍‌ଟାରି ବଜେଟ୍‌ର ଏହାମାତ୍ର ଶତକଡା ତିନିଭାଗ । ୟୁରୋପ, ଆମେରିକା ସମେତ ୨୮ଟି ଉନ୍ନତ ଦେଶର ଲୋକେ ବର୍ଷକରେ ଏତିକି ଟଙ୍କା ଆଇସକ୍ରିମ୍‌ରେ ଖର୍ଚ୍ଚ କରନ୍ତି ।

ଶ୍ରୀମାନ୍ ଟଏଲେଟ୍ (ନିକ୍‌ନେମ୍) ସିମ୍ କେ ଡ଼କ୍‌ଙ୍କ ମତରେ ଟଏଲେଟ୍ ହେଉଛି ଘରର ସବୁଠାରୁ ପବିତ୍ର ସ୍ଥାନ, କାରଣ ଏହା ଆମର ପ୍ରାଣରକ୍ଷା କରେ, ଶାନ୍ତି ଓ ଆରାମ ଦିଏ, ନୂଆ ନୂଆ ଚିନ୍ତା ଓ ବିଚାରପାଇଁ ସମୟ ଦିଏ । କେବଳ ଶୌଚ ଅଭ୍ୟାସ ପରିବର୍ତ୍ତନ କଲେ, ଦେଶର ରାଜନୀତି, ଅର୍ଥନୀତି ଓ ସଂସ୍କୃତି ପରିବର୍ତ୍ତନ ହୋଇଯାଏ, ବିଶ୍ୱସ୍ତରରେ ପରିବର୍ତ୍ତନ ଆସେ । ଭିକ୍ଟର ହ୍ୟୁଗୋଙ୍କ ମତରେ ଟଏଲେଟ୍‌ର ଇତିହାସ ହିଁ ମାନବ ସଭ୍ୟତାର ଇତିହାସ, ଆମ ପ୍ରଗତିର ପ୍ରତୀକ ଓ ମାପଦଣ୍ଡ । ମାଓସେତୁଂଙ୍କ ସମୟରେ ଚୀନ୍‌ର ଗାଁ, ସହର, ବଜାରରେ ରହୁଥିବା ଲୋକେ ଭୋରରୁ

ଉଠି ଆଗ ନିଜ ପରିବେଶ ସଫା କଲା ପରେ କାମକୁ ଯାଉଥିଲେ । ଚୀନ୍ ପ୍ରଥମେ ପାଇଖାନାରୁ ରୋଷେଇ ଗ୍ୟାସ୍ ଉତ୍ପାଦନ ଆରମ୍ଭ କରିଥିଲା ।

ମହାତ୍ମାଗାନ୍ଧି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାପାଇଁ ଇଚ୍ଛା ପ୍ରକାଶ କରୁଥିବା ଲୋକଙ୍କୁ ପ୍ରଥମେ ପବ୍ଲିକ୍ ଲାଟ୍ରିନ୍ ସଫା କରିବାକୁ କହୁଥିଲେ ଏବଂ ସାବରମତୀ ଆଶ୍ରମରେ ନିଜେ ଏହାର ନେତୃତ୍ୱ ନେଉଥିଲେ । ସେ ପୁଣି କହୁଥିଲେ ମତେ ଯଦି ଭାରତର ସ୍ୱାଧୀନତା ଓ ପରିମଳ - ଏ ଦୁଇଟି ମଧ୍ୟରୁ ପ୍ରଥମେ ଗୋଟିଏ ବାଛିବାକୁ କୁହାଯିବ, ମୁଁ ଆଗ ପରିମଳକୁ ବାଛିବି, କାରଣ ପ୍ରଥମ ସ୍ୱାଧୀନତା ହେଉଛି ପରିମଳ, ଶୌଚ ବ୍ୟବସ୍ଥା ଓ ନିର୍ମଳ ପରିବେଶ । ସମସ୍ତଙ୍କୁ ଜଣା, ବାପୁ ତୃତୀୟ ଶ୍ରେଣୀ ରେଳଯାତ୍ରା କରୁଥିଲା ବେଳେ ପ୍ରଥମେ ସେଇ ରେଳ ବଗିଟିକୁ ସଫା କରି ଦେଉଥିଲେ । ଏବଂ ଯାହାଙ୍କୁ ବେଶୀ ଭଲ ପାଉଥିଲେ, ତାଙ୍କୁ ପେଟ ସଫାପାଇଁ ଏନିମା ଯନ୍ତ୍ରଟିଏ ଉପହାର ଦେଉଥିଲେ । ସ୍ୱାଧୀନତା ଆନ୍ଦୋଳନ ବେଳେ ଯେଉଁଠି ତାଙ୍କ ଶିବିର ଲାଗୁଥିଲା, ତା'ପୂର୍ବରୁ ପିଟ୍ ଲାଟ୍ରିନ୍ ବ୍ୟବସ୍ଥା କରାଯାଉଥିଲା । ଏହି ଦୃଷ୍ଟିରୁ 'ସିମ୍ କେ ଡ୍ରକ୍'ଙ୍କ ପୂର୍ବରୁ ଆମ ରାଷ୍ଟ୍ରପିତା ଥିଲେ ପୃଥିବୀର ପ୍ରଥମ ଶ୍ରୀମାନ୍ ଟଏଲେଟ୍' ବା ପାଇଖାନା ଆନ୍ଦୋଳନର ପିତା ।

*୧୪ ଫେବୃଆରୀ, ୨୦୦୮*

■ ■ ■

# ସଭ୍ୟ ଜଗତର ଅସଭ୍ୟ ଲୋକେ

ପ୍ରଧାନମନ୍ତ୍ରୀ ଶ୍ରୀ ମନମୋହନ ସିଂହ, ଗତ ଅକ୍ଟୋବର ୪ ତାରିଖରେ (୨୦୦୮) ଇଣ୍ଟେଲିଜେନ୍‌ସ ବ୍ୟୁରୋର ଯୁଗ୍ମ ନିର୍ଦ୍ଦେଶକଙ୍କୁ ରାଷ୍ଟ୍ରପତି ସ୍ୱର୍ଣ୍ଣପଦକ ଓ ପୁରସ୍କାର ଦେବା ଅବସରରେ ଦେଶରେ ଦିନକୁ ଦିନ ବଢ଼ିଚାଲିଥିବା 'ଲିଞ୍ଚିଙ୍ଗ୍' ସମ୍ପର୍କରେ ଉଦ୍‌ବେଗ ପ୍ରକାଶ କରିଥିଲେ । ଆଇନ ଓ ଅଦାଲତକୁ ଉପେକ୍ଷା କରି, ଅନ୍ୟକୁ ହିଂସାତ୍ମକ ପ୍ରକ୍ରିୟାରେ ମାରିଦେବା ବା ପ୍ରାଣଦଣ୍ଡ ଦେବାକୁ ଇଂରାଜୀରେ କୁହାଯାଏ, 'ଲିଞ୍ଚିଙ୍ଗ୍' । ଏ କ୍ଷେତ୍ରରେ ସମ୍ପୃକ୍ତ ବ୍ୟକ୍ତି ବା ଗୋଷ୍ଠୀ ଏକାଧାରରେ ନିଜେ ପୋଲିସ୍, ବିଚାରକ, ସରକାର ଓ ଶାସକ ପାଲଟି ଯାଆନ୍ତି । ସେପ୍ଟେମ୍ବର ୩୦, ୨୦୦୭ରେ ପୁରୀ ନୋଳିଆ ସାହିର ଜଣେ ଗରିବ ମାଛବିକାଳିଙ୍କୁ ଦିନ ଦ୍ୱିପ୍ରହରରେ କାଠ, ଗୋଟାଳିରେ ପିଟି ପିଟି ହିଂଜଳ ଜାଗା ପୋଖରୀଠାରେ ମାରି ଫୋପାଡି ଦିଆଗଲା । କେରଳର ମାଲାପୁରମ୍ ଜିଲ୍ଲାର ଜଣେ ଗର୍ଭବତୀ ମହିଳାଙ୍କୁ ଚୋରି ଅଭିଯୋଗରେ ରାସ୍ତାରେ ପିଟି ମାରି ଦିଆଗଲା । ଉତ୍ତରପ୍ରଦେଶର ଆଖନହାକି ଗାଁରେ ୬ ମାସ ହେଲା ବାହା ହୋଇଥିବା ଜଣେ ଯୁବତୀଙ୍କ ଜିଭ କାଟି କୂଅକୁ ଠେଲି ଦିଆହେଲା । କାରଣ ତାଙ୍କ ପିତା ଯୌତୁକରେ ସୁନା ଚେନ୍ ଓ ମଟରସାଇକେଲ ଦେଇପାରିଲେ ନାହିଁ । ପଶ୍ଚିମ ଦିଲ୍ଲୀର ଏକ ପ୍ରାଇମେରି ସ୍କୁଲର ଜଣେ ଶିକ୍ଷକ ହୋମୱର୍କ କରିନଥିବା ଜଣେ ୭ ବର୍ଷ ବୟସର ଛାତ୍ରୀଙ୍କୁ ସମସ୍ତ ଛାତ୍ରଛାତ୍ରୀଙ୍କ ଆଗରେ ଲଙ୍ଗଳା କରି ବେଞ୍ଚରେ ଠିଆ କରିଦେଲେ । ତିନି ବର୍ଷ ତଳେ କଟକର ଜଣେ ଉଦୀୟମାନ ଛାତ୍ର ହିଂସାଚରଣର ଶିକାର ହୋଇ ପୁନା ଡିଫେନ୍‌ସ ଏକାଡେମୀ ଛାଡି ଚାଲିଆସିଲେ । ପ୍ରାୟ ଦୁଇ ବର୍ଷ ତଳେ ଦଳେ ଯୁବକ କ୍ଲବ୍‌ରେ ମଦ ପିଇ ରାତି ଅଧରେ ବମ୍ବେ ମହାନଗରୀର ଫୁଟପାଥରେ ଶୋଇଥିବା ଛଅ ଜଣ ମଜୁରିଆଙ୍କ ଉପରେ କାର୍ ଚଢ଼ାଇ ଦେଲେ ।

କିଛିମାସ ତଳେ କୋଣାର୍କ ମେରାଇନ୍ ଡ୍ରାଇଭ୍‌ରେ ଜଣେ ମହିଳାଙ୍କୁ ବସ୍‌ରୁ ଭିଡି ଆଣି ଗଣଧର୍ଷଣ କରାଗଲା । ଗତ ଜୁଲାଇ ମାସରେ ନୟାଗଡ ଜିଲ୍ଲାର ଏକ କୂଅରେ

ପ୍ରାୟ ତିରିଶଟି ଶିଶୁକନ୍ୟାଙ୍କ ଶରୀରାବଶେଷ ମିଳିଲା । ଏବେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଜଣେ ଛାତ୍ରୀ ଗଣଧର୍ଷଣର ଶିକାର ହେବା ପରେ ତାଙ୍କୁ ଅର୍ଦ୍ଧନଗ୍ନ ଓ ଅଚେତ ଅବସ୍ଥାରେ ଉଦ୍ଧାର କରାଯାଇଛି ।

ଅସଭ୍ୟତାର ଅନ୍ୟ ଏକ ରୂପ, ସଭ୍ୟତାର ଉନ୍ମେଷ କ୍ଷେତ୍ର ବୋଲି ବିଚାର କରାଯାଉଥିବା ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଦେଖିବାକୁ ମିଳୁଛି । କିଏ କେତେ ଅସଭ୍ୟ ହୋଇପାରିବ, ସେହି ପ୍ରତିଯୋଗିତାରେ ଅନେକ ଇଞ୍ଜିନିୟରିଂ କଲେଜ ଆଗୁଆ ଅଛନ୍ତି । ଆଇ.ଆଇ.ଟି.ମାନଙ୍କରେ ବି ଏ ରୋଗ ବ୍ୟାପିଲାଣି । ର୍‍ୟାଗିଙ୍ଗ୍ ନାମରେ ପ୍ରତିବର୍ଷ ହଜାର ହଜାର କୋମଳମତି ବୁଦ୍ଧିମାନ୍ ଛାତ୍ର ବର୍ବରତା ଓ ଅସଭ୍ୟତାର ଶିକାର ହେଉଛନ୍ତି । ୨୦୦୨ ମସିହାରୁ ୨୦୦୭ ମସିହା ଭିତରେ ନାରୀ ଉପରେ ହେଉଥିବା ଅତ୍ୟାଚାର ଉପରେ କରାଯାଇଥିବା ଏକ ଅଧ୍ୟୟନରୁ ଜଣାଯାଏ ଯେ ପ୍ରତି ୧୦୦ ରୁ ୪୧ ଜଣ ମହିଳାଙ୍କୁ ବିଧା, ଚାପୁଡ଼ା ପ୍ରହାର, ତଣ୍ଟିଚିପା, ଚୁଟିଭିଡ଼ା ଓ ଠେଲାପେଲା କରାଯାଇଥାଏ । (କ୍ରାଇମ୍ ଏଗେନଷ୍ଟ ଓମାନ୍, ଦିଲ୍ଲୀ ପୋଲିସ୍) । ଇଣ୍ଟରଭ୍ୟୁ କରାଯାଇଥିବା ୧୮୦୫ ଜଣ ମହିଳାଙ୍କ ମଧ୍ୟରୁ ୭୮ ଭାଗ କହିଥିଲେ ଯେ ଏପରି ଦୁର୍ବ୍ୟବହାର ଓ ଅସଭ୍ୟ ଆଚରଣ ନିଜ ପିଲାଙ୍କ ସାମନାରେ ଘଟିଥାଏ । ସତର ଭାଗ ମହିଳା ନିଜ ପିଲାଙ୍କୁ ଢାଲ ଭଳି ଆଗରେ ଠିଆ କରାଇ, ଏପରି ଅତ୍ୟାଚାରରୁ ରକ୍ଷା ପାଇଥାନ୍ତି । ୫୪% କେଶ୍‌ରେ ଏପରି ଅସଭ୍ୟତାର ମୂଳକାରଣ ଯୌତୁକ । କଠୋରପନ୍ଥୀ ଅତ୍ୟନ୍ତ ରକ୍ଷଣଶୀଳ ସମାଜରେ ଏହାର ମାତ୍ରା ଅଧିକ । ଇରାନ୍‌ରେ ଗତ ତିନି ବର୍ଷ ଭିତରେ ଲକ୍ଷେ ବାଇଶ ହଜାର ମହିଳାଙ୍କୁ ଠିକ୍ ଭାବରେ ବାଳକାଟି ନଥିବା ଅଭିଯୋଗରେ ଦଣ୍ଡ ଦିଆଯାଇସାରିଲାଣି । ଆଫଗାନିସ୍ତାନ, ପାକିସ୍ତାନ ଓ କେତେକ ଆରବ ଦେଶରେ ଉଭୟ ପୁରୁଷ ଓ ମହିଳାଙ୍କୁ ଦଣ୍ଡସ୍ୱରୂପ ପଥର ଫୋପାଡି ମାରି ଦିଆଯାଇଛି, ହାତ କାଟି ଦିଆଯାଇଛି, ଆଖି ତାଡି ଦିଆଯାଇଛି । ଏହା ଧର୍ମରେ ଲେଖାଯାଇଛି ବୋଲି କୁହାଯାଉଛି ।

ଧର୍ମ ନାମରେ ସଭ୍ୟ ମାନବ ସମାଜରେ ଅସଭ୍ୟ ବର୍ବର ଆଚରଣ ସବୁଠାରୁ ବେଶି । ଯେଉଁ ଶ୍ରୀମନ୍ଦିରରେ ଭଦ୍ରତାର ପ୍ରତୀକ ବଳ 'ଭଦ୍ର' ଓ ଦେବୀ ସୁ'ଭଦ୍ରା'ଙ୍କର ପ୍ରତ୍ୟହ ପୂଜା ହୁଏ, ସେଠି ଅଭଦ୍ର ଭାଷା ଓ ଆଚରଣଯୋଗୁଁ ଆଜି ବହୁ ଭକ୍ତ ବ୍ୟଥିତ । ଆତଙ୍କବାଦ, ଉଗ୍ରବାଦ ମଧ୍ୟ ଧର୍ମ ନାମରେ କରାଯାଉଥିବା ଆଚରଣର ଏକ କୁତ୍ସିତ ରୂପ । ନିଜର ଅନ୍ଧବିଶ୍ୱାସକୁ ଅନ୍ୟମାନଙ୍କ ଉପରେ ଯୋର ଜବରଦସ୍ତ ଲଦି ଦେବା, ନିରୀହ, ନିର୍ଦ୍ଦୋଷ ଲୋକଙ୍କୁ ହତ୍ୟା କରିବା, ନିଜ ମତ ସହ ଏକମତ ହେଉନଥିବା

ଲୋକଙ୍କୁ ଶେଷ କରିଦେବା, ଅସଭ୍ୟତାର ଆଉ ଏକ ରୂପ । ଭାରତରେ ସାମ୍ପ୍ରଦାୟିକ ଦଙ୍ଗା, ଜାତିଗତ କଳହ, ଧର୍ମବିବାଦର ଅନ୍ତ ନାହିଁ । ଜର୍ମାନୀରେ ହିଟଲର ଓ ରୁଷିଆରେ ଷ୍ଟାଲିନ୍‌ଙ୍କ ଗଣହତ୍ୟା ପରମ୍ପରା ଅନ୍ୟ ଦେଶମାନଙ୍କରେ ଚାଲୁ ରହିଛି । ନୂଆ ଉତ୍ତରାଧିକାରୀଙ୍କ ସଂଖ୍ୟା ବଢୁଛି ।

ଭାରତ ପାକିସ୍ଥାନ ବିଭାଜନ ପରେ ସାମ୍ପ୍ରଦାୟିକ ଅସଭ୍ୟତା କମିଲା ନାହିଁ, ବଢିଲା। ସ୍ୱଧର୍ମାବଲମ୍ବୀଙ୍କ ମଧ୍ୟରେ ଲଢେଇ ହୋଇ ଇସଲାମିକ୍ ପାକିସ୍ଥାନ ଦୁଇ ଫାଳ ହୋଇଗଲା । ଏବେ ବର୍ମାରେ ଏକଛତ୍ରବାଦୀମାନେ ତାଙ୍କ ସହ ଏକମତ ହେଉନଥିବା ସାଧୁସନ୍ଥମାନଙ୍କୁ ମାରିବାରେ ଲାଗିଲେଣି । ସାଉଦିଆରବର "କାଟିଫ୍" ସହରର ଜଣେ ୨୦ ବର୍ଷ ମହିଳାଙ୍କୁ ସାତ ଜଣ ପୁରୁଷ ଧର୍ଷଣ କରିବା ପରେ ସୁପ୍ରିମ୍‌କୋର୍ଟ ଧର୍ଷିତା ମହିଳାଙ୍କୁ ଦୋଷୀ ସାବ୍ୟସ୍ତ କରି ଦୁଇଶହ ଥର ପ୍ରହାର ଓ ଛଅମାସ ଜେଲ୍‌ଦଣ୍ଡ ଦେଇଛନ୍ତି । ଚୀନ୍ ଦେଶର ଧର୍ମ ଓ ସମ୍ପ୍ରଦାୟ ମନ୍ତ୍ରଣାଳୟ ଏବେ ପାଞ୍ଚ ନମ୍ବର ସର୍କୁଲାର ଜାରି କରିଛନ୍ତି, ତିବ୍ବତୀୟ ଧାର୍ମିକ ବିଶ୍ୱାସକୁ ନିୟନ୍ତ୍ରଣ ଓ ଦମନ କରିବା ପାଇଁ । ଏହି ଆଦେଶ ଅନୁସାରେ ପୁନର୍ଜନ୍ମପାଇଁ ଓ ଅବତାର ଗ୍ରହଣପାଇଁ ଆଗରୁ ଧର୍ମ ମନ୍ତ୍ରଣାଳୟକୁ ଦରଖାସ୍ତ ଦେଇ ପରମିସନ୍ ନେବାକୁ ପଡ଼ିବ ।

ଭାରତୀୟ ପୋଲିସ୍ ନିଜର ଅସଂଯତ ଆଚରଣପାଇଁ ବିଶ୍ୱବିଖ୍ୟାତ । ଏସବୁ ହେଲା ସରକାରୀ ଅସଭ୍ୟତାର ରୂପ । ଭାରତୀୟ ଚିତ୍ର ତାରକା ଶିଳ୍ପା ସେଟ୍ଟୀଙ୍କ ପ୍ରତି ଜଣେ ଅନାମଧେୟ ମଡେଲ 'ରିଏଲଟି ଶୋ'ରେ ଅସଭ୍ୟ ଆଚରଣ ପ୍ରଦର୍ଶନ କରିଥିବାଯୋଗୁଁ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ କ୍ଷମା ମାଗିଲେ । କିନ୍ତୁ ୧୮୫୭ ମସିହାରେ ଭାରତରେ ଯେଉଁ ବ୍ରିଟିଶ ସୈନିକମାନେ ନିଜ ଦେଶପାଇଁ ପ୍ରାଣବଳି ଦେଇଥିଲେ, ସେମାନଙ୍କ ସମାଧିରେ ଫୁଲ ଚଢାଇବାକୁ ଆସିଥିବା ତାଙ୍କ ବଂଶଧରମାନଙ୍କୁ ଲକ୍ଷ୍ନୌ ଓ କାନପୁରର ଲୋକେ ଦୁର୍ବ୍ୟବହାର କରି ଘଉଡାଇ ଦେଲେ । କିଏ ସଭ୍ୟ ଓ କିଏ ଅସଭ୍ୟ ? ନେତା ଓ ମିଡିଆ - ଉଭୟ ଚୁପ୍ ରହିଲେ, ସିଭିଲ୍ ସୋସାଇଟି ମୁହଁ ଖୋଲିଲା ନାହିଁ । ମୃତ ପୂର୍ବପୁରୁଷ ଓ ସ୍ୱଜନଙ୍କ ସମାଧିକୁ ସମ୍ମାନ କରି ନ ପାରି, ପିଲାମାନେ ଗଭୀର ମର୍ମବ୍ୟଥା ନେଇ ସ୍ୱଦେଶକୁ ବାହୁଡ଼ି ଗଲେ । ଏହାଛଡା ଆମ ଦୈନନ୍ଦିନ ଜୀବନରେ ଘଟୁଥିବା ବିଶୃଙ୍ଖଳତା ଓ ଅସଭ୍ୟତାର ହିସାବ ନାହିଁ । ଧାର୍ମିକ ସ୍ଥାନମାନଙ୍କରୁ ବଡ ମାଇକ୍ ଲଗାଇ ପ୍ରଚାର, ବାଜା, ବାଣ ଓ ମଦ୍ୟପାନ ସହ ଶୋଭାଯାତ୍ରା, ରାସ୍ତାରୋକ, ଉଚ୍ଚସ୍ୱର ଓ ଅଶ୍ଳୀଳ ଭାଷା, ବହୁ ଆଡ଼ମ୍ବରପୂର୍ଣ୍ଣ ବିକଟ ବିବାହ ଉତ୍ସବ ଓ ପାଟିତୁଣ୍ଡ, ରାସ୍ତା ଉପରେ, କଡରେ ମଳମୂତ୍ର ତ୍ୟାଗ, ଅଳିଆ ଫୋପାଡିବା, ଗୁରୁଜନଙ୍କ ପ୍ରତି

ଦୁର୍ବ୍ୟବହାର, ବୟସ୍କ ମହିଳା ଓ ଭିନ୍ନକ୍ଷମଙ୍କପାଇଁ ଉଦ୍ଦିଷ୍ଟ ସିଟ୍ ଅଧିକାର, ଛୋଟ ଛୋଟ କଥା ନେଇ ଝଗଡା, ମାରପିଟ୍, ପୁରାତନ ସ୍ମୃତି, ସ୍ମାରକୀ ଓ କାନ୍ଥବାଡରେ ଅଶ୍ଳୀଳ ଭାଷା ଲିଖନ, ସମୂହ ସ୍ଥଳରେ ଧୂମପାନ, ଯେଉଁଠି ସେଇଠି ପାନଛେପ ପକାଇବା, ତରୁଣୀମାନଙ୍କ ସହ ଅଶ୍ଳୀଳ ଆଚରଣ କରିବା, ଅଶ୍ଳୀଳ, ଅଭଦ୍ର ଇ-ମେଲ୍ ପଠାଇବା, ଧାର୍ମିକ ଶୋଭାଯାତ୍ରା ଓ ମେଢ ଆଗରେ ଅଶ୍ଳୀଳ ସିନେମା ଗୀତ ଗାଇ, ରେକର୍ଡ ବଜାଇ ନାଚିବା ଓ ସର୍ବୋପରି ବିଧାନସଭା, ଲୋକସଭାରେ ତର୍କ ବିତର୍କ ଛାଡି ହସ୍ତାହସ୍ତି ହେବା - ଏକ ଅସଭ୍ୟ ସମାଜ ଓ ସଂସ୍କୃତିର ନଗ୍ନରୂପ ।

ବିଖ୍ୟାତ ଐତିହାସିକ ଟୟନ୍‌ବିଙ୍କ ମତରେ ପୃଥିବୀର ଦୁଇଟି ଜୀବନ୍ତ ସଭ୍ୟତା ମଧ୍ୟରୁ ଗୋଟିଏ ହେଲା ଭାରତୀୟ ସଭ୍ୟତା । ଅସଭ୍ୟ ଲୋକଙ୍କ ଆଘାତରେ ଏହା ଦୁର୍ବଳ ଓ ରୁଗ୍‌ଣ ହୋଇଗଲାଣି । ଏହାର ନିରାକରଣପାଇଁ ଆବଶ୍ୟକ ଏକ ସାମାଜିକ ଆନ୍ଦୋଳନ । ପରିବାର, ଶିକ୍ଷାୟତନ ଓ ସାମାଜିକ ସ୍ତରରେ ଏହି ଆନ୍ଦୋଳନ ଆରମ୍ଭ କରିବାକୁ ହେବ । ଏକ ସଭ୍ୟ ସଂସ୍କୃତିସଂପନ୍ନ ସମାଜ ପୁନର୍ଗଠନ କରିବାକୁ ହେବ । ବଡ଼ମାନେ ପ୍ରଥମେ ନିଜକୁ ସଜାଡିଲେ, ସାନମାନେ ଅନୁସରଣ କରିବେ । ସ୍କୁଲ, କଲେଜରେ ସଭ୍ୟ ଆଚରଣ ଶିକ୍ଷାର ଅଙ୍ଗ ହେବା ଦରକାର । ଶିକ୍ଷକମାନେ ଆଦର୍ଶ ଆଚରଣ 'ରୋଲ୍‌ମଡେଲ' ହେବାକୁ ପଡ଼ିବ । ଏହା ହେଲେ ଯାଇ ବିଦେଶରେ ଭାରତୀୟମାନଙ୍କର ସମ୍ମାନ ବଢ଼ିବ । ଏହି ଆନ୍ଦୋଳନକୁ ସଫଳ କରିବାକୁ ପ୍ରତ୍ୟେକ ନାଗରିକଙ୍କ ସହଯୋଗ ଆବଶ୍ୟକ । ନେତା, ଅଭିନେତା ଓ ଗଣମାଧ୍ୟମର ଦାୟିତ୍ୱ ବେଶି । ଏବେ ଏକ ଆନ୍ତର୍ଜାତିକ ସର୍ଭେରୁ ଜଣାପଡିଛି ଯେ, ଶତକଡା ୭୩ ଭାଗ ମହିଳା ଉତ୍ତମ ଆଚରଣସଂପନ୍ନ ବ୍ୟକ୍ତିଙ୍କୁ ଜୀବନସାଥୀ ଭାବରେ ପସନ୍ଦ କରିଥାନ୍ତି । ସଭ୍ୟ ଆଚରଣ ସବୁଠାରୁ ଶସ୍ତା, ଏଥିପାଇଁ ପଇସା ଖର୍ଚ୍ଚ କରିବାକୁ ପଡେ ନାହିଁ । ବଚନେ କା ଦରିଦ୍ରତା ?

ଅନ୍ୟ ପକ୍ଷରେ ଦେଶର ଆଇନ୍ ଶୃଙ୍ଖଳା ବ୍ୟବସ୍ଥାରେ ପରିବର୍ତ୍ତନ ଆଣିବାକୁ ପଡ଼ିବ । ପେନାଲ୍ କୋଡ୍, ସିଭିଲ୍ କୋଡ୍ ଓ ସମ୍ବିଧାନ ସଂଶୋଧନ କରି ପୋଲିସ୍ ବିଭାଗକୁ ରାଜନୀତିରୁ ଊର୍ଦ୍ଧ୍ୱରେ ରଖିବାକୁ ହେବ । ପୋଲିସ୍ ତାଲିମ ବ୍ୟବସ୍ଥାରେ ସଂସ୍କାର ଆବଶ୍ୟକ । ରାଷ୍ଟ୍ରୀୟ ପୋଲିସ କମିଶନଙ୍କ ସୁପାରିଶକୁ ତୁରନ୍ତ କାର୍ଯ୍ୟକାରୀ କରିବାକୁ ପଡ଼ିବ । ଗୁଣ୍ଡାଗର୍ଦ୍ଦି, ମାଫିଆ ଓ ଅସଭ୍ୟ ଆଚରଣ ସମ୍ପର୍କୀୟ କେଶ୍ ସବୁର ତୁରନ୍ତ ବିଚାର, ଫଇସଲା ଓ ଦୋଷୀକୁ ଦଣ୍ଡ ବ୍ୟବସ୍ଥା ନହେଲେ ବିଚାର ପଦ୍ଧତି ଉପରେ ଲୋକଙ୍କ ଆସ୍ଥା ତୁଟିଯିବ, ଅସଭ୍ୟତା ବଢ଼ିବ । ଭାରତ ୨୦୨୦ ମସିହା

ବେଳକୁ ବିଶ୍ୱର ଏକ ଉନ୍ନତ 'ଅସଭ୍ୟ' ଦେଶ ହୋଇଯିବ । ଅସଭ୍ୟ ଲୋକଙ୍କ ଉପରେ ପ୍ରକୃତ ବିଜୟ ହେଉଛି, ସଭ୍ୟ ଲୋକଙ୍କ ନିରାପତ୍ତା । ୧୯୪୮ ମସିହାରେ ବିଶ୍ୱ ମାନବାଧିକାର ସମ୍ବିଧାନରେ ଯେଉଁ ସବୁ ସମାଜର ମୂଳଦୁଆ ପଡିଥିଲା, ଅସଭ୍ୟ ଲୋକେ ତାକୁ ଧୂଳିସାତ୍ କରିବା ଉଦ୍ୟମ ଅବ୍ୟାହତ ରଖିଛନ୍ତି । ଏହା ବିରୁଦ୍ଧରେ ସଭ୍ୟ ସମାଜ ଏକଜୁଟ ହେବା ଆବଶ୍ୟକ ।

*୨୮ ଫେବୃଆରୀ, ୨୦୦୮*

■ ■ ■

# ମଣିଷକୁ ସାବଧାନ !!!

ବଲାଙ୍ଗୀରର ଟାକୁଆ ଗାଁ ଓ ଶୂଳିଆ ସଂସ୍କାର ମଞ୍ଚ ପଶୁବଳି ଓ ମାଂସ ଭକ୍ଷଣ ବିରୁଦ୍ଧରେ ଜନ ଆନ୍ଦୋଳନ ଆରମ୍ଭ କରିଛନ୍ତି । କିନ୍ତୁ ଏହା ସତ୍ତ୍ୱେ ଶୂଳିଆ ପୀଠରେ ପଶୁପକ୍ଷୀଙ୍କ ବଳିପ୍ରଥାକୁ ବନ୍ଦ କରିବାପାଇଁ ପ୍ରଶାସନ ଓ ପୁଲିସ୍‌ର ସବୁ ଉଦ୍ୟମ ପଣ୍ଡ ହୋଇଯାଇଛି । ନଡିଆ ଓ ଧୂପ ଦୀପରେ ପୂଜା ଅର୍ଚ୍ଚନା କରିବାପାଇଁ ସଂସ୍କାର ମଞ୍ଚର ଚେଷ୍ଟାକୁ ପ୍ରତ୍ୟାଖାନ କରି 'ସାନଖଳା' ଓ 'ନୂଆଖଳା'ରେ ଅସଂଖ୍ୟ ପଶୁପକ୍ଷୀ ପୋଡଙ୍କର ନିଷ୍ଠୁର ହତ୍ୟାର ଲୋମହର୍ଷଣକାରୀ ଦୃଶ୍ୟକୁ ବରିଷ୍ଠ ଅଧିକାରୀମାନେ ଉପଭୋଗ କରୁଥିଲେ ବୋଲି ସମ୍ବାଦ ପ୍ରକାଶ ପାଇଛି । ରାଜଧାନୀ ଭୁବନେଶ୍ୱରରେ ପ୍ରତିବର୍ଷ ଛାଡ଼ଖାଇ ଦିନ ପ୍ରାୟ ଦୁଇ ଲକ୍ଷ ଜନ୍ତୁ ବଳି ପଡ଼ନ୍ତି । ଲକ୍ଷ୍ମୀସାଗର, ଆଇଁଗିଣିଆ, ତମାଣ୍ଡୋ, ନୟାପଲ୍ଲୀ, ଡମଣା ଛକ, ରସୁଲଗଡ଼, ସାମନ୍ତାରୟପୁର ଓ ଉତ୍ତରାଠାରେ ଏମାନଙ୍କ ହତ୍ୟାପାଇଁ ବ୍ୟାପକ ବ୍ୟବସ୍ଥା ଦେଖିଲେ ଦେହ ଶୀତେଇ ଉଠେ । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପଶୁବଳି ପ୍ରଥା ଜାରି ରହିଛି - ଏହାର ସପକ୍ଷ ଓ ବିପକ୍ଷରେ ଲେଖାମାନ ବାହାରୁଛି । କିନ୍ତୁ ଏହାକୁ ଆନ୍ଦୋଳନ ରୂପ ଦେବାରେ ଟାକୁଆ ଗାଁ ଓ ଶୂଳିଆ ସଂସ୍କାର ମଞ୍ଚ ରାଜ୍ୟରେ ବୋଧହୁଏ ପ୍ରଥମ ।

ଥରେ ଇଦ୍ ପର୍ବର କିଛିଦିନ ପୂର୍ବରୁ ବାଂଲାଦେଶର ରାଜଧାନୀ ଢାକାରେ ଥିଲି । ଦିନେ ସକାଳେ ଖବରକାଗଜ ହେଡଲାଇନ୍‌ରେ ବାହାରିଲା, ମେଘନା ନଦୀରେ ଗାଈଗୋରୁଙ୍କୁ ନେଇ ଆସୁଥିବା ଦୁଇଟି ବଡ ବୋଟ୍ ବୁଡ଼ିଯାଇଛି ଏବଂ ଶହେରୁ ଅଧିକ ଗାଈଗୋରୁ ପ୍ରାଣରକ୍ଷା ଉଦ୍ୟମରେ ପହଁରି ପହଁରି କୂଳରେ ପହଞ୍ଚିଛନ୍ତି । ଖବର ପଢ଼ି ମୁଁ ଖୁସି ହୋଇ ପାରିଲି ନାହିଁ । ମୋ ପାଖରେ ବସିଥିଲେ ସହକର୍ମୀ ବେଗମ୍ ରାକା ରସିଦ୍ । ପଚାରିଲେ 'ଡକ୍ଟର ସାହେବ, ଆପଣ ଏ ଖବରରେ ଖୁସି ନ ହୋଇ ବିଷର୍ଣ୍ଣ ଜଣା ପଡୁଛନ୍ତି' । ତାଙ୍କୁ କହିଲି, ଆପଣଙ୍କ ଅନୁମାନ ସତ୍ୟ - କାରଣ ମୁଁ ଭାବୁଥିଲି

ଏହି ଗାଈଗୋରୁମାନେ ପ୍ରାଣରକ୍ଷାପାଇଁ ଏତେ ପରିଶ୍ରମ କରୁଥିଲେ କାହିଁକି - ଏହା ଆସନ୍ତାକାଲି ବୃଥା ହୋଇଯିବ । ଇଦ୍ ପର୍ବ ପାଳନପାଇଁ ଏ ସମସ୍ତଙ୍କୁ ହତ୍ୟା କରାଯିବ । ମୋ କଥା ଶୁଣି ହଠାତ୍ ସେ ଗମ୍ଭୀର ହୋଇଗଲେ 'ହଁ, ମୁଁ ଆପଣଙ୍କ କଥା ଏବେ ହୃଦୟଙ୍ଗମ କରୁଛି' । ପାଖରେ ବସିଥିବା ଆଉ ଜଣେ ବାଂଲାଦେଶୀ ବନ୍ଧୁ କହିଲେ, ଏ ଗୋରୁଗାଈ ଆମ ଦେଶର ନୁହଁନ୍ତି - ଆପଣଙ୍କ ଦେଶରୁ ଇଦ୍‌ପାଇଁ ଅଣାଯାଇଛି । ଆମ ଦେଶରେ ଏମାନଙ୍କ ସଂଖ୍ୟା ସରି ଆସୁଛି । ଆମେ ସେମାନଙ୍କୁ ଖାଇ ସାରିଲୁଣି ।

ମହାଭାରତରେ ବନବାସ କାଳରେ ମଧ୍ୟମ ପାଣ୍ଡବ ଭୀମ କିପରି ନିଜ ଜୀବନକୁ ଖାତିର ନ କରି ବଳିପ୍ରଥା ଉଠାଇ ଦେଇଥିଲେ - ସେ କଥା ପ୍ରାୟ ସମସ୍ତଙ୍କୁ ଜଣା । କିନ୍ତୁ ମୋର ମାଳଦ୍ୱୀପ ଗସ୍ତ ସମୟରେ ପ୍ରଥମେ ଜାଣିବାକୁ ପାଇଲି ଯେ - ଜଣେ ଆରବୀୟ ମୁସଲମାନ ବଣିକ ଠାକୁରାଣୀଙ୍କ ଆଗରେ ବଳି ଦେବା ପ୍ରଥାର ଅସାରତା ସର୍ବ ସମକ୍ଷରେ ପ୍ରମାଣିତ କରିଦେବା ପରେ ସେ ଦେଶର ସମସ୍ତ ହିନ୍ଦୁ ନିଜ ଧର୍ମ ପରିବର୍ତ୍ତନ କରିଥିଲେ । ଏହି ବଣିକ ଯେଉଁ ଠାକୁରାଣୀଙ୍କ ପଥର ମୂର୍ତ୍ତି ଆଗରେ ବଳି ଦିଆଯାଉଥିଲା, ସେହିଟିକୁ ଟେକି ଆରବ ସମୁଦ୍ରରେ ଫିଙ୍ଗି ଦେଇଥିଲେ ।

ଭାରତରେ ପଶୁହତ୍ୟା ବିରୁଦ୍ଧରେ ଏବଂ ଅହିଂସା ଓ ଜୀବେ ଦୟା ସମକ୍ଷରେ ଜୈନ ଗୁରୁମାନେ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ । ରାଷ୍ଟ୍ରପିତା ମହାତ୍ମାଗାନ୍ଧୀଙ୍କୁ ଏହି ବିଚାରଧାରା ପ୍ରଭାବିତ କରିଥିଲା । ସାଙ୍ଗମାନଙ୍କ ପ୍ରେରଣାରେ ମାଂସ ଖାଇବା ପରେ ରାତିରେ ନିଜ ପେଟ ଭିତରେ ଛେଳିର କ୍ରନ୍ଦନ ଶୁଣିଥିବା କଥା ଆତ୍ମଜୀବନୀରେ ସେ ଲେଖିଛନ୍ତି । ପଶୁ ସମ୍ପଦକୁ ରକ୍ଷା କରିବାପାଇଁ ଭାରତୀୟ ଧାର୍ମିକ ପରମ୍ପରାରେ ମାଂସାହାରକୁ ନିରୁତ୍ସାହିତ କରାଯାଇଛି । ଏହାକୁ ଭଗବତ୍ ଗୀତାରେ ତାମସିକ ଖାଦ୍ୟ ପର୍ଯ୍ୟାୟରେ ରଖାଯାଇଛି । ଗୋସ୍ୱାମୀ ତୁଳସୀ ଦାସ ଲେଖିଛନ୍ତି - "ବକରି (ଛେଳି) ପାତି (ପତ୍ର) ଖାତି ହେ । ଦେଖୋ ଉସକା ହାଲ । ଯୋ ବକରି କୋ ଖାତା ହେ ଶୋଚୋ ଉସକା ହୋଗା କ୍ୟା ହାଲ ?" ମାଂସ ନ ଖାଉଥିବା ଲୋକଙ୍କୁ ଘାସଖିଆ ବୋଲି ଥଟ୍ଟା କରାଯାଏ ଓ ଶକ୍ତିହୀନ ବୋଲି ପ୍ରଚାର କରାଯାଏ । କିନ୍ତୁ ପୃଥିବୀରେ ଶକ୍ତିର ପ୍ରତୀକ ହେଲା ଅଶ୍ୱ - ହର୍ଷପାଓ୍ୱାର ବା ଅଶ୍ୱଶକ୍ତି । ଅଶ୍ୱଶକ୍ତିଦ୍ୱାରା ସବୁ ଶକ୍ତିକୁ ମପାଯାଏ । ଏହି ଶକ୍ତିମାନ ଅଶ୍ୱ ଶାକାହାରୀ ।

ଏବେ ପାଶ୍ଚାତ୍ୟ ଦେଶମାନଙ୍କରେ ଶାକାହାରୀ ଆନ୍ଦୋଳନ ବ୍ୟାପିଲାଣି । କେବଳ ଲଣ୍ଡନ ସହରରେ ପାଞ୍ଚଶହରୁ ଅଧିକ ଶାକାହାରୀ ରେସ୍ତୋରାଁ । ଡାକ୍ତର ଓ ବୈଜ୍ଞାନିକମାନେ ମାଂସାହାର ବହୁରୋଗର କାରଣ ବୋଲି କହିଲା ପରେ ଏବେ

ଲୋକେ ଅଧିକ ସଚେତନ ହେଲେଣି । ଇଂଲଣ୍ଡରେ ଶାକାହାରୀଙ୍କ ସଂଖ୍ୟା ୩୫ ଲକ୍ଷ ଟପିଲାଣି । ଏମାନଙ୍କ ସ୍ଲୋଗାନ୍ ହେଲା- 'ଲଭ୍ ଦି ଲାଇଫ୍' । ମାଂସାହାରୀଙ୍କ ତୁଳନାରେ ଏମାନେ ଅଧିକ ଦିନ ବଞ୍ଚୁଛନ୍ତି । ଅପରେସନ୍ ପରେ ଏମାନଙ୍କ କ୍ଷତ ଚଞ୍ଚଳ ଶୁଖୁଛି । ଶାକାହାରୀଙ୍କ କ୍ଷେତ୍ରରେ କ୍ୟାନସର ରୋଗ ଓ ହୃଦ୍‌ରୋଗ ମାଂସାହାରୀଙ୍କ ଅପେକ୍ଷା ୪୦ ଭାଗ କମ୍ । କୋଲେଷ୍ଟ୍ରଲ ୫୦ ଭାଗ କମ୍ । ପେଟ ରୋଗ ୬୦ ଭାଗ କମ୍ । ଦାନ୍ତ ରୋଗ ୬୫ ଭାଗ କମ୍ । ଆମେରିକାନ୍ ଜର୍ନାଲ ଅଫ୍ କ୍ଲିନିକାଲ ନିଉଟ୍ରିସନ୍‌ରେ ଏକ ଅଧ୍ୟୟନ ଅନୁସାରେ ଅଧିକ ଫଳ ଓ ଶାକ ସବଜି ଖାଉଥିବା ଲୋକଙ୍କ ମସ୍ତିଷ୍କ ଅଧିକ ସକ୍ରିୟ ରହେ ଓ ମାଂସାହାରୀଙ୍କ ହାଡ ଅଧିକ ଓ ଶୀଘ୍ର ଦୁର୍ବଳ ହୋଇଯାଏ ।

ଗତ ୬୫ ବର୍ଷ ଭିତରେ ଜୀବନଧାରଣର ମାନ ବୃଦ୍ଧି ହେତୁ ଭାରତ ସମେତ ବିକାଶଶୀଳ ଦେଶମାନଙ୍କରେ ମାଂସାହାରୀଙ୍କ ସଂଖ୍ୟା ଶତକଡା ୩୦ ଭାଗ ବଢିଥିବା ବେଳେ ଅଷ୍ଟ୍ରେଲିଆ, ନିଉଜିଲ୍ୟାଣ୍ଡ ଓ ପାଶ୍ଚାତ୍ୟ ଦେଶମାନଙ୍କରେ ୨୫ରୁ ୪୫ ଭାଗ କମିଯାଇଛନ୍ତି । ତା ମଧ୍ୟରୁ ୬୧ ଭାଗ ଲୋକେ ପଶୁପକ୍ଷୀ ପ୍ରତି ନିଷ୍ଠୁରତା ଓ ସେମାନଙ୍କ ବଞ୍ଚିବା ଅଧିକାର ପ୍ରତି ସମର୍ଥନ କାରଣରୁ ମାଂସାହାର ତ୍ୟାଗ କରୁଛନ୍ତି । ଆଉ ୨୬ ଭାଗ ଲୋକ ବିବେକର ତାଡନା କାରଣରୁ ଓ ଉତ୍ତମ ସ୍ୱାସ୍ଥ୍ୟପାଇଁ ମାଂସାହାର ଛାଡି ଦେଇଛନ୍ତି । ଇଂଲଣ୍ଡରେ ଆଉ ଏକ ସର୍ବେକ୍ଷଣରେ ମାଂସାହାରୀଙ୍କୁ ପଚରା ଯାଇଥିଲା, ଯଦି ଆପଣଙ୍କୁ ନିଜେ ମାରି ଖାଇବାକୁ କୁହାଯିବ ତେବେ ଆପଣ ମାଂସ ଖାଇବେ ? ଅଧିକାଂଶ ଉତ୍ତରରେ କହିଲେ ନିଜେ ଜନ୍ତୁଙ୍କୁ ମାରି ଖାଇବା ଅପେକ୍ଷା ମାଂସ ଭକ୍ଷଣକୁ ପୁରାପୁରି ତ୍ୟାଗ କରିବାକୁ ସେମାନେ ପସନ୍ଦ କରିବେ ।

ଯେଉଁମାନଙ୍କ ମାଂସ ଆମେ ଖାଉ, ସେମାନେ ସମସ୍ତେ ଶାକାହାରୀ, ମାଂସାହାରୀ ନୁହଁନ୍ତି । ହିସାବ କରାଯାଇଛି ୧୮ କେଜି ଖାଦ୍ୟ ଶସ୍ୟରୁ ୧ କେଜି ମାଂସ ସୃଷ୍ଟି ହୁଏ । ତେଣୁ ଯଦି ଜଣେ ଶାକାହାରୀଙ୍କ ଚଳିବାପାଇଁ ଏକ ଏକର ଜମି ଦରକାର ହୁଏ, ଜଣେ ମାଂସାହାରୀଙ୍କପାଇଁ ୧୮ ଏକର ଜମି ଦରକାର ପଡେ । ଭାରତରେ ମାଂସାହାରୀଙ୍କ ସଂଖ୍ୟା ୪୨ କୋଟି ଏବଂ ଯଦି ଦେଶର ୧୦୦ କୋଟି ଯାକ ଲୋକେ ମାଂସାହାରପାଇଁ ନିଷ୍ପତ୍ତି ନେବେ, ଆମ ଦେଶର ସବୁ ଧାନ, ଗହମ ଓ ଅନ୍ୟ ଶସ୍ୟାଗାରରେ ଗଚ୍ଛିତ ଖାଦ୍ୟ ତିନିମାସରେ ସରିଯିବ, ଗୋଚର ପଦା ହୋଇଯିବ, କ୍ରମାଗତ ଦୁର୍ଭିକ୍ଷ ଲାଗିରହିବ, ଅନ୍ୟ ଦେଶରୁ ଚାଉଳ, ଗହମ, ପଶୁ ଖାଦ୍ୟ ଓ ମାଂସ ଆମଦାନୀରେ ଆମ ସବୁ ବିଦେଶୀ ମୁଦ୍ରା ପାଣ୍ଠି ଆଠ ମାସରେ ଶେଷ ହୋଇଯିବ । ରୋଗ ଓ ଋଣ ବଢିବ, ଅର୍ଥନୀତି ଦୁର୍ବଳ ହୋଇଯିବ, ପରିବେଶର ସତ୍ୟାନାଶ ହେବ ।

ବାଂଲାଦେଶ, ପାକିସ୍ତାନ ଭଳି ଆମର ପଶୁପକ୍ଷୀ ସମ୍ପଦ ଧ୍ୱଂସ ହୋଇଯିବ । ଦେଶରେ ଥିବା ୨୨ କୋଟି ଶାକାହାରୀଙ୍କଯୋଗୁଁ ହିଁ ଆଜି ଆମର ପଶୁ ଓ ପରିବେଶ ସମ୍ପୂର୍ଣ୍ଣ ନଷ୍ଟ ହୋଇନାହିଁ । ବିଶ୍ୱ ଖାଦ୍ୟ ସଂଗଠନ ମତରେ, ଶାକାହାରୀ ଅଭ୍ୟାସ ହିଁ ଖାଦ୍ୟ ସଙ୍କଟରୁ ମୁକ୍ତି ପାଇବାପାଇଁ ଏକମାତ୍ର ଉପାୟ ।

ବିଶିଷ୍ଟ ଶରୀର ବିଜ୍ଞାନୀଙ୍କ ମତରେ ପ୍ରକୃତି ମାନବ ଶରୀରକୁ ଶାକାହାରୀ ଭାବରେ ସୃଷ୍ଟି କରିଛି । ପ୍ରାକୃତିକ ମାଂସାହାରୀ ଓ ଶାକାହାରୀ ଜୀବଙ୍କ ମଧ୍ୟରେ ୧୩ ପ୍ରକାର ପ୍ରଭେଦ ରହିଛି । ମାଂସାହାରୀ ଜନ୍ତୁଙ୍କ ପିଲା ଜନ୍ମ ପରେ ସପ୍ତାହେ ପର୍ଯ୍ୟନ୍ତ ଦେଖି ପାରନ୍ତି ନାହିଁ - ଆଖି ଫିଟେ ନାହିଁ । ଶାକାହାରୀଙ୍କ ପିଲା ଜନ୍ମ ହେବା ସଙ୍ଗେ ସଙ୍ଗେ ଆଖି ଖୋଲି ଦେଖିପାରନ୍ତି । ମାଂସାଶୀ ଜୀବଜନ୍ତୁଙ୍କ ବଡ ବଡ ନଖ ଦାନ୍ତ ଥାଏ, ମାରି କାଟି ଖାଇବାପାଇଁ, କିନ୍ତୁ ମଣିଷ ପିଲା ଓ ଅନ୍ୟ ଶାକାହାରୀ ଜନ୍ତୁଙ୍କ ଦାନ୍ତ ଗ୍ରାଇଣ୍ଡର ଭଳି 'ପ୍ଲାଣ୍ଟ ଫୁଡ୍' ବା ଉଦ୍ଭିଦଜ ଖାଦ୍ୟ ଚୋବାଇ ଖାଇବାପାଇଁ ତିଆରି ହୋଇଥାଏ । ଶିକାର କରିବାପାଇଁ ପ୍ରକୃତି ମାଂସାସୀ ଜୀବକୁ ରାତିରେ ଦେଖି ପାରିବା ଶକ୍ତି ବା ନାଇଟ୍ ଭିଜନ୍ ଦେଇଥାଏ - ଆମକୁ ନୁହେଁ । ଶିକାର ଧରି ମାରି ଖାଇବାକୁ ସେମାନଙ୍କର ବଡ ପାଟି, ଆମର ଛୋଟ ପାଟି - ଏହା କେବଳ ଶାକାହାରପାଇଁ । ସେମାନଙ୍କର ଧାରୁଆ ପଞ୍ଝା ଓ ଖଦଡା ଜିଭ; ମାରିବା, ରକ୍ତ ପିଇବାପାଇଁ ଥାଏ । ଆମର ପଞ୍ଝା ନାହିଁ ଓ ଜିଭ କୋମଳ । ସେମାନଙ୍କର ସ୍ୱାଦ ଓ ଝାଳ ଜିଭ ଦେଇ ବାହାରେ ।

ଶାକାହାରୀ ଜନ୍ତୁ ଓ ମଣିଷ ଝାଳ ଲୋମକୂପ ଦେଇ ବାହାରେ । ମାଂସାଶୀ ଜନ୍ତୁମାନେ ସ୍ୱଭାବତଃ ହିଂସ୍ର। ମଣିଷ ଓ ଅନ୍ୟ ଶାକାହାରୀ ପ୍ରାଣୀ ସ୍ୱଭାବତଃ ଶାନ୍ତିପ୍ରିୟ । ମାଂସାସୀ ପଶୁଙ୍କ ଅନ୍ତନାଳୀ ଛୋଟ ଓ ଏହି କାରଣରୁ ମାଂସ ଶୀଘ୍ର ହଜମ ହୋଇ ବାହାରିଯାଏ । ମଣିଷର ଅନ୍ତନାଳୀ ଖୁବ୍ ଲମ୍ବା ଓ ଲୋଚାକୋଚା ହୋଇଥିବାରୁ ମାଂସ ସହଜରେ ହଜମ ନ ହୋଇ ଓ ବାହାରି ନପାରି ବେଳେ ବେଳେ ପଚି ଯାଏ ଓ ଭିତରେ ପଡିରହେ । ସେହିପରି ମାଂସାସୀ ପଶୁଙ୍କ ଲିଭର ଓ କିଡ୍‌ନି ଆମଠାରୁ ଖୁବ୍ ବଡ ହୋଇଥିବାରୁ ଶରୀର ବର୍ଜ୍ୟବସ୍ତୁକୁ ଶୀଘ୍ର ବହିର୍ଗତ କରାଇଥାଏ । ସେମାନଙ୍କ ପାକସ୍ଥଳୀ ଅମ୍ଳୀୟ, ଆମର ଆଲକାଲାଇନ୍ ବା କ୍ଷାରୀୟ । ମାଂସାଶୀ ପଶୁଙ୍କ ପ୍ରବୃତ୍ତି ହିଂସ୍ର, ମାରି ରକ୍ତ ଓ କଞ୍ଚାମାଂସ ଖାଇବାକୁ ଶିକାର ଉପରେ କୁଦି ପଡନ୍ତି - ମଣିଷର ପ୍ରକୃତି ଓ ପ୍ରବୃତ୍ତି ଏହାର ବିପରୀତ । ତେଣୁ ମଣିଷ ଦେହ ମନ ଓ ପାଚନ ପ୍ରକ୍ରିୟା ମାଂସାହାର ଅନୁପଯୁକ୍ତ ବୋଲି କୁହାଯାଉଛି ।

ଆମେ ପଶୁପତି ଶିବଙ୍କୁ ପୂଜା କରୁ, ପଶୁପତି ନାଥଙ୍କପାଇଁ ମନ୍ଦିର ଗଢୁ ଓ ତାସହ ପଶୁ ହତ୍ୟାରେ ବି ପାରଙ୍ଗମ । ଗାଈ, ବଳଦ, କୁକୁର, ମାଙ୍କଡ଼, ମେଣ୍ଢା, ହାତୀ, ଘୋଡ଼ା, ଗଧଙ୍କ ପ୍ରତି କ୍ରୂରତା ଆମ ବିବେକକୁ ଦଂଶନ କରେ ନାହିଁ । ପ୍ରଭୁ ଶ୍ରୀରାମ ପଶୁଙ୍କ ସାହାଯ୍ୟରେ ଲଙ୍କା ଜୟ କରି ମା' ସୀତାଙ୍କୁ ଉଦ୍ଧାର କରିଥିଲେ । ମହାତ୍ମା ଗାନ୍ଧି ଗାଈ ଓ ଛେଳିଙ୍କୁ ଅତ୍ୟନ୍ତ ନିରୀହ, ସଭ୍ୟ, ତ୍ୟାଗୀ ଓ ଧୈର୍ଯ୍ୟଶାଳୀ ପ୍ରାଣୀ ବୋଲି ଲେଖିଛନ୍ତି । ଆବ୍ରାହମ ଲିଙ୍କନଙ୍କ ମତରେ କେଉଁ ମଣିଷ କେତେ ସଭ୍ୟ, ତାହା ପଶୁ ପ୍ରତି ତାଙ୍କର ବ୍ୟବହାରରୁ ଜଣାପଡେ । ବ୍ୟାଧ ଶରବିଦ୍ଧ ପକ୍ଷୀ ଯୁଗଳଙ୍କ ବ୍ୟଥାରେ ଅଭିଭୂତ ହୋଇ ମହର୍ଷି ବାଲ୍ମିକୀ ରାମାୟଣ ମହାକାବ୍ୟ ଲେଖିଥିଲେ । ମିଲଟନ୍, ସେଲି, ନିଉଟନ୍, ବର୍ଣ୍ଣାଡ୍ ଶ'ଙ୍କଠାରୁ ଆରମ୍ଭ କରି ମେନକା ଗାନ୍ଧୀ, ଅମିତାଭ ବଚନଙ୍କ ପର୍ଯ୍ୟନ୍ତ - ଶାକାହାର ଓ ପଶୁରକ୍ଷା ସପକ୍ଷରେ ଜନଚେତନା ଜାଗ୍ରତ କରିଆସିଛନ୍ତି । ଶୁଣାଯାଏ ବିଲ୍ ଓ ହିଲାରି କ୍ଲିଣ୍ଟନ୍‌ଙ୍କ ଝିଅ ଚେଲ୍‌ସି ୧୧ ବର୍ଷ ପିଲା ଅବସ୍ଥାରେ ମାଂସ ନ ଖାଇବାପାଇଁ ପରିବାର ଭିତରେ ବିଦ୍ରୋହ କରିଥିଲେ ।

ମାନବ ସଭ୍ୟତାର ବିକାଶରେ ପଶୁମାନଙ୍କ ଯୋଗଦାନ ସବୁଠୁ ଅଧିକ । ପ୍ରାଚୀନ କାଳରେ କୃଷିଠାରୁ ଆରମ୍ଭ କରି ଏବେକାର ନୂଆ ନୂଆ ପ୍ରାଣରକ୍ଷାକାରୀ ଔଷଧ ତିଆରି ପର୍ଯ୍ୟନ୍ତ ବିଭିନ୍ନ କ୍ଷେତ୍ରରେ ପଶୁମାନଙ୍କ ତ୍ୟାଗ ସବୁଠୁ ବେଶୀ । ଚାଷବାସରେ ପଶୁଙ୍କ ସାହାଯ୍ୟ ଭୁଲି ଆମେ ଏବେ ପଇସାପାଇଁ ପଶୁ ଚାଷରେ ଲାଗିଲେଣି । ପ୍ରତିଦିନ ପୃଥିବୀ ପୃଷ୍ଠରୁ ପାଞ୍ଚ ପ୍ରକାର ପଶୁ, ପକ୍ଷୀ, ପତଙ୍ଗ ସବୁଦିନପାଇଁ ନିଶ୍ଚିହ୍ନ ହୋଇ ଯାଉଛନ୍ତି । ଏବେ ଶବ ଖାଇବାପାଇଁ ଶାଗୁଣା ନାହାନ୍ତି, କିନ୍ତୁ ଗଳି ଗଳିରେ ଛାଲ ଉତାରି ଲଟକା ଯାଇଥିବା ମୁର୍ଦାର ଚାରିପଟେ ମଣିଷଙ୍କ ଭିଡ ବଢ଼ିବାରେ ଲାଗିଛି । ତେଣୁ 'କୁକୁରକୁ ସାବଧାନ' ଭଳି ପ୍ରତି ପଶୁଙ୍କ ବେକରେ 'ମଣିଷକୁ ସାବଧାନ' ସାଇନ୍ ବୋର୍ଡ ଝୁଲାଇଲେ ଭଲ ହୁଅନ୍ତା । ଶୂଳିଆ ସଂସ୍କାର ମଞ୍ଚ ଭଳି ଅନୁଷ୍ଠାନମାନଙ୍କ ସଂଖ୍ୟା ବଢ଼ିଲେ ପଶୁମାନଙ୍କ ପ୍ରତି ବିପଦ କମିବ, ମଣିଷ ମଧ୍ୟରେ ଥିବା ସୁପ୍ତ ଚେତନା ଓ ବିବେକ ଜାଗ୍ରତ ହେବ ।

*୨୪ ଜାନୁଆରୀ, ୨୦୦୮*



# ଜନସଂଖ୍ୟା ନା ଜନଶକ୍ତି ?

ଜନ-ଗଣନା କମିଶନ୍ ଆଜିଠାରୁ କୋଡିଏ ବର୍ଷ ପରେ ଭାରତର ଜନସଂଖ୍ୟା କେତେ ହେବ ସେ ସମ୍ପର୍କରେ ଏକ ପୂର୍ବାନୁମାନ କରିଛନ୍ତି । ଏହି ହିସାବ ଅନୁସାରେ ୨୦୨୬ ମସିହା ବେଳକୁ ଆମ ଦେଶର ଜନସଂଖ୍ୟା ଆଉ ତିରିଶ କୋଟି ବଢ଼ି ୧୪୦ କୋଟିରେ ପହଞ୍ଚିବ । ଓଡ଼ିଶାର ଜନସଂଖ୍ୟା ମଧ୍ୟ ଆସନ୍ତା କୋଡିଏ ବର୍ଷ ଭିତରେ ପ୍ରାୟ ୮୦ ଲକ୍ଷ ବଢ଼ି ଚାରି କୋଟି ୫୩ ଲକ୍ଷରେ ପହଞ୍ଚିବ ବୋଲି ଆକଳନ କରାଯାଇଛି । ତେବେ ଜନସଂଖ୍ୟାର ସାମୂହିକ ବୃଦ୍ଧି ଘଟିଲେ ମଧ୍ୟ ଏହି ବୃଦ୍ଧିର ହାରରେ ବ୍ୟାପକ ପରିବର୍ତ୍ତନ ଦେଖାଦେବ । କ୍ରମେ ଶିଶୁ ଜନ୍ମହାର କମିଯିବ । ବୁଢ଼ାବୁଢ଼ୀଙ୍କ ସଂଖ୍ୟା ଦୁଇଗୁଣ ବଢ଼ିଯିବ । ଉପଯୁକ୍ତ ପ୍ରତିଷେଧକ ବ୍ୟବସ୍ଥା ଆଜିଠାରୁ ଗ୍ରହଣ କରାନଗଲେ ମାରାତ୍ମକ ଏଡ୍‌ସ ବେମାରୀ ମହାମାରି ରୂପ ଧାରଣ କରିବ । ସ୍ତ୍ରୀ ଓ ଯୁବ ବୟସର ଲୋକେ ଏହାର ଶିକାର ହେବେ ।

ଜନସଂଖ୍ୟାରେ ଯୁବକ ଯୁବତୀଙ୍କ ସଂଖ୍ୟା କମିଗଲେ ତା'ର ପରିଣାମ ସ୍ୱରୂପ ଶିଶୁମାନଙ୍କ ସଂଖ୍ୟା ମଧ୍ୟ କମିଯିବ । ଏହାର ପ୍ରଭାବ ଓଡ଼ିଶାର ପ୍ରାଥମିକ ଶିକ୍ଷା ଅବସ୍ଥା ଉପରେ ପଡ଼ିବ । ଆସନ୍ତା ୩୦-୪୦ ବର୍ଷ ଭିତରେ ଓଡ଼ିଶାର ଏକ ଚତୁର୍ଥାଂଶ ପ୍ରାଥମିକ ବିଦ୍ୟାଳୟ ଓ 'କିଣ୍ଡରଗାର୍ଟେନ' ପିଲା ଅଭାବରୁ ବନ୍ଦ ହୋଇଯିବ । ପରବର୍ତ୍ତୀ ପର୍ଯ୍ୟାୟରେ ଅନେକ ହାଇସ୍କୁଲ ଓ କଲେଜ ଛାତ୍ରଛାତ୍ରୀ ଅଭାବରୁ ବନ୍ଦ କରିବାକୁ ପଡ଼ିବ । କାରଣ ଏବେ ଓଡ଼ିଶାରେ ୧୪ ବର୍ଷ ବୟସର ଯେଉଁ ଏକ କୋଟି ବାଇଶ ଲକ୍ଷ ପିଲା ଅଛନ୍ତି, ସେହି ସଂଖ୍ୟା ୨୦୨୬ ମସିହାରେ ୨୭ ଲକ୍ଷ କମିଯାଇ ୯୫ ଲକ୍ଷକୁ ଖସି ଆସିବ । ଓଡ଼ିଶାର ଶିକ୍ଷାନୀତି, ଶିକ୍ଷା ଯୋଜନା ବ୍ୟବସ୍ଥା ଦାୟିତ୍ୱରେ ଥିବା ଲୋକେ ଏହି ପରିସ୍ଥିତିର ମୁକାବିଲା କରିବାପାଇଁ ଆଜିଠାରୁ ବିଚାର ଓ ପ୍ରସ୍ତୁତି ଆରମ୍ଭ କରିବା ଆବଶ୍ୟକ । ଶିଶୁ ଜନ୍ମହାର କମିବା ଫଳରେ କେରଳ ଓ ତାମିଲନାଡୁ ଭଳି ରାଜ୍ୟରେ ପିଲାମାନଙ୍କପାଇଁ ସ୍ଥାପିତ ଶିଶୁ ବିଦ୍ୟାଳୟ ବନ୍ଦ କରିବା ପ୍ରକ୍ରିୟା ଆରମ୍ଭ ହେଲାଣି ।

ଏହାର ବହୁ ଆଗରୁ ୟୁରୋପ, ଆମେରିକା, ଜାପାନ୍, ସିଙ୍ଗାପୁର ଓ ଅନ୍ୟ ବିକଶିତ ଦେଶମାନଙ୍କରେ ଏହି ଅବସ୍ଥା ସୃଷ୍ଟି ହୋଇଛି । ବିଗତ ୨୦ ବର୍ଷ ଭିତରେ ଜାପାନ୍‌ରେ ୪୦୦୦ ସ୍କୁଲ ବନ୍ଦ ହୋଇଗଲାଣି । ସିଙ୍ଗାପୁର କିଣ୍ଡରଗାର୍ଟନଗୁଡିକ ପିଲା ଅଭାବରୁ ବନ୍ଦ ହୋଇଯାଉଛି । ପୃଥିବୀ ପ୍ରସିଦ୍ଧ ଜନସଂଖ୍ୟା ବିଶେଷଜ୍ଞ ମାଲଥସ୍‌ଙ୍କ ଥିଓରି ବା ତତ୍ତ୍ୱ ଏବେ ଗଲାଣି ଅଳିଆ ଗଦାକୁ । ମାଲ୍‌ଥସ୍ ଭବିଷ୍ୟବାଣୀ କରିଥିଲେ କି ଅତ୍ୟଧିକ ପିଲା ଜନ୍ମଯୋଗୁଁ ମାନବଜାତି ଅଚିରେ ଧ୍ୱଂସ ପାଇବ । ଏବେ ଓଲଟା ହେଲାଣି । ପିଲା ଜନ୍ମ ନ କରିବାରୁ ମାନବ ସମାଜ ପୃଥିବୀ ପୃଷ୍ଠରୁ ଲୋପ ପାଇଯିବ ବୋଲି ଆଶଙ୍କା ହେଲାଣି । ସୁଦୂର ଆମେରିକାରେ ଏବେ ଭାଳେଣି ପଡିଲାଣି କିପରି ବର୍ତ୍ତମାନର କମି ଆସୁଥିବା ଜନସଂଖ୍ୟାକୁ ସ୍ଥିର ରଖାଯିବ । ଏ ପରିସ୍ଥିତିର ଏକ ମୁଖ୍ୟ କାରଣ ହେଉଛି ଯେ ଏସବୁ ଦେଶରେ ଯୁବକ ଯୁବତୀମାନେ ବହୁ ବିଳମ୍ୱରେ ବାହା ହେଉଛନ୍ତି ବା ଆଦୌ ବାହା ହେଉନାହାନ୍ତି । ଘର ସଂସାର, ପିଲାଛୁଆ ଏମାନଙ୍କୁ ବୋଝ ଭଳି ଲାଗୁଛି । ସିଙ୍ଗାପୁର ସରକାର ଏହି ଯୁବବର୍ଗଙ୍କପାଇଁ "ଶୀଘ୍ର ବିବାହ ଓ ଶୀଘ୍ର ସନ୍ତାନ" ନାମକ ଯୋଜନା ପ୍ରଣୟନ କରି ବିବାହପାଇଁ ଆକୃଷ୍ଟ କରୁଛନ୍ତି ।

ସେହିଭଳି ଜାପାନ୍ ସରକାର କ୍ରମାଗତ ଜନ୍ମହାର ହ୍ରାସକୁ ଦେଖି ଚିନ୍ତିତ ହୋଇପଡିଲେଣି, କାରଣ ଏହା ଫଳରେ ଦେଶର ଅର୍ଥନୈତିକ ଓ ସାମାଜିକ ବ୍ୟବସ୍ଥା ଭୁଶୁଡି ପଡ଼ିବ । ଜାପାନ୍ ହେଉଛି ବିଶ୍ୱର ଦ୍ୱିତୀୟ ଅର୍ଥନୈତିକ ମହାଶକ୍ତି । ଜାପାନୀ ପୁରୁଷମାନେ ଦୀର୍ଘ ସମୟ କାମ କରୁଥିବାରୁ ଶିଶୁ ପାଳନରେ ସ୍ତ୍ରୀକୁ ସାହାଯ୍ୟ କରିପାରନ୍ତି ନାହିଁ । ତେଣୁ ଶିଶୁ ପାଳନ ଓ ଘରକାମର ବୋଝକୁ ଡରି ଏବେ ଜାପାନୀ କନ୍ୟାମାନେ ବିବାହ କରିବାକୁ ଚାହୁଁନାହାନ୍ତି ଏବଂ ନିଜର କ୍ୟାରିଅର୍‌ପାଇଁ ଏହାକୁ ପ୍ରତିବନ୍ଧକ ବୋଲି ଭାବୁଛନ୍ତି । ଏକଥା ହୃଦୟଙ୍ଗମ କରି ସରକାର ବାହା ହେଉଥିବା ଓ ପିଲା ଜନ୍ମ କରୁଥିବା ମହିଳାଙ୍କୁ ଅଧିକ ଦରମା, ଅଧିକ ଛୁଟି ଓ ଅଧିକ ଇନ୍‌କ୍ରିମେଣ୍ଟର ବ୍ୟବସ୍ଥା କଲେଣି । ଛୋଟ ପିଲାମାନେ ଯେପରି ଦିନରେ ମା'କୁ ଛାଡି ରହିପାରିବେ ସେଥିପାଇଁ ଅଫିସ୍ ଓ ଘର ପାଖରେ ଶିଶୁ ବିନୋଦନ କେନ୍ଦ୍ରମାନ ଖୋଲାଯାଉଛି ଏବଂ ଏ ସମ୍ପର୍କିତ ସମସ୍ତ ବ୍ୟୟ ସରକାର ବହନ କରୁଛନ୍ତି । ଜାପାନ୍ ଜନସଂଖ୍ୟା ବିଶେଷଜ୍ଞମାନଙ୍କ ମତରେ ଯଦି ସରକାର ଆଜିଠାରୁ ସଜାଗ ନ ହେବେ, ତେବେ ଆସନ୍ତା ୫ ଶହ ବର୍ଷ ଭିତରେ ଦେଶର ଜନସଂଖ୍ୟା ୧୦ କୋଟିରୁ କମି ୧୦ଜଣରେ ପହଞ୍ଚିବ । ଗତ ୨୦ ବର୍ଷ ମଧ୍ୟରେ ଜାପାନ୍‌ର ଜନସଂଖ୍ୟା ଦୁଇ କୋଟି ୭୦ ଲକ୍ଷ କମିଗଲାଣି ।

ସେହିପରି ଯୁକ୍ତରାଷ୍ଟ୍ର ଆମେରିକା କଂଗ୍ରେସ ଏବେ ବିବାହ ବିମୁଖ ଯୁବବର୍ଗଙ୍କ ପ୍ରୋତ୍ସାହନପାଇଁ ବାର୍ଷିକ ବଜେଟ୍‌ରେ ଅଲଗା ଅର୍ଥ ବ୍ୟବସ୍ଥା କରିଛନ୍ତି । କ୍ରମବର୍ଦ୍ଧିଷ୍ଣୁ ବିବାହବିମୁଖତା, ବିବାହ ବିଚ୍ଛେଦ ଓ ସନ୍ତାନ ଅନିଚ୍ଛା ଫଳରେ ଦିନେ ଏହି ମହାଶକ୍ତି ହୀନଶକ୍ତି ହୋଇଯିବ ବୋଲି ଆଶଙ୍କା କରାଯାଉଛି । ସେହିପରି ୟୁରୋପରେ ଜନସଂଖ୍ୟା ବୃଦ୍ଧି ହାର ୦.୨୨ ପ୍ରତିଶତକୁ ଖସି ଆସିବା ଫଳରେ ୨୦୫୦ ମସିହା ବେଳକୁ ଶତକଡା ୨୫ ଭାଗ ଜନସଂଖ୍ୟା କମିଯାଇଥିବ । ଆମର ପଡୋଶୀ ଦେଶ ଚୀନ୍‌ରେ ଏକ ସନ୍ତାନ ପରିବାର ନୀତି ପ୍ରଣୟନ ଓ ଲାଗୁ ହେବା ପରେ ପିଲାଙ୍କ ସଂଖ୍ୟା କମି କମି ଗଲାଣି । ରୁଷିଆର ପ୍ରଧାନମନ୍ତ୍ରୀ ଭ୍ଲାଦିମିର୍ ପୁଟିନ୍ ଏବେ ଅଧିକ ସନ୍ତାନ ଜନ୍ମ ଦେଉଥିବା ମହିଳାଙ୍କୁ ଅଧିକ ପଇସା ଦେବାପାଇଁ ଘୋଷଣା କରିଛନ୍ତି । ଫ୍ରାନ୍‌ସ ସରକାର ତୃତୀୟ ସନ୍ତାନ ଜନ୍ମ ଦେଉଥିବା ପିତାମାତାଙ୍କର ଭତ୍ତା ବଢାଇ ଦେଲେଣି । ଜର୍ମାନୀରେ ମଧ୍ୟ ସେହି ଅବସ୍ଥା । କେବଳ ଆଲ୍‌ବାନିଆକୁ ଛାଡିଦେଲେ ୟୁରୋପ୍‌ର ସବୁଦେଶରେ ଏହି ଦଶା ।

ଏକବିଂଶ ଶତାବ୍ଦୀରେ ଚୀନ୍ ଓ ଭାରତ ବିଶ୍ୱର ଦୁଇଟି ପ୍ରଧାନ ଅର୍ଥନୈତିକ ଶକ୍ତି ଭାବରେ ଉଭା ହେବେ ବୋଲି ବିଶେଷଜ୍ଞମାନେ ଭବିଷ୍ୟତବାଣୀ କଲେଣି । ଏହାର ମୁଖ୍ୟ କାରଣ ହେଲା - ତଥାକଥିତ ବିକଶିତ ଦେଶମାନଙ୍କରେ ଯୁବକ ଯୁବତୀଙ୍କ ସଂଖ୍ୟା ହ୍ରାସ । ସମାଜରେ ୨୫ ରୁ ୫୯ ବର୍ଷର ଲୋକେ ପିଲା ଓ ବୁଢ଼ାଙ୍କ ଦାୟିତ୍ୱ ନେଇଥାନ୍ତି । ଉତ୍ପାଦନରେ ସକ୍ରିୟ ଅଂଶ ଗ୍ରହଣ କରିଥାନ୍ତି । ଶାନ୍ତି ଓ ସୁରକ୍ଷା ବ୍ୟବସ୍ଥାକୁ ଗତିଶୀଳ ରଖିଥାନ୍ତି । ସ୍ୱାସ୍ଥ୍ୟ, ଶିକ୍ଷା, ଜନକଲ୍ୟାଣ କାମକୁ ଚଳାଇଥାନ୍ତି । ଯେତେବେଳେ ସମାଜରେ ଏହି ସକ୍ରିୟ ବର୍ଗର ସଂଖ୍ୟାରେ ହ୍ରାସ ଘଟେ, ସମାଜ ଓ ପରିବାର ଦୁର୍ବଳ ହୋଇଯାଏ । ଯେଉଁ ପରିବାରରେ କେବଳ ଶିଶୁ ଓ ବୃଦ୍ଧ ବଞ୍ଚି ରହନ୍ତି ସେ ପରିବାର ସର୍ବଦା ଅନ୍ୟ ଉପରେ ନିର୍ଭରଶୀଳ ହୋଇ ରହେ । ହିସାବ କରାଯାଉଛି, ଯେଉଳି ଦ୍ରୁତ ବେଗରେ ଚୀନ୍ ଦେଶର ଯୁବବର୍ଗର ସଂଖ୍ୟାହ୍ରାସ ଘଟୁଛି, ଆସନ୍ତା ୫୦/୬୦ ବର୍ଷ ମଧ୍ୟରେ ଭାରତର ଅର୍ଥନୀତି ଚୀନ୍‌କୁ ଟପିଯିବ । ସେତେବେଳକୁ ଭାରତର ଲୋକସଂଖ୍ୟା ମଧ୍ୟ ଦେଢଶହ କୋଟିରେ ପହଞ୍ଚିବ । ଭାରତର ଜନସଂଖ୍ୟା ଜନଶକ୍ତିରେ ପରିଣତ ହେବ । ଏବଂ ଏହା ପରେ ପରେ ସେ ଶକ୍ତିରେ ମଧ୍ୟ ହ୍ରାସ ଘଟିବ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଆମେରିକାର ଶିଶୁ ଜନ୍ମହାର ପ୍ରବଳ ଭାବରେ ବଢିଯାଇଥିଲା । ଏହି ବେବି ବୁମର୍ (ସନ୍ତାନ ଉପୁଜାଉଥିବା) ମାନେ ପରବର୍ତ୍ତୀ କାଳରେ ଆମେରିକାର ଅର୍ଥନୀତିକୁ ଅତି ଉନ୍ନତ ସ୍ତରକୁ ଉଠାଇ ବିଶ୍ୱର ସର୍ବପ୍ରଧାନ

ଅର୍ଥନୀତି ଭାବେ ଠିଆ କରିଥିଲେ । ଏବେ ସେମାନେ ସମସ୍ତେ ୭୦ ବର୍ଷ ଅତିକ୍ରମ କରିଗଲେଣି ଓ ତାଙ୍କ ପିଲାମାନେ ଏକାଧିକ ସନ୍ତାନର ଜନନୀ-ଜନକ ହେବାପାଇଁ ରାଜି ନୁହଁନ୍ତି । ତେଣୁ ଆମେରିକା ଭଳି ଦେଶମାନେ ବିଦେଶରୁ ସମର୍ଥ ଲୋକଙ୍କୁ ଆଣି ନିଜ ଦେଶର ଅର୍ଥନୀତି ଓ ସାମାଜିକ ସେବା ବ୍ୟବସ୍ଥାକୁ ଚାଲୁ ରଖିଛନ୍ତି । ଓଡ଼ିଶା ଓ ଭାରତରେ ଯେଉଁମାନେ ୧୯୪୭ ମସିହାରେ ଜନ୍ମିଥିଲେ, ସେମାନେ ସମସ୍ତେ ୬୦ ବର୍ଷ ଅତିକ୍ରମ କରିସାରିଲେଣି । ତାଙ୍କର ନାତି ନାତୁଣୀମାନେ ଏବେ କୈଶୋର ଅବସ୍ଥାରେ ଅଛନ୍ତି । ଭାରତରେ ସେମାନଙ୍କ ସଂଖ୍ୟା ୨୩ କୋଟି ଏବଂ ଓଡ଼ିଶାରେ ପ୍ରାୟ ୯୦ ଲକ୍ଷ । ଏହି କିଶୋର କିଶୋରୀମାନେ ଭବିଷ୍ୟତରେ ବିବାହ ଓ ପରିବାର ସମ୍ପର୍କରେ ଯେଉଁ ନିଷ୍ପତ୍ତି ନେବେ, ତାହାରି ଉପରେ ଦେଶର ଶକ୍ତି ଓ ଭବିଷ୍ୟତ ନିର୍ଭର କରିବ । ଭାରତୀୟ ସଂସ୍କୃତିରେ ବିଭିନ୍ନ ପ୍ରକାର ଋଣ ଓ ତା'ର ପରିଶୋଧ କଥା କୁହା ଯାଇଛି । ଯଥା ପିତୃମାତୃ ଋଣ, ଋଷିଋଣ, ଦେବଋଣ, ସମାଜଋଣ ଇତ୍ୟାଦି । ପିତୃ-ମାତୃ ଋଣ କିପରି ପରିଶୋଧ କରାଯିବ ବା ସେ ଋଣରୁ କିପରି ମୁକ୍ତି ମିଳିବ, ସେ ସମ୍ପର୍କରେ କୁହାଯାଇଛି - କେବଳ ସନ୍ତାନ ଜନ୍ମ ଦେଇ ପିତା ମାତା ହେଲେ ହିଁ ଏପରି ଋଣରୁ ମୁକ୍ତି ମିଳିବ ।

*୪ ଜାନୁଆରୀ, ୨୦୦୭*



# ଉତ୍ତପ୍ତ ଧରିତ୍ରୀ ଓ ପାଗ ପରିବର୍ତ୍ତନ

ଅଂଶୁଘାତ ଓଡ଼ିଶାବାସୀଙ୍କପାଇଁ ଏକ ନୂଆ ଶବ୍ଦ ଥିଲା ଦଶବର୍ଷ ପୂର୍ବେ । ଏବେ ଅଂଶୁଘାତ ଓ ତଦ୍‌ଜନିତ ମୃତ୍ୟୁ ଗ୍ରୀଷ୍ମକାଳର ଏକ ସାଧାରଣ ଗୁଣ ବୋଲି ଲୋକେ ଭାବିଲେଣି । ବରଫର ଘର ହିମାଳୟ ଏବେ ଗ୍ରୀଷ୍ମାଳୟ ହେବାକୁ ଯାଉଛି । ଶୀତ ଦେଶବାସୀ ଇଂରେଜମାନେ ଶୀତପ୍ରଧାନ ସିମ୍‌ଲାରେ ବର୍ଷକରୁ ଛ' ମାସ ରହି ବ୍ରିଟିଶ୍ ସାମ୍ରାଜ୍ୟ ଚଳାଉଥିଲେ । ଏବେ ପର୍ଯ୍ୟଟକମାନେ ସିମ୍‌ଲା ଡେଇଁ ଆଉ ଶହେ କିଲୋମିଟର ଗଲେ ବରଫ ଦେଖୁଛନ୍ତି । ଧାର୍ମିକ ଇତିହାସରେ ପ୍ରଥମଥରପାଇଁ ଅମରନାଥ ଯାତ୍ରୀମାନେ ହିମଲିଙ୍ଗ ଦର୍ଶନରୁ ବଞ୍ଚିତ ହେଲେ । ସେମାନଙ୍କର ଯୁଗ ଯୁଗ ଧରି ରହିଥିବା ଧର୍ମ ବିଶ୍ୱାସରେ ଆଘାତ ଲାଗିବା ଭୟରେ ମନ୍ଦିର ପରିଚାଳନା କର୍ତ୍ତୃପକ୍ଷ ସୁଦୂର ଦିଲ୍ଲୀରୁ ବରଫ ମଗାଇ ଏକ କୃତ୍ରିମ ହିମଲିଙ୍ଗ ତିଆରି କରି ଭକ୍ତମାନଙ୍କୁ ଦେଖାଇଲେ । ପ୍ରକୃତିର ନିୟମ ଓ ଶୃଙ୍ଖଳା ଭଙ୍ଗ ହେଲେ ଧର୍ମବିଶ୍ୱାସ ମଧ୍ୟ ଆହତ ହୁଏ । ଏହି ଶୃଙ୍ଖଳାକୁ ପୁନର୍ଜୀବିତ କରିବାପାଇଁ ଦକ୍ଷିଣ ଆମେରିକାର 'ରିଓ ଡି ଜାନିରୋ' ସହରରେ ୧୯୯୨ ମସିହାରେ ପୃଥିବୀ ସୁରକ୍ଷା ଶିଖର ସମ୍ମିଳନୀରେ ଯେଉଁ ପ୍ରସ୍ତାବସବୁ ଗୃହୀତ ହୋଇଥିଲା ଅନେକ ଧନୀ ଦେଶଙ୍କର ବିରୋଧ ଓ ଅସହଯୋଗ କାରଣରୁ ସେଗୁଡିକ ଏପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇ ପାରୁନାହିଁ ।

ପ୍ରାୟ ବାର ହଜାର କିଲୋମିଟର ଗୋଲେଇବିଶିଷ୍ଟ ପୃଥିବୀ ସୂର୍ଯ୍ୟଙ୍କଠାରୁ ୯୨,୯୬୨,୦୦୦ ମାଇଲ ଦୂରରେ ଥାଇ ମଧ୍ୟ ଏବେ ଉତ୍ତପ୍ତ । ନାଇଟ୍ରୋଜେନ୍, ଅକ୍ସିଜେନ୍ ବା ଅମ୍ଳଜାନ, ଅଙ୍ଗାରକାମ୍ଳ ଓ ଜଳୀୟ ବାଷ୍ପଦ୍ୱାରା ତିଆରି ବାତାବରଣ ଚାଦର ପରି ପୃଥିବୀ ଚାରିପଟେ ଘେରି ରହିଥିବାରୁ ସୂର୍ଯ୍ୟଙ୍କର ପ୍ରଚଣ୍ଡ କିରଣରୁ ଆମେ ରକ୍ଷା ପାଇଛେ । ଏହା ଉପରେ ପୁଣି ରହିଛି ଓଜୋନ୍‌ର ରକ୍ଷାକାରୀ କବଚ । ବାୟୁମଣ୍ଡଳ ଅତ୍ୟନ୍ତ ଦୂଷିତ ହେବା ଫଳରେ ଏହି ଓଜୋନ୍ କବଚର ବିଭିନ୍ନ ଜାଗାରେ

ହେଲାଣି କଣା । ଏପର୍ଯ୍ୟନ୍ତ ଆମ ନିଦ ଭାଙ୍ଗୁନି । ସୌରମଣ୍ଡଳର ଏକମାତ୍ର ସଜୀବ ଗ୍ରହ ହେଲା ପୃଥିବୀ । ସୂର୍ଯ୍ୟଙ୍କଠାରୁ ଦୀର୍ଘ ଦୂରତା, ମାଟି ଓ ପ୍ରଚୁର ପାଣି, ନାଇଟ୍ରୋଜେନ୍ ଓ ଅମ୍ଳଜାନପୂର୍ଣ୍ଣ ବାତାବରଣଯୋଗୁଁ ମଣିଷ, ପଶୁପକ୍ଷୀ, କୀଟପତଙ୍ଗ ଓ ବୃକ୍ଷଲତା ଏଠାରେ ବଞ୍ଚି ରହିଛନ୍ତି । ମଣିଷମାନଙ୍କର ଅବିଚାରିତ କ୍ରିୟାକଳାପଯୋଗୁଁ ସେହି ସୁନ୍ଦର ପୃଥିବୀ ଏବେ ଉତ୍ତପ୍ତ ରୋଗ ଶଯ୍ୟାରେ ଶାୟିତ ଏବଂ କ୍ରମାଗତ ଭାବରେ ନିଜର ଉତ୍ପାଦନ କ୍ଷମତା ହରାଉଛି । ତୁରନ୍ତ ପଦକ୍ଷେପ ନିଆ ନ ଗଲେ ପୃଥିବୀର ସାମୁଦାୟିକ ସମ୍ପତ୍ତି ୩୦ ଭାଗ କମିଯିବ ଓ ଦାରିଦ୍ର୍ୟ ବଢ଼ିଯିବ । କୀଟପତଙ୍ଗ ଓ ମ୍ୟାଲେରିଆ ପ୍ରଭାବ ବଢ଼ିଯିବ ୩୦ ଭାଗ ।

ତିନିବର୍ଷ ତଳେ ୨୦୦୩ ମସିହାରେ ୟୁରୋପର ୩୫ ହଜାରରୁ ଅଧିକ ଲୋକ ଅଂଶୁଘାତରେ ମରିଗଲେ । ଏ ବର୍ଷ ଆମେରିକାରେ ହଜାରେ ଲୋକ ଗ୍ରୀଷ୍ମର ଶିକାର ହେଲେ । ବିଶେଷ କରି ବୟସ୍କ ଲୋକମାନେ । ୱାସିଂଟନ୍‌ରୁ ଆରମ୍ଭ କରି ଲସ୍ ଏଞ୍ଜେଲସ୍ ଯାଏ ବୁଢ଼ାବୁଢ଼ୀଙ୍କୁ ଗ୍ରୀଷ୍ମ ତାପରୁ ବଞ୍ଚାଇବାପାଇଁ ଶୀତାତପ ନିୟନ୍ତ୍ରିତ ଘର ସବୁ ଖୋଲି ଦିଆଗଲା । ଆମେରିକା ବଜାରରେ ଏସି ବିକ୍ରି ତିନିଗୁଣ ବଢ଼ି ଶେଷରେ କିଣିବାପାଇଁ ମିଳିଲା ନାହିଁ । ଲଣ୍ଡନରେ ଜଜ୍‌ମାନେ ଉଇଗ୍ ନ ପିନ୍ଧି କୋର୍ଟକୁ ଗଲେ । ବକିଂହାମ୍ ରାଜପ୍ରାସାଦରୁ ୨୪ ଘଣ୍ଟା ପହରା ଦେଉଥିବା ପ୍ରହରୀ ଡିଉଟି ଛାଡି ଛାଇ ଜାଗାରେ ଆଶ୍ରୟ ନେଲେ । ସ୍ପେନ୍‌ରେ ତାପମାତ୍ରା ୧୦୪ ଡିଗ୍ରୀ ଫାରେନ୍‌ହିଟ୍‌କୁ ଟପିଗଲା । ଫ୍ରାନ୍‌ସ ରାଜଧାନୀ ପ୍ୟାରିସ୍ ଓ ଗ୍ରାମାଞ୍ଚଳରେ ଉତ୍ତାପ ୧୦୨ ଡିଗ୍ରୀ ପର୍ଯ୍ୟନ୍ତ ବଢ଼ିଗଲା । ୨୦୦୩ ମସିହାରେ ଏହି କାରଣରୁ ଫ୍ରାନ୍‌ସରେ ୧୫ ହଜାର ଲୋକ ମୃତ୍ୟୁବରଣ କରିଥିଲେ । ଚିଡିଆଖାନାରେ ବାଘ ଓ ସିଂହକୁ ମାଂସ ବଦଳରେ ଖାଇବା ପାଇଁ ବରଫ ଦିଆଗଲା । ଇଂଲଣ୍ଡରେ ଟ୍ରେଡ୍ ୟୁନିୟନ୍ ଶ୍ରମିକମାନଙ୍କୁ ଚଡ଼ି ଓ ହାଫ୍ ପେଣ୍ଟ ପିନ୍ଧି କାମକୁ ଯିବାକୁ ପରାମର୍ଶ ଦେଲେ । ପିଚୁ ତରଳି ଯିବାରୁ ଅନେକ ମଟର କାର୍ ରାସ୍ତା ଉପରେ ଲାଖି ରହିଗଲେ । ଉତ୍ତର ଆମେରିକାର ସେଣ୍ଟ୍ ଲୁଇ ସହରର ତାପମାତ୍ରା ୧୦୦ ଡିଗ୍ରୀ ଫାରେନ୍‌ହିଟ୍ ଟପିଯିବାରୁ ସେ ରାଜ୍ୟର ଗଭର୍ଣ୍ଣର ଉତ୍ତାପ ପୀଡିତ ଲୋକଙ୍କୁ ଉଦ୍ଧାର କରିବାପାଇଁ ସୈନ୍ୟବାହିନୀକୁ ପଠାଇଲେ । ବରଫ ଅଭାବରୁ ସ୍କେଟିଂ ପଡ଼ିଆରେ ଖେଳ ବନ୍ଦ ହୋଇଗଲା ।

ଘର ବାହାରେ ବଢୁଥିବା ଉତ୍ତାପରୁ ରକ୍ଷା ପାଇବାପାଇଁ ଲୋକେ ଘର ଭିତରେ ଅଧିକ ଏୟାର କଣ୍ଡିସନଡ଼ ମେସିନ୍ ଲଗାଇ ଘରକୁ ଥଣ୍ଡା ଓ ବାହାରକୁ ଆହୁରି ଗରମ କରୁଛନ୍ତି । ଆମେରିକା ଓ ୟୁରୋପ୍‌ର ୭୫ ଭାଗ ଘର ଓ କାର୍‌ରେ ଏସି ଲାଗିଛି ।

ଫଳରେ ପୃଥିବୀର ୭୫ ଭାଗ ପ୍ରଦୂଷଣ କାର୍ ଓ ଏସିଦ୍ୱାରା ହେଉଛି । ତା'ସାଙ୍ଗକୁ କଳ କାରଖାନା - ଏ ସମସ୍ତ ମିଶି ଯେଉଁ ଅଙ୍ଗାରକାମ୍ଳ ଛାଡୁଛନ୍ତି ତାହା ଆହୁରି ବିଷାକ୍ତ ହୋଇ ଗ୍ରୀନ୍ ହାଉସ୍ ଗ୍ୟାସରେ ପରିଣତ ହେଉଛି । ପୃଥିବୀର ସବୁଜିମା ହ୍ରାସ ପାଇବାରୁ ଏହି ପରିସ୍ଥିତି ଆହୁରି ଖରାପ ଅବସ୍ଥାରେ ପହଞ୍ଚିଲାଣି । କୂଅ, ପୋଖରୀ, ନଈ, ନାଳ ଓ ସମୁଦ୍ର ଏଥିରୁ ବାଦ୍ ପଡୁନାହାନ୍ତି ।

ପୃଥିବୀର ପାଗ ପରିବର୍ତ୍ତନରେ ଦୁଇଟି ବଡ଼ ଦେଶ ସବୁଠାରୁ ବେଶି ଦାୟୀ । ସେ ଦୁଇଟି ଦେଶ ହେଲେ ଯୁକ୍ତରାଷ୍ଟ୍ର ଆମେରିକା ଓ ଚୀନ୍ । ବାୟୁମଣ୍ଡଳରେ ଯେତେ ଗ୍ରୀନ୍ ହାଉସ୍ ଗ୍ୟାସ୍ ଜମା ହେଉଛି ସେଥିରୁ ୨୧ ଭାଗ ଆମେରିକା ଓ ୧୫ ଭାଗ ଚୀନ୍ ଦେଶର ଦାନ । ୨୦୨୫ ମସିହା ବେଳକୁ ଆମେରିକା ଓ ଚୀନ୍ ମିଶି ଶତକଡା ୬୦ ଭାଗ ବାୟୁମଣ୍ଡଳକୁ ଉତ୍ତପ୍ତ ଓ ବିଷାକ୍ତ କରିବେ । ଏହି କାରଣରୁ ଆନ୍ତର୍ଜାତିକ କ୍ଷେତ୍ରରେ ଗ୍ରୀନ୍ ହାଉସ୍ ଗ୍ୟାସ୍‌ପାଇଁ ଯେଉଁ ବୁଝାମଣାର ପ୍ରସ୍ତାବମାନ ଆସୁଛି - ଏଇ ଦୁଇ ଦେଶ ସେଥିରେ ରାଜି ହେଉନାହାନ୍ତି ବା ଓହରି ଆସୁଛନ୍ତି ।

ଅନ୍ୟ ପକ୍ଷରେ ଗ୍ରୀନ୍ ହାଉସ୍ ଗ୍ୟାସ୍ ଜନିତ ପ୍ରଦୂଷଣଦ୍ୱାରା ପୃଥିବୀର ଯେଉଁ ଦୁଇଟି ଅଞ୍ଚଳ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହେବ - ସେମାନେ ହେଲେ ଭାରତ ଓ ଆଫ୍ରିକା । ବିଶେଷ କରି ସ୍ୱାସ୍ଥ୍ୟ ଓ କୃଷି ଉପରେ ଏହାର କୁପ୍ରଭାବ ଅଧିକ ହେବ । ଆଫ୍ରିକାରେ ମ୍ୟାଲେରିଆ ବଢ଼ିଯିବ, ଭାରତରେ ବହୁଲୋକ ଅଳ୍ପାୟୁ ହେବେ; ବନ୍ୟା, ବାତ୍ୟା ଓ ମରୁଡ଼ି ଲାଗିରହିବ । ଓଡ଼ିଶାରେ ଏ ପ୍ରକ୍ରିୟା ଆରମ୍ଭ ହୋଇଗଲାଣି । କିନ୍ତୁ ପ୍ରଦୂଷଣକାରୀ ଆମେରିକା ଓ ଚୀନ୍‌ର ସେମିତି ଆଖିଦୃଶିଆ କ୍ଷତି ହେବ ନାହିଁ । ବରଂ ଉଷ୍ମ ବାତାବରଣ ଚୀନ୍‌ର କୃଷି କ୍ଷେତ୍ରପାଇଁ ସହାୟକ ହେବ ବୋଲି ପାଗ ଗବେଷକମାନଙ୍କର ମତ । ଉଭୟ ଭାରତ ଓ ଆଫ୍ରିକାର ଅର୍ଥନୀତି, ଆମେରିକା ଓ ଚୀନ୍‌ର ଅର୍ଥନୀତି ଅପେକ୍ଷା ୧୦ ରୁ ୨୦ ଗୁଣ ଅଧିକ କ୍ଷତି ସହିବେ ବୋଲି ୟେଲ୍ ବିଶ୍ୱବିଦ୍ୟାଳୟର ଗବେଷକମାନେ ମତପ୍ରକାଶ କରିଛନ୍ତି ।

ଜଣେ ଆମେରିକୀୟ ନାଗରିକ ଯେତିକି ପ୍ରଦୂଷଣ କରେ, ଭାରତର ଶହେ ଜଣ ଓ ଆଫ୍ରିକାର ପାଞ୍ଚଶହ ଜଣ ମିଶି ତା'ଠାରୁ କମ୍ ପ୍ରଦୂଷଣ କରିଥାନ୍ତି । ତେଣୁ ଏହି ଦୁଇ ଦୋଷୀ ଦେଶ ଯେ ପର୍ଯ୍ୟନ୍ତ ସହଯୋଗ ନ କରିବେ, ସେ ପର୍ଯ୍ୟନ୍ତ ପୃଥିବୀର ଉଷ୍ମତା ବଢ଼ି ବଢ଼ି ଚାଲିଥିବ । ଏମାନଙ୍କୁ ବାଟକୁ ଆଣିବାକୁ ହେଲେ ଅନ୍ୟ ସବୁ ଦେଶ ଏକାଠି ହେବା ଦରକାର । ମିଳିତ ରାଷ୍ଟ୍ରସଙ୍ଘ ଏହି ବିଶ୍ୱରକ୍ଷା ଉଦ୍ୟମର ନେତୃତ୍ୱ ନେବା ଦରକାର । ବୈଜ୍ଞାନିକମାନେ ମିଶି ସହଜ, ସୁଲଭ, ବିଷାକ୍ତ ଗ୍ୟାସ୍ ମୁକ୍ତ କଳକବ୍ଜା

ଓ ପ୍ରଯୁକ୍ତି ଉପକରଣମାନ ତିଆରି କରିପାରିଲେ ଆଜିର ପରିସ୍ଥିତିରେ ପରିବର୍ତ୍ତନ ଆସିବ । ସମାଧାନପାଇଁ ଉଦ୍‌ବିଗ୍ନ ପରିବେଶ ବିଜ୍ଞାନୀମାନେ ନୂଆ ଓ ପରିବେଶ ପ୍ରିୟ 'ଟେକ୍‌ନୋଲୋଜି' ବା ବୈଷୟିକ ଜ୍ଞାନ କୌଶଳ ଆଡ଼କୁ ଅନାଇ ରହିଛନ୍ତି । ସବୁଠାରୁ ଉଦ୍‌ବେଗଜନକ କଥା ହେଲା ଅଙ୍ଗାରକାମ୍ଳ ସହଜରେ ମିଳାଇଯାଏ ନାହିଁ । ଏହା ପଚାଶ ଷାଠିଏ ବର୍ଷ ଯାଏ ବାୟୁମଣ୍ଡଳରେ ଜମି ରହେ । ଅର୍ଥାତ୍ ୧୯୬୦, ୭୦, ୮୦ ମସିହାରେ ଗାଡ଼ି ମଟର କଳକାରଖାନା ଯେଉଁ କାର୍ବନ୍ ଡାଇଅକ୍ସାଇଡ୍ ଛାଡ଼ିଥିଲେ ସେ ସବୁ ୨୦୧୦, ୨୦, ୩୦, ୪୦ ବର୍ଷ ପର୍ଯ୍ୟନ୍ତ ସକ୍ରିୟ ରହିବ । ସେହିପରି ଆଜି ଆମେ ଯେଉଁ ଅଙ୍ଗାରକାମ୍ଳ ସୃଷ୍ଟି କରୁଛେ ତାହା ୨୦୬୦ ମସିହା ପର୍ଯ୍ୟନ୍ତ ପରିବେଶକୁ ଦୂଷିତ କରୁଥିବ ।

ତେବେ ସାଧାରଣ ନାଗରିକମାନଙ୍କୁ ଅନେକ କିଛି କରିବାକୁ ହେବ । କ୍ରମବର୍ଦ୍ଧିଷ୍ଣୁ ଉତ୍ତାପ କବଳରୁ ରକ୍ଷା ପାଇବାପାଇଁ କବାଟ ଝରକା ବନ୍ଦ କରି ଏସି ଲଗାଇ ଘରେ ଲୁଚି ରହିଲେ ଉତ୍ତାପ ଆହୁରି ବଢ଼ିବ ସିନା କମିବ ନାହିଁ । ଯଦି ଉଷ୍ଣତାର ମାତ୍ରା ଆଉ ପାଞ୍ଚ ଡିଗ୍ରୀ ବଢ଼ିଯାଏ, ତେବେ ୨୦୫୦ ମସିହାରେ ପୃଥିବୀକୁ ଚିହ୍ନି ହେବ ନାହିଁ । "ଦି ୱେଦର ମେକର୍"ର ରଚୟିତା ବୈଜ୍ଞାନିକ ଫ୍ଲାନେରୀଙ୍କ ହିସାବ ଅନୁସାରେ ଆମେ ଯଦି ଅଙ୍ଗାରକାମ୍ଳର ମାତ୍ରା ଏବେ ଯାହା ଅଛି ତାର ୭୦ ଭାଗ କମାଇ ଦେଇପାରିବା ତେବେ ଯାଇ ୨୦୪୦ ମସିହା ବେଳକୁ ପୃଥିବୀ ତା'ର ପ୍ରାକୃତିକ ବାୟୁମଣ୍ଡଳ ଫେରିପାଇବ ।

ସେଥିପାଇଁ ସର୍ବପ୍ରଥମେ ଗାଡ଼ି ମଟରପାଇଁ ପେଟ୍ରୋଲ, ଡିଜେଲ୍‌ର ବିକଳ୍ପ ଅତିଶୀଘ୍ର ଖୋଜି ବାହାର କରିବାକୁ ହେବ । ବ୍ୟକ୍ତିଗତ ସ୍ତରରେ ଆଚାର ବ୍ୟବହାରରେ ପରିବର୍ତ୍ତନ ଆବଶ୍ୟକ ହେବ । ଆମେ ପ୍ରତିଦିନ କେତେ ଶକ୍ତି ବା ଏନର୍ଜି ଖର୍ଚ୍ଚ କରୁଛେ, କେତେ ଘଣ୍ଟା ଆଲୁଅ ଜାଳି ରହୁଛେ, କାର୍‌ରେ ଯିବା ଆସିବା କରୁଛେ ନା ବସ୍ ବା ଟ୍ରେନ୍‌ରେ, କେତେ କାଠ ଜିନିଷ ବ୍ୟବହାର କରୁଛେ, କେତେ ପାଣି ସାରୁଛେ, କେତେ କପଡ଼ା ପିନ୍ଧୁଛେ - ଏହିପରି ଛୋଟ ଛୋଟ ବ୍ୟବହାର ଉପରେ ପୃଥିବୀର ତାପମାତ୍ରା ନିର୍ଭର କରିବ । ଏବେ ବିଭିନ୍ନ ଦେଶରେ ଗ୍ରୀନ୍ ପଲିଟିକ୍‌ସ୍ ବା ସବୁଜ ରାଜନୀତି ଆରମ୍ଭ ହେଲାଣି । ଏଥିରେ ସ୍ୱେଚ୍ଛାସେବୀ ସଂସ୍ଥାମାନେ ସବୁଠାରୁ ଆଗୁଆ ଅଛନ୍ତି । ଆମେରିକା ସରକାର ପରିବେଶ ସୁରକ୍ଷା ଓ ଗ୍ରୀନ୍ ହାଉସ୍ ଗ୍ୟାସ୍ ପ୍ରଭାବରୁ ଦେଶକୁ ରକ୍ଷା କରିବାପାଇଁ ସହଯୋଗ ନ କରୁଥିବାରୁ କାଲିଫର୍ଣିଆ ରାଜ୍ୟ ନିଜ ଆସେମ୍ବ୍ଲିରେ ନିଜ ରାଜ୍ୟର ତାପମାତ୍ରା କମାଇବାକୁ ନୂଆ ଆଇନ୍ ପ୍ରଣୟନ

କରିଛନ୍ତି । ଭର୍ଜିନ୍ ଗ୍ରୁପ୍‌ର ମାଲିକ ସାର୍ ରିଚାର୍ଡ ବ୍ରାନ୍‌ସନ୍ ଏବେ ପୃଥିବୀର ଉତ୍ତାପ ହ୍ରାସପାଇଁ ଗବେଷଣା ଉଦ୍ଦେଶ୍ୟରେ ଚଉଦ ହଜାର କୋଟି ଟଙ୍କା ଦାନ କରିଛନ୍ତି । ଆମେରିକାର ପୂର୍ବତନ ରାଷ୍ଟ୍ରପତି ବିଲ୍ କ୍ଲିଣ୍ଟନ୍ ଏହି ଉଦ୍ୟମରେ ନିଜକୁ ସାମିଲ୍ କରିଛନ୍ତି । ଏହି ଉଦ୍ୟମରେ ପୃଥିବୀର ପ୍ରତ୍ୟେକ ବ୍ୟକ୍ତିଙ୍କର ସହଯୋଗ ଆବଶ୍ୟକ । ସହରମାନଙ୍କ ସହଯୋଗ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଏବେ ନୂଆଦିଲ୍ଲୀ ଓ ଢାକା ସମେତ ପୃଥିବୀର ୨୨ ଟି ମହାନଗରୀ ମଧ୍ୟ ନିଜ ନିଜ ଅଞ୍ଚଳରେ ଉତ୍ତାପ ନିୟନ୍ତ୍ରଣପାଇଁ ଏକ ଚୁକ୍ତି ସ୍ୱାକ୍ଷର କରିଛନ୍ତି । ପୃଥିବୀର ସମସ୍ତ ସହର ଓ ମହାନଗର ପର୍ଯ୍ୟାୟକ୍ରମେ ଏହି ଉଦ୍ୟମରେ ସାମିଲ ହେବେ ବୋଲି ଆଶା କରାଯାଉଛି ।

*୧୧ ଜାନୁଆରୀ, ୨୦୦୭*



# ସୁଖଦୁଃଖର ମାପଦଣ୍ଡ

ସର୍ବେ ଭବନ୍ତୁ ସୁଖିନଃ - ସମସ୍ତେ ସୁଖରେ ରହନ୍ତୁ - ଏହି ଉପନିଷଦୀୟ ପ୍ରାର୍ଥନା କିଏ ନ ଜାଣେ ? ମହାଭାରତରେ ପାଣ୍ଡବଙ୍କ ବନବାସ କାଳରେ ଯକ୍ଷ-ଯୁଧିଷ୍ଠିର ପ୍ରଶ୍ନୋତ୍ତର କଥା ପ୍ରାୟ ସମସ୍ତଙ୍କୁ ଜଣା । ଯକ୍ଷ ଯୁଧିଷ୍ଠିରଙ୍କୁ ଯେତେଗୁଡ଼ିଏ ପ୍ରଶ୍ନ ପଚାରିଥିଲେ ତା'ମଧ୍ୟରେ 'ସୁଖ' ସମ୍ପର୍କରେ ଦୁଇଟି ପ୍ରଶ୍ନ ଥିଲା । ପ୍ରଥମଟି ହେଲା, ସୁଖର ମୂଳାଧାର କିଏ ? ଯୁଧିଷ୍ଠିର ଉତ୍ତରରେ କହିଥିଲେ, ସୁଖର ମୂଳ ଆଧାର ହେଉଛି 'ସତ୍ୟ' । କାରଣ ସତ୍ୟହୀନ ଜୀବନ ସୁଖମୟ ହୋଇପାରେ ନାହିଁ । ଏହାପରେ ଯକ୍ଷ ପଚାରିଥିଲେ, ସୁଖୀ କିଏ ? ଉତ୍ତରରେ ଯୁଧିଷ୍ଠିର କହିଥିଲେ, 'ଅଋଣୀ' । ଅର୍ଥାତ୍ ଯେଉଁ ବ୍ୟକ୍ତି ବିନା ଋଣରେ ଜୀବନଯାପନପାଇଁ ସମର୍ଥ । ମହାଭାରତର ପରବର୍ତ୍ତୀ କାଳରେ ସୁଖର ସଂଜ୍ଞାରେ ଆଉ ଏକ ଶବ୍ଦ ଯୋଡ଼ାଗଲା "ଅପ୍ରବାସୀ" । ଅଋଣୀ ଓ ଅପ୍ରବାସୀ - ଯେଉଁ ବ୍ୟକ୍ତି ଋଣ କରିନଥାନ୍ତି ଏବଂ ଯାହାଙ୍କୁ ଭରଣ ପୋଷଣପାଇଁ ବାରଦ୍ୱାର ହେବାକୁ ନ ପଡ଼େ, ଘରଦ୍ୱାର ଛାଡ଼ି ଯିବାକୁ ନ ପଡ଼େ । ଓଡ଼ିଶାରେ ପ୍ରତିବର୍ଷ ହାରାହାରି କୋଡ଼ିଏ ଲକ୍ଷ ଲୋକଙ୍କୁ ପେଟ ବିକଳରେ ଭିଟାମାଟି ଓ ପିଲାଛୁଆଙ୍କୁ ଛାଡ଼ି ବାହାରେ କାମଧନ୍ଦା ଖୋଜିବାକୁ ପଡ଼ିଥାଏ । ଭାରତରେ ଏମାନଙ୍କ ସଂଖ୍ୟା ଦଶ କୋଟିରୁ ଅଧିକ । ଇଂରାଜୀରେ ଏହି ଅସ୍ଥାୟୀ ଅପ୍ରବାସୀଙ୍କୁ 'ମାଇଗ୍ରାଣ୍ଟ୍' ବୋଲି କୁହାଯାଏ । ସେମାନଙ୍କ ସଂଘର୍ଷ ଓ ଦୁଃଖର କାହାଣୀ ଏବେ ମିଳିତ ଜାତିସଙ୍ଘରେ ଆଲୋଚନା ହେଉଛି ।

ଇତିହାସର ବିଭିନ୍ନ କାଳରେ ସୁଖର ସଂଜ୍ଞା ବଦଳିଛି । ସୁଖକୁ ଶାରୀରିକ, ମାନସିକ, ଆଧ୍ୟାତ୍ମିକ, ଆଧିଭୌତିକ ସଂଜ୍ଞା ଦିଆଯାଇଛି । 'ମୃତ୍ୟୁ - ସାହିତ୍ୟ'ରେ ପଣ୍ଡିତମାନେ ସୁଖର ସଂଜ୍ଞା ଦେଇ କହନ୍ତି; "ବିନା ଦୈନ୍ୟେନ ଜୀବନଂ - ଅନାୟାସେନ ମରଣମ୍" । ଅର୍ଥାତ୍ ଦୈନହୀନ ଜୀବନ ଓ କଷ୍ଟହୀନ ପ୍ରାକୃତିକ ମରଣ । ଏବେ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ସୁଖକୁ ସ୍ୱାସ୍ଥ୍ୟ ସାଙ୍ଗେ ଯୋଡି ଏକ ନୂତନ ସଂଜ୍ଞା ଦେଇଛନ୍ତି । ଏହି

ନୂତନ ସଂଜ୍ଞା ଅନୁସାରେ କେବଳ ରୋଗହୀନ ଜୀବନକୁ ସୁସ୍ଥ ଜୀବନ କୁହାଯାଇ ପାରିବ ନାହିଁ । ଯେଉଁ ବ୍ୟକ୍ତି ଶାରୀରିକ, ମାନସିକ, ସାମାଜିକ ଓ ଆଧାତ୍ମିକ ଦୃଷ୍ଟିରୁ ସୁସ୍ଥ, ସେହିଁ ପ୍ରକୃତରେ ସୁଖୀ (ଫିଜିକାଲ୍, ମେଣ୍ଟାଲ୍, ସୋସିଆଲ୍ ଏଣ୍ଡ୍ ସ୍ପିରିଚୁଆଲ୍ ୱେଲ୍ ବିଙ୍ଗ୍) । ସୁଖ ଏକ ମାନସିକ ଓ ସାମାଜିକ ଅବସ୍ଥା ।

ତେବେ ଏକ ସଦ୍ୟ ସର୍ବେକ୍ଷଣ ଅନୁସାରେ ଋଷିଆ, ଚୀନ୍, ଜାପାନ ଓ ଭାରତ ଭଳି ସମୃଦ୍ଧ ପରମ୍ପରା ଓ ପୁରାତନ ସଭ୍ୟତାର ଦେଶଗୁଡ଼ିକ 'ସୁଖ' ବିଷୟରେ ଏତେ ପଛରେ ରହିବା ସମସ୍ତଙ୍କୁ ଚକିତ କରିଦେଇଛି । ବିଶ୍ୱର ସବୁଠାରୁ ସୁଖୀ ପ୍ରଥମ ୧୦ଟି ଦେଶ ମଧ୍ୟରୁ ସାତଟି ହେଉଛନ୍ତି ପାଶ୍ଚାତ୍ୟ ଗଣତାନ୍ତ୍ରିକ ଦେଶ । ଏ ଦେଶଗୁଡ଼ିକ ଆୟତନରେ ଛୋଟ ଓ ପ୍ରାୟ ଏକ ଭାଷୀ ଓ ଏକ ଜାତୀୟ ଦେଶ । ଭାରତ ଭଳି ଆୟତନରେ ବଡ଼, ଜନବହୁଳ ଓ ବହୁଭାଷୀ, ବହୁଧର୍ମୀ ଦେଶମାନେ ଏହି ପ୍ରତିଯୋଗିତାରେ ପଛରେ ପଡ଼ିଯିବା ସ୍ୱାଭାବିକ ବୋଲି ବିଚାର କରାଯାଉଛି । କାରଣ 'ଅନେକତା ମଧ୍ୟରେ ଏକତା' ଭଳି ସ୍ଲୋଗାନ୍ କାନକୁ ଭଲ ଶୁଭୁଥିଲେ ମଧ୍ୟ ଭାଷା, ସମ୍ପ୍ରଦାୟ, ଜାତି, ଗୋଷ୍ଠୀ କଳହ ଲାଗି ରହିଥିବାରୁ ବୋଧହୁଏ ଏଭଳି ଦେଶର ଲୋକେ ସୁଖୀ ରହିପାରୁନାହାନ୍ତି । ଏହାଛଡ଼ା ଦାରିଦ୍ର୍ୟ ଓ ନିରକ୍ଷରତା ମଧ୍ୟ ଏହାର କାରଣ ହୋଇପାରେ । ସୁଖୀ ଶିଡ଼ିର ପ୍ରଥମ ୧୦ଟି ଦେଶର ଜୀବନଧାରଣ ମାନ ଉଚ୍ଚ ଓ ନାଗରିକମାନେ ଦାରିଦ୍ର୍ୟ ସୀମାରେଖାର ଉପରେ ।

ଏହି ସର୍ବେକ୍ଷଣରେ ୟୁନେସ୍କୋ, ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ, ନିଉ ଇକୋନମିକ୍ସ ଫାଉଣ୍ଡେସନ୍ ଏବଂ ଅଶୀ ହଜାର ଲୋକ ଅଂଶଗ୍ରହଣ କରି ପ୍ରାୟ ତିନିବର୍ଷ କାଳ କାମ କରିଥିବାରୁ ଏହାର ଫଳାଫଳକୁ ଗୁରୁତ୍ୱ ନ ଦେବା ଠିକ୍ ହେବ ନାହିଁ । ତେବେ କେବଳ ଧନୀ ଦେଶମାନେ ସୁଖୀ - ଏକଥା ବି ସତ ନୁହେଁ । ଉଦାହରଣ ସ୍ୱରୂପ ଯୁକ୍ତରାଷ୍ଟ୍ର ଆମେରିକା, ନିଉଜିଲାଣ୍ଡଠାରୁ ଧନୀ, କିନ୍ତୁ ନିଉଜିଲାଣ୍ଡ ଆମେରିକାଠାରୁ ସୁଖୀ । ସେହିପରି, ଅଷ୍ଟ୍ରିଆ, ଫ୍ରାନ୍ସ, ଜାପାନ୍ ଓ ଜର୍ମାନୀ ଭଳି ଧନୀ ଦେଶ ଅପେକ୍ଷାକୃତ ଦରିଦ୍ର ବ୍ରାଜିଲ୍, ଫିଲିପାଇନ୍ସ ଓ କଲମ୍ବିଆଠାରୁ ଅଧିକ ସୁଖୀ ନୁହଁନ୍ତି । ବିଂଶ ଶତାବ୍ଦୀରେ ଆମେରିକା ଲୋକେ ଏକବିଂଶ ଶତାବ୍ଦୀର ଆମେରିକା ଅପେକ୍ଷା କମ୍ ଧନୀ ଓ ଅଧିକ ସୁଖୀ ଥିଲେ ବୋଲି ଆଉ ଏକ ସର୍ବେକ୍ଷଣରୁ ସୂଚନା ମିଳିଛି । ଭାରତରେ ସହରୀ ବାବୁମାନଙ୍କର ଧନ ବେଶୀ କିନ୍ତୁ ରକ୍ତଚାପ, ଡାଇବେଟିସ୍, କ୍ୟାନ୍ସର ବେଶୀ, ପ୍ରଦୂଷଣ ବେଶୀ । ଔଷଧ, ଉପଚାର ବେଶୀ, ହିଂସା, ଅପରାଧ ବେଶୀ ।

ଅନେକ ଲୋକ ସୁଖ ସ୍ୱର୍ଗରେ ଥାଏ ବୋଲି ଭାବନ୍ତି । କିଏ ସୁଖପାଇଁ ହିମାଳୟ ଯାତ୍ରା କରନ୍ତି ତ ଆଉ କେହି କେହି ଭାଏଗ୍ରା ବଟିକା ଖାଇ ଅଧିକ ସୁଖ ଖୋଜନ୍ତି । ସ୍ୱର୍ଗରେ ସୁଖ କିପରି ତାହା ଏପର୍ଯ୍ୟନ୍ତ  କେହି ଜଣେ ହେଲେ ସ୍ୱର୍ଗରୁ ଫେରି ମର୍ତ୍ତ୍ୟରେ କହିନାହାନ୍ତି । ସୁଖ ସନ୍ଧାନରେ ମାନବର ଅନନ୍ତ ଯାତ୍ରା ଜାରି ରହିଛି । ଯେଉଁମାନେ ସମାଜ ସହିତ, ପରିବାର ଓ ପଡ଼ୋଶୀ ସହିତ ଏବଂ ଅତିମାନସ ଜଗତ ସହିତ ଯେତିକି ଜଡ଼ିତ ସେମାନେ ସେତିକି ସୁଖୀ । ଦାନ, ଧର୍ମ ଓ ସେବା ମଧ ଜୀବନରେ ସୁଖ ଆଣିଥାଏ । ଅନ୍ୟର ସୁଖ ଦେଖି ବହୁତ ଲୋକେ ସୁଖ ଅନୁଭବ କରନ୍ତି । କିନ୍ତୁ କେତେକ ଲୋକ ଅନ୍ୟର ସୁଖ ଦେଖି ଦୁଃଖୀ ହୋଇଥାନ୍ତି । କଥା ଅଛି 'ଶାଗଖିଆକୁ ପେଜ ଖିଆ ଦେଖି ସହିପାରେ ନାହିଁ' । ଏପରି ରୋଗର କୌଣସି ଔଷଧ ନାହିଁ । ଓଡ଼ିଶାର କେତେକ ଅଞ୍ଚଳରେ ଭୂମିହୀନଙ୍କୁ ସରକାରୀ ରେକର୍ଡରେ 'ସୁଖବାସୀ' କୁହାଯାଏ । କାରଣ ଏମାନଙ୍କୁ ଖଜଣା ଦେବାକୁ ପଡ଼େ ନାହିଁ । ପ୍ରକୃତରେ ଦୁଃଖୀଙ୍କୁ କୁହାଯାଏ ସୁଖବାସୀ ।

ଏବେ 'ସୁଖ' ବିଷୟରେ ପୃଥିବୀର ବିଭିନ୍ନ ଜାଗାରେ ଗବେଷଣା ଚାଲିଛି । କେଉଁ ଦେଶର ଲୋକେ କେତେ 'ସୁଖୀ' ତାହାର ମାପଚୁପ କରାଯାଉଛି । ଏହାକୁ 'ହାପିନେସ୍ ଇନ୍‌ଡେକ୍ସ' କୁହାଯାଉଛି । ଦକ୍ଷିଣ ଏସିଆରେ ପ୍ରଥମ କରି ଭୁଟାନ୍ ଦେଶ ନିଜର ହାପିନେସ୍ ଇନ୍‌ଡେକ୍ସ ତିଆରି କରିଛି । ଏହି ସୂଚକାଙ୍କରେ ଅବକାଶ ସମୟ, ସାମାଜିକ, ପାରିବାରିକ ସମ୍ପର୍କ, ରାଜନୈତିକ ସ୍ୱାଧୀନତା, ନିର୍ମଳ ଉତ୍ତରଦାୟୀ ଶାସନ ପ୍ରଣାଳୀ, ଧ୍ୟାନ ଓ ପ୍ରାର୍ଥନାପାଇଁ ସମୟ ପ୍ରଭୃତିକୁ ନିର୍ଦ୍ଧାରକ ଭାବରେ ରଖାଯାଇଛି । ଉଲ୍ଲେଖଯୋଗ୍ୟ ଯେ ବିଗତ ଦଶକରେ ପୃଥିବୀରେ ସବୁଠାରୁ ଦ୍ରୁତ ଅଭିବୃଦ୍ଧି ଘଟିଛି ଭୁଟାନ୍‌ରେ (୨୧.୪%) । ଏଠାରେ ମୁଣ୍ଡପିଛା ଆୟ ୧୯୦୦ ଡଲାର ଥିଲା ବେଳେ ଭାରତରେ ଏହା ୧୦୭୦ ଡଲାର (୨୦୦୯) । ଇଉରୋପପାଇଁ ଉପ୍‌ସାଲା ବିଶ୍ୱବିଦ୍ୟାଳୟ ପ୍ରଥମେ ଏକ ସୁଖର ମାପଦଣ୍ଡ ତିଆରି କରିଥିଲେ । ଏହି ମାପଦଣ୍ଡ, ହିଂସା ଓ ଆତଙ୍କଗ୍ରସ୍ତ ଉତ୍ତର ଆୟର୍ଲାଣ୍ଡ ରାଜ୍ୟକୁ ୟୁରୋପର ସବୁଠାରୁ ସୁଖୀ ରାଜ୍ୟ ବୋଲି ବାଛିଥିଲା । ଏହି ଘଟଣା ପରେ ବହୁ ବିଜ୍ଞ ବ୍ୟକ୍ତି ମାପଦଣ୍ଡ ସମ୍ପର୍କରେ ପ୍ରଶ୍ନ ଉଠାଇଥିଲେ ।

ନିକଟରେ ଲିସିଷ୍ଟର ବିଶ୍ୱବିଦ୍ୟାଳୟର ସାମାଜିକ ମନସ୍ତତ୍ତ୍ୱ ବିଶାରଦ ପ୍ରଫେସର ଆଡ୍ରିଆନ୍ ହ୍ୱାଇଟ୍ ବିଶ୍ୱର ୧୭୮ଟି ଦେଶକୁ ନେଇ ଏକ 'ସୁଖ - ମାପଦଣ୍ଡ' ତିଆରି କରିଛନ୍ତି । ଏହି ମାପଦଣ୍ଡ ଅନୁସାରେ ଭାରତର ସ୍ଥାନ ୧୨୫, ପାକିସ୍ତାନ ୧୬୬, ବାଂଲାଦେଶ ୧୦୪, ନେପାଳ ୧୧୯, ଶ୍ରୀଲଙ୍କା ୯୩ ଏବଂ ଚୀନ୍ ୮୨. ସ୍ଥାନରେ ଅଛନ୍ତି । କେବଳ ପାକିସ୍ତାନ ଛଡ଼ା ଭାରତର ସବୁ ପଡୋଶୀ ଦେଶ ଅଧିକ ସୁଖୀ ଦେଶ ଭାବରେ ବିବେଚିତ ହୋଇଛନ୍ତି । ଏହି ବିଶ୍ୱ ସୁଖ-ମାନଚିତ୍ର ଅନୁସାରେ ଡେନ୍‌ମାର୍କ

ପୃଥିବୀର ସବୁଠାରୁ ସୁଖୀ ଓ ଆଫ୍ରିକାର ବୁରୁଣ୍ଡି ସବୁଠାରୁ ଅସୁଖୀ ଦେଶ । ଆମେରିକାର ସ୍ଥାନ ୨୩, ଇଂଲଣ୍ଡ ୪୧, ଫ୍ରାନ୍ସ ୬୨ ଓ ଜାପାନ ୯୦ ସ୍ଥାନରେ ଥିବାରୁ ଏହା ସ୍ପଷ୍ଟ ହୋଇଛି ଯେ ସବୁ ଧନୀ ଓ ଶକ୍ତିଶାଳୀ ଦେଶ ସୁଖୀ ଦେଶ ନୁହଁନ୍ତି ।

ସ୍ୱାଧୀନତା ସଂଗ୍ରାମ ଚାଲିଥିଲା ବେଳେ ଜଣେ ପାଶ୍ଚାତ୍ୟ ସାମ୍ବାଦିକ ମହାତ୍ମା ଗାନ୍ଧୀଙ୍କୁ ସୁଖର ସଂଜ୍ଞା କ'ଣ ବୋଲି ପଚାରିଥିଲେ । ଈଶା ଉପନିଷଦର ପ୍ରଥମ ଶ୍ଳୋକଟି ଅନୁବାଦ କରି ଗାନ୍ଧୀ ଉତ୍ତର ଦେଇଥିଲେ - "ରିନାଉନ୍ସ ଆଣ୍ଡ୍ ଏନ୍‌ଜୟ" - ଅର୍ଥାତ୍ ସୁଖ ଭୋଗ କରିବାକୁ ଇଚ୍ଛା ଥିଲେ ତ୍ୟାଗ କର । ଜଣେ ଗଣିତ ଶାସ୍ତ୍ରୀ ଏହି ଉକ୍ତିକୁ ଫର୍ମୁଲାରେ ପକାଇ କହିଲେ ଆମେ ନିଜର 'ନିଡ୍' ବା ଆବଶ୍ୟକତା ଯେତେ କମାଇବା, ହାପିନେସ୍ ବା ସୁଖ ସେହି ଅନୁପାତରେ ବଢ଼ି ବଢ଼ି ଯିବ । ଏହି ଆବଶ୍ୟକତା ତିନି ପ୍ରକାରର - ଦୈହିକ ଆବଶ୍ୟକତା, ସାମାଜିକ ଆବଶ୍ୟକତା ଓ ଆଧାତ୍ମିକ ଆବଶ୍ୟକତା । ଆମେ ପ୍ରଥମ ପର୍ଯ୍ୟାୟ (ଦୈହିକ) ଆବଶ୍ୟକତା ଯେତେ କମାଇବା, ଦ୍ୱିତୀୟ ଓ ତୃତୀୟ ପର୍ଯ୍ୟାୟ ଆବଶ୍ୟକତା ପୂରଣ କରିବା ସେତିକି ସହଜସାଧ୍ୟ ହେବ । କର୍ମ, ଆହାର, ନିଦ୍ରା, ମୈଥୁନ, ଆଶ୍ରୟ, ବସ୍ତ୍ର ଇତ୍ୟାଦି ହେଲା ଦୈହିକ ଆବଶ୍ୟକତା । ସମ୍ପର୍କ, ସୌଜନ୍ୟ, ଶ୍ରଦ୍ଧା, ପ୍ରେମ, ସହଯୋଗ, ସମ୍ମାନ, ସ୍ୱୀକୃତି ଇତ୍ୟାଦି ହେଲା ସାମାଜିକ ଆବଶ୍ୟକତା । ଏଗୁଡିକର ପୂରଣପାଇଁ ଆମର କେତେ ସମ୍ବଳ (ରିସୋର୍ସ) ଦରକାର, କେତେ ଆମେ ତ୍ୟାଗ କରିପାରିବା, କେତେ ନ ହେଲେ ନ ଚଳେ, ପାରିବାରିକ ଓ ସାମାଜିକ ଆବଶ୍ୟକତା ଏବଂ ବ୍ୟକ୍ତିଗତ ଆବଶ୍ୟକତା ମଧ୍ୟରେ କିପରି ସମନ୍ୱୟ ଅଣାଯାଇ ପାରିବ - ଏସବୁ କଥା ଉପରେ ସୁଖଦୁଃଖର ମାପଦଣ୍ଡ ନିର୍ଭର କରେ । ସୁଖ ଭଳି ଦୁଃଖକୁ ମାପିବାକୁ ୧୨ ପଏଣ୍ଟର ଏକ ମାପକାଠି ତିଆରି କରାଯାଇଛି । ଇଂରାଜୀରେ ଏହାକୁ "କ୍ରାଇଟେରିଆ ଅଫ୍ ଇଲ୍ ବିଙ୍ଗ୍" ବୋଲି କୁହାଯାଉଛି । ସେଇ ଅନୁସାରେ ସବୁଠାରୁ ବଡ଼ ଦୁଃଖ ହେଲା ସ୍ୱଜନଙ୍କ ଶବଦାହ ବା କବରପାଇଁ ଘରେ ପଇସା ନଥିବା ଅବସ୍ଥା ଏବଂ ଦ୍ୱିତୀୟ ବଡ଼ ଦୁଃଖ ହେଲା ଭୋକ ଉପାସରେ ଶୋଇବା । ଏହିପରି ବାର ପ୍ରକାରର ଦୁଃଖ ଆମ ସୁଖର ପ୍ରତିଦ୍ୱନ୍ଦ୍ୱୀ ହୋଇ ଠିଆ ହୋଇଛନ୍ତି ।

*୧୧ ଜାନୁଆରୀ, ୨୦୦୭*



# ମରିବା ଅଧିକାର, ଇଚ୍ଛାମୃତ୍ୟୁ ଓ ଆତ୍ମହତ୍ୟା

କିଛି ବର୍ଷ ପୂର୍ବେ କଳାହାଣ୍ଡି ଜିଲ୍ଲାର କେସିଙ୍ଗା ଅଞ୍ଚଳର ଜଣେ ବର୍ଷୀୟାନ୍ ଜୈନ ମହିଳା ଦୁଇ ସପ୍ତାହ ଅନ୍ନ ଜଳ ତ୍ୟାଗ କରି ନିଜ ଇଚ୍ଛାରେ ମୃତ୍ୟୁବରଣ କଲେ । ଅକ୍ଟୋବର ୨୦୦୬ରେ ରାଜସ୍ଥାନ ରାଜ୍ୟରେ ତିନିଜଣ ବ୍ୟକ୍ତି ଏହିପରି ଭାବରେ ଦେହତ୍ୟାଗ କରିଛନ୍ତି । ସେମାନଙ୍କ ମଧ୍ୟରୁ ଦୁଇଜଣ ସ୍ତ୍ରୀ ଓ ଜଣେ ପୁରୁଷ । ସବୁଠାରୁ ବୟସ୍କା ସରଦାରି ଦେବୀ ଲୁନିଆ (୯୪ ବର୍ଷ) ଶ୍ୱେତାମ୍ବର ଜୈନ ପରମ୍ପରା ଅନୁସାରେ ୪୦ ଦିନ ଉପବାସ ରହିଥିଲେ । ତାଙ୍କ ପୂର୍ବରୁ ୬୯ ବର୍ଷ ବୟସ୍କା ବିମଳା ଦେବୀ ଓ ୭୦ ବର୍ଷ ବୟସ୍କ ଆଜମେରବାସୀ ଅମରଚାନ୍ଦ ସ୍ୱଇଚ୍ଛାରେ ପରଲୋକପ୍ରାପ୍ତ ହୋଇଥିଲେ । ବିମଳା ଦେବୀ କ୍ୟାନସର୍ ରୋଗରେ ପୀଡିତ ହେଲେ ଓ ଦେହତ୍ୟାଗ ପାଇଁ ନିଜ ଗୁରୁଙ୍କଠାରୁ ଅନୁମତି ଓ ଆଶୀର୍ବାଦ ନେଇଥିଲେ । ଉପବାସ ରହି ଈଶ୍ୱରଙ୍କ ନାମ ନେଇ ସଂସାର ତ୍ୟାଗ ପରମ୍ପରାକୁ ଜୈନ ଧର୍ମରେ 'ସନ୍ଥାରା' କୁହାଯାଏ । ଏହାକୁ ଇଂରାଜୀ ଭାଷାରେ 'ଟର୍ମିନାଲ ଫାଷ୍ଟ' କହନ୍ତି ।

'ସନ୍ଥାରା'କୁ ଏକ ପ୍ରକାର ଆତ୍ମହତ୍ୟା ବିଚାର କରି ଦୋଷୀମାନଙ୍କୁ ଦଣ୍ଡ ଦେବା ପାଇଁ ନିଖିଲ ସୋନି ନାମକ ଜଣେ ଓକିଲଙ୍କ ପିଆଇଏଲ୍ ପିଟିସନ୍ ଏବେ ରାଜସ୍ଥାନ ହାଇକୋର୍ଟରେ ଦାଖଲ କରାଯାଇଛି । ଶ୍ୱେତାମ୍ବର ଜୈନ ସମାଜ ଏହାର ବିରୋଧ କରି କହନ୍ତି ଯେ, ସନ୍ଥାରା ତିନି ହଜାର ବର୍ଷ ପୁରାତନ ଏକ ଧାର୍ମିକ ପରମ୍ପରା । ଏହାକୁ ଆତ୍ମହତ୍ୟା ନାମ ଦେବା ଠିକ୍ ନୁହେଁ । ଜୀବନ ସଂଗ୍ରାମରେ ହାରି ଯାଇଥିବା ହତାଶାଗ୍ରସ୍ତ ଲୋକେ ଭାବପ୍ରବଣତାର ଶିକାର ହୋଇ ଆତ୍ମହତ୍ୟା କରିଥାନ୍ତି ।

କର୍ଣ୍ଣାଟକ, ମହାରାଷ୍ଟ୍ର, ଉତ୍ତରପ୍ରଦେଶ, ଆନ୍ଧ୍ରପ୍ରଦେଶ ଭଳି ରାଜ୍ୟରେ ଶହ ଶହ ସଂଖ୍ୟାରେ ଆଳୁ, ପିଆଜ, ଆଖୁଚାଷୀମାନେ ଫସଲ କ୍ଷତି ସହି ନ ପାରି ପ୍ରତିବର୍ଷ ଆତ୍ମହତ୍ୟା କରିଥାନ୍ତି । ବେକରେ ଦଉଡ଼ି ଲଗାଇ, ଚଳନ୍ତା ରେଳଗାଡ଼ି ଆଗରେ ଶୋଇ, କୂଅ, ପୋଖରୀରେ ବୁଡ଼ି, ଉଚ୍ଚ ପ୍ରାସାଦରୁ ଡେଇଁପଡ଼ି, ବିଷଖାଇ ଲୋକେ ଆତ୍ମହତ୍ୟା କରିବା କଥା ସମସ୍ତେ ଜାଣନ୍ତି । ଅନ୍ୟ ପକ୍ଷରେ ସନ୍ଥାରା ନେଉଥିବା ବ୍ୟକ୍ତି ତାଙ୍କର ସମସ୍ତ ସାଂସାରିକ କର୍ତ୍ତବ୍ୟ ସାରିବା ପରେ ଆଉ ବଞ୍ଚି ରହିବାକୁ ଚାହାନ୍ତି ନାହିଁ । ସେହିପରି ଯାହାଙ୍କର ଶରୀର ରୋଗଗ୍ରସ୍ତ ଓ ଅକ୍ଷମ ହୋଇ ପଡ଼େ, ସେହି ଶରୀରକୁ ସନ୍ଥାରା ମାଧ୍ୟମରେ ତ୍ୟାଗ କରିବାର ଦୃଷ୍ଟାନ୍ତ ବି ଅଛି । ଏହାଦ୍ୱାରା କାମନାର ବିନାଶ ଓ ଶରୀର ଶୁଦ୍ଧ ହୁଏ ବୋଲି ବିଶ୍ୱାସ କରାଯାଏ । ଅଯୋଧ୍ୟା ରାଜା ରାମଚନ୍ଦ୍ର ନିଜ ପୁତ୍ରଙ୍କୁ ରାଜ୍ୟଭାର ଦେଇ ସରଜୁ ନଦୀରେ ଲୀନ ହୋଇଥିଲେ ।

ସାଧାରଣତଃ ଜୀବନର ସ୍ୱାଦ ଚାଖିଥିବା ଲୋକେ ମୃତ୍ୟୁ ନାମ ଶୁଣିଲେ ଚମକି ପଡ଼ନ୍ତି । ଯକ୍ଷ ଯୁଧିଷ୍ଠିରଙ୍କୁ ପ୍ରଶ୍ନ କରିଥିଲେ, ସଂସାରରେ ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ କ'ଣ ? ଉତ୍ତରରେ ଯୁଧିଷ୍ଠିର କହିଥିଲେ ଯେ ପ୍ରତିଦିନ ମରୁଥିବା ଲୋକଙ୍କୁ ଦେଖି ମଧ୍ୟ ସଦା ବଞ୍ଚି ରହିବା ଇଚ୍ଛା ସଂସାରର ସବୁଠାରୁ ଆଶ୍ଚର୍ଯ୍ୟଜନକ ବିଷୟ । ତେଣୁ ସ୍ୱଇଚ୍ଛାରେ ମରିବା କଥାଟା ଭାରି ଆଶ୍ଚର୍ଯ୍ୟ ଲାଗେ । ପାଣ୍ଡବ ଓ କୌରବଙ୍କ ପିତାମହ ଭୀଷ୍ମଙ୍କୁ କେବଳ ଇଚ୍ଛାମୃତ୍ୟୁର ବର ମିଳିଥିଲା । ଜନ୍ମ ନେଉଥିବା ସମସ୍ତ ଜୀବ ଏଠାରେ ମରୁଥିବାରୁ ପୃଥିବୀର ଅନ୍ୟନାମ ମର୍ତ୍ତ୍ୟଲୋକ । ଏହି ମର୍ତ୍ତ୍ୟଲୋକରେ ଯେଉଁ ସାତ ଜଣ ବ୍ୟକ୍ତି ଏବେ ବି ଅମର ରହିଛନ୍ତି ବୋଲି ଶାସ୍ତ୍ରରେ ବର୍ଣ୍ଣନା କରାଯାଇଛି, ସେମାନେ ହେଲେ ଅଶ୍ୱତ୍ଥାମା, ବଳୀ, ବ୍ୟାସ, ହନୁମାନ, ବିଭୀଷଣ, କୃପାଚାର୍ଯ୍ୟ ଓ ପରଶୁରାମ ।

ଗତ କୋଡିଏ ବର୍ଷ ଧରି ପ୍ରତ୍ୟେକ ନାଗରିକଙ୍କୁ ମରିବା ଅଧିକାର ଦେବାପାଇଁ ପୃଥିବୀର ବିଭିନ୍ନ ଦେଶରେ ବିଚାର, ଆଲୋଚନା, ବିବାଦ ଲାଗିରହିଛି । ବଞ୍ଚିବା ଅଧିକାର - ରାଇଟ୍ ଟୁ ଲାଇଫ୍ - ଭଳି ମରିବା ଅଧିକାରକୁ ମଧ୍ୟ ମୌଳିକ ଅଧିକାରଭୁକ୍ତ କରିବାପାଇଁ ସଭା, ଶୋଭାଯାତ୍ରା ହେଲାଣି । ୨୦୦୬ ମସିହା ମାର୍ଚ୍ଚ ମାସରେ କାଲିଫର୍ଣ୍ଣିଆରେ ହୋଇଥିବା ଏକ ଓପିନିଅନ୍ ପୋଲ୍ ବା ଜନମତ ସର୍ଭେରେ ଶତକଡ଼ା ୬୦ ଭାଗ ଲୋକ ମରିବା ଅଧିକାର ସପକ୍ଷରେ ମତ ଦେଇଛନ୍ତି । ଯେଉଁ ବ୍ୟକ୍ତି ମୃତ୍ୟୁ ଶଯ୍ୟାରେ ଘୋର ଦୁଃଖ କଷ୍ଟରେ ଘାଣ୍ଟି ହେଉଛନ୍ତି, ଯେଉଁମାନଙ୍କ ଅଙ୍ଗପ୍ରତ୍ୟଙ୍ଗ ଅଚଳ, ଅକ୍ଷମ, ଅଥଚ ପ୍ରାଣ ଯାଉନାହିଁ, ହେ ଈଶ୍ୱର ମତେ ଚଞ୍ଚଳ ନେଇଯାଅ, ଉଦ୍ଧାର କର ବୋଲି ଯେଉଁମାନେ ଆକୁଳ ପ୍ରାର୍ଥନା କରୁଛନ୍ତି, ତାଙ୍କୁ

ଲାଇଫ୍ ସପୋର୍ଟ ସିଷ୍ଟମ୍‌ରେ ରଖି କୃତ୍ରିମ ଉପାୟରେ ବଞ୍ଚାଇ ରଖିବା କେତେଦୂର ଯଥାର୍ଥ, ସେ ବିଷୟରେ ଏବେ ସାରା ବିଶ୍ୱରେ ବିତର୍କ ଚାଲିଛି ।

ୟୁରୋପ ଓ ଆମେରିକାରେ କାଥଲିକ୍ ଚର୍ଚ୍ଚମାନେ ଏହାର ଘୋର ବିରୋଧ କରୁଥିବା ବେଳେ 'ଇଉଥାନ୍‌ସା', 'ମସିକିଲି' ଏବଂ ଡାଇଙ୍ଗ୍ ଉଇଥ୍ ଡିଗ୍‌ନିଟି ଆନ୍ଦୋଳନର ସମର୍ଥକଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି । ଏ ପର୍ଯ୍ୟନ୍ତ ଡାକ୍ତରମାନଙ୍କ ମଧ୍ୟରେ ଏ ବିଷୟରେ ବିଭିନ୍ନ ମତ ରହିଛି । କାରଣ ସ୍ୱଜନ ଓ ଚିକିତ୍ସା କରୁଥିବା ଡାକ୍ତରଙ୍କ ବିନା ସହଯୋଗରେ ରୋଗୀ ଚାହୁଁଥିଲେ ମଧ୍ୟ ମରିବା ଅଧିକାର କାର୍ଯ୍ୟକାରୀ ହୋଇପାରିବ ନାହିଁ । ଅନେକ ଡାକ୍ତର ଭାବନ୍ତି, ଜୀବନ ଯଦି ଦେଇ ନ ପାରିବେ, ଜୀବନ ନେବାରେ କେମିତି ସହଯୋଗ କରିବେ ? ଆଉ କେତେକଙ୍କ ଧାରଣା ଯେ ଜାଣିଶୁଣି ଲାଇଫ୍ ସପୋର୍ଟ ନ ଦେବା ବା କାଢ଼ି ନେବା ହତ୍ୟା ସହ ସମାନ । ପରିବାର ଓ ଆତ୍ମୀୟ ସ୍ୱଜନଙ୍କ ଦ୍ୱନ୍ଦ୍ୱ ଓ ଧର୍ମସଙ୍କଟ ଏହାଠାରୁ ଅଧିକ ।

ଯାହାଙ୍କର ବଞ୍ଚିବା ଆଶା ଆଦୌ ନାହିଁ, ବା ଯେଉଁମାନଙ୍କ ମସ୍ତିଷ୍କ ମୃତ (ବ୍ରେନ୍ ଡେଡ୍) ଅବା ଯିଏ ଅସହ୍ୟ ଯନ୍ତ୍ରଣାରେ ଛଟପଟ ହେଉଛନ୍ତି; ସେମାନଙ୍କର ସମ୍ମାନ ସହ ମରିବା ଅଧିକାର ଅଛି କି ନାହିଁ ଏ ବିଷୟରେ କିଏ ନିଷ୍ପତ୍ତି ନେବ ? ଡାକ୍ତରଖାନାର ଇଣ୍ଟେନ୍‌ସିଭ୍ କେଆର୍ ୟୁନିଟ୍‌ରେ କେତେ ମାସ, କେତେ ବର୍ଷ ପର୍ଯ୍ୟନ୍ତ ତାଙ୍କୁ ରଖାଯାଇ ପାରିବ ? ଏ ବାବଦରେ ଯେଉଁ ଖର୍ଚ୍ଚ ଆବଶ୍ୟକ, ତାକୁ ଗରିବ ରୋଗୀଙ୍କ ପରିବାର କିପରି ବହନ କରିବେ ଓ ସର୍ବସ୍ୱାନ୍ତ ହେବାକୁ ବଞ୍ଚିପାରିବେ ? ମୃତ୍ୟୁ ଶଯ୍ୟାରେ ଶାୟିତ ରୋଗୀ ନିଜେ ଚିକିତ୍ସିତ ହେବାକୁ ମନା କଲେ କ'ଣ ହେବ ?

ଆଚାର୍ଯ୍ୟ ବିନୋବା ଭାବେ ଉପବାସ ରହି, ଔଷଧ ଇଞ୍ଜେକ୍‌ସନ୍ ନେବାକୁ ମନା କରିଦେଇ; ଡାକ୍ତର, ସାଙ୍ଗ, ସାଥୀ, ତତ୍କାଳୀନ ପ୍ରଧାନମନ୍ତ୍ରୀ ଓ ଦେଶବାସୀଙ୍କ ଅନୁରୋଧକୁ ଉପେକ୍ଷା କରି ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ଆମରଣ ଅନଶନକୁ ଗାନ୍ଧୀ ଏକ ନୈତିକ ଓ ରାଜନୈତିକ ଅସ୍ତ୍ର ଭାବରେ ବ୍ୟବହାର କରୁଥିଲେ । ସ୍ୱାଧୀନତାର ପରବର୍ତ୍ତୀ କାଳରେ ରାମୁଲୁ ଆମରଣ ଅନଶନ କରି ମୃତ୍ୟୁବରଣ କଲା ପରେ ଆନ୍ଧ୍ରପ୍ରଦେଶ ସୃଷ୍ଟି ହେଲା । ସେହିପରି ଅନେକ ଲୋକ ଶାନ୍ତିରେ ଓ ସମ୍ମାନ ସହ ଶେଷ ନିଃଶ୍ୱାସ ତ୍ୟାଗପାଇଁ ଉଇଲ୍ ଜରିଆରେ ଇଚ୍ଛା ପ୍ରକାଶ କଲେଣି । ସେମାନଙ୍କ ଶେଷ ଇଚ୍ଛା କିପରି ପୂରଣ କରାଯିବ ? ଯଦି ଫାଶି ଦଣ୍ଡରେ ଦଣ୍ଡିତ ବ୍ୟକ୍ତିଙ୍କ ଶେଷ ଇଚ୍ଛା ପୂରଣ କରାଯାଉଛି, ନିଶ୍ଚିତ ମୃତ୍ୟୁ, ନିଷ୍ଫଳ ଚିକିତ୍ସା ଅବସ୍ଥାରେ ମୃତ୍ୟୁ ଅଧିକାର ମାଗୁଥିବା ରୋଗୀଙ୍କୁ ଆମେ କ'ଣ ଉତ୍ତର ଦେବା ?

ଯେଉଁ ଦେଶଗୁଡିକରେ ପରିବାର ଭାଙ୍ଗିରୁଜି ଗଲାଣି, ସେଠାରେ ଶେଷ ଜୀବନ ଆହୁରି ଦୁଃସହ । ଏଠାରେ ସୁନିଶ୍ଚିତ ମୃତ୍ୟୁ ପୂର୍ବବର୍ତ୍ତୀ ଅବସ୍ଥାକୁ କଷ୍ଟହୀନ ଓ ଶାନ୍ତିପୂର୍ଣ୍ଣ କରିବାକୁ ଡାକ୍ତରମାନଙ୍କୁ ସ୍ୱତନ୍ତ୍ର ତାଲିମ ଦିଆଯାଉଛି । ଏହାକୁ ହତ୍ୟା ବା ଆତ୍ମହତ୍ୟା ପର୍ଯ୍ୟାୟରୁ ଅଲଗା ଭାବେ ବିଚାର କରାଯାଉଛି । ଭାରତରେ ବି ଏ ବିଷୟରେ ଚର୍ଚ୍ଚା, ବିଚାର ଓ ମାନସ ମନ୍ଥନ ଆରମ୍ଭ ହେଲାଣି । ୨୦୦୫ ମସିହାରେ ଡକ୍ଟର ଫାରହଦ୍ କାପାଡିଆ, ମନୋଜ ସିଂ ଓ ଜିଗୀଶୁ ଦିରାଟିଆ ବମ୍ବେ ନଗରୀର ବିଭିନ୍ନ ଆଇସିୟୁରେ ଥିବା ୧୪୩ ଜଣ ସୁନିଶ୍ଚିତ ମୃତ୍ୟୁମୁଖୀ ରୋଗୀଙ୍କ ଉପରେ କରିଥିବା ଅଧ୍ୟୟନରୁ ଜଣାପଡେ ଯେ ୪୯ ଜଣ ରୋଗୀଙ୍କୁ ସ୍ୱାଭାବିକ ମୃତ୍ୟୁପାଇଁ ସହଯୋଗ ମିଳିଥିଲା । ପାଶ୍ଚାତ୍ୟ ଦେଶମାନଙ୍କରେ ଶତକଡ଼ା ନବେ ମୃତ୍ୟୁକୁ ଅପେକ୍ଷା କରିଥିବା ରୋଗୀଙ୍କୁ ଏପରି ସହାୟତା ମିଳୁଥିବା ବେଳେ ଭାରତର ବଡ଼ ବଡ଼ ସହରମାନଙ୍କରେ ଶତକଡ଼ା ଆଠ ଜଣଙ୍କୁ ଏହି ସହଯୋଗ ମିଳେ । ଆଇନ୍ ଏ ବିଷୟରେ ନୀରବ ଥିବାଯୋଗୁଁ ଡାକ୍ତରମାନେ ନିଷ୍ପତ୍ତି ନେବାପାଇଁ ସଙ୍କୋଚ କରନ୍ତି । କିନ୍ତୁ ଅଧିକାଂଶ କ୍ଷେତ୍ରରେ ଗ୍ରାମାଞ୍ଚଳର ନିଶ୍ଚିତ ମୃତ୍ୟୁମୁଖୀ ରୋଗୀମାନଙ୍କୁ ସେମାନଙ୍କର ପରିବାରର ଲୋକେ ଡାକ୍ତରଖାନାରୁ ଘରକୁ ନେଇ ଯାଇଥାନ୍ତି ।

ଏବେ "ଇଣ୍ଡିଆନ୍ ସୋସାଇଟି ଅଫ୍ କ୍ରିଟିକାଲ୍ କେଆର୍ ମେଡିସିନ୍" ଏ ବିଷୟରେ ଡାକ୍ତରମାନଙ୍କପାଇଁ ଏକ ନିର୍ଦ୍ଦେଶିକା ପ୍ରସ୍ତୁତ କରି ରାଷ୍ଟ୍ରୀୟ ଆଇନ୍ କମିଶନଙ୍କ ଅଧ୍ୟୟନପାଇଁ ପଠାଇଛନ୍ତି । ଏହା ପରେ ଲୋକସଭାରେ ଏକ ବିଲ୍ ଆସିବାପାଇଁ ଉଦ୍ୟମ ହେବ । ଆମେରିକାର କାଲିଫର୍ଣ୍ଣିଆ ରାଜ୍ୟର ଦୁଇଜଣ ବିଧାୟକ - ଲୟଡ୍ ଲେଭିନ୍ ଓ ଡି ଭାନ୍ ହୁଏ, ଏକ ଡ୍ରାଫ୍ଟ ବିଲ୍ (ଏବି-୬୫୧) ଜରିଆରେ ତାଙ୍କ ଦେଶରେ ସମର୍ଥନ ଏକତ୍ରିତ କଲେଣି । ଏବି-୬୫୧ ଅନୁସାରେ ଯେଉଁ ରୋଗୀଙ୍କ ଛ'ମାସ ଭିତରେ ମୃତ୍ୟୁ ସୁନିଶ୍ଚିତ ସେ ସୁଖଦ ଇଚ୍ଛା ମୃତ୍ୟୁପାଇଁ ଡାକ୍ତରଙ୍କ ପରାମର୍ଶ ଓ ଔଷଧ ନେଇ ପାରିବେ । ରୋଗୀଙ୍କର ଅନୁରୋଧ ପ୍ରକୃତରେ ଇଚ୍ଛାକୃତ କି ନାଇଁ ସେ ସମ୍ପର୍କରେ ଡାକ୍ତର ଆଗ ଅନୁଧ୍ୟାନ କରି ନିଜେ ସନ୍ତୁଷ୍ଟ ହେବେ ଏବଂ ୧୫ ଦିନ ଅପେକ୍ଷା କରି ସାରିଲା ପରେ ପରାମର୍ଶ ଓ ମେଡିସିନ୍ ଦେବେ । ଡାକ୍ତରଙ୍କ ପରାମର୍ଶ ଓ ଔଷଧ ପ୍ରେସକ୍ରିପସନ୍ କୋର୍ଟ କଚେରିର ବିଚାର ପରିସରକୁ ଆସିବ ନାହିଁ । ଭାରତରେ ଲ' କମିଶନ ବା ଆଇନ୍ କମିଶନ ଏ ସମ୍ପର୍କରେ ଏକ ଚାରିଶହ ପୃଷ୍ଠାର ରିପୋର୍ଟ ପାର୍ଲିଆମେଣ୍ଟରେ ଆଲୋଚନାପାଇଁ ପଠାଇଛନ୍ତି । "ଟର୍ମିନାଲ ରୋଗୀଙ୍କର ମେଡ଼ିକାଲ୍ ଟ୍ରିଟ୍‌ମେଣ୍ଟ"ପାଇଁ କମିଶନ ସାତୋଟି ଅତି ଗୁରୁତ୍ୱପୂର୍ଣ୍ଣ ପରାମର୍ଶ ଦେଇଛନ୍ତି । ଯଦି ସମ୍ପୃକ୍ତ ବ୍ୟକ୍ତି ନାବାଳକ ନୁହଁନ୍ତି ଏବଂ ମାନସିକ ଦୃଷ୍ଟିରୁ ବ୍ୟବସ୍ଥିତ,

ଡାକ୍ତର ତାଙ୍କର ଇଚ୍ଛାମୃତ୍ୟୁପାଇଁ ଅନୁରୋଧକୁ ପ୍ରତ୍ୟାଖାନ କରିପାରିବେ ନାହିଁ । ତିନି ଜଣ ଡାକ୍ତରୀ ବିଶେଷଜ୍ଞଙ୍କ ସୁଚିନ୍ତିତ ମତ ନେଲାପରେ ହିଁ ଏହି ପ୍ରକ୍ରିୟା ଆରମ୍ଭ କରାଯାଇପାରିବ । ନୈତିକ, ସାମାଜିକ ଦୃଷ୍ଟିକୋଣ ଓ ରୋଗୀଙ୍କର ହିତକୁ ଦୃଷ୍ଟିରେ ରଖି ଏହି ନିଷ୍ପତ୍ତି କାର୍ଯ୍ୟକାରୀ ହେବ । ଦେଶ ବା ରାଜ୍ୟର ସର୍ବୋଚ୍ଚ ସ୍ୱାସ୍ଥ୍ୟ ସେବା ବିଭାଗ ସମ୍ପୃକ୍ତ ତିନିଜଣ ବିଶେଷଜ୍ଞଙ୍କୁ ବାଛିବେ । ଚିକିତ୍ସକଙ୍କ ପରାମର୍ଶ ରୋଗୀଙ୍କ ଚିକିତ୍ସା ରେକର୍ଡ ଉପରେ ନିର୍ଭର କରିବ ଓ ଏହି ରେକର୍ଡ ବିଶେଷଜ୍ଞ କମିଟିକୁ ଦିଆଯିବ । ରୋଗୀଙ୍କ ପରିବାରର ସମ୍ମତି ନଥିଲେ କୋର୍ଟ ପନ୍ଦର ଦିନ ଭିତରେ ତାଙ୍କ ନିଷ୍ପତ୍ତି ଦେବେ ।

ବିଭିନ୍ନ ଦୃଷ୍ଟିକୋଣରୁ ଇଚ୍ଛା ମୃତ୍ୟୁପାଇଁ ଅନୁରୋଧ ବା ନିଷ୍ପତ୍ତି ଏକ ଅତ୍ୟନ୍ତ ସମ୍ବେଦନଶୀଳ ବିଷୟ । ଏ ସମ୍ପର୍କରେ ଦେଶରେ ଯେତେ ବେଶି ଆଲୋଚନା ହେବ ସେତେ ଭଲ ।

*୨୫ ଜାନୁଆରୀ, ୨୦୦୭*

■ ■ ■

# ପୃଥୁଳ ପୃଥିବୀ

ପୃଥିବୀରେ ପ୍ରଥମଥରପାଇଁ ପୃଥୁଳକାୟଙ୍କ ସଂଖ୍ୟା କ୍ଷୀଣକାୟଙ୍କ ସଂଖ୍ୟାକୁ ଟପି ଯାଇଛି । 'ମୋଟାପା' ବିଶାରଦ ପ୍ରଫେସର ବାରି ପପ୍‌କିନ୍‌ଙ୍କ ଗବେଷଣା ଓ ହିସାବ ଅନୁଯାୟୀ ଏବେ ପୃଥିବୀରେ ପୁଷ୍ଟିକର ଖାଦ୍ୟ ଅଭାବ ହେତୁ ୮୦ କୋଟି ଲୋକଙ୍କର ଓଜନ ଆବଶ୍ୟକତାଠାରୁ କମ୍ ଅଛି । କିନ୍ତୁ ଅପର ପକ୍ଷରେ ଆବଶ୍ୟକତାଠାରୁ ଅଧିକ ଓଜନଦାର ଲୋକଙ୍କ ସଂଖ୍ୟା ଏବେ ୧୦୦ କୋଟିକୁ ଟପିଗଲାଣି । ଏବେ ବି ଏସିଆ ଓ ଆଫ୍ରିକା ମହାଦେଶର ଅନେକ ଅଞ୍ଚଳରେ ଲକ୍ଷ ଲକ୍ଷ ଅଳ୍ପ - ଓଜନର ପିଲା ଜନ୍ମ ହେଉଛନ୍ତି । 'ଜାତୀୟ ପରିବାର ସ୍ୱାସ୍ଥ୍ୟ ସର୍ବେକ୍ଷଣ - ୩' (୨୦୦୫) ରିପୋର୍ଟ ଅନୁସାରେ ଭାରତରେ ତିନିବର୍ଷ ବୟସରୁ କମ୍ ପ୍ରତି ତିନିଟି ପିଲାଙ୍କ ମଧ୍ୟରୁ ଜଣଙ୍କର ଓଜନ ଆବଶ୍ୟକତାଠାରୁ କମ୍ । ପଞ୍ଚସ୍ତରି ଭାଗ ଶିଶୁ ରକ୍ତହୀନତା ବା ଆନିମିଆଗ୍ରସ୍ତ । ଓଡ଼ିଶାରେ ପ୍ରତି ଶହେରୁ ୧୮ ଜଣ ଶିଶୁଙ୍କୁ ପୁଷ୍ଟିକର ଖାଦ୍ୟ ମିଳେ ନାହିଁ ଏବଂ ୭ ଜଣ ପ୍ରଥମ ଜନ୍ମବାର୍ଷିକୀ ପର୍ଯ୍ୟନ୍ତ ବଞ୍ଚି ରହିପାରନ୍ତି ନାହିଁ । ମଧ୍ୟପ୍ରଦେଶରେ ୧୦୦ ରୁ ୬୦ ଅଳ୍ପ ଓଜନ ଶିଶୁ ଜନ୍ମ ନିଅନ୍ତି । ଉପଯୁକ୍ତ ପୋଷଣ ଅଭାବରୁ ପୃଥିବୀରେ ପ୍ରତି ମିନିଟ୍‌ରେ ୨୩ ଜଣ ଶିଶୁଙ୍କର ମୃତ୍ୟୁ ଘଟେ । ଅତି ଓଜନ ଓ ଅଳ୍ପ ଓଜନ - ଉଭୟ ମାନବ ସ୍ୱାସ୍ଥ୍ୟପାଇଁ ବିପଦର ସଙ୍କେତ ।

ଭାରତରେ ସବୁଜ ବିପ୍ଳବ ଓ ଗଣତନ୍ତ୍ର ଉଭୟ ଦୁର୍ଭିକ୍ଷ କବଳରୁ ଦେଶକୁ ରକ୍ଷା କରିଥାଇ ପାରନ୍ତି, କିନ୍ତୁ ଗତ ୨୦ ବର୍ଷ ମଧ୍ୟରେ ଏଠାରେ ଲୋକଙ୍କର ଖାଇବା ଅଭ୍ୟାସରେ କ୍ରାନ୍ତିକାରୀ ପରିବର୍ତ୍ତନ ଘଟିଛି । ସହରାଞ୍ଚଳରେ ଏବେ ଅଧିକ ଲୋକ ପରିବା ରାନ୍ଧି ଖାଇବା ଅପେକ୍ଷା 'ପ୍ରୋସେସ୍‌ଡ୍' ଖାଦ୍ୟ ଖାଉଛନ୍ତି । ଅଧିକ 'ରିଫାଇନ୍‌ଡ୍' ଖାଦ୍ୟ ଅଧିକ ଶର୍କରା, ଅଧିକ ଲୁଣ, ଅଧିକ ତେଲ ଓ ଚର୍ବିଜାତ ଦ୍ରବ୍ୟ, ଅଧିକ ମାଂସ, ଅଧିକ ଆଜେବାଜେ 'ଜଙ୍କ ଫୁଡ୍' ଏବଂ ବାହାର ଖାଦ୍ୟ ଖାଇବା ଫଳରେ ସେମାନଙ୍କ

ଶରୀରର ଓଜନ ବଢ଼ିଯାଉଛି । ପାଣି ନ ପିଇ ସଫ୍ଟ ଡ୍ରିଙ୍କ ପିଇବା, ଠିକ୍ ସମୟରେ ଖାଦ୍ୟ ନ ଖାଇବା, ଦୀର୍ଘ ସମୟ ଧରି ଚୌକିରେ ବସି କାମ କରିବା, ବ୍ୟାୟାମ ନ କରିବା, ମାଦକ ଦ୍ରବ୍ୟ ସେବନ କରିବା ଏବଂ ସର୍ବୋପରି ଷ୍ଟ୍ରେସ୍ ବା ଚାପଯୋଗୁଁ ମଧ୍ୟ ଓଜନ ବଢ଼ିଯାଉଛି । ମାକ୍‌ଡୋନାଲ୍‌ଡ, କେଣ୍ଟକି ଫ୍ରାଏଡ୍ ଚିକେନ୍, ପିଜା ହଟ୍ ଓ କୋକାକୋଲା ଏବେ ଦେଢ଼ଶହ ଦେଶରେ 'ମୋଟାପା' ବଢ଼ାଇବାରେ ଲାଗିଛନ୍ତି ।

ମିଳିତ ରାଷ୍ଟ୍ରସଙ୍ଘ ଖାଦ୍ୟ ଓ କୃଷି ସଂସ୍ଥାଙ୍କ ହିସାବ ଅନୁସାରେ ପୃଥିବୀରେ କୁପୋଷଣଗ୍ରସ୍ତ ବ୍ୟକ୍ତିଙ୍କ ସଂଖ୍ୟା ଦୁଇଗୁଣ ହେଲେ, ଅତିପୋଷଣଦ୍ୱାରା ପ୍ରଭାବିତଙ୍କ ସଂଖ୍ୟା ତିନିଗୁଣ । 'ମୋଟାପା' କେବଳ ଧନୀ ଲୋକଙ୍କ ରୋଗ ନୁହେଁ । ଆମେରିକାରେ ଧନୀ ଓ ମଧ୍ୟବିତ୍ତଙ୍କ ମଧ୍ୟରେ ୨୯ ପ୍ରତିଶତ ମୋଟା ଲୋକ ଥିବା ବେଳେ ଅଳ୍ପ ଆୟ କରୁଥିବା ଲୋକଙ୍କ ମଧ୍ୟରେ ୩୫ ପ୍ରତିଶତ ହେଉଛନ୍ତି ମୋଟା । ଏହି ଦେଶରେ ପ୍ରାୟ ୧୬ ପ୍ରତିଶତ ଶିଶୁଙ୍କର ଓଜନ ଅଧିକ । କିନ୍ତୁ ଗରିବ ପରିବାରରେ ବଢ଼ୁଥିବା ୨୩ ପ୍ରତିଶତ ଶିଶୁ ମୋଟା । ବ୍ରାଜିଲ୍ ଦେଶରେ ଏବଂ ବିଶେଷ କରି ସହରାଞ୍ଚଳରେ ଧନୀଙ୍କ ଅପେକ୍ଷା ଗରିବମାନେ ମୋଟା । ଇଂଲଣ୍ଡରେ ୪୬ ପ୍ରତିଶତ ପୁରୁଷ ଓ ୩୨ ପ୍ରତିଶତ ମହିଳାଙ୍କର ଓଜନ ବେଶୀ ।

ଚୀନ୍ ଦେଶର ଲୋକେ ଆଗେ ସାଇକେଲ୍‌ରେ ଯିବା ଆସିବା ପସନ୍ଦ କରୁଥିଲେ । ଏବେ ପ୍ରତି ଘରେ ଟିଭି ଏବଂ ପ୍ରତି ୭ ଜଣରୁ ଜଣଙ୍କର ମୋଟର କାର୍ । ଫଳରେ ଚୀନ୍‌ରେ 'ମୋଟାପା' ବଢ଼ିବାରେ ଲାଗିଛି । ବିଶେଷକରି ଯାହାଙ୍କର ଗାଡି ଅଛି ସେମାନଙ୍କ ମଧ୍ୟରୁ ଶତକଡା ଅଶୀ ଭାଗ ଲୋକ ଅଗାଡିବାଲାଙ୍କ ଅପେକ୍ଷା ଅଧିକ ମୋଟା । ଚୀନ୍‌ରେ ଗତ ୨୦ ବର୍ଷ ଭିତରେ ମାଂସାହାରୀଙ୍କ ସଂଖ୍ୟା ତିନିଗୁଣ ବଢ଼ିଗଲାଣି । ବିକାଶଶୀଳ ଦେଶମାନଙ୍କରେ ଲୋକେ ବର୍ଷକୁ ଦଶକୋଟି ଷାଠିଏ ଲକ୍ଷ ମେଟ୍ରିକ୍ ଟନ୍ ମାଂସ ଭକ୍ଷଣ କରୁଛନ୍ତି । ଏହା ବିକଶିତ ଦେଶମାନଙ୍କ ଅପେକ୍ଷା ପାଞ୍ଚ ଗୁଣରୁ ଅଧିକ । ଏଥିରୁ ଅଧିକାଂଶ, ଶରୀରରେ ବିଭିନ୍ନ ଢଙ୍ଗରେ ଗଚ୍ଛିତ ରହି ଓଜନ ବଢ଼ାନ୍ତି । ଓଜନିଆ ଶରୀର ରୋଗର ଗନ୍ତାଘର । ଭୋକ ଅପେକ୍ଷା ଭୋଜନ ଓ ଓଜନ ଜଣକୁ ମୃତ୍ୟୁର ଦ୍ୱାରଦେଶକୁ ଶୀଘ୍ର ଟାଣିନିଏ ।

ସେହିପରି 'ଚର୍ବି ଚିଜ୍ ଡ଼ିମ୍ପଲ୍ ଚିନ୍' (ଗୋଲ୍ ଗୋଲ୍ ଗାଲ) ଥିବା ଶିଶୁଙ୍କୁ ସ୍ୱାସ୍ଥ୍ୟବାନ ଭାବିବା ଠିକ୍ ନୁହେଁ । ମା'ମାନେ ପିଲାଙ୍କୁ ଅତି ଭୋଜନ କରାଇବା ଅଭ୍ୟାସ ଛାଡିବାକୁ ପଡିବ । କାରଣ ଯେଉଁ ପିଲା ଜନ୍ମର ଦୁଇବର୍ଷ ଭିତରେ ମୋଟା

ହୋଇଯାଆନ୍ତି, ସେମାନଙ୍କ ଭିତରୁ ଅଧେରୁ ଅଧିକା ପରବର୍ତ୍ତୀ ଜୀବନ କାଳରେ ମୋଟା ରହିଯାନ୍ତି । ତେଣୁ ପେଟ ପୂରାଇବା ଅପେକ୍ଷା କମାଇବା କଷ୍ଟକର । ଗରିବ ଲୋକଙ୍କ ପାଇଁ ଏହା ଆହୁରି କଷ୍ଟକର, କାରଣ ସେମାନଙ୍କ ପାଖରେ 'ଜିମ୍' ଯିବାକୁ ବା 'ମୋଟାପା'ଯୋଗୁଁ ହେଉଥିବା ରୋଗର ଚିକିତ୍ସାପାଇଁ ପଇସା ନଥାଏ । ଇଂଲଣ୍ଡରେ ଡାଏଟିଂ ଓ ସ୍ଲିମିଂ ଟାବ୍‌ଲେଟ୍‌ପାଇଁ ଲୋକେ ବର୍ଷକୁ ହଜାରେ କୋଟି ଟଙ୍କା ଖର୍ଚ୍ଚ କରନ୍ତି । ପୃଥିବୀରେ ପ୍ରତି ବର୍ଷ 'ମୋଟାପା' କମାଇବା, ୧ ଲକ୍ଷ ୪୦ ହଜାର କୋଟି ଟଙ୍କାର ବ୍ୟବସାୟ ହେଲାଣି । ୨୦୦୪ ମସିହାରେ ପୃଥିବୀରେ ପୃଥୁଳଙ୍କପାଇଁ ୧୫୦ କୋଟି ଟଙ୍କାର ସ୍ୱତନ୍ତ୍ର ଷ୍ଟ୍ରେଚର୍ ତିଆରି କରାଯାଇଥିଲା । ୨୦୧୨ ମସିହାରେ ଏ ବାବଦ ଖର୍ଚ୍ଚ ୨୫୦ କୋଟି ହେବ । ସ୍ୱତନ୍ତ୍ର ଲିଫ୍‌ଟପାଇଁ ଖର୍ଚ୍ଚ ହେବ ୧୯୩ ମିଲିଅନ୍ ଡଲାର ବା ୯୬୦ କୋଟି ଟଙ୍କା ।

ଓଜନଦାର ବ୍ୟକ୍ତିମାନେ କେବଳ ନିଜେ ଖର୍ଚ୍ଚାନ୍ତ ହୁଅନ୍ତି ନାହିଁ ବା କଷ୍ଟ ଭୋଗନ୍ତି ନାହିଁ, ଏହାର ପ୍ରଭାବ ସମାଜରେ ପଡିଥାଏ । ସେମାନଙ୍କପାଇଁ ଡାକ୍ତରଖାନାରେ ବଡ଼ ବଡ଼ ଷ୍ଟ୍ରେଚର କିଣାଯାଏ । ଉଡ଼ାଜାହାଜରେ ସ୍ୱତନ୍ତ୍ର ବସିବା ବ୍ୟବସ୍ଥା କରାଯାଏ । ଅଧିକ ପେଟ୍ରୋଲ ଖର୍ଚ୍ଚ ହୋଇଥାଏ । ମୋଟା ଲୋକଙ୍କୁ ପ୍ରାକୃତିକ ବିପଦରୁ ରକ୍ଷା କରିବାପାଇଁ ଅଧିକ ସମୟ, ଅଧିକ ଲୋକ ଦରକାର ହୁଅନ୍ତି । 'ସୁପରସାଇଜ୍' ଆମେରିକାନ୍‌ମାନଙ୍କୁ ଅଗ୍ନିକାଣ୍ଡରୁ ଉଦ୍ଧାର କରିବାକୁ ଯାଇ ଏବେ ଫାୟାର ବ୍ରିଗେଡ୍‌ର ଅନେକ କର୍ମୀ ହତାହତ ହୋଇଛନ୍ତି । ବହୁତଳ ପ୍ରାସାଦରୁ ଏମାନଙ୍କୁ ଉଦ୍ଧାର କରିବା ଅତ୍ୟନ୍ତ କଷ୍ଟସାଧ ବ୍ୟାପାର । ଉଦାହରଣ ସ୍ୱରୂପ ଅଗଷ୍ଟ ୨୦୦୩ ମସିହାରେ ଜଣେ ୭୭୨ ପାଉଣ୍ଡ ଓଜନର ମହିଳାଙ୍କୁ ଉଦ୍ଧାର କରିବାକୁ ୨୨ ଜଣ ଦମକଳ କର୍ମଚାରୀଙ୍କୁ ଅଢେଇ ଘଣ୍ଟା ଲାଗିଥିଲା । ନ୍ୟୁୟର୍କ ସିଟିରେ ଅଚେତ ଅବସ୍ଥାରେ ଥିବା ଜଣେ ୧୦୮୦ ପାଉଣ୍ଡ ଓଜନିଆ ବ୍ୟକ୍ତିଙ୍କୁ ମୋଟେଲ୍‌ରୁ ଉଠାଇ ହସ୍‌ପିଟାଲ୍ ନେବାପାଇଁ ତିନିଟି ମେଡିକାଲ୍ ୟୁନିଟ୍, ୪ଟି ଫାୟାର ୟୁନିଟ୍ ଓ ୨୫ ଜଣ କର୍ମଚାରୀଙ୍କୁ ୩ ଘଣ୍ଟା ସମୟ ଲାଗିଲା । ୨୦୦୨ ମସିହାରୁ ଫିନିକ୍ସ ଟ୍ରାନ୍‌ସପୋର୍ଟ କମ୍ପାନୀ ପୃଥୁଳଙ୍କପାଇଁ ସ୍ୱତନ୍ତ୍ର ବସ୍ ଚଳାଉଛନ୍ତି ।

ଏପରି ଅନେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ଚାହିଁଲେ ବି ନିଜର ଓଜନ କମାଇ ପାରନ୍ତି ନାହିଁ । ବଂଶାନୁଗତ 'ମୋଟାପା' ଏହାର ଏକ ପ୍ରଧାନ କାରଣ । ପ୍ରତିଦିନର ରୁଟିନ୍, ପରିବେଶ, ଜୀବନଯାପନ ପ୍ରଣାଳୀ, ମିଳୁଥିବା ଖାଦ୍ୟ, ହଜମ ଶକ୍ତି ଇତ୍ୟାଦି ଅନେକ କାରଣ ଉପରେ ବହୁ ବ୍ୟକ୍ତିଙ୍କର ନିୟନ୍ତ୍ରଣ ନଥାଏ । କିନ୍ତୁ

ନିରନ୍ତର ସଚେତନ ରହିଲେ ପ୍ରତ୍ୟେକ ବ୍ୟକ୍ତି ଏହି ଆହ୍ୱାନକୁ ମୁକାବିଲା କରିପାରିବେ । ଏହାଛଡ଼ା ଖାଦ୍ୟ ସମ୍ପର୍କରେ କେତେକ ବିଶ୍ୱାସ ଓ ଅଭ୍ୟାସ ମଧ୍ୟ 'ମୋଟାପା' ବଢ଼ାଇ ଦେଇଥାଏ । ଯେପରିକି ଓଜନ କମାଇବାପାଇଁ ଅନେକ ଲୋକ 'ବ୍ରେକ୍‌ଫାଷ୍ଟ' ବା ସକାଳ ଜଳଖିଆ କରନ୍ତି ନାହିଁ । ଏହାର ଓଲଟା ଫଳ ମିଳେ । 'ଜର୍ନାଲ ଅଫ୍ ଆଡୋଲସେଣ୍ଟ ହେଲ୍‌ଥ'ରେ ପ୍ରକାଶିତ ଏକ ସଦ୍ୟ ଗବେଷଣାରୁ ଜଣାପଡ଼େ ଯେ ଯେଉଁ ପିଲାମାନେ ଉପଯୁକ୍ତ ପ୍ରାତଃ ଭୋଜନ କରନ୍ତି ନାହିଁ, ସେମାନଙ୍କ ମଧ୍ୟରୁ ଅଧିକାଂଶ ଜଙ୍କ୍‌ଫୁଡ୍ ଖାଇଥାନ୍ତି ଏବଂ ଏହି ଅସ୍ୱାସ୍ଥ୍ୟକର ଖାଦ୍ୟ ଖାଇ ଅଜାଣତରେ ନିଜେ ନିଜର ଓଜନ ବଢାଇ ମୋଟାସୋଟା ହୋଇଯାଆନ୍ତି । ଏହାଛଡ଼ା ଆମ ଭିତରୁ ଅନେକ ଯେତିକି ଖାଇବା ଆବଶ୍ୟକ ତା'ଠାରୁ ଅଧିକ ଖାଦ୍ୟ ଖାଇଥାନ୍ତି । ଜଣକୁ ପ୍ରତ୍ୟହ ୨୦୦୦ ରୁ ୨୬୦୦ କ୍ୟାଲୋରି ଦରକାର ଥିଲାବେଳେ ଅନେକ ସ୍ୱଚ୍ଛଳ ଲୋକ ୨୮୦୦ ରୁ ୩୦୦୦ କ୍ୟାଲୋରିର ଖାଦ୍ୟ ଖାଆନ୍ତି, କିନ୍ତୁ ତାକୁ ଶ୍ରମଦ୍ୱାରା ଖର୍ଚ୍ଚ କରିପାରନ୍ତି ନାହିଁ ।

ଆଜିକୁ ଶହେ ବର୍ଷ ପୂର୍ବେ ମଣିଷ ଯେତିକି ଶାରୀରିକ ପରିଶ୍ରମ କରୁଥିଲା, ଏବେ ତା'ର ୫ ରୁ ୧୦ ଭାଗ ମାତ୍ର କରୁଛି । ରୋଷେଇ ଘର ମେସିନ୍‌ରେ ଭରିଯିବାରୁ ହାତ କାମ କମିଗଲାଣି । ପିଲାମାନେ ଖେଳକୁଦରେ ଆଗ୍ରହ ନ ଦେଖାଇ ଟିଭି ସମ୍ମୁଖରେ ବସିବାକୁ ଅଧିକ ପସନ୍ଦ କରୁଛନ୍ତି । ଏବେ ଦିଲ୍ଲୀର ସ୍କୁଲମାନେ ପିଲାଙ୍କୁ ସାଇକେଲ୍‌ରେ ଯିବା ଆସିବା କରିବାପାଇଁ ଉତ୍ସାହିତ କଲେଣି । ଇଂଲଣ୍ଡର ଶିକ୍ଷା ବିଭାଗ, ନିଜ ପିଲାଙ୍କୁ ସାଇକେଲ୍ ଯୋଗେ ସ୍କୁଲ ପଠାଉଥିବା ମାତାପିତାଙ୍କୁ ପୁରସ୍କୃତ କରିବାକୁ ନିଷ୍ପତ୍ତି ନେଇଛନ୍ତି । ପୃଥିବୀର ବିଭିନ୍ନ ଦେଶରେ ଯୋଗକୁ ପାଠ୍ୟକ୍ରମର ଅଂଶ କରାଗଲାଣି । ପିଲାମାନଙ୍କୁ ଦୁଇଘଣ୍ଟାରୁ ଅଧିକ ସମୟ ଟିଭି ଦେଖିବାକୁ ମନା କରାଗଲାଣି । କେତେକ ଦେଶରେ ଛେନା ଜାତୀୟ ଖାଦ୍ୟକୁ ପିଲାଙ୍କପାଇଁ ଜଙ୍କ୍‌ଫୁଡ୍ କହି ନିଷେଧ କରାଗଲାଣି । ଆମେରିକାର ସ୍ୱାସ୍ଥ୍ୟ ଓ ଖାଦ୍ୟ ସଂସ୍ଥା ପିଲାଙ୍କପାଇଁ ଚର୍ବି ଜାତୀୟ ଖାଦ୍ୟ ଉପରେ ନିଷେଧାଦେଶ ଲଗେଇଲେଣି । ଏଥିରେ ଆତଙ୍କିତ ହୋଇ ମାକ୍‌ଡୋନାଲ୍‌ଡ କମ୍ପାନି ରେସ୍ତୋରାଁମାନଙ୍କରେ 'ଜିମ୍' ଖୋଲି ବ୍ୟାୟାମ ବ୍ୟବସ୍ଥା କଲେଣି । ବିଭିନ୍ନ ଦେଶରେ ଖାଦ୍ୟ ବିଜ୍ଞାପନ କମ୍ପାନିମାନଙ୍କୁ ସତର୍କ କରାଯାଉଛି । ବ୍ୟାୟାମ ବିମୁଖ ବ୍ୟକ୍ତିମାନଙ୍କୁ ନାଚଦ୍ୱାରା ଓଜନ କମାଇବାକୁ କୁହାଯାଉଛି । ସେହିପରି ପାଦରେ ଚାଲୁଥିବା ବା ସାଇକେଲ୍‌ରେ ଅଫିସ୍

ଯାଉଥିବା ଲୋକଙ୍କୁ ସ୍ପେସାଲ୍ ଆଲାଉନ୍‌ସ ଦିଆଯାଉଛି । ସିଙ୍ଗାପୁରରେ କାର୍‌ରେ ନ ଯାଇ ମେଟ୍ରୋ ବା ବସ୍‌ରେ ଯିବାପାଇଁ ନାଗରିକମାନଙ୍କୁ ପରୋକ୍ଷରେ ଉତ୍ସାହିତ କରାଯାଉଛି । 'ମୋଟାପା' କୌଣସି ବ୍ୟକ୍ତିଙ୍କ ଅପେକ୍ଷା ଦେଶପାଇଁ ଅଧିକ କ୍ଷତିକାରକ । ତେଣୁ ପୋଲିସ୍, ପାରାମିଲିଟାରୀ ଓ ସୈନ୍ୟବାହିନୀରେ ମଧ୍ୟ ଏହା ବିରୋଧରେ ଅଭିଯାନ ଚାଲିଲାଣି । ସରକାର, ସ୍ୱାସ୍ଥ୍ୟବିଭାଗ, ଶିକ୍ଷାବିଭାଗ, ଖାଦ୍ୟବିଭାଗ ଓ ସାଧାରଣ ଜନତା ସଚେତନ ଓ ସତର୍କ ହେଲେ ପୃଥିବୀରେ ପୃଥୁଳଙ୍କ ସଂଖ୍ୟା ହ୍ରାସ ଘଟିବ ।

*୮ ଫେବୃଆରୀ, ୨୦୦୭*



# ଦାରିଦ୍ର୍ୟ ମ୍ୟୁଜିଅମ୍‌କୁ ଯାଉ

୨୦୦୬ ନୋବେଲ୍ ଶାନ୍ତି ପୁରସ୍କାର ବିଜେତା, ଗ୍ରାମୀଣ ବ୍ୟାଙ୍କର ପ୍ରତିଷ୍ଠାତା, ବାଂଲାଦେଶୀ ମାଇକ୍ରୋ କ୍ରେଡିଟ୍ (ଅଣୁଋଣ) ବାଦ୍‌ଶାହ ପ୍ରଫେସର ମହମ୍ମଦ ୟୁନୁସ୍ ପୁରସ୍କାର ଗ୍ରହଣ କରିବା ଅବସରରେ ବିଶ୍ୱ ସମାଜକୁ ନିଃସ୍ୱମାନଙ୍କ କଲ୍ୟାଣପାଇଁ କାମ କରିବାକୁ ଆହ୍ୱାନ ଦେଇଛନ୍ତି ଏବଂ ଆସନ୍ତା କୋଡ଼ିଏ ବର୍ଷ ଭିତରେ ବାଂଲାଦେଶରୁ ଦାରିଦ୍ର୍ୟ ଦୂର କରି ୨୦୩୦ ମସିହାରେ ଏକ "ଦାରିଦ୍ର୍ୟ ମ୍ୟୁଜିୟମ୍" ପ୍ରତିଷ୍ଠା କରିବେ ବୋଲି ଘୋଷଣା କରିଛନ୍ତି। ଏହି 'ପଭର୍ଟି ମ୍ୟୁଜିୟମ୍'କୁ ଲୋକେ ଯିବେ ଦାରିଦ୍ର୍ୟ କ'ଣ ଦେଖିବାକୁ, ଜାଣିବାକୁ, ବୁଝିବାକୁ । କାରଣ ସେତେବେଳକୁ ସବୁ ବାଂଲାଦେଶୀ ଲୋକେ ଦାରିଦ୍ର୍ୟ ସୀମାରେଖା ଉପରକୁ ଉଠିଯାଇଥିବେ । ଓଡ଼ିଶାରେ ଦୁଇ ଲକ୍ଷରୁ ଅଧିକ ସ୍ୱୟଂ ସହାୟକ ଗୋଷ୍ଠୀ ଦାରିଦ୍ର୍ୟ ହଟାଇବା କାମରେ ଲାଗିଛନ୍ତି । କେବଳ "ବିଶ୍ୱ" ସାଙ୍ଗରେ ଅଛନ୍ତି ୪୦ ହଜାର ଗୋଷ୍ଠୀ । ସମସ୍ତେ ଅଣ୍ଟା ଭିଡିଛନ୍ତି ଦାରିଦ୍ର୍ୟକୁ ମ୍ୟୁଜିଅମ୍‌କୁ ପଠାଇବାପାଇଁ । ପ୍ରଶ୍ନ ହେଲାଣି ଏହା କ'ଣ ସତରେ ସମ୍ଭବ ?

ମିଳିତ ରାଷ୍ଟ୍ରସଙ୍ଘ ୧୭୭ଟି ଦେଶକୁ ନେଇ ପ୍ରଗତିର ଯେଉଁ ମାପଦଣ୍ଡ ତିଆରି କରିଛନ୍ତି, ସେଥିରେ ଭାରତ ୧୨୬ଟି ଦେଶଙ୍କ ପଛରେ । ବାଂଲାଦେଶ ୧୩୬ଟି ଦେଶଙ୍କ ପଛରେ । ତେଣୁ ବାଂଲାଦେଶରେ ଯଦି ଦାରିଦ୍ର୍ୟ ୨୦୩୦ ମସିହା ବେଳକୁ ମ୍ୟୁଜିୟମ୍‌କୁ ଚାଲିଯିବ, ଭାରତପାଇଁ କେତେବର୍ଷ ଲାଗିବ ? ଏଠାରେ ୨୫ କୋଟି ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ଅଛନ୍ତି । ସେହିପରି,ହାରାହାରି ଅଧେ ଲୋକ ଦରିଦ୍ର ଥିବା ଓଡ଼ିଶାପାଇଁ ଆଉ କେତେ ବର୍ଷ ଲାଗିବ ? ଏବେ ରାଜ୍ୟ ସରକାର ବିଶିଷ୍ଟ ବିଶେଷଜ୍ଞମାନଙ୍କୁ ନେଇ ନୂଆ ଯୋଜନା ବୋର୍ଡ ଗଠନ କରିଛନ୍ତି । କିନ୍ତୁ ଏହା ଏକ ନଖ ଦନ୍ତ ବିହୀନ ଶକ୍ତିହୀନ ସଂସ୍ଥା । ଏଥିରେ ଉପଯୁକ୍ତ ପ୍ରାଣ ପ୍ରତିଷ୍ଠା କରାଗଲେ ଦାରିଦ୍ର୍ୟରୁ ଆମେ କେବେ ଉଦ୍ଧାର ପାଇବା - ତା'ର ଚିତ୍ର ମିଳିପାରିବ ।

ଏବେକାର ଚିତ୍ର ଦୁଇଟି ସଦ୍ୟ ଘଟଣାରୁ ସ୍ପଷ୍ଟ । ପାଞ୍ଚପଡା ପଞ୍ଚାୟତର ଦେଉଳି ଗାଁର ଏକ ଦରିଦ୍ର ପରିବାର କାମ ନ ପାଇ ଆତ୍ମହତ୍ୟା କଲେ । (ଏମିସ୍, ୧୦-୧୨-୨୦୦୬, ଚାନ୍ଦବାଲି) ଏହି ଘଟଣାର ଦୁଇଦିନ ପରେ ହିଞ୍ଜିଳିଠାରେ ଦୁରାରୋଗ୍ୟ ବ୍ୟାଧି ପୀଡିତ ସ୍ୱାମୀଙ୍କ ଚିକିତ୍ସା କରି ନପାରି ସ୍ତ୍ରୀ ଦଉଡ଼ି ଦେଲେ । ରାଜ୍ୟରେ ଗ୍ରାମୀଣ ସ୍ୱାସ୍ଥ୍ୟ ମିଶନ୍ କାର୍ଯ୍ୟକାରୀ ହେଉଛି; ପଲ୍ଲୀସଭା, ପଞ୍ଚାୟତ ଅଛନ୍ତି; ତେବେ ବି ଏପରି ଘଟଣାମାନ ଘଟୁଛି । କେବିକେ ଜିଲ୍ଲାମାନଙ୍କରେ ଅବସ୍ଥା ଆହୁରି ଖରାପ । କାହାକୁ ଦୋଷ ଦେବା ? ସରକାରୀ ଅବହେଳା କଥା ସମସ୍ତେ ଜାଣନ୍ତି, କିନ୍ତୁ ପଲ୍ଲୀସଭା ଓ ପଞ୍ଚାୟତର ପ୍ରଥମ ଦାୟିତ୍ୱ - କ୍ଷୁଧା ଓ ଦାରିଦ୍ର୍ୟ ଦୂରୀକରଣ । ନବଗଠିତ ଯୋଜନା ବୋର୍ଡ ଏହି ଆହ୍ୱାନ ଗ୍ରହଣ କରି ସରକାରୀ ଯୋଜନାଗୁଡିକୁ ପୁନର୍ବିଚାର କରନ୍ତୁ ଓ ରାଜ୍ୟକୁ ନୂତନ ଦିଗ୍‌ଦର୍ଶନ ଦିଅନ୍ତୁ । ଏବେ ଏକାଦଶ ପଞ୍ଚବାର୍ଷିକ ଯୋଜନାପାଇଁ ରାଷ୍ଟ୍ରୀୟ ସ୍ତରରେ ବିଚାର ଆଲୋଚନା ସରି କାମ ଆରମ୍ଭ ହେଲାଣି । ୨୦୧୨ ରେ ଦ୍ୱାଦଶ ଓ ୨୦୧୭ରେ ତ୍ରୟୋଦଶ ଯୋଜନା ହେବ । ଏ ସମ୍ପର୍କରେ ଯୋଜନା କମିଶନ୍ ଏକ 'ଆପ୍ରୋଚ୍ ପେପର' ପ୍ରସ୍ତୁତ କରିଛନ୍ତି ଏବଂ ଏଥିରେ ଦେଶର ଦାରିଦ୍ର୍ୟକୁ କିପରି ଆହୁରି କମାଇ ହେବ (ନିରାକରଣ ନୁହେଁ) ସେଥିପାଇଁ ବିଭିନ୍ନ ପ୍ରସ୍ତାବ ରଖିଛନ୍ତି । ଅର୍ଥନୀତିରେ ଦଶ ପ୍ରତିଶତ ବୃଦ୍ଧି ଓ କୃଷିରେ ଚାରି ପ୍ରତିଶତ ବୃଦ୍ଧିର ଲକ୍ଷ୍ୟ ରଖାଯାଇଛି । ଏହାଦ୍ୱାରା ମୁଣ୍ଡ ପିଛା ଆୟ ଦୁଇଗୁଣ ବଢିଯିବ ବୋଲି ଆକଳନ କରାଯାଇଛି ।

ହାରାହାରି ମୁଣ୍ଡପିଛା ଆୟ ବଢ଼ିଗଲେ ଦାରିଦ୍ର୍ୟ କମିଯିବ - ଏହି ଯୁକ୍ତିକୁ ଏବେ ନୂଆ ଅର୍ଥନୀତି ବିଶାରଦମାନେ ମାନୁ ନାହାନ୍ତି । ଦାରିଦ୍ର୍ୟର ଯେଉଁ ତିନିଟି ଦିଗ ରହିଛି - ସେଥିରୁ ଆୟ ବା 'ଇନ୍‌କମ୍' ଗୋଟିଏ ଦିଗ । ଅନ୍ୟ ଦୁଇଟି ହେଲା - ନ୍ୟୁନତମ ଆବଶ୍ୟକତା ଯଥା:- ଖାଦ୍ୟ, ବସ୍ତ୍ର ଓ ଆଶ୍ରୟ ଏବଂ ନ୍ୟୁନତମ ସକ୍ଷମତା ବା ସାମର୍ଥ୍ୟ (କ୍ୱାଲିଟି) ଯଥା :- ସ୍ୱାସ୍ଥ୍ୟ, ଶିକ୍ଷା ଇତ୍ୟାଦି । ଏହାଛଡା ଗ୍ରାମାଞ୍ଚଳର ଅବସ୍ଥା ଓ ପରିବେଶ । ସେଗୁଡିକ ହେଲା, ପ୍ରତ୍ୟେକ ଗ୍ରାମକୁ ସବୁଦିନିଆ ରାସ୍ତା, ବିଜୁଳି, ଟେଲିକମ୍ୟୁନିକେସନ୍, ସକ୍ରିୟ ବିଦ୍ୟାଳୟ ଓ କାମିକା ସ୍ୱାସ୍ଥ୍ୟକେନ୍ଦ୍ର । ମନେ ରଖିବାକୁ ହେବ ଯେ ଏ ସୁବିଧାଗୁଡିକ କେବଳ ଶ୍ରମଭିତ୍ତିକ ନୁହେଁ । ଗ୍ରାମ୍ୟ ସୁନିଶ୍ଚିତ ରୋଜଗାର ଯୋଜନାଟି ହେଲା ଶ୍ରମଭିତ୍ତିକ । ପକ୍କା ରାସ୍ତା, ବିଦ୍ୟାଳୟ, ବିଜୁଳି, ସ୍ୱାସ୍ଥ୍ୟକେନ୍ଦ୍ର ନିର୍ମାଣରେ ଯେଉଁ ଖର୍ଚ୍ଚ ହୁଏ ତା'ର ମାତ୍ର ଶତକଡ଼ା ତିରିଶ ଭାଗପାଇଁ ଶାରୀରିକ ଶ୍ରମ ଆବଶ୍ୟକ ହୁଏ ଓ ପ୍ରାୟ ସତୁରି ଭାଗ 'ମ୍ୟାଟେରିଆଲ' କିଣିବାରେ ଓ ମେସିନ୍ ବ୍ୟବହାରରେ ଯାଏ । ଶାରୀରିକ ଶ୍ରମରେ କେବଳ ମାଟି ରାସ୍ତାମାନ ତିଆରି ହେବ

ଏବଂ ବର୍ଷାଋତୁରେ ଧୋଇଯିବ । ପୁଣି ନୂଆ ରାସ୍ତା, ଠିକାଦାର, କଣ୍ଟ୍ରାକ୍ଟର, ଏପରି ପଇସା ପାଣି ପରି ବୋହିଯିବ ।

ତେଣୁ ଦାରିଦ୍ର୍ୟ ନିରାକରଣର ପ୍ରଥମ ଆବଶ୍ୟକତା ହେଲା ଲୋକଙ୍କର ସକ୍ଷମତା ଓ ଶକ୍ତି ବଢ଼ାଇବା । ଏହି କାରଣରୁ ଗଣତାନ୍ତ୍ରିକ ଦେଶମାନଙ୍କରେ ଦୁର୍ଭିକ୍ଷ ପଡ଼ିବା କଷ୍ଟକର । ଏହା ହେଲେ ସରକାର ଭୁଶୁଡ଼ି ପଡ଼େ । ସକ୍ଷମତା ଓ ଶକ୍ତି ବଢ଼ାଇବାର ଚାରିଟି ପରୀକ୍ଷିତ ଉପାୟ ଅଛି । ପ୍ରଥମ ଉପାୟଟି ହେଲା ପୁଷ୍ଟିକର ଖାଦ୍ୟ ଓ ସ୍ୱାସ୍ଥ୍ୟରକ୍ଷାର ବ୍ୟବସ୍ଥା । ଗ୍ରାମର ପ୍ରତ୍ୟେକ ବୟସ୍କ ବ୍ୟକ୍ତିଙ୍କୁ ୨୪୦୦ କ୍ୟାଲୋରି ଥିବା ଖାଦ୍ୟ ମିଳୁଥିବ ଓ ସେ ଘଣ୍ଟାକ ମଧ୍ୟରେ ନିକଟତମ ଡାକ୍ତରଖାନାକୁ ପାଦରେ ଚାଲି ପହଞ୍ଚି ପାରୁଥିବେ । ଦ୍ୱିତୀୟ ଉପାୟ ହେଲା ପ୍ରତ୍ୟେକ ଜନନୀଙ୍କର ଉତ୍ତମ ସ୍ୱାସ୍ଥ୍ୟ, ଧାଈଙ୍କ ସହାୟତାରେ ବା ସ୍ୱାସ୍ଥ୍ୟକେନ୍ଦ୍ରରେ ଶିଶୁ ଜନ୍ମ, ମାତୃ ଓ ଶିଶୁମୃତ୍ୟୁ ହାରରେ ହ୍ରାସ । ତୃତୀୟ ଉପାୟଟି ହେଲା ଗାଁର ସବୁ ପିଲାଙ୍କପାଇଁ ଉତ୍ତମ ଶିକ୍ଷା ଓ ତାଲିମ ବ୍ୟବସ୍ଥା । ଏବଂ ସର୍ବୋପରି ଜମିପାଇଁ ଜଳ ଓ ହାତକୁ କାମ । ଚତୁର୍ଥ ଉପାୟଟି ହେଲା ଶିକ୍ଷା, ସ୍ୱାସ୍ଥ୍ୟ, କୃଷି ଓ ରୋଜଗାର ସମ୍ପର୍କୀୟ ସମସ୍ତ ଦାୟିତ୍ୱ ଗ୍ରାମପଞ୍ଚାୟତକୁ ହସ୍ତାନ୍ତର କରିବା । ଏହାଦ୍ୱାରା ଗ୍ରାମଶକ୍ତି ଓ ଲୋକଶକ୍ତି ବଢ଼ିବ ଏବଂ ଲୋକେ ନିଜ ନିଜ ଅଞ୍ଚଳର ଅବସ୍ଥା ସୁଧାରିବାକୁ ନିଜ ନିଜର ଚିନ୍ତା, ବିଚାର ଓ କାର୍ଯ୍ୟକ୍ରମ ନେଇ ଆଗେଇ ଆସିବେ । ସରକାର କେବଳ ରେଫରି କାମ କରିବେ । ଗ୍ରାମୀଣ ବ୍ୟାଙ୍କ ଭିକାରିମାନଙ୍କୁ ଭିକ୍ଷା ମାଗିବା ସଙ୍ଗେସଙ୍ଗେ ଅଳ୍ପ ଦାମ୍‌ର ଖୁଚୁରା ବିକ୍ରେତା ଦାୟିତ୍ୱ ଦେଇ ସଫଳତା ହାସଲ କରିଛି । ଗ୍ରାମର ଗରିବ ସ୍ତ୍ରୀ ଲୋକ ଗ୍ରାମୀଣ ଫୋନ୍ କିଣି 'ପିସିଓ' ଖୋଲିଲେଣି । ଗ୍ରାମାଞ୍ଚଳର ଗରିବ ଲୋକଙ୍କ ଆବଶ୍ୟକତା ସହରୀ ଲୋକଙ୍କଠାରୁ ଅଲଗା । ଭାରତରେ ଗରିବଙ୍କ ସଂଖ୍ୟା ଯେତିକି ଆମେରିକାର ଲୋକସଂଖ୍ୟା ସେତିକି । ବହୁଦେଶୀୟ କମ୍ପାନୀମାନଙ୍କପାଇଁ ଗରିବ ହେଉଛନ୍ତି ଏକ ବଡ଼ ମାର୍କେଟ୍ । ଏହି ୨୫-୩୦ କୋଟି ଗରିବ ଖାଉଟିଙ୍କ ଆବଶ୍ୟକତା ପୂରଣପାଇଁ ପଞ୍ଚାୟତରେ ଉତ୍ପାଦନ-ବଣ୍ଟନ ବ୍ୟବସ୍ଥା କରାଯାଇପାରିବ । ବହୁଦେଶୀୟ କମ୍ପାନୀ ଗାଁ ଅର୍ଥନୀତିରେ ପଶିବାର କୌଣସି ଆବଶ୍ୟକତା ନାହିଁ । କୋଲା, ନୁଡୁଲ୍, ବର୍ଗର, ପିଜା ଖାଇବା ଶିଖେଇ ଦେଲେ ଗ୍ରାମ ସହର ହୋଇଯିବ ନାହିଁ । ସହରର ମୁଖ୍ୟ ସୁଖ-ସୁବିଧା ଗାଁକୁ ମିଳିବା ଦରକାର ।

ଆମ ଦେଶରେ ଜାତି ଧର୍ମକୁ ନେଇ ଯେତିକି ଅଧିକ ବିବାଦ, ଗରିବୀକୁ ନେଇ ସେତିକି କମ୍ । କିନ୍ତୁ ଆନ୍ତର୍ଜାତିକ ସ୍ତରରେ ଦାରିଦ୍ର୍ୟ ଏକ ନିତିଦିନିଆ ଚର୍ଚ୍ଚାର ବିଷୟ - ବିଭିନ୍ନ ମତ, ବିବାଦ, ବିଚାର, ସଂଜ୍ଞା । ଭାରତରେ ଗ୍ରାମାଞ୍ଚଳର ଯେଉଁ ପୂର୍ଣ୍ଣବୟସ୍କ

ଲୋକଙ୍କୁ ୨୪୦୦ କ୍ୟାଲୋରିରୁ କମ୍ ଖାଦ୍ୟ ମିଳେ, ସେମାନେ ଦାରିଦ୍ର୍ୟ ସୀମାରେଖା ତଳେ । ଉଦାହରଣ ସ୍ୱରୂପ, ୧୦୦ ଗ୍ରାମ ଚାଉଳର କ୍ୟାଲୋରି ବା ଖାଦ୍ୟ ଶକ୍ତି ହେଲା ୧୭୫ ଓ ୧୦୦ ଗ୍ରାମ ଡାଲି ଜାତୀୟ ଖାଦ୍ୟର କ୍ୟାଲୋରି ୩୨୦, ଚାରିଖଣ୍ଡ ରୁଟି ହେଲା ୩୦୦ କ୍ୟାଲୋରି । ପ୍ରତ୍ୟହ ୨୪୦୦ କ୍ୟାଲୋରି ପାଇବାକୁ ହେଲେ ପ୍ରତି ବ୍ୟକ୍ତି ପିଛା ମାସିକ ଆୟ ୭୦୦ ଟଙ୍କା ଦରକାର ବୋଲି ହିସାବ କରାଯାଇଛି । ଇଏ ହେଲା ଦାରିଦ୍ର୍ୟର ଭାରତୀୟ ସଂଜ୍ଞା ।

ଯୁକ୍ତରାଷ୍ଟ୍ର ଆମେରିକାରେ ଯେଉଁ ବ୍ୟକ୍ତିଙ୍କର ମାସକୁ ଆୟ ୧୦୦୯ ଡଲାରରୁ କମ୍ (୪୭ ହଜାର ଟଙ୍କା) ସେ ଦରିଦ୍ର । ବିଶ୍ୱବ୍ୟାଙ୍କ୍ ହିସାବରେ ଯାହାଙ୍କର ଦୈନିକ ଆୟ ୪୭ ଟଙ୍କାରୁ କମ୍ ସେ ଅତ୍ୟନ୍ତ ଦରିଦ୍ର ଏବଂ ଯେ ପ୍ରତ୍ୟହ ୯୪ ଟଙ୍କା ରୋଜଗାର କରନ୍ତି ସେ ସାମାନ୍ୟ ଦରିଦ୍ର । ଅତ୍ୟନ୍ତ ଦାରିଦ୍ର୍ୟ ହେତୁ ପୃଥିବୀରେ ପ୍ରତିଦିନ ୨୦ ହଜାର ଲୋକ ମୃତ୍ୟୁମୁଖରେ ପଡ଼ିଥାନ୍ତି । ସେଥିରୁ ୮୦୦ ପିଲା ମ୍ୟାଲେରିଆଯୋଗୁଁ, ୫୦୦୦ ଲୋକ ଯକ୍ଷ୍ମାଯୋଗୁଁ ଓ ୭୦୦୦ ଲୋକ ଏଡ୍‌ସ ଯକ୍ଷ୍ମା ଡାଇରିଆ ଓ ଅନ୍ୟାନ୍ୟ ମାରାତ୍ମକ ରୋଗାକ୍ରାନ୍ତ ହୋଇ ମରିଥାନ୍ତି । କ୍ରମାଗତ କ୍ଷୁଧାର୍ତ୍ତ ଦୁର୍ବଳ ଶରୀରକୁ ଏହି ରୋଗମାନେ ଶୀଘ୍ର ଆକ୍ରମଣ କରନ୍ତି । ୨୦୦୬ ମସିହା ସୁଦ୍ଧା ପୃଥିବୀର ଅତ୍ୟନ୍ତ ଦରିଦ୍ରଙ୍କ ସଂଖ୍ୟା ହେଲା ୧୦୧ କୋଟି ୬୦ ଲକ୍ଷ । ସେଥିରୁ ଭାରତ ସମେତ ଦକ୍ଷିଣ ଏସିଆରେ ୪୩ କୋଟି ୭୦ ଲକ୍ଷ, ଆଫ୍ରିକା (ସବ୍-ସାହାରା) ୩୦ କୋଟି ୩୦ ଲକ୍ଷ, ପୂର୍ବ ଏସିଆ ଓ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳରେ ୨୧ କୋଟି ୪୦ ଲକ୍ଷ, ୟୁରୋପ୍‌ରେ ଏକ କୋଟି ଲୋକ ଏବଂ ଲାଟିନ୍ ଆମେରିକା, କାରିବିୟାନ୍ ଅଞ୍ଚଳରେ ୪ କୋଟି ୭୦ ଲକ୍ଷ ଦରିଦ୍ର ବସବାସ କରୁଛନ୍ତି ।

ଦାରିଦ୍ର୍ୟ କହିଲେ ଆମେ କ'ଣ ବୁଝୁ ? ବିଶ୍ୱ ସାମାଜିକ ବିକାଶ ସମ୍ମିଳନୀ ଏ ବିଷୟରେ ପାଞ୍ଚଦିନ କାଳ ଆଲୋଚନା କରି ମଧ କୌଣସି ନିଶ୍ଚିତ ସିଦ୍ଧାନ୍ତରେ ପହଞ୍ଚି ପାରିଲେ ନାହିଁ । ଶେଷ ଇସ୍ତାହାରରେ କୁହାଗଲା - ସବୁ ପ୍ରଗତିର ଲକ୍ଷ୍ୟ ଓ କେନ୍ଦ୍ର ମଣିଷ । କିନ୍ତୁ ଏସିଆ ଓ ଆଫ୍ରିକାର ମଣିଷମାନେ ଏକାଠି ବସି ଦାରିଦ୍ର୍ୟର ୧୪ ପ୍ରକାର ରୂପ ବର୍ଣ୍ଣନା କରିଛନ୍ତି । ସେଗୁଡିକ ହେଲା (୧) ଶାରୀରିକ ଓ ମାନସିକ ଅକ୍ଷମତା ଓ ସଦା ରୁଗ୍‌ଣ ଅବସ୍ଥା, (୨) ଜମି, ପଶୁ ସମ୍ପଦ ଓ କୃଷି ଉପକରଣର ଅଭାବ (୩) ମୃତ ଶରୀରକୁ ପୋଡ଼ିବା/ପୋତିବାପାଇଁ ପଇସା ଅଭାବ (୪) ପିଲାଙ୍କୁ ସ୍କୁଲ ପଠାଇବାକୁ ଘରେ ପଇସା ନାହିଁ (୫) ଖାଇବାପାଇଁ ପାଟି ବେଶୀ କାମ କରିବା ପାଇଁ ହାତ କମ୍ (୬) ଦୁର୍ଦ୍ଦିନରେ ସହାୟତାପାଇଁ ଘରେ ସମର୍ଥ ଲୋକଙ୍କ ଅଭାବ (୭)

ଘର ଛପର, ମରାମତିପାଇଁ କ୍ଷମତା ନାହିଁ (୮) ନିଶା ଅଭ୍ୟାସରୁ ଉଦ୍ଧାରପାଇଁ ଉପାୟ ନାହିଁ (୯) ଆପଦ ବିପଦ ବା ରୋଗରେ ପଡ଼ିଲେ କେହି ସାହାଭରସା ନାହାନ୍ତି (୧୦) ଛୋଟ ପିଲାଙ୍କୁ ମୂଲ ଲାଗିବାକୁ ପଡୁଛି (୧୧) ଏକାକୀ ପିତା, ଏକାକୀ ମାତା (୧୨) ଅର୍ଥାଭାବରୁ ଅପ୍ରିୟ କାର୍ଯ୍ୟପାଇଁ ବାଧ୍ୟ ବାଧକତା, ଯେପରିକି ହାତରେ ଅନ୍ୟର ପାଇଖାନା ସଫା ଓ ମୁଣ୍ଡରେ ମଳ ବହନ କରିନେବା (୧୩) ବର୍ଷକରୁ ନ ମାସ ଖାଦ୍ୟ ଅଭାବ ଓ (୧୪) ଜମି, ଜଳ, ଜଙ୍ଗଲ ଭଳି ଗ୍ରାମର ସାଧାରଣ ସମ୍ପଦ ଉପରେ ଅତ୍ୟଧିକ ନିର୍ଭରଶୀଳତା । ବିଶ୍ୱ ସ୍ୱାସ୍ଥ୍ୟ ଓ ଖାଦ୍ୟ ସଂଗଠନ ଏହା ସହ ଯୋଡ଼ିଛନ୍ତି "କଠୋର ବା ଘୋର ଦାରିଦ୍ର୍ୟ" (ଅଲଟ୍ରା ପଭର୍ଟି) । 'କଠୋର' ଦାରିଦ୍ର୍ୟଗ୍ରସ୍ତ ବ୍ୟକ୍ତି ନିଜ ଆୟର ଶତକଡ଼ା ଅଶୀ ଭାଗ ଖାଦ୍ୟପାଇଁ ଖର୍ଚ୍ଚ କଲେ ମଧ୍ୟ ନିଜ ଆବଶ୍ୟକତାର କେବଳ ୨୦ ଭାଗ ଖାଦ୍ୟ ପାଇଥାନ୍ତି । ଜାତି ଧର୍ମ ନିର୍ବିଶେଷରେ ଦେଶର ସମ୍ପତ୍ତି ଓ ଆୟ ଉପରେ ଏହି ବର୍ଗ ଓ ଗୋଷ୍ଠୀଙ୍କର ପ୍ରଥମ ଅଧିକାର ।

ଆଞ୍ଚଳିକ ବୈଷମ୍ୟ ତଦନ୍ତ କମିଶନଙ୍କ ଅନ୍ତରୀଣ ରିପୋର୍ଟ ଅନୁସାରେ ଓଡ଼ିଶାର ୩୧୪ଟି ବ୍ଲକ୍ ମଧ୍ୟରୁ ୮୬ଟି ବ୍ଲକ୍ ପଛୁଆ । ପୁଣି ଏହି ଅତି ପଛୁଆ ବ୍ଲକ୍‌ରେ କେଉଁମାନେ ଘୋର ଦାରିଦ୍ର୍ୟରେ ଅଛନ୍ତି ସେମାନଙ୍କୁ ଚିହ୍ନଟ କରିବା ଆବଶ୍ୟକ । ଏପରିକି ବିକଶିତ ଓ ବିକାଶଶୀଳ ବ୍ଲକ୍‌ରେ ମଧ୍ୟ ଘୋର ଦାରିଦ୍ର୍ୟ ପକେଟ୍ ସବୁ ରହିଛି ଯେଉଁଠି ଏବେ ବି ଲୋକେ ଭୋକ ଉପାସରେ ରହୁଛନ୍ତି । ଏମାନଙ୍କୁ ଠାବ କରିବା କଷ୍ଟକର ନୁହେଁ । ଗାଁର ସବୁ ଲୋକେ ସେମାନଙ୍କୁ ଜାଣନ୍ତି । ତିନି ଚାରି ହଜାର ଟଙ୍କାର ମାଇକ୍ରୋ କ୍ରେଡ଼ିଟ୍‌ଦ୍ୱାରା ଏମାନଙ୍କ ଅବସ୍ଥା ସୁଧୁରିବ ନାହିଁ । ୟୁନୁସ୍ ନିଜେ ସ୍ୱୀକାର କରିଛନ୍ତି ଯେ ପ୍ରତି ଶହେ ଜଣରେ କେବଳ ୫୮ ଜଣ ଅଣୁ ଋଣ ମାଧ୍ୟମରେ ଦାରିଦ୍ର୍ୟ ସୀମାରେଖା ଉପରକୁ ଉଠି ପାରୁଛନ୍ତି । ଯେଉଁ ଅଞ୍ଚଳରେ ରାସ୍ତାଘାଟ ଭଲ ଅବସ୍ଥାରେ ନାହିଁ, ଶିକ୍ଷା, ସ୍ୱାସ୍ଥ୍ୟ ସେବା ଅକାମୀ, ସହର, ବଜାର ନାହିଁ, ସେଠି ଘୋର ଦରିଦ୍ରଙ୍କ ସଂଖ୍ୟା ଅଧିକ ।

ଏ ବିଷୟରେ ଗଭୀର ଚିନ୍ତା ଆଲୋଚନା ଆବଶ୍ୟକ, ନୂଆ ପନ୍ଥା ଅନ୍ୱେଷଣ ଆବଶ୍ୟକ । ଦାରିଦ୍ର୍ୟପାଇଁ ମ୍ୟୁଜିୟମ ଆହୁରି ଅନେକ ଦୂର ଓ ରାସ୍ତା ଅନେକ ଲମ୍ବା ।

*୨୨ ଫେବୃଆରୀ, ୨୦୦୭*



# ଭାଷା ଭାସି ଯାଉଛି

ଭବଜଳରେ ଭାଷାମାନେ ଭାସିଯିବା ପ୍ରକ୍ରିୟା ଆରମ୍ଭ ହେଲାଣି । ଏବେ ସମ୍ବାଦ ପୃଷ୍ଠାରେ ବିଶିଷ୍ଟ ଭାଷାବିତ୍ ଡକ୍ଟର ଦେବୀ ପ୍ରସନ୍ନ ନିଜର ଉଦ୍‌ବେଗ ପ୍ରକାଶ କରି ଲେଖିଛନ୍ତି, କୋୟା ଭାଷାର ଅନୁବାଦକ ନ ଥିବାରୁ ବିଚାରପତି, ମାଲକାନଗିରିରୁ ଗିରଫ ହୋଇଥିବା କୋୟାଙ୍କର ବୟାନ ଲିପିବଦ୍ଧ କରିପାରିଲେ ନାହିଁ । ଅଭିଯୁକ୍ତଙ୍କୁ ଦୁଇବର୍ଷ ଜେଲ୍‌ରେ ରହିବାକୁ ପଡ଼ିଲା । ଏହା କେବଳ କୋରାପୁଟ ଆଦିବାସୀଙ୍କର ବା କୋୟା ଭାଷାର ସମସ୍ୟା ନୁହେଁ ବରଂ ଏବେ ଏକ ଆନ୍ତର୍ଜାତିକ ସମସ୍ୟା । ପୃଥିବୀରେ ଯେଉଁ ୬୯୦୦ ପ୍ରକାର ଭାଷା ରହିଛି ସେଥିରୁ କେବଳ ଛଅଟି ବ୍ୟବହାର ହୁଏ ମିଳିତ ରାଷ୍ଟ୍ରସଙ୍ଘରେ । ସେଗୁଡ଼ିକ ହେଲେ ଆରବିକ୍, ଚାଇନିଜ୍, ଇଂଲିଶ୍, ଫ୍ରେଞ୍ଚ୍, ରସିଆନ୍, ସ୍ପାନିସ୍ ଭାଷା । ଭାରତରେ ଯେଉଁ ୧୮୫୦ ପ୍ରକାର ଭାଷା, ଉପଭାଷା ରହିଛି, ସେଥିରୁ ଶତକଡା ମାତ୍ର ଏକ ଭାଗରୁ ଅଧିକ (୨୨) ଭାଷାଙ୍କୁ ସରକାରୀ ମାନ୍ୟତା ମିଳିଛି । ତା'ଭିତରୁ ତିନିଟି - ହିନ୍ଦୀ, ଇଂରାଜୀ ଓ ରାଜ୍ୟଭାଷା/ମାତୃଭାଷାକୁ ସ୍ୱତନ୍ତ୍ର ସ୍ଥାନ ଦେଇ ତ୍ରିଭାଷୀ ଫର୍ମୁଲାଦ୍ୱାରା ବହୁଭାଷୀ ଭାରତରେ ଭାଷା ବିବାଦର ସମାଧାନ ଆପାତତଃ କରାଯାଇଛି । ଏହି ଫର୍ମୁଲାର ଦୁର୍ଗୁଣ ହେଲା ଯାହାଙ୍କର ମାତୃଭାଷା ଓ ରାଷ୍ଟ୍ରଭାଷାରେ ଫରକ୍ ନାହିଁ ସେମାନଙ୍କର ପ୍ରାଧାନ୍ୟ ବଢ଼ିଯାଇଛି ।

ଉଦାହରଣ ସ୍ୱରୂପ, ଭାରତରେ ୪୦ କୋଟି ଲୋକଙ୍କ ମାତୃଭାଷା ହେଉଛି ରାଷ୍ଟ୍ରଭାଷା ହିନ୍ଦୀ ଓ ଏହି କାରଣରୁ ହିନ୍ଦୀ-ଭାଷୀ ଅଞ୍ଚଳରେ ତ୍ରିଭାଷୀ ସୂତ୍ର କାମ କରୁନାହିଁ । ଏହି ଅଞ୍ଚଳର ଲୋକେ ତିନିଟି ଭାଷା ଶିଖିବାକୁ ଚାହୁଁନାହାନ୍ତି । ଫଳରେ ଅଣହିନ୍ଦୀ ଅଞ୍ଚଳରେ ହିନ୍ଦୀର ପ୍ରାଧାନ୍ୟ ବଢ଼ିଚାଲିଛି, କାରଣ ଏହା ସମସ୍ତଙ୍କର ରାଷ୍ଟ୍ରଭାଷା । ତେଣୁ ଏବେ ଓଡ଼ିଶାରେ କୋୟା ଭାଷାର ଦଶା ଯାହା, ଆଗାମୀ ଦୁଇଶହ ବର୍ଷ ମଧ୍ୟରେ ଓଡ଼ିଆ ଭାଷାର ସେଇ ଦଶା ହେବ । ଯେଉଁ ଭାଷାରେ କହିବା ଲୋକଙ୍କ

ଅପେକ୍ଷା ବୁଝିବା ଓ ବ୍ୟବହାର କରିବା ଲୋକଙ୍କ ସଂଖ୍ୟା ଅଧିକ ହେବ ସେଇ ଭାଷାମାନେ ବଞ୍ଚି ରହିବେ । ଆଣ୍ଡାମାନର ଆଦିବାସୀମାନେ ନିଜ ଭାଷା ଭୁଲି ପୋର୍ଟବ୍ଲେଆର୍‌ରେ ହିନ୍ଦୀ ଗୀତ ବୋଲି ଭିକ ମାଗୁଛନ୍ତି ।

ଏବେ ଭାରତର ଆଞ୍ଚଳିକ ଭାଷା କହିବା ଓ ବୁଝିବା ଲୋକଙ୍କ ସଂଖ୍ୟା ଦ୍ରୁତଗତିରେ କମିବାକୁ ଲାଗିଛି । ମା ଯେଉଁ ଭାଷା କହୁଥିଲେ, ଝିଅଙ୍କ ଭାଷା ତାଠୁ ଅଲଗା ହେଲାଣି, ନାତି ନାତୁଣୀଙ୍କ ଭାଷା ଗୋସେଇଁ ବାପା ଆଉ ବୁଝୁ ନାହାନ୍ତି । ସେଥିରେ ଅନ୍ୟ ବଡ଼ ବଡ଼ ଭାଷା ପଶିଗଲେଣି । କୋୟାକୁ ଯେପରି ଓଡ଼ିଆ ଖାଇଗଲାଣି, ଓଡ଼ିଆକୁ ହିନ୍ଦୀ ଓ ହିନ୍ଦୀକୁ ଇଂରାଜୀ ଭାଷା ଗ୍ରାସ କଲାଣି । ମାଣ୍ଡାରିନ୍‌କୁ ଚିଙ୍ଗ୍‌ଲିସ୍ ଓ ହିନ୍ଦୀକୁ ଏବେ କୁହାଯାଉଛି ହିଙ୍ଗ୍‌ଲିସ୍ । ହିନ୍ଦୀ ଟିଭି, ସିନେମା ଦେଖି ଦେଖି ଓଡ଼ିଆମାନେ ବନ୍ଧୁଙ୍କୁ କହିଲେଣି "ନେକ୍ସଟ୍ ମିଟିଂ ପରେ ଡିନର ବେଳେ ମୁଲାକାତ ହବ" ବା "ଫ୍ରି ଟାଇମ୍‌ରେ ଡିସ୍‌କସନ୍ କରିବା" ଇତ୍ୟାଦି ।

ରାଜସ୍ଥାନ ଲୋକେ ରାଜସ୍ଥାନୀ ଭାଷା ଭୁଲିଗଲେଣି । ୟୁରୋପରେ ୱେଲ୍‌ସର ଲୋକେ ଆଉ ୱେଲ୍‌ସ ଭାଷା କହୁନାହାନ୍ତି । ସ୍କଟ୍‌ଲାଣ୍ଡର ମୂଳଭାଷା "ଗେଲିକ୍" ଏବେ ମୃତ୍ୟୁ ଶଯ୍ୟାରେ । ଅଧିକାଂଶ ଆଫ୍ରିକାବାସୀ ନିଜ ନିଜ ଭାଷାକୁ ଭୁଲି ଇଂରାଜୀକୁ ଆଦରି ନେଲେଣି । ବଙ୍ଗାଳୀ ତାମିଲ୍‌କୁ ବା ଓଡ଼ିଆ ମରାଠୀଙ୍କୁ ବାହା ହେଲେ ତାଙ୍କ ପିଲେ ହିନ୍ଦୀ, ଇଂରାଜୀରେ କଥା ହେଉଛନ୍ତି । ସ୍ୱାମୀ ସ୍ତ୍ରୀ ପରସ୍ପର ସହ ନିଜ ନିଜ ମାତୃଭାଷାରେ କଥା ହୋଇ ପାରୁନାହାନ୍ତି । ଏହି ପ୍ରକ୍ରିୟାରେ ଲକ୍ଷ ଲକ୍ଷ ଲୋକ ନିଜର ମାତୃଭାଷା ଭୁଲି ଯାଉଛନ୍ତି । ଏକଦା ଭାରତୀୟ ଭାଷାମାନଙ୍କର ଜନନୀ ସଂସ୍କୃତର ଅବସ୍ଥା ଏବେ 'କୋୟା'ଠାରୁ ଦୟନୀୟ । ବିଶ୍ୱବିଖ୍ୟାତ ଚିନ୍ତାନାୟକ ଉଇଲ୍ ଡୁରାଣ୍ଟ ସଦାବେଳେ କହୁଥିଲେ, ସବୁ ୟୁରୋପୀୟଙ୍କର ମାତା ହେଉଛି ଭାରତ ଓ ସବୁ ୟୁରୋପୀୟ (ଇଂରାଜୀ ସମେତ) ଭାଷାମାନଙ୍କର ଜନନୀ ହେଉଛି ସଂସ୍କୃତ । ଜନଗଣନା ହିସାବ ଅନୁସାରେ ୧୧୦ କୋଟି ଭାରତୀୟଙ୍କ ମଧ୍ୟରୁ କେବଳ ପଚାଶ ହଜାର ଲୋକ ସଂସ୍କୃତ କହିପାରନ୍ତି । ମଣିଷମାନେ ଏହି ଦେବଭାଷାରେ କଥାଭାଷା ନ ହେବାରୁ ଏହା ଏବେ ପ୍ରକୃତରେ ଦେବତାମାନଙ୍କ ଭାଷା ହୋଇ ରହିଯାଇଛି । ପୂଜା, ପାଠ, ହୋମ, ଯଜ୍ଞ, ବାହା, ବ୍ରତର ଭାଷାରେ ସୀମିତ ହୋଇ ରହିଛି । ମିଳିତ ରାଷ୍ଟ୍ରସଙ୍ଘରେ ଯଦିଓ ବିଭିନ୍ନ ଦେଶର ଭାଷାନୁବାଦ ବ୍ୟବସ୍ଥା ରହିଛି, ସେକ୍ରେଟାରିଏଟ୍‌ରେ କେବଳ ଇଂଲିଶ୍ ଓ ଫ୍ରେଞ୍ଚ୍ ଭାଷା ହେଲା ସରକାରୀ ।

ଏବେ ପୃଥିବୀର ୬୫୦୦ ଭାଷାଙ୍କ ମଧ୍ୟରୁ ପ୍ରତି ପନ୍ଦର ଦିନରେ ଗୋଟିଏ ଲେଖାଏଁ ଭାଷାର ଅପମୃତ୍ୟୁ ଘଟୁଛି । ଭାଷାବିତ୍‌ମାନଙ୍କ ମତରେ ଯେଉଁ ଉପଭାଷା ବା ଡାଏଲେକ୍ଟରେ ଲକ୍ଷେରୁ ଅଧିକ ଲୋକ କଥାଭାଷା ହେଉଥିବେ, ସେ ସବୁ କିଛି ସମୟ ପାଇଁ ବଞ୍ଚି ରହିବେ କିନ୍ତୁ ଏହି ଭାଷା କହୁଥିବା ଲୋକେ ଯଦି ବିଭିନ୍ନ ଓ ବିଚ୍ଛିନ୍ନ ଅଞ୍ଚଳରେ ରହିବେ ତେବେ ଭାଷାକୁ ବଞ୍ଚାଇବା କଷ୍ଟକର ହେବ । ଭାରତରେ ଭୋଜପୁରୀ, ମୈଥିଳୀ, ସାନ୍ତାଳୀ, ସିନ୍ଧୀ ଭାଷାର ଏଇ ଅବସ୍ଥା । କ୍ଷୁଦ୍ର ମିଜୋରାମ ରାଜ୍ୟରେ ପ୍ରତି ଦଶ କିଲୋମିଟରରେ ଲୋକଭାଷା ବଦଳି ଯାଇଥାଏ । ନାଗାଲାଣ୍ଡ ଲୋକେ ନିଜ ମାତୃଭାଷା ଭୁଲି ଇଂରାଜୀରେ କଥା ହୁଅନ୍ତି । ଏହି ପ୍ରକ୍ରିୟାରେ ଆଜି ସୁଦ୍ଧା ପୃଥିବୀର ୩୪୫୦ଟି ଭାଷା ନିଜର ଅସ୍ତିତ୍ୱ ହରାଇବାକୁ ବସିଲେଣି । ଇଂରାଜୀ ଭାଷା ବଞ୍ଚିବା ଓ ବ୍ୟାପିବାର ଐତିହାସିକ କାରଣ ସମସ୍ତଙ୍କୁ ଜଣା । କିନ୍ତୁ ଅନ୍ୟ ଏକ ମୁଖ୍ୟ କାରଣ ହେଲା, ଏହା ଏକ ସ୍ମାର୍ଟ ବା ଚତୁର ଭାଷା । ଏହାର ଶବ୍ଦ କୋଷ ଅନ୍ୟ ଭାଷାମାନଙ୍କରୁ ଶବ୍ଦ ସବୁ ନେଇ ନିଜ ଭିତରେ ମିଶାଇବାରେ ପାରଙ୍ଗମ । ଆଜିର ପରିସ୍ଥିତିରେ ଯେଉଁ ଭାଷା ସ୍ଥାଣୁ, ସେ ଭାଷା ବଞ୍ଚିବାର ଆଶା କମ୍ ।

ଭାଷା କେବଳ ଭାବ ଆଦାନ ପ୍ରଦାନର ମାଧ୍ୟମ ନୁହେଁ, ଏହା ଇତିହାସ, କଳା, ସଂସ୍କୃତି, ସାହିତ୍ୟ, ଜୀବନଶୈଳୀ, ସଭ୍ୟତା ଓ ଆତ୍ମସମ୍ମାନର ମୂଳ ଆଧାର । ସେଥିଲାଗି ପଚାଶରୁ ଅଧିକ ଦେଶରେ ରହୁଥିବା ଇହୁଦୀମାନେ ଯେତେବେଳେ ମାତୃଭୂମିକୁ ଫେରି, ଇସ୍ରାଏଲ୍ ପ୍ରତିଷ୍ଠା କଲେ; ସେମାନେ ପ୍ରଥମେ ଭୁଲି ଯାଇଥିବା ନିଜ ମାତୃଭାଷା 'ହିବ୍ରୁ'କୁ ନୂଆ ଜୀବନ ଦେଇ ରାଷ୍ଟ୍ରଭାଷାର ସ୍ଥାନ ଦେଲେ । ଚତୁର୍ଦ୍ଦଶ ଶତାବ୍ଦୀ ପୂର୍ବରୁ ଇଂରେଜମାନେ ପରାଧୀନ ଥିବାରୁ ନିଜ ଭାଷାରେ ଲେଖିବାକୁ ଡରୁଥିଲେ । ଫ୍ରାନ୍‌ସ ଲୋକେ ଆତ୍ମସମ୍ମାନରେ ଆଞ୍ଚ ଆସିବ ଭାବି ଇଂରାଜୀ କୁହନ୍ତି ନାହିଁ । ସେହି ଭାଷା ଆଜି ବିଶ୍ୱଭାଷା ହୋଇ ଠିଆ ହୋଇଛି ।

ଭାରତରେ ଭାଷାକୁ ଭିତ୍ତି କରି ରାଜ୍ୟ ପୁନର୍ଗଠନ କରାହୋଇଛି । ପୂର୍ବ ପାକିସ୍ତାନର ଲୋକେ, ଇସ୍‌ଲାମ୍ ନୁହେଁ, ବଙ୍ଗଳା ଭାଷାକୁ ନିଜର ପ୍ରକୃତ ପରିଚୟ କହି, ବିଦ୍ରୋହ କରି ପାକିସ୍ତାନଠାରୁ ଅଲଗା ହୋଇ ବାଂଲାଦେଶ ପ୍ରତିଷ୍ଠା କଲେ । ପଡ଼ୋଶୀ ଶ୍ରୀଲଙ୍କାରେ ତାମିଲ୍‌ଭାଷୀ ଲୋକେ ସିଂହଳ ଭାଷୀ ଲୋକଙ୍କଠାରୁ ଅଲଗା ହେବାପାଇଁ ଗତ ୩୦ ବର୍ଷ ହେଲା ସଂଗ୍ରାମ କରି ଆସୁଛନ୍ତି । ସୁଦୂର କାନାଡ଼ାରେ ଫ୍ରେଞ୍ଚ୍ ଭାଷୀ କ୍ୟୁବେକ୍ ଅଞ୍ଚଳ ଇଂରାଜୀ ଭାଷୀ କାନାଡ଼ାଠାରୁ ଅଲଗା ହୋଇ ସ୍ୱତନ୍ତ୍ର ଦେଶର ମର୍ଯ୍ୟାଦା ଦାବି କରିଆସୁଛି । ଇଣ୍ଡୋନେସିଆର ପ୍ରାୟ ୧୫ ହଜାର ଦ୍ୱୀପ

ଉପଦ୍ୱୀପ ଗୁଡିକୁ ଏକାଠି ରଖିବାପାଇଁ ଏକ ସ୍ଲୋଗାନ୍ ଦିଆଯାଏ - "ସାତୁ ଦେଶା, ସାତୁ ବଂଶା, ସାତୁ ବାହାଷା" ଅର୍ଥାତ୍ ଆମେ ସମସ୍ତେ ଏକଦେଶୀ, ଏକବଂଶୀ ଓ ଏକଭାଷୀ । ମଧ୍ୟପ୍ରାଚ୍ୟର ମୁସ୍‌ଲିମ୍ ଦେଶମାନେ ଭାଷା ଓ ସଂସ୍କୃତି କାରଣରୁ ଅଲଗା ଅଲଗା ରହିଛନ୍ତି । ଏବେ ତୁର୍କୀ ପାର୍ଲିଆମେଣ୍ଟ ସେଠାରେ ରହୁଥିବା କୁର୍ଦ ଜାତିର ଲୋକଙ୍କୁ ନିଜ ଭାଷାରେ ପାଠ ପଢ଼ିବାକୁ ଅଧିକାର ଦେଇଛନ୍ତି । ପୂର୍ବରୁ ଏଇ ଅଧିକାର କାଢ଼ି ନିଆଯାଇଥିଲା ।

ମଣିଷ ଏକ ସାମାଜିକ ପ୍ରାଣୀ - ଏକଥା ସମସ୍ତଙ୍କୁ ଜଣା । କିନ୍ତୁ ମଣିଷର ଦ୍ୱିତୀୟ ସଂଜ୍ଞା ହେଲା, ସେ ଏକ ଭାଷା ବା କଥା କହୁଥିବା ପ୍ରାଣୀ (ସ୍ପିକିଙ୍ଗ ଆନିମଲ) । ଯେଉଁ ଭାଷା ଓ ସାହିତ୍ୟ ସୃଷ୍ଟିପାଇଁ ମାନବ ସମାଜକୁ ହଜାର ହଜାର ବର୍ଷ ଲାଗିଥିଲା ସେ ଭାଷାମାନଙ୍କର ବର୍ତ୍ତମାନର ଅବସ୍ଥା ଉଦ୍‌ବେଗଜନକ । "ଏଥ୍‌ନୋଲଗ୍ ଲାଙ୍ଗୁଏଜ୍ ଅଫ୍ ଦି ୱାର୍ଲଡ୍" ରିପୋର୍ଟ ଅନୁସାରେ ବିଭିନ୍ନ ସମୟରେ ସୃଷ୍ଟି ହୋଇଥିବା ପୃଥିବୀର ୬୯୧୨ ଭାଷା ମଧ୍ୟରୁ ଏସିଆ ମହାଦେଶ ହେଉଛି ସର୍ବାଧିକ ୨,୨୬୯ ଭାଷାର ଜନନୀ ଏବଂ ସବୁଠାରୁ କମ୍ ସଂଖ୍ୟକ ଭାଷା - ୨୩୯ - ସୃଷ୍ଟି ହୋଇଥିଲା ୟୁରୋପରେ । ଏସିଆ ପଛକୁ ଆଫ୍ରିକାରେ ସୃଷ୍ଟି ହୋଇଥିଲା ୨,୦୯୨ ଭାଷା । ଉଭୟ ଆମେରିକାରେ ୧୦୦୨ ପ୍ରକାର ଏବଂ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳରେ ୧,୩୧୦ ପ୍ରକାର ଭାଷା ଥିଲା । ଏମାନଙ୍କ ମଧ୍ୟରୁ ଅଧିକାଂଶ ମରି ହଜିଗଲାଣି । କାରଣ 'ସ୍ପିକିଂ ଆନିମଲ୍'ମାନେ ଆଉ ସେ ଭାଷା କହୁନାହାନ୍ତି - ତେଣୁ ଅନୁବାଦର ଆବଶ୍ୟକତା ପଡୁନାହିଁ । ଅଷ୍ଟ୍ରେଲିଆର ଆଦିମ ଅଧିବାସୀ କହୁଥିଲେ ୪୦୦ ପ୍ରକାର ଉପଭାଷା । ଏବେ ମାତ୍ର ୨୨ଟି ବଞ୍ଚିଛନ୍ତି । ଭାରତରେ ଓଡ଼ିଆମାନଙ୍କର ବଡ଼ ଅଭ୍ୟାସ ହେଲା- 'ଯେ ଦେଶ ଯାଇ ନିଜର ଭାଷା ଭୁଲି ଯାଇ ସେ ଭାଷା କହି' (ସେ ଫଳ ଖାଇ ନୁହେଁ) । ତେଣୁ ଓଡ଼ିଆ ଭାଷା ଉପରେ ଚଡ଼କ ଆଗ ପଡ଼ିପାରେ । ସୌଭାଗ୍ୟବଶତଃ ଏବେ ସୁଦୂର ଆମେରିକାର କାଲିଫର୍ଣିଆ ରାଜ୍ୟରେ ପ୍ରବାସୀ-ବିଦେଶୀ ଓଡ଼ିଆମାନେ ଏକାଠି ହୋଇ ଏକ ଓଡ଼ିଆ ଭାଷା ଶିକ୍ଷା ଅନୁଷ୍ଠାନ ପ୍ରତିଷ୍ଠା କରି ତା ନାଁ ଦେଇଛନ୍ତି - "ଚାଲ ଆମେ ଓଡ଼ିଆ ଶିଖିବା ।" ବିଦେଶ ଯାଇ ନୂଆ ଭାଷା ଶିଖିବା ଭଲ କଥା, କିନ୍ତୁ ମାତୃଭାଷାକୁ ଭୁଲି କରି ନୁହେଁ । ଏବେ କାନାଡ଼ିଆନ୍ ବୈଜ୍ଞାନିକମାନେ କହିଲେଣି, ଅଧିକ ଭାଷା କହିବା ଅଧିକ ସ୍ୱାସ୍ଥ୍ୟକର । ଏହାଦ୍ୱାରା ମସ୍ତିଷ୍କରେ ଅଧିକ ରକ୍ତ ସଂଚାଳନ ହୁଏ ଏବଂ ଆଲ୍‌ଜିମର ଓ ଡିମେନ୍‌ସିଆ ଭଳି ଭୁଲା ରୋଗରୁ ରକ୍ଷା ମିଳେ ।

ଦକ୍ଷିଣ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳରେ ଏକ କ୍ଷୁଦ୍ର ରାଜ୍ୟ ପାପୁଆ ନିଉ ଗିନି ପୃଥିବୀର ସବୁଠାରୁ ବହୁ ଭାଷୀ ଦେଶ । ଏ ଦେଶରେ ପ୍ରାୟ ୮୦୦ ରୁ ଅଧିକ ଭାଷା ଓ ଉପଭାଷା । ଜନସଂଖ୍ୟା ଏକ କୋଟି ଏବଂ ଇଂରାଜୀ, ଜର୍ମାନୀ, ସ୍ପାନିସ୍, ମାଳୟ ଓ ଆଦିବାସୀଙ୍କ ଭାଷାକୁ ନେଇ ଯେଉଁ ଭେଜାଲ୍ ଭାଷା 'ଟୋକ୍‌ପିସିନ୍' ସୃଷ୍ଟି ହେଲା, ତାକୁ କହନ୍ତି ଦେଶର ଅଧେ ଲୋକ । ଏ ଦେଶରେ ଶିକ୍ଷା ଆରମ୍ଭର ପ୍ରଥମ ତିନିବର୍ଷ ପାଇଁ ପ୍ରତ୍ୟେକ ପିଲା ନିଜ ନିଜର ମାତୃଭାଷାରେ ଶିକ୍ଷା ଲାଭ କରିବା ବାଧ୍ୟତାମୂଳକ । ଫଳରେ ଏହି ଦେଶରେ ମଝିରୁ ପାଠ ପଢ଼ା ଛାଡ଼ି ଯିବା ବା ଡ୍ରପ୍ ଆଉଟ୍ ରେଟ୍ କମିଯାଇଛି ଓ ପିଲାମାନେ ଚଞ୍ଚଳ ରାଷ୍ଟ୍ରଭାଷା ଇଂରାଜୀ ଶିଖୁଛନ୍ତି । ଏଠାରେ ପ୍ରଥମ ତିନି ବର୍ଷ ୩୬୯ ଭାଷା ମାଧ୍ୟମରେ ଶିକ୍ଷା ଦିଆଯାଏ । ଫିଲିପାଇନ୍‌ସ, ବର୍କିନାଫାସୋ, ମାଲି, ନାଇଜେରିଆ, ଜାମ୍ବିଆ, ଗୁଆତେମାଲା, ବ୍ରାଜିଲ୍, ମେକ୍ସିକୋ, ବଲିଭିଆ, ପାରାଗୁଏ, ପେରୁ ଦେଶରେ ପିଲାଙ୍କୁ ଆଗେ ନିଜ ମାତୃଭାଷାରେ ଶିକ୍ଷା ଦିଆଯିବା ଫଳରେ ଖୁବ୍ ଭଲ ଫଳ ମିଳିଛି ।

କୋରାପୁଟ କୋୟାଙ୍କପାଇଁ କୋର୍ଟ ଅନୁବାଦକ ପାଇଲେ ନାହିଁ, କିନ୍ତୁ ଆଫ୍ରିକାର ଏକ ସ୍ୱାଧୀନ ରାଜ୍ୟ କ୍ୱାକ୍ୱେର ବିଚାରପତି, ଓକିଲ, ମହକିଲ ଓ ଆସାମୀ 'ସେସୋଥୋ' ଭାଷୀ ହୋଇଥିଲେ ବି ବିଚାରକାର୍ଯ୍ୟ ଓ ମାଧ୍ୟମ ଇଂରାଜୀ ଭାଷାରେ ଚାଲୁଥିବାରୁ ଓ ତାହା ଆସାମୀ ବୁଝି ନ ପାରିବାରୁ କୋର୍ଟ ଇଂରାଜୀରୁ 'ସେସୋଥ' ଭାଷାନ୍ତରପାଇଁ ଅନୁବାଦକ ନିଯୁକ୍ତ କଲେ । ତେଣୁ ଓଡ଼ିଆରୁ କୋୟା ଏବଂ କୋୟାକୁ ଓଡ଼ିଆରେ ଅନୁବାଦ କରିବା ଏତେବଡ଼ କଷ୍ଟକର କାର୍ଯ୍ୟ ନୁହେଁ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନୀ ସେନାପତିଙ୍କ ଜାପାନୀ ଭାଷାରେ ପଠାଯାଇଥିବା ସନ୍ଧି ପ୍ରସ୍ତାବକୁ ବୁଝି ନ ପାରି ଆମେରିକା ହିରୋସୀମା ଓ ନାଗାସାକୀରେ ପରମାଣୁ ବୋମା ପକାଇ ଥିଲା ବୋଲି କେତେକ ବିଶ୍ୱାସ କରନ୍ତି । ଭାଷାର ଭାବ, ଅର୍ଥ ଏବଂ ପ୍ରୟୋଗ ଠିକ୍ ଭାବରେ ହେଲେ ବ୍ୟକ୍ତିଗତ, ସାମାଜିକ ଓ ଅନ୍ତଃରାଷ୍ଟ୍ରୀୟ ସ୍ତରରେ ବହୁ ସମସ୍ୟା ସହଜରେ ସମାଧାନ ହୋଇଯିବ ।

ଏହା ସତ ଯେ ଲୋକେ ନ କହିଲେ ଭାଷା ବଞ୍ଚିବ ନାହିଁ । ଯଦି ପିତାମାତା ତାଙ୍କ ପିଲାଙ୍କୁ ଆରମ୍ଭରୁ ଇଂରାଜୀ ଓ ହିନ୍ଦୀ ଭାଷା ସ୍କୁଲରେ ନାମ ଲେଖାଇବେ, ସରକାର ଯେତେ ଚେଷ୍ଟା କଲେ ବି ଆଞ୍ଚଳିକ ଭାଷାମାନେ ବଞ୍ଚିପାରିବେ ନାହିଁ । କିନ୍ତୁ ଏକଥା ବି ସତ, ଧର୍ମନିରପେକ୍ଷତା ଅପେକ୍ଷା ଭାଷା ନିରପେକ୍ଷତା ବା ଭାଷା ସାମ୍ୟବାଦ ଅନୁସରଣ କରିବା ଅଧିକ କଷ୍ଟକର । ସବୁ ଭାଷା, ଉପଭାଷାକୁ ରାଷ୍ଟ୍ରୀୟ ଭାଷାର

ମର୍ଯ୍ୟାଦା ମିଳିପାରିବ ନାହିଁ । କିନ୍ତୁ, ଅଳ୍ପ ଲୋକ କହୁଥିବା ଭାଷା ଅତି କମ୍‌ରେ ପ୍ରାଥମିକ ସ୍ତର ପର୍ଯ୍ୟନ୍ତ ସେହି ଲୋକଙ୍କର ମାତୃଭାଷା ରୂପେ ପଢା ଯାଇପାରିବ । ଏହି ସ୍ତର ପାରିହେଲା ପରେ ପ୍ରତ୍ୟେକ ବ୍ୟକ୍ତିଙ୍କୁ ତିନିଟି ଭାଷା ଶିଖିବାକୁ ପଡ଼ିବ । (୧) ରାଷ୍ଟ୍ରୀୟ ଭାଷା (୨) ଅନ୍ତରାଷ୍ଟ୍ରୀୟ ଭାଷା ଓ (୩) ମାତୃଭାଷା ବା ରାଜ୍ୟର ଭାଷା । ଆଞ୍ଚଳିକ ଭାଷାକୁ ବଞ୍ଚାଇବାକୁ ହେଲେ ଆତ୍ମ ସ୍ୱାର୍ଥ ତ୍ୟାଗ, ଦୂରଦୃଷ୍ଟି ଓ ସାମୂହିକ ଚିନ୍ତା ଓ ଅଭିଭାବକମାନଙ୍କ ସହଯୋଗ ପ୍ରଥମ ଆବଶ୍ୟକତା ।

*୯ ମାର୍ଚ୍ଚ, ୨୦୦୭*



# ସହରୀକରଣର ସୁଅ- ଭାରତ ହେବ 'ଇଣ୍ଡିଆ'

ଏବେ ଆମ ଦେଶରେ ଛୋଟ ବଡ଼ ହୋଇ ପ୍ରାୟ ସାଢ଼େ ସାତଲକ୍ଷ ଗାଁ ଅଛି । ଓଡ଼ିଶାରେ ଗାଁ ସଂଖ୍ୟା ହେଲା ୫୧,୦୫୮ ଓ ପ୍ରାୟ ୮୫ ଭାଗ ଲୋକ ରହନ୍ତି ଗାଁରେ । ଭାରତ ଏକ ଗ୍ରାମପ୍ରଧାନ ଦେଶ ଓ ଏହାର ଆତ୍ମା ଗାଁ ବୋଲି ଗାନ୍ଧିଜୀ ସହରୀ ଲୋକଙ୍କୁ ବାରମ୍ବାର ମନେ ପକାଇ ଦେଉଥିଲେ । ଗ୍ରାମ ସ୍ୱରାଜ ଥିଲା ତାଙ୍କର ସ୍ୱପ୍ନ ଓ ତାକୁ ସାକାର କରିବାପାଇଁ ଗ୍ରାମପଞ୍ଚାୟତ ଗଢ଼ାହେଲା । ସମ୍ବିଧାନକୁ ସଂଶୋଧନ କରି ପଞ୍ଚାୟତମାନଙ୍କୁ ଅଧିକ କ୍ଷମତା ଦିଆଗଲା । କେନ୍ଦ୍ରରେ ଓ ପ୍ରତି ରାଜ୍ୟରେ ପଞ୍ଚାୟତିରାଜ ମନ୍ତ୍ରାଳୟ ପ୍ରତିଷ୍ଠା କରାଗଲା । କିନ୍ତୁ, ଆସନ୍ତା ୨୫-୩୦ ବର୍ଷ ମଧ୍ୟରେ ଭାରତ ଆଉ ଗ୍ରାମ ପ୍ରଧାନ ଦେଶ ହୋଇ ରହିବ ନାହିଁ, ଭାରତ ହୋଇଯିବ ଇଣ୍ଡିଆ, ଏକ ସହରପ୍ରଧାନ ଦେଶ । ଓଡ଼ିଶା, ବିହାର, ହିମାଚଳ ପ୍ରଦେଶ ଓ ଆସାମ - ଏଇ ଚାରୋଟି ରାଜ୍ୟ ଗ୍ରାମପ୍ରଧାନ ଦେଶର ଶେଷ ପରିଚୟ ହୋଇ ରହିବେ - ଆସନ୍ତା ପଚାଶ ବର୍ଷ ପର୍ଯ୍ୟନ୍ତ ।

ରେଜିଷ୍ଟ୍ରାର୍ ଜେନେରାଲ୍, ଜନଗଣନା କାର୍ଯ୍ୟାଳୟଦ୍ୱାରା ଏକ ସଦ୍ୟ ପ୍ରକାଶିତ ରିପୋର୍ଟ ଅନୁସାରେ ୨୦୨୬ ମସିହା ସୁଦ୍ଧା ଭାରତର ଅନେକ ଅଂଶ ସହରପ୍ରଧାନ ହୋଇଯିବ । ସେତେବେଳକୁ ଦେଶରେ ପ୍ରତି ଶହେ ଜଣରେ ୩୮ ଜଣ ରହୁଥିବେ ସହରରେ । କିନ୍ତୁ ତା'ପୂର୍ବରୁ ୨୦୦୨ ମସିହାରେ 'ଗୋଆ' ରାଜ୍ୟ ଭାରତର ପ୍ରଥମ ସହରୀ ପ୍ରଦେଶ ହୋଇ ସାରିଲାଣି । ଗୋଆରେ ଏବେ ୫୦ ଭାଗରୁ ଅଧିକ ଲୋକ ସହରାଞ୍ଚଳରେ ରହୁଛନ୍ତି ଏବଂ ୨୦୨୬ ମସିହାରେ ଏଠାରେ ପ୍ରାୟ ୭୮ ଭାଗ ଲୋକ ସହରୀ ହୋଇଯିବେ । ସେହିପରି ୨୦୦୩ ରୁ ମିଜୋରାମ ମଧ୍ୟ ସହରପ୍ରଧାନ ରାଜ୍ୟ

ହୋଇସାରିଲାଣି । ଦିଲ୍ଲୀ, ଚଣ୍ଡିଗଡ଼, ପଣ୍ଡିଚେରୀ, ଆଣ୍ଡାମାନ ନିକୋବର, ଦାଦ୍ରା ନଗର ହାଭେଲି ଏହା ଆଗରୁ ସହରାଞ୍ଚଳ ହୋଇଗଲେଣି । ପଞ୍ଜାବ, ଗୁଜୁରାଟ, ଅରୁଣାଚଳ ପ୍ରଦେଶ, ମହାରାଷ୍ଟ୍ର, ତାମିଲନାଡୁ, ଆନ୍ଧ୍ରପ୍ରଦେଶ, ପଶ୍ଚିମବଙ୍ଗ, କେରଳ, ହରିଆନା ଓ କର୍ଣ୍ଣାଟକ ଦ୍ରୁତ ଗତିରେ ସହରୀକରଣ ସୁଅରେ ଆଗଉଛନ୍ତି । କୋଡ଼ିଏ ବର୍ଷ ଭିତରେ ତାମିଲନାଡୁର ୭୫ଭାଗ ଲୋକ ରହିବେ ସହରାଞ୍ଚଳରେ । ସେନ୍‌ସସ୍ ୨୦୦୧ ରିପୋର୍ଟ ଅନୁସାରେ ଗତ ଦଶବର୍ଷ ଭିତରେ କାମଧନ୍ଦା ଅନ୍ୱେଷଣରେ ୯୮ ଲକ୍ଷ ଲୋକ ନିଜ ଭିଟାମାଟି ଛାଡ଼ି ଦେଲେଣି । ଅନ୍ୟ ଏକ ହିସାବ ଅନୁସାରେ ଏ ସଂଖ୍ୟା ୧୪୦ ଲକ୍ଷ ।

'ୟୁନାଇଟେଡ୍ ନେସନ୍‌ସ'ର ଏକ ହିସାବ ଅନୁସାରେ ୨୦୦୮ ମସିହା ଅଗଷ୍ଟ ୧୬ ତାରିଖ ପରେ ଛଅ ହଜାର ବର୍ଷର ଗ୍ରାମ ଚରିତ୍ରର ସୀମାରେଖା ଡେଇଁ ପୃଥିବୀ ହୋଇଯାଇଥିବ ସହରପ୍ରଧାନ । କାରଣ ସେଦିନଠାରୁ ପୃଥିବୀର ଅଧେରୁ ଅଧିକ ଲୋକ ସହରୀ ଜନ୍ତୁ ହୋଇଯିବେ । ଉନବିଂଶ ଶତାବ୍ଦୀର ପ୍ରାରମ୍ଭରେ ସମଗ୍ର ପୃଥିବୀ ଜନସଂଖ୍ୟାର ମାତ୍ର ତେରଭାଗ ରହୁଥିଲେ ସହରରେ । ୧୯୫୦ ମସିହା ବେଳକୁ ଏ ସଂଖ୍ୟା ବଢ଼ିଗଲା ଶତକଡ଼ା ୨୯ ଭାଗକୁ ଓ ୨୦୦୫ ମସିହାରେ ୪୯ ଭାଗକୁ ଅର୍ଥାତ୍ ୩୨୦ କୋଟିକୁ । ୨୦୩୦ ମସିହାରେ ୪୯୦ କୋଟି ଲୋକ ରହୁଥିବେ ସହରାଞ୍ଚଳରେ । କିନ୍ତୁ ସେଥିରୁ ୭୪ ଭାଗ ରହିବେ ଦରିଦ୍ର ଓ ବିକାଶଶୀଳ ଦେଶମାନଙ୍କରେ । ଆଫ୍ରିକାରେ ରହିବେ ୩୮ ଭାଗ ଓ ଏସିଆରେ ୪୦ ଭାଗ ଅର୍ଥାତ୍ ପ୍ରତି ଦଶ ଜଣ ସହରବାସୀଙ୍କ ମଧ୍ୟରୁ ଅତିକମ୍‌ରେ ୭ ଜଣ ରହିବେ ଏସିଆ ଓ ଆଫ୍ରିକାରେ (ୱାର୍ଲଡ ଅର୍ଗାନାଇଜେସନ୍ ପ୍ରସ୍‌ପେକ୍‌ଟସ୍ ୨୦୦୫) । ଲାଟିନ୍ ଆମେରିକା ଓ କାରିବିଆନ୍ ଅଞ୍ଚଳରେ ଏବେ ଶହେରୁ ୭୭ ଲୋକେ ସହରରେ ରହୁଛନ୍ତି । ୨୦୩୦ରେ ଏହା ବଢି ୮୪ ହେବ । ୟୁରୋପରେ ୭୮ ପର୍ସେଣ୍ଟ ଓ ଉତ୍ତର ଆମେରିକାରେ ୮୧ ପର୍ସେଣ୍ଟ ଲୋକ ହୋଇଯିବେ ସହରୀ ।

ଜନସଂଖ୍ୟାକୁ ନେଇ ସହରମାନଙ୍କୁ ଟାଉନ୍‌ସିଟି, ମେଟ୍ରୋପଲିସ୍, ମେଗାସିଟି, ମେଗାଲୋପଲିସ୍ ଇତ୍ୟାଦିରେ ନାମକରଣ କରାଯାଏ । ଓଡ଼ିଶାରେ ସହର ଓ ନଗର ଏହି ଦୁଇ ପ୍ରକାର ସହରାଞ୍ଚଳ ରହିଛି । ଆନ୍ତର୍ଜାତିକ ସ୍ତରରେ ଏହାକୁ ପାଞ୍ଚଟି ଶ୍ରେଣୀରେ ବିଭକ୍ତ କରାଯାଇଛି । କୋଟିଏ ବା ତଦୂର୍ଦ୍ଧ୍ୱ ଲୋକ ରହୁଥିବା ଅଞ୍ଚଳ, ୫୦ ଲକ୍ଷରୁ ୯୯ ଲକ୍ଷ ଲୋକ ରହୁଥିବା ଅଞ୍ଚଳ, ୧୦ ଲକ୍ଷରୁ ୪୯ ଲକ୍ଷ ଅଞ୍ଚଳ, ୫ ଲକ୍ଷରୁ ୧୦ ଲକ୍ଷ ଅଞ୍ଚଳ ଓ ୧ ଲକ୍ଷ ରୁ ୫ ଲକ୍ଷ ଅଧିବାସୀ ..ଥିବା ସହର । ଓଡ଼ିଶାରେ ଦଶ ପନ୍ଦର ହଜାର ଲୋକ ଥିବା ବହୁ ଛୋଟ ସହର ଅଛି । ପୃଥିବୀରେ

କୋଟିଏରୁ ଅଧିକ ଲୋକ ରହୁଥିବା ୨୦ଟି ମହାନଗରୀ ଅଛନ୍ତି । ବିଶ୍ୱର ସବୁଠାରୁ ବଡ଼ ମହାନଗର ହେଲା ଜାପାନ୍‌ର ଟୋକିଓ । ଏହାର ଜନସଂଖ୍ୟା ତିନି କୋଟି ପଚାଶ ଲକ୍ଷ । ସମଗ୍ର କେନିଆ ଦେଶର ଜନସଂଖ୍ୟା (୩ କୋଟି ୪୦ ଲକ୍ଷ) ଠାରୁ ଦଶଲକ୍ଷ ଅଧିକ । ତା'ତଳକୁ ନ୍ୟୁୟର୍କ ଓ ମେକ୍ସିକୋ ସିଟି (କୋଟିଏ ନବେ ଲକ୍ଷ), ସାଓପଲୋ ଓ ମୁମ୍ବାଇ (କୋଟିଏ ଅଶୀଲକ୍ଷ) - ଏମିତି କୋଡିଏଟି । ୨୦୧୫ ମସିହାରେ ମୁମ୍ବାଇ ମହାନଗରୀ ନ୍ୟୁୟର୍କକୁ ଟପି ପୃଥିବୀର ଦ୍ୱିତୀୟ ଜନୁବହୁଳ ମହାନଗରୀ ହେବ । କିନ୍ତୁ ଶତକଡ଼ା ୫୧ ଭାଗ ସହରାଞ୍ଚଳ ଲୋକ ମହାନଗରରେ ନ ରହି ଛୋଟବଡ଼ ସହରମାନଙ୍କରେ ରହନ୍ତି । ଅଧିକାଂଶ ଗ୍ରାମାଞ୍ଚଳ ଏବେ ଇଂରାଜୀ କବି ୱର୍ଡ୍‌ସ୍‌ୱର୍ଥଙ୍କ 'ଡେଜର୍ଟେଡ୍ ଭିଲେଜ' ପାଲଟିଲେଣି । କବି ସଚ୍ଚି ରାଉତରାୟଙ୍କ 'ଛୋଟ ମୋର ଗାଁଟି'କୁ ପଚାଶ ବର୍ଷ ପରେ ଲୋକେ ଖୋଜିଲେ ମିଳିବା କଷ୍ଟକର ହେବ । ଭୂଗୋଳ ପୋଥି ପତରରେ ସତରେ ସେମାନଙ୍କ ନାଁ ନଥିବ ବା ସେମାନେ ସହରୀ ହୋଇଯାଇଥିବେ ବା ସହରରେ ମିଶି ଯାଇଥିବେ ।

କିନ୍ତୁ ଯେଉଁସବୁ ଦେଶରେ ବହୁ ବର୍ଷ ପୂର୍ବେ ଦ୍ରୁତ ସହରୀକରଣ ପ୍ରକ୍ରିୟା ଆରମ୍ଭ ହୋଇଥିଲା, ସେଥିରୁ ଅନେକ ଦେଶରେ ଏବଂ ବଡ଼ ବଡ଼ ସହରରେ ବିପରୀତ ସହରୀକରଣ ଆରମ୍ଭ ହେଲାଣି । ଡେନ୍‌ମାର୍କର କୋପେନ୍‌ହାଗେନ୍ ସହରରେ; ଜର୍ମାନୀର ହାନୋଭରରେ; ଇଟାଲୀର ଫ୍ଲୋରେନ୍‌ସ, ମିଲାନ୍, ରୋମ୍‌ରେ; ନେଦରଲାଣ୍ଡର ଆମଷ୍ଟରଡାମ୍ ଓ ରୋଟରଡାମରେ; ଆମେରିକାର ଡେଟ୍ରଏଟ୍ ଓ ନ୍ୟୁୟର୍କରେ; ଇଂଲଣ୍ଡର ଲଣ୍ଡନ, ଲିଭରପୁଲ ଓ ମାଞ୍ଚେଷ୍ଟରରେ; ଜାପାନ୍‌ର କ୍ୟୋଟୋ ସହରରେ ନାଗରିକଙ୍କ ସଂଖ୍ୟା ବୃଦ୍ଧି ଅନୁପାତ କମିବାରେ ଲାଗିଲାଣି । ଏସବୁ ଅଞ୍ଚଳରେ ଲୋକେ ଏବେ ଛୋଟ ସହର, ସହରତଳି ଓ ଗ୍ରାମ୍ୟ ପରିବେଶରେ ରହିବାକୁ ପସନ୍ଦ କରୁଛନ୍ତି । ଅନ୍ୟ ପକ୍ଷରେ ବହୁ ବିକାଶଶୀଳ ଦେଶରେ ସହରୀକରଣ ପ୍ରକ୍ରିୟା ଅପ୍ରତିହତ ରହିଛି । ବିଶେଷକରି ଯେଉଁ ଦେଶରେ ଗ୍ରାମାଞ୍ଚଳର ଲୋକେ କୃଷି ଉପରେ ନିର୍ଭର କରି ଚଳି ପାରୁନାହାନ୍ତି ଓ ସେଠାରେ ଅଣ କୃଷିଭିତ୍ତିକ ରୋଜଗାରର ସୁବିଧା ନାହିଁ, ସେଠି ଲୋକେ ଗାଁ ଛାଡ଼ି ସହରମୁଖୀ ହେଉଛନ୍ତି । ଭାରତରେ ଏହି ଗୋଷ୍ଠୀର ଲୋକଙ୍କଯୋଗୁଁ ସହରୀକରଣ ବଢ଼ିଚାଲିଛି । ଏହାଛଡ଼ା ସହରମାନଙ୍କରେ ଉଚ୍ଚମାନର ସଞ୍ଚାର ବ୍ୟବସ୍ଥା, ଶିକ୍ଷା, ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ ସୁବିଧା ମିଳୁଥିବାରୁ ଭାରତର ମଧ୍ୟବିତ୍ତ ଶ୍ରେଣୀ ସହର ପ୍ରତି ଆକୃଷ୍ଟ ହେଉଛନ୍ତି । ବଡ଼ ବଡ଼ କମ୍ପାନିମାନେ ମଧ୍ୟ ନୂଆ ସହର ସୃଷ୍ଟି କରନ୍ତି । ତା'ଛଡା ସରକାର ମଧ୍ୟ ନିଜ ସୁବିଧାପାଇଁ ସହରସବୁ ବସେଇଛନ୍ତି । ଇଂରେଜମାନେ ନୂଆଦିଲ୍ଲୀ ସହର ଗଢ଼ି କଲିକତାରୁ ଭାରତର

ରାଜଧାନୀକୁ ଉଠାଇ ନେଇଥିଲେ । ନୂଆ ଭୁବନେଶ୍ୱର, ଗାନ୍ଧୀନଗର ଓ ଚଣ୍ଡୀଗଡ଼ ସହର ରାଜ୍ୟମାନଙ୍କର ରାଜଧାନୀପାଇଁ ପ୍ରତିଷ୍ଠା କରାଯାଇଥିଲା ।

ତେଣୁ ସହରୀକରଣକୁ ନକାରାତ୍ମକ ଦୃଷ୍ଟିରେ ଦେଖିବାର କୌଣସି ଆବଶ୍ୟକତା ନାହିଁ । କାରଣ ବାସ୍ତବତା ହେଉଛି, ଯେଉଁ ଦେଶରେ ଯେତେ ଅଧିକ ଲୋକ ସହରରେ ରହନ୍ତି ସେ ଦେଶ ସେତିକି ଉନ୍ନତ ଓ ଧନୀ । ସାରା ସିଙ୍ଗାପୁର ଦେଶ ଏକ ବଡ଼ ସହର ଏବଂ ଏଠାରେ ଜଣ ପିଛା ବାର୍ଷିକ ରୋଜଗାର ହେଲା ୩୦ ହଜାର ଡଲାର । ଭାରତରେ କେନ୍ଦ୍ରଶାସିତ ଚଣ୍ଡୀଗଡ଼ ରାଜ୍ୟ ଗୋଟିଏ ବଡ଼ ସହର ମାତ୍ର, କିନ୍ତୁ ଏଠାରେ ମୁଣ୍ଡପିଛା ଆୟ ସବୁଠାରୁ ଅଧିକ । ସେହିପରି ଗୋଆ ଏକ ସହରପ୍ରଧାନ ରାଜ୍ୟ ଏବଂ ଏହାର ଜଣପିଛା ଆୟ ଅନେକ ବଡ଼ ବଡ଼ ରାଜ୍ୟଠାରୁ ଅଧିକ । ଅନ୍ୟ ପକ୍ଷରେ ଓଡ଼ିଶା, ବିହାର, ଉତ୍ତରପ୍ରଦେଶ ଭଳି ରାଜ୍ୟ କେବଳ ସହରୀକରଣରେ ପଛରେ ନାହାନ୍ତି, ମୁଣ୍ଡ ପିଛା ଆୟରେ ମଧ୍ୟ ତଳେ ।

ସହର ଏକ ସାମାଜିକ - ନିରପେକ୍ଷ ଅଞ୍ଚଳ । ସହରମାନଙ୍କରେ ଜାତିବାଦ, ଛୁଆଁଛୁତି, ଅସ୍ପୃଶ୍ୟତା, ରକ୍ଷଣଶୀଳତା ଗାଁ ଅପେକ୍ଷା କମ୍ । ଅଧିକାଂଶ ବୁଦ୍ଧିଜୀବୀ କଳାକାର ସହରରେ ରହୁଥିବାରୁ ସହରର ସାଂସ୍କୃତିକ ଜୀବନ ଉନ୍ନତ । ବାଣିଜ୍ୟ, ବ୍ୟବସାୟ, କଳ-କାରଖାନା ସହରକୈନ୍ଦ୍ରିକ ହେବାରୁ ସହର ବହୁ ଲୋକଙ୍କୁ ରୋଜଗାର ସୁବିଧା ଦେଇଥାଏ । କୋର୍ଟ, କଚେରି, ବଡ଼ ଡାକ୍ତରଖାନା, ଶାସନ କାର୍ଯ୍ୟାଳୟ, ଜିଲ୍ଲା ପରିଷଦ, ଆସେମ୍ବ୍ଲି, ସମ୍ବାଦପତ୍ର ଓ ମିଡ଼ିଆ, ଗବେଷଣା କେନ୍ଦ୍ର ସବୁ ସହରରେ ଥିବାରୁ ସହର ସରକାରଙ୍କ ନୀତି ଓ ଶାସନକୁ ପ୍ରଭାବିତ କରିଥାଏ । ଗ୍ରାମାଞ୍ଚଳର କଞ୍ଚାମାଲ ଓ ଉତ୍ପାଦିତ ଦ୍ରବ୍ୟପାଇଁ ସହର ଏକ ବିକ୍ରୀ କେନ୍ଦ୍ରର କାମ କରେ । ସହର ସମ୍ପତ୍ତିର କେନ୍ଦ୍ର ହୋଇଥିବାରୁ ସରକାର ପୁଞ୍ଜିନିବେଶପାଇଁ ସହର ସମ୍ବଳ ଉପରେ ନିର୍ଭର କରନ୍ତି । ସହରର ଲୋକେ ଗ୍ରାମାଞ୍ଚଳ ଅପେକ୍ଷା ଅଧିକ ସଚେତନ ଥିବାରୁ ସାମାଜିକ ପରିବର୍ତ୍ତନ, ପରିବେଶ ସୁରକ୍ଷା, ନାରୀ ନିର୍ଯ୍ୟାତନା ଓ ପ୍ରଗତିଶୀଳ କାର୍ଯ୍ୟକ୍ରମରେ ସହଯୋଗ କରନ୍ତି । ସହରରେ ସାକ୍ଷର ଓ ଶିକ୍ଷିତ ଲୋକଙ୍କ ସଂଖ୍ୟା ଅଧିକ । ଏଠାରେ ଅଜଣା ଅଚିହ୍ନା ଓ ଏକାନ୍ତ ବ୍ୟକ୍ତିଗତ ଜୀବନ ବିତାଇବାର ସୁଯୋଗକୁ କିଛି ଲୋକ ଉପଭୋଗ କରିଥାନ୍ତି ।

ଏସବୁ ସୁଗୁଣ ଛଡ଼ା ସହରୀକରଣର ଅନେକ ଦୁର୍ଗୁଣ ବି ରହିଛି । ପୃଥିବୀର ମାତ୍ର ଦୁଇ ପ୍ରତିଶତ ଜାଗା ସହର ଅଞ୍ଚଳ ହୋଇଥିଲେ ବି ଶତକଡ଼ା ୭୫ ଭାଗ ସମ୍ବଳ ସହର ଖାଇଯାଏ । ଜଣେ ଗ୍ରାମବାସୀ ତୁଳନାରେ ଜଣେ ସହରୀ ନାଗରିକ ୧୦ ଗୁଣ ଅଧିକ ବିଜୁଳି ଓ ପାଣି ଖର୍ଚ୍ଚ କରିଥାନ୍ତି । ହ୍ରଦ, ନଦୀ, ସମୁଦ୍ରକୁ ସହରରେ ସ୍ଥାପିତ

କଳ କାରଖାନା ଦୂଷିତ କରିଥାନ୍ତି । ବାୟୁମଣ୍ଡଳକୁ ଦୂଷିତ କରିବାରେ ସହରରେ ଚାଲୁଥିବା ଗାଡ଼ି ମଟର ହେଉଛନ୍ତି ମୁଖ୍ୟ ଆସାମୀ । ସହରରେ ଥିବା ବସ୍ତି ବା ସ୍ଲମ୍‌ରେ ଲୋକେ ଅତ୍ୟନ୍ତ କଠୋର ଓ ଦୟନୀୟ ଜୀବନଯାପନ କରନ୍ତି । ଗାଁରୁ ଲୋକ ଆସି ସହରକୁ ଗଢ଼ନ୍ତି, ବଢ଼ାନ୍ତି, କିନ୍ତୁ ସହର ସେମାନଙ୍କୁ ମଶା, ମାଛି ଭଳି ବ୍ୟବହାର କରେ । ଗାଁ ଅପେକ୍ଷା ସହରର ମଇଳା ଓ ଆବର୍ଜନା ଅତ୍ୟନ୍ତ ଅଧିକ । ଧ୍ୱନି ପ୍ରଦୂଷଣ ପାଇଁ ସହରମାନେ ବିଖ୍ୟାତ । ଗ୍ରାମାଞ୍ଚଳରେ ପ୍ରତି ବର୍ଗ କିଲୋମିଟରରେ ୩ ଶହରୁ ୫ ଶହ ଲୋକ ରହୁଥିବା ବେଳେ ସହରରେ ସେତିକି ଜାଗାରେ ରହନ୍ତି ଦେଢ଼ ଲକ୍ଷ ଲୋକ । ଗାଁରେ ସାମାଜିକ ଭେଦଭାବ ଯେତିକି, ସହରରେ ସାମାଜିକ ଶୂନ୍ୟତା ତାଠାରୁ ଅଧିକ । ସହରର ବେଶ ପୋଷାକ, ଫେସନ୍, ଚାଲିଚଳନ, ଖାଦ୍ୟପେୟ ଓ ମନୋରଞ୍ଜନ କାର୍ଯ୍ୟକ୍ରମର କୁପ୍ରଭାବ ଗାଁ ଲୋକଙ୍କ ଉପରେ ପଡ଼ିଥାଏ । ଜଣେ ସହରୀ ୧୨୫ ଗୁଣରେ ଅଧିକ ପ୍ରଦୂଷଣ କରିଥାନ୍ତି ।

ଆସନ୍ତା ୧୦ ବର୍ଷ ମଧ୍ୟରେ ପୃଥିବୀର ସବୁଠାରୁ ଅଧିକ ସହରୀ ରହିବେ ଭାରତରେ । ସେତେବେଳକୁ କେବଳ ମହାନଗରୀ ଦିଲ୍ଲୀର ଜନସଂଖ୍ୟା ହେବ ଦୁଇକୋଟି ତେରଲକ୍ଷ । ବମ୍ବେ, କୋଲକାତା, କାନପୁର, ଚେନ୍ନାଇ, ବାଙ୍ଗାଲୋର, ହାଇଦ୍ରାବାଦ ଭଳି ବଡ଼ ବଡ଼ ସହରରେ ପାଣି ଓ ବିଜୁଳି ସଙ୍କଟ ଦେଖାଦେବ । ଉଦାହରଣ ସ୍ୱରୂପ ଦିଲ୍ଲୀର ଶତକଡ଼ା ୬୮ ଭାଗ ବାସିନ୍ଦା ଉତ୍କଟ ଜଳସଙ୍କଟ ଦେଇ ଗତି କରିବେ, ଅଧେ ଲୋକଙ୍କୁ ବିଜୁଳି ମିଳିବ ନାହିଁ, ୭୧ ଭାଗ ଆବର୍ଜନା ସଫା ହୋଇପାରିବ ନାହିଁ ଏବଂ ଯାନବାହନର ଗତି ହେବ ଘଣ୍ଟାକୁ ଛ କିଲୋମିଟର । ୩୬ଟି ନଗରରେ ବାୟୁମଣ୍ଡଳ ପ୍ରଦୂଷଣ ହେତୁ ପ୍ରତିଦିନ ୧୧୦ ଜଣ ନାଗରିକ ଅକାଳ ମୃତ୍ୟୁବରଣ କରିବେ ।

ଏସବୁ ସତ୍ତ୍ୱେ ସହରୀକରଣ ପ୍ରକ୍ରିୟା ଜାରି ରହିବ । ଗାଁମାନଙ୍କରେ ସହରୀୟ ସୁବିଧା ବ୍ୟବସ୍ଥା ହେଲେ ସେମାନେ ବି କ୍ରମଶଃ ସହର ପାଲଟିବେ । ଭାରତରେ ବିକାଶ ଚର୍ଚ୍ଚା ଗ୍ରାମକୈନ୍ଦ୍ରିକ ଥିଲା, ଏହା କ୍ରମେ ସହରକୈନ୍ଦ୍ରିକ ହେବ, କାରଣ ସହରରେ ଅଳ୍ପ ଜାଗାରେ ଅଧିକ ଭୋଟର ରହିବେ ।

*୨୨ ମାର୍ଚ୍ଚ, ୨୦୦୬*



# ବିକଳ୍ପ ମାତାପିତା ଓ କଳ ଚାକର

ଆଧୁନିକ ସମାଜରେ ମାତା ଓ ପିତାଙ୍କର ସଂଜ୍ଞା ଓ ଅର୍ଥ ବଦଳି ଗଲାଣି । ପାଶ୍ଚାତ୍ୟ ଦେଶମାନଙ୍କରେ ଏବେ ପିଲାଏ ମାତା, ପିତାଙ୍କୁ 'ବାୟୋଲଜିକାଲ୍ ଫାଦର୍' କହୁଛନ୍ତି । ମାତା ବା ପିତାଙ୍କ ଦ୍ୱିତୀୟ ପାଳିତ ବା ଚତୁର୍ଥ ପତ୍ନୀଙ୍କଠାରୁ ଜାତ ସନ୍ତାନଙ୍କୁ ଅଧା ଭାଇ, ଚଉଠା ଭଉଣୀ ବୋଲି ପରିଚୟ ଦିଆଯାଉଛି । ଯଦି ମାତାଙ୍କର ପତିଙ୍କ ନମ୍ବର ଅଷ୍ଟମ ଓ ପିତାଙ୍କ ପତ୍ନୀଙ୍କ ନମ୍ବର ଦଶମ, ତେବେ ପିଲାଙ୍କପାଇଁ ବାପ ମା ଥିବା ନ ଥିବାରେ କୌଣସି ଫରକ ପଡୁନାହିଁ । ଭାରତରେ ଜନନୀ ଓ ଜନ୍ମଭୂମିକୁ ସ୍ୱର୍ଗଠାରୁ ବଡ଼ ଏବଂ ପିତାଙ୍କୁ ଧର୍ମ ଓ ପରମାତ୍ମାଙ୍କ ସହ ତୁଳନା କରାଯାଉଥିଲା । ମା'ମାନେ ପିଲାମାନଙ୍କୁ ଲାଳନପାଳନ କରିବା ସମୟରେ ଏବଂ ଏପରି କି ଗର୍ଭାବସ୍ଥାରେ ମଧ୍ୟ ଯେଉଁ ଷୋହଳ ପ୍ରକାର କଷ୍ଟ ସହିଥାନ୍ତି ତା'କୁ 'ମାତୃ ଷୋଡ଼ଶୀ' ବୋଲି କୁହାଯାଏ ଏବଂ ପିଲାଙ୍କ ବାହାଘର ସମୟରେ ବେଦି ଉପରେ ପଢ଼ି ଶୁଣାଇ ଦିଆଯାଏ । ଗର୍ଭଧାରଣଠାରୁ ଖୁଆଇ ପିଆଇ ବଡ଼ କଲା ପର୍ଯ୍ୟନ୍ତ ତ୍ୟାଗର ବର୍ଣ୍ଣନା ଏଥିରେ ଅଛି । କାରଣ ବାହାଘର ପରେ ପିଲାମାନେ ନୂଆ ସଂସାର ଗଢ଼ନ୍ତି, ତେଣୁ ପୁରୁଣା ସଂସାର ତାଙ୍କପାଇଁ କେତେ ତ୍ୟାଗ କରିଛି ଓ କଷ୍ଟ ସହିଛି ସେକଥା ମାତୃ ଷୋଡ଼ଶୀ ମାଧ୍ୟମରେ ମନେ ପକାଇ ଦିଆଯାଏ ବେଦି ଉପରେ, ଅଗ୍ନି ଓ ବନ୍ଧୁ ପରିଜନଙ୍କ ସମ୍ମୁଖରେ । ପରୋକ୍ଷରେ ସୂଚନା ଦିଆଯାଏ କି, ସେମାନେ ଯେତେବେଳେ ନିଜେ ମାତା ପିତା ହେବେ, ଯେପରି ନିଜ ଦାୟିତ୍ୱ ଭୁଲି ନଯାନ୍ତି । ସେହିପରି ଭାରତୀୟ ପରମ୍ପରାରେ ଜନ୍ମଦାତାଙ୍କ ଛଡ଼ା ଚାରିଜଣ ବ୍ୟକ୍ତିଙ୍କୁ ପିତା ସ୍ୱରୂପ ବୋଲି କୁହାଯାଏ । ଯେ ଉପନୟନ ସଂସ୍କାର କରନ୍ତି, ଯେ ବିଦ୍ୟାଦାନ କରନ୍ତି, ଯେ ଅନ୍ନଦାତା ଓ ଯେ ଭୟ ଓ ବିପଦରୁ ରକ୍ଷା କରନ୍ତି । ଏହିପରି ଜନ୍ମଦାତାଙ୍କୁ ମିଶାଇ ପଞ୍ଚପିତା-ମାତା ସଦା ସ୍ମରଣୀୟ ।

ଏବେ କିନ୍ତୁ କାର୍ଯ୍ୟବ୍ୟସ୍ତ ବାପ ମା'ଙ୍କୁ ପିଲାଙ୍କ କଥା ବୁଝିବାକୁ ସମୟ ଅଭାବ । ଯେଉଁ ମା'ମାନେ ଚାକିରିଆ ସେମାନଙ୍କ ଅବସ୍ଥା ଆହୁରି ଖରାପ । ମାଲେସିଆ, ଇଣ୍ଡୋନେସିଆ, ବ୍ରୁନେଇ ଓ ଅନେକ ଧନୀ ଆରବ ଦେଶରେ କାମବାଲୀ 'ମେଡ୍ ସର୍ଭାଣ୍ଟ'ମାନେ ବିକଳ୍ପ ମାତା ହୋଇ ପିଲା ପାଳନ୍ତି । ଗଲ୍ଫ ଦେଶମାନଙ୍କରେ ଆନ୍ଧ୍ର, ତାମିଲନାଡୁ, କେରଳ ଓ ଶ୍ରୀଲଙ୍କାରୁ ଝିଅମାନେ ଯାଇ ମା'ଙ୍କ ସ୍ଥାନ ନିଅନ୍ତି । ୟୁରୋପ, ଆମେରିକାରେ ବିକଳ୍ପ ବ୍ୟବସ୍ଥା ଅତି ମହଙ୍ଗା ପଡୁଥିବାରୁ ପିତାମାତା ହେବାପାଇଁ ଆଗ୍ରହ ନଥାଏ । ଜାପାନ୍‌ରେ 'ରୋବୋ' ବା କଳ-ମଣିଷଦ୍ୱାରା ଏବେ ଘର କାମ କରାଗଲାଣି । 'କାର୍ନେଜି ମେଲନ୍ ରୋବଟିକ୍ସ' ଅନୁଷ୍ଠାନଙ୍କ ରିପୋର୍ଟ ଅନୁସାରେ ୨୦୧୫ ମସିହା ସୁଦ୍ଧା ଘର କାମପାଇଁ ଦୋକାନ ବଜାରରୁ କଳ-ଚାକର, ଚାକରାଣୀ କିଣିବାକୁ ମିଳିବ । ୨୦୨୦ ମସିହା ସୁଦ୍ଧା ବୁଦ୍ଧିଆ ଓ ଅଳ୍ପ ବୁଦ୍ଧିଆ କଳ-ଚାକର ମିଳିବେ । ୨୦୨୫ ମସିହା ସୁଦ୍ଧା ମଟରେ ଗାଡି ମାର୍କେଟକୁ କଳ-ଚାକର ମାର୍କେଟ୍ ଟପିଯିବ । ଦକ୍ଷିଣ କୋରିଆ ୨୦୧୫ ମସିହା ସୁଦ୍ଧା ପ୍ରତ୍ୟେକ ପରିବାରକୁ କଳ-ଚାକର ବା ଚାକରାଣୀ ଯୋଗାଇ ଦେବାପାଇଁ ଯୋଜନା କରିଛି । ଜାପାନ୍ ସରକାରଙ୍କ ଯୋଜନା ଅନୁସାରେ ଆସନ୍ତା ୫ ବର୍ଷ ଭିତରେ କଳ-ଚାକର ବା 'ମେସିନ୍ ମେଡ୍ ସର୍ଭାଣ୍ଟ' ଲକ୍ଷ ଲକ୍ଷ ସଂଖ୍ୟାରେ ଉତ୍ପାଦନ କରାଯାଇ ଘରକାମ, ସ୍ୱାସ୍ଥ୍ୟସେବା, ମନୋରଞ୍ଜନ ଓ ଅର୍ଦ୍ଧସାମରିକ କାମପାଇଁ ଯୋଗାଇ ଦିଆଯିବ । ୟୁରୋପିଆନ୍ ୟୁନିଅନ୍ ସହାୟତାରେ ୫-୧୦ ବର୍ଷ ମଧ୍ୟରେ ଔଷଧ ବଟିକାକୁ କ୍ଷୁଦ୍ରତମ ରୋବୋ କରି ଦିଆଯିବ ଓ ଏହି 'ପିଲ୍-ରୋବୋ' ଦେହ ଭିତରେ ପଶି କ୍ୟାନ୍‌ସର ଭଳି ମାରାତ୍ମକ ରୋଗକୁ ଠାବ କରିବେ ଓ ଶରୀର ଭିତରେ ରହି ତା'ର ଚିକିତ୍ସା କରି ସାରି ପ୍ରାକୃତିକ ଭାବରେ ଟଏଲେଟ୍‌କୁ ଚାଲିଯିବେ । ଏହି ଟାବ୍‌ଲେଟ୍‌ରେ ଖଞ୍ଜା ଯାଇଥିବା କୁନି କ୍ୟାମେରା ଦ୍ୱାରା ପରୀକ୍ଷା ନିରୀକ୍ଷା କରାଯାଇପାରିବ ଏବଂ ଫଳରେ ଅସ୍ତ୍ରୋପଚାର ବା ସର୍ଜରୀ ଆବଶ୍ୟକ ହେବ ନାହିଁ ।

ସୋନି କମ୍ପାନିର ନୂଆ ସ୍ଲୋଗାନ୍ ହେଲା ୨୦୨୦ ସୁଦ୍ଧା "ପ୍ରତ୍ୟେକ ସତ ମଣିଷ ପାଇଁ ଗୋଟିଏ ମିଛ ମେସିନ୍ ମଣିଷ" । ପୋଛା ଲଗାଇବା ଓ ବାସନ ସଫାପାଇଁ ୨୦୦୩ ମସିହାରେ 'ରୁମ୍ବା' ନାମକ ୨୦ ଲକ୍ଷ କୁନି-ରୋବୋ ବିକ୍ରି ହେବା ଦେଖି ବହୁ ଦେଶୀୟ କମ୍ପାନିମାନେ ଏହାକୁ ଏକ ଅତି ଲାଭଜନକ ବ୍ୟବସାୟ ବୋଲି ବିଚାର କଲେଣି । 'ୱାଶିଂଟନ୍ ପୋଷ୍ଟ', ଆମେରିକୀୟ ମହିଳାଙ୍କ ମଧ୍ୟରେ 'ରୁମ୍ବା'ର ଲୋକପ୍ରିୟତାକୁ ଅଭୂତପୂର୍ବ 'ରୁମ୍ବା-ପ୍ରେମ' ବୋଲି ବର୍ଣ୍ଣନା କରିଛନ୍ତି । ଛୋଟ ରୋବୋକୁ କୁହାଯାଏ 'ମାଇକ୍ରୋଟ' । ମଣିଷ-ମଣିଷ ମଧ୍ୟରେ ସ୍ନେହ ଓ ପ୍ରେମ

କମିଯିବା ସଙ୍ଗେସଙ୍ଗେ ମଣିଷ-ମାଇକ୍ରୋଚିପ୍ ପ୍ରେମ ବଢ଼ିଯିବାରେ ଲାଗିଲାଣି । ୨୦୪୬ ସୁଦ୍ଧା ରୋବୋଟ୍କୁ ନାଗରିକ ଅଧିକାର ମିଳିଯିବ ବୋଲି ଆଶା କରାଯାଉଛି । ମାନବ ଅଧିକାରବାଦୀମାନେ ବି ଏ ବିଷୟରେ ବିଚାର ଆରମ୍ଭ କଲେଣି ।

ଘରକାମ ଛଡ଼ା ପିଲା ପାଳିବାପାଇଁ ମଧ୍ୟ ଏବେ ବିକଳ୍ପ ମାତା ପିତା ବଜାରରେ ମିଳିଲେଣି । କାଲିଫର୍ଣିଆ ଉପସାଗରୀୟ ଅଞ୍ଚଳରେ ଡବଲ୍ ଚାକିରିଆ, ଧନୀ ପରିବାରମାନେ ପିଲାଙ୍କୁ ଶୁଆଇବାପାଇଁ ଏବେ ସ୍ଲିପିଙ୍ଗ୍ କନ୍‌ସଲଟାଣ୍ଟ ରଖୁଛନ୍ତି । ପିଲାକୁ ପେଟେଇବା, ଗୁରୁଣ୍ଡିବା ଶିଖାଇବାପାଇଁ ଏବେ ପଇସା ଖର୍ଚ୍ଚ କରି 'ଗୁରୁଣ୍ଡି' ବିଶେଷଜ୍ଞମାନଙ୍କୁ ଡକାଯାଉଛି । ତିନି ଶହ ଡଲାର (୧୪୦୦୦ ଟଙ୍କା) ଦେଲେ ମାସକୁ ଥରେ ପିଲାଙ୍କ ବାଳ କାଟିବା, ଉକୁଣି କାଢ଼ିବା ଓ ବେଣୀ ବାନ୍ଧିବାପାଇଁ ବିକଳ୍ପ ମାତା ମିଳୁଛନ୍ତି । ନ୍ୟୁୟର୍କ ମାଗାଜିନ୍‌ର ଏକ ରିପୋର୍ଟ ଅନୁସାରେ ଅଶୀ ହଜାର ଡଲାର (୩୮ ଲକ୍ଷ ଟଙ୍କା) ଖର୍ଚ୍ଚ କଲେ ବିକଳ୍ପ 'ଗର୍ଭ' ମିଳିଯାଉଛି । ଯେଉଁ ମହିଳାଙ୍କର ଆୟ ଅଧିକ ସେ ଏହି ଉପାୟଦ୍ୱାରା ଗର୍ଭଧାରଣ କଷ୍ଟରୁ ରକ୍ଷା ପାଇଯାଉଛନ୍ତି । ୩୭୦୦ ଡଲାରରେ ଛୋଟ ପିଲାଙ୍କପାଇଁ 'ପଟି' (ପାଇଖାନା) ଟ୍ରେନର୍ ମିଳିଯାଉଛନ୍ତି । ରାତିରେ ଶିଶୁ ଶେଯରେ ପରିସ୍ରା ନ କରିବା ଟ୍ରେନିଂପାଇଁ ଟ୍ରେନର୍‌ମାନେ ନେଉଛନ୍ତି ସପ୍ତାହକୁ ୩୦୦ ଡଲାର । ଆଙ୍ଗୁଠି ଚୁଚୁମିବା ଅଭ୍ୟାସ ବଦଳାଇବାପାଇଁ ବିକଳ୍ପ ମାତାଙ୍କ ରେଟ୍ ହେଲା ୪୩୦୦ ଡଲାର (ଲକ୍ଷେ ନବେ ହଜାର ଟଙ୍କା) । 'ବେବି-ନର୍ସ ଦାମ୍ ହେଲା ଦି ଦିନକୁ ୪୦୦ ଡଲାର । ବେବି ସିଟିଂପାଇଁ ସପ୍ତାହକୁ ଖର୍ଚ୍ଚ ୮୨୫ ଡଲାର । ପିଲାଙ୍କୁ ଆଚାର ବ୍ୟବହାର ଶିଖାଇବାପାଇଁ ୨ ଘଣ୍ଟାକୁ ଖର୍ଚ୍ଚ ୨୦୦ ଡଲାର । ବଜାରକୁ ନେଇ ମନ ମୁତାବକ ଡ୍ରେସ୍ କିଣିବାରେ ସାହାଯ୍ୟପାଇଁ ଦିନକୁ ୩୫୦ ଡଲାର । ସାଇକେଲ୍ ଶିଖାଇ ଦେବାପାଇଁ ପ୍ରତି ଘଣ୍ଟାକୁ ୧୩୦ ଡଲାର । ଶିଙ୍ଘାଣି ପୋଛା, କାନଗୁଆ କାଢ଼ିବାପାଇଁ ଥରକୁ ୫୦ ଡଲାର । ପିଲାଙ୍କ ହୋମ୍‌ୱାର୍କପାଇଁ ଘଣ୍ଟାକୁ ୧୧୦ ଡଲାର । ପିଲାଙ୍କୁ ପାଖରେ ବସାଇ କଥା ହେବାକୁ ପ୍ରତି ଦୁଇ ଘଣ୍ଟାପାଇଁ ୧୪୯ ଡଲାର ।

କାରଣ ଏବେ ଚାକିରିଆ ବାପ ମା'ଙ୍କୁ ପିଲାଙ୍କ ପାଖରେ ବସି କଥା ହେବାକୁ ସମୟ ନାହିଁ । 'କିଡ୍‌ସ ଚାଓ' କମ୍ପାନି ସ୍କୁଲ ପିଲାଙ୍କପାଇଁ ମଧ୍ୟାହ୍ନ ଭୋଜନ / ଲଞ୍ଚ ପ୍ୟାକେଟ୍ କରି ସ୍କୁଲରେ ପହଞ୍ଚାଇ ଦେଉଛନ୍ତି । ବିଭିନ୍ନ ଦେଶରେ ଏଇ କମ୍ପାନି ଶାଖା ଖୋଲିଲାଣି । ମା'ମାନେ ସୌନ୍ଦର୍ଯ୍ୟ ରକ୍ଷାପାଇଁ ପିଲାଙ୍କୁ ସ୍ତନ୍ୟପାନ ନ କରାଇ ଥରକୁ ୫୦ ଡଲାର ଦେଇ ଭଡାରେ ଅନ୍ୟ ମହିଳାଙ୍କଦ୍ୱାରା ସ୍ତନ୍ୟ ପାନ କରାଉଛନ୍ତି । ପ୍ରାୟ ୩୦ ବର୍ଷ ହେଲା ଟେଷ୍ଟଟ୍ୟୁବ୍ ମଧ୍ୟ କେତେକାଂଶରେ ମା'ଙ୍କ ସ୍ଥାନ ନେଇ ସାରିଲାଣି ।

ଇଂଲଣ୍ଡର ଲେସ୍‌ଲି ବ୍ରାଉନ୍ ଓ ସ୍ୱାମୀ ଜନ୍‌ଙ୍କ ଟେଷ୍ଟଟ୍ୟୁବ୍ ଝିଅ 'ଲୁଇସ୍'ର ପିଲା ହୋଇ ସାରିଲାଣି । କିଛିଦିନ ପରେ ବିକଳ୍ପ ସନ୍ତାନ ଲୁଇସ୍‌ଙ୍କୁ ମଧ୍ୟ ନିଜ ସନ୍ତାନପାଇଁ ବିକଳ୍ପ ମାତା ପିତା ଖୋଜିବାକୁ ପଡ଼ିବ । ଏହି ପ୍ରକ୍ରିୟାରେ କ୍ରମଶଃ ମାତାପିତା ଓ ସନ୍ତାନଙ୍କ ମଧ୍ୟରେ ଦୂରତ୍ୱ ଆହୁରି ବଢ଼ିଯିବ ।

ଏହି ଅବସ୍ଥା ଭାରତରେ ବି ଦେଖାଗଲାଣି । ବିକଳ୍ପ ମାତା ପିତା ଆଉ ଏକ ଲଘୁ ଆଲୋଚନା ବା ଥଟ୍ଟା ପରିହାସର ବିଷୟ ନୁହେଁ । ଏହା ଆଜିର ବାସ୍ତବତା । ୧୯୫୦-୬୦ ମସିହାରେ ଯଦି ଜଣେ ଗ୍ରାଜୁଏଟ୍ ଯୁବକ ଅନ୍ୟ ଏକ ଗ୍ରାଜୁଏଟ୍ ଯୁବତୀଙ୍କୁ ବିବାହ କରୁଥିଲେ, ଲୋକେ ଥଟ୍ଟାରେ କହୁଥିଲେ "ପୁଅ ବିଏ କୁ ବୋହୂ ବିଏ - ରୋଷେଇ କରିବ କିଏ ?" ଏବେ ସେ ଅବସ୍ଥା ବା ବ୍ୟବସ୍ଥା ନାହିଁ । ଯୌଥ ପରିବାର ଭାଙ୍ଗିଗଲାଣି - ପୁଅ ବୋହୂ ଉଭୟେ ଚାକିରି କରି ଦୂରାନ୍ତରେ ରହୁଛନ୍ତି । ଶାଶୂ-ଶ୍ୱଶୁର ବି ଆଉ ପିଲାଙ୍କ ପାଖରେ ରହିବାକୁ ପସନ୍ଦ କରୁନାହାନ୍ତି । ତେଣୁ ପିଲା ପାଳିବା ପୂରା ଦାୟିତ୍ୱ ବାପ ମା'ଙ୍କ ଉପରେ ପଡୁଛି, ଦୂରରେ ରହୁଥିବାରୁ ଦୁର୍ବଳ ଯୌଥ ପରିବାର ଏହି କାମରେ ସହଯୋଗ କରିପାରୁନାହାନ୍ତି । କେତେକ ବାପା ମା 'ଶିଶୁ ପାଳନ' ପୁସ୍ତକ ପଢ଼ି ଏହି ଜ୍ଞାନକୁ କାମରେ ଲଗାଇବାକୁ ଚେଷ୍ଟା କରୁଛନ୍ତି - ତେଣୁ ପୋଥି ବାଇଗଣ ଓ ବାଡ଼ି ବାଇଗଣ ଭଳି ଜ୍ଞାନ ଓ କର୍ମ ମଧ୍ୟରେ ଫରକ ରହୁଛି ।

ଯେଉଁ ମା'ମାନେ ପ୍ରଫେସନାଲ୍ କ୍ୟାରିଅର୍‌କୁ ଆଗ ସଜାଡ଼ି ବିଳମ୍ବରେ ବିବାହ କରୁଛନ୍ତି, ସେମାନଙ୍କ ପକ୍ଷରେ ପିଲା ପାଳିବା ଆହୁରି କଷ୍ଟକର ହେଉଛି । ଏମାନେ ଛୋଟ ପିଲାଙ୍କଯୋଗୁଁ ନା ରାତିରେ ଭଲ କରି ଶୋଇ ପାରୁଛନ୍ତି, ନା ଠିକ୍ ଭାବରେ ଚାକିରି କାମ ତୁଲାଇ ପାରୁଛନ୍ତି । ତେଣୁ ଏମାନଙ୍କ ମଧ୍ୟରୁ ଅନେକ ଦ୍ୱିତୀୟ ସନ୍ତାନ ଚାହୁଁନାହାନ୍ତି । ଏପରିକି ପ୍ରଥମ ସନ୍ତାନମାନେ ମଧ୍ୟ ମା'ଙ୍କଠାରୁ ଯେଉଁ ସମୟ ପାଇବା କଥା ପାଉନାହାନ୍ତି । ଅନେକ କ୍ଷେତ୍ରରେ ବାପା ଅଫିସ୍ ଗଲା ବାଟରେ ପିଲା ବେକରେ ଘର ଚାବି ବାନ୍ଧି ଦେଇ ସ୍କୁଲରେ ଛାଡ଼ି ଦେଉଛନ୍ତି ଓ ସ୍କୁଲ ବସ୍ ସେମାନଙ୍କୁ ଘର ପାଖରେ ଛାଡ଼ି ଦେଉଛି । ଏଇ ପିଲାଏ ନିଜେ ବେକବନ୍ଧା ଚାବି ଖୋଲି ଶୂନ୍ୟ ଗୃହରେ ପ୍ରବେଶ କରନ୍ତି ଓ ପ୍ୟାରେଣ୍ଟ ଫେରିବା ପର୍ଯ୍ୟନ୍ତ ଟିଭି ଖୋଲି - ଦେଖି ସମୟ କାଟନ୍ତି । ଏବଂ ଟିଭିରେ ଯାହା ଦେଖନ୍ତି ତାକୁ ସତ ଭାବି ସେହିଭଳି ବ୍ୟବହାର କରନ୍ତି । ତେଣୁ ଟିଭିକୁ ଏବେ ବିକଳ୍ପ ମାତା ବୋଲି କୁହାଯାଉଛି ।

ପ୍ରତ୍ୟେକ ମାତା-ପିତା ନିଜ ପିଲାଙ୍କର ମଙ୍ଗଳ ଓ ଉନ୍ନତ ଚାହାନ୍ତି । ତେଣୁ ଯେଉଁ କାମ ନିଜେ କରିବାକୁ ସମୟ ନାହିଁ, ସେଇ ସବୁ କାମକୁ ଅନ୍ୟଦ୍ୱାରା କରାଇବାକୁ ବାଧ

ହୁଅନ୍ତି । ଯେଉଁ ମା'ମାନଙ୍କର ରୋଜଗାର କମ୍ ସେମାନେ ଏବେ ଏକାଠି ହୋଇ ଓ ପଇସା ଏକଜୁଟ କରି କିଟି ପାର୍ଟି ବଦଳରେ ପଟି ପାର୍ଟି କରି ପଟି ଟ୍ରେନିଂ ନେଉଛନ୍ତି । କିନ୍ତୁ ବାପ ମା'ଙ୍କର ପିଲାଙ୍କପାଇଁ ଯେଉଁ ଗୁଣାତ୍ମକ ସମୟ ବା କ୍ୱାଲିଟି ଟାଇମ୍ ଦରକାର ତା'ର କୌଣସି ବିକଳ୍ପ ନାହିଁ । ବିଶେଷକରି ପିଲାଙ୍କ ଉପରେ ମା'ଙ୍କର ପ୍ରଭାବ ସବୁଠାରୁ ଅଧିକ । ଦୁର୍ଭାଗ୍ୟବଶତଃ ମା' ପିଲାଙ୍କପାଇଁ ଯେତିକି ସମୟ ଦିଅନ୍ତି, ସରକାର ଓ ସମାଜ ତା'କୁ 'କାମ'ର ମର୍ଯ୍ୟାଦା ଦିଏ ନାହିଁ । ଏ କାମ ହିସାବ କରାଯାଏ ନାହିଁ, ଏହାର ମୂଲ୍ୟାଙ୍କନ ହୁଏ ନାହିଁ । ଶିଶୁପାଳନ ସବୁଠାରୁ କଷ୍ଟକର କର୍ମ ଓ ତେଣୁ ଏହାକୁ 'ସାମାଜିକ ପୁନର୍ଜୀବନ' କର୍ମ ବୋଲି କୁହାଯାଉଛି । ଯେଉଁ ପରିବାର ଓ ସମାଜର ଶିଶୁପାଇଁ ସମୟ ନଥାଏ, ସେ ପରିବାର ଓ ସମାଜ ବେଶୀ ଦିନ ବଞ୍ଚି ରହିପାରେ ନାହିଁ । ଏବେ ଅନେକ ଉନ୍ନତ ଦେଶମାନଙ୍କରେ ପିଲା ପାଳୁଥିବା ମା'ମାନଙ୍କୁ ଅଧିକ ଛୁଟି, ଘରେ ରହି ଅଫିସ୍ କାମ କରିବାର ସୁବିଧା ଓ ସ୍ୱତନ୍ତ୍ର ଭତ୍ତା ଦିଆଯାଉଛି । ବାପାମାନଙ୍କୁ ଘରେ ରହି ଅଫିସ୍ କାମ କରିବାର ସୁବିଧା ଓ ସ୍ୱତନ୍ତ୍ର ଭତ୍ତା ଦିଆଯାଉଛି । ଯେଉଁ ବାପାମାନେ ଘରେ ରହି ପିଲାଙ୍କ କଥା ବୁଝିବେ, ସେମାନଙ୍କୁ ପାଟର୍ନିଟି ଲିଭ୍ ଓ ଆଲାଉନ୍‌ସ ମିଳୁଛି । ବିଶ୍ୱରେ ବିକଳ୍ପ ପିତା ମାତାଙ୍କର ସଂଖ୍ୟା ଯେତିକି ବଢ଼ିବ, ଆମ ପିଲାଏ ପ୍ରକୃତ ପିତା ମାତାଙ୍କ ସାନ୍ନିଧ ହରାଇ ସେତିକି ଏକୁଟିଆ ହୋଇଯିବେ, ମାନବୀୟ ମୂଲ୍ୟବୋଧ ପ୍ରତି ସମ୍ବେଦନଶୀଳତା ହରାଇବେ, ନିଜେ ବଡ଼ ହେଲେ ପିତାମାତାଙ୍କ ଦାୟିତ୍ୱ ତୁଲାଇବାରେ ଅସମର୍ଥ ହେବେ, ସାମାଜିକ ସମ୍ପର୍କର ଗୁରୁତ୍ୱ ବୁଝିପାରିବେ ନାହିଁ । ନିଜ ସୁଖକୁ ପ୍ରାଧାନ୍ୟ ଦେବେ ଏବଂ ଉତ୍ତମ ନାଗରିକ ଭାବରେ ନିଜକୁ ପ୍ରସ୍ତୁତ କରିପାରିବେ ନାହିଁ । ଆମ ଦେଶର ପରିବାର କଲ୍ୟାଣ, ଶିଶୁପାଳନ ନୀତିର ପୁନର୍ବିଚାର କରିବାର ସମୟ ଏବେ ଆସିଛି ।

*୫ ଏପ୍ରିଲ୍, ୨୦୦୭*



# ପଞ୍ଚମ ଦଶକରେ ପ୍ରଥମ ଶ୍ରେଣୀ

ବିଖ୍ୟାତ ଅର୍ଥନୀତି ଅନୁସନ୍ଧାନକାରୀ ସଂସ୍ଥା 'ଗୋଲଡମ୍ୟାନ୍ ସାଜ୍'ଙ୍କ ସଦ୍ୟ ପ୍ରକାଶିତ ରିପୋର୍ଟ ନମ୍ବର ୯୯ ଅନୁସାରେ ଆସନ୍ତା ୫୦ ବର୍ଷ ଭିତରେ ଚାରିଟି ଦେଶ ବିଶ୍ୱ ଅର୍ଥନୀତିକୁ ବିଶେଷ ଭାବରେ ପ୍ରଭାବିତ କରିବେ । ଏଇ ଦେଶମାନଙ୍କର ନାଁର ପ୍ରଥମ ଅକ୍ଷରକୁ ଯୋଡି ସଂକ୍ଷେପରେ ଯେଉଁ ନୂଆ ନାମକରଣ କରାଯାଇଛି - ତା ନାଁ ହେଲା 'ବ୍ରିକ୍' - ଅର୍ଥାତ୍ ବ୍ରାଜିଲ୍, ରୁଷିଆ, ଇଣ୍ଡିଆ ଓ ଚାଇନା । ବିଶ୍ୱଅର୍ଥନୀତି ଓ ବିକାଶ ମଞ୍ଚମାନଙ୍କରେ 'ବ୍ରିକ୍'ର ଶକ୍ତି ବିଷୟରେ ଏବେ ସରଗରମ ଆଲୋଚନା ଆରମ୍ଭ ହେଲାଣି । ମେକ୍ସିକୋକୁ ମିଶାଇ କେତେକ 'ବ୍ରିକ୍'କୁ କହିଲେଣି 'ବ୍ରିମ୍' । ଆଉ କେତେକ ସାଉଥ୍ ଆଫ୍ରିକା ଓ ସମଗ୍ର ସାଉଥ ଏସିଆକୁ ମିଶାଇ ଏହାକୁ ପଞ୍ଚଶକ୍ତି ନାମ ଦେଲେଣି । କିନ୍ତୁ ଯେଉଁ ଭାରତକୁ ଦଶ ବର୍ଷ ତଳେ ବିଭିନ୍ନ ଅର୍ଥନୈତିକ ଗୋଷ୍ଠୀ ହୀନ ଦୃଷ୍ଟିରେ ଦେଖୁଥିଲେ ସେହି ଦେଶ ଏବେ ବିଶ୍ୱ ଅର୍ଥନୀତି କ୍ଷେତ୍ରରେ ଚହଳ ସୃଷ୍ଟି କରିଛି । ସେହିପରି ଯେଉଁ ଭାରତକୁ ବିକଶିତ ଦେଶ ହେବାପାଇଁ ଆଉ ଦେଢ଼ଶହ ବର୍ଷ ଲାଗିବ ବୋଲି କୁହାଯାଉଥିଲା - ଏବେ ସେ ସମୟସୀମା ୪୦ ବର୍ଷକୁ କମି ଆସିଲାଣି । ବିଭିନ୍ନ ଅର୍ଥନୈତିକ ଗୋଷ୍ଠୀରେ ଏହା ଏବେ ଏକ ବିଶେଷ ଚର୍ଚ୍ଚାର ବିଷୟ ।

ପୃଥିବୀରେ ବିକଶିତ ଓ ବିକାଶଶୀଳ ଦେଶମାନେ ନିଜ ନିଜର ସ୍ୱାର୍ଥରକ୍ଷାପାଇଁ ବିଭିନ୍ନ ଗୋଷ୍ଠୀ ବା ଗ୍ରୁପ୍ ତିଆରି କରିଛନ୍ତି । ବଡ଼ ବଡ଼ ଧନୀ ଦେଶମାନଙ୍କର ଏକ ଛୋଟ ଗୋଷ୍ଠୀର ନାଁ ହେଲା 'ଜି-ଛଅ' ବା ଜି-ସିକ୍ସ । ଏହି ଛଅଟି ଦେଶ ହେଲେ - ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ, ଇଟାଲୀ, ଜାପାନ୍ ଓ ଯୁକ୍ତରାଷ୍ଟ୍ର ଆମେରିକା । କାନଡ଼ା ଏ ଦଳରେ ମିଶିବା ପରେ ଏବେ ଏହି ଗୋଷ୍ଠୀକୁ କୁହାଯାଉଛି ଗ୍ରୁପ୍ ସେଭେନ୍ । କୋଡ଼ିଏଟି ବିକାଶଶୀଳ ଦେଶ ମିଶି ଗଢ଼ିଛନ୍ତି 'ଗ୍ରୁପ୍ -୨୦' । ଗ୍ରୁପ୍ ସେଭେନ୍‌କୁ ଛାଡ଼ି

ତିରିଶଟି ଉନ୍ନତ ଦେଶ ଅର୍ଥନୈତିକ ସହଯୋଗପାଇଁ ଗଢ଼ିଛନ୍ତି ଆଉ ଏକ ସଂସ୍ଥା (ଓଇସିଡି) । ୟୁରୋପୀୟ ଦେଶମାନେ ଯେଉଁ ଅର୍ଥନୈତିକ ଛତା ତଳେ, ୪୦ ବର୍ଷ ଧରି ଏକାଠି ହୋଇଛନ୍ତି, ସିଏ ହେଲା 'ୟୁରୋପିଆନ୍ ଇକୋନୋମିକ୍ କମ୍ୟୁନିଟି' ବା 'ଇଇସି' । ଦକ୍ଷିଣ-ପୂର୍ବ ଏସୀୟ ଦେଶମାନେ ଗଢ଼ିଛନ୍ତି 'ଆସିଆନ୍' ଓ ଆଫ୍ରିକୀୟ ଦେଶମାନେ ପରସ୍ପରର ସହଯୋଗପାଇଁ ପ୍ରତିଷ୍ଠା କରିଛନ୍ତି 'ଆଫ୍ରିକାନ୍ ୟୁନିଅନ୍' ।

ସେହିପରି ବ୍ରିଟିଶ୍ ସାମ୍ରାଜ୍ୟର ଅଂଶ ଥିବା ୫୪ଟି ଦେଶ ଏକାଠି ହୋଇ ଗଢ଼ିଛନ୍ତି 'କମନୱେଲ୍‌ଥ' ବା ରାଜ୍ୟଗୋଷ୍ଠୀ । ଦକ୍ଷିଣ ଏସିଆର ୭ଟି ଦେଶଙ୍କ ସହଯୋଗ ସଂସ୍ଥା ହେଲା 'ସାର୍କ' - କିନ୍ତୁ ପ୍ରକୃତ ସହଯୋଗ ଅଭାବରୁ ସାର୍କ ଦୁର୍ବଳ ରହିଛି । ଅପର ପକ୍ଷରେ 'ୟୁରୋପିଆନ୍ ଇକୋନୋମିକ୍ କମ୍ୟୁନିଟି' ଓ କମିଶନ୍ (ଇଇସି) ଅର୍ଥନୈତିକ ମଞ୍ଚକୁ ରାଜନୈତିକ ମଞ୍ଚ କରି ଏବେ ଗଢ଼ିଛନ୍ତି ୟୁରୋପୀୟାନ୍ ପାର୍ଲାମେଣ୍ଟ । ଏହି ପାର୍ଲାମେଣ୍ଟର ନିଷ୍ପତ୍ତି ଅନୁସାରେ ସଭ୍ୟ ଦେଶମାନଙ୍କରେ 'ୟୁରୋ' ନାମକ ସାଧାରଣ ମୁଦ୍ରା ଦଶ ବର୍ଷ ହେଲା ପ୍ରଚଳନ ହେଲାଣି । ଏହି ମେଣ୍ଟର ୨୭ଟି ସଭ୍ୟ ଦେଶ ପରସ୍ପର ସହଯୋଗର ସୁଫଳ ପାଇବା ସହ ଅନ୍ୟ ଦେଶମାନଙ୍କୁ ସାହାଯ୍ୟ କରୁଛନ୍ତି ଓ ବିଶ୍ୱ ରାଜନୀତିକୁ ବେଶ୍ ପ୍ରଭାବିତ କରୁଛନ୍ତି । ୧୯୫୮ ରେ ପ୍ରତିଷ୍ଠିତ ଏହି ମେଣ୍ଟର ସଭ୍ୟ ସଂଖ୍ୟା ଆରମ୍ଭରେ ଥିଲା ଛଅ । ପରେ ଏହାର ବିରାଟ ସଫଳତାଦ୍ୱାରା ଆକୃଷ୍ଟ ହୋଇ ୟୁରୋପ୍‌ର ଆଉ ୨୧ଟି ଦେଶ ପର୍ଯ୍ୟାୟକ୍ରମେ ଏଥିରେ ସାମିଲ ହୋଇଛନ୍ତି । ଇଇସି ସହଯୋଗ ଏକତା ଓ ସମୃଦ୍ଧିର ଏକ ଜ୍ୱଳନ୍ତ ଉଦାହରଣ । ନାଟୋ, ସିଆଟୋ ଭଳି ସାମରିକ ମେଣ୍ଟ ନ ଗଢ଼ି ବିକାଶପାଇଁ ମେଣ୍ଟ ସର୍ବଦା ସ୍ୱାଗତଯୋଗ୍ୟ ।

ଏହି ସବୁ ଆନ୍ତର୍ଜାତିକ ଗୋଷ୍ଠୀମାନଙ୍କରେ 'ବ୍ରିକ୍' ସମ୍ପର୍କରେ ପ୍ରବଳ ଆଗ୍ରହ ଓ କୌତୂହଳ ସୃଷ୍ଟି କରିଛି ରିପୋର୍ଟ ନଂ ୯୯ । ଏହି ରିପୋର୍ଟ ବା ପେପର ଅନୁସାରେ ୨୦୫୦ ମସିହା ବେଳକୁ 'ବ୍ରିକ୍' ଦେଶମାନଙ୍କର ସମୂହ ସମ୍ପତ୍ତି 'ଜି-ଛଅ' ଦେଶଙ୍କ ସମ୍ପତ୍ତି ଓ ଆୟକୁ ଟପିଯିବ । ତା'ର କୋଡ଼ିଏ ବର୍ଷ ପୂର୍ବରୁ ଧନୀ 'ଜି-ଛଅ' ଓ 'ବ୍ରିକ୍'ର ଜିଡିପି ସମାନ ହୋଇଯିବ ଏବଂ ୨୦୨୫ ମସିହା ବେଳକୁ ଭାରତ ବିଶ୍ୱର ତୃତୀୟ ଅର୍ଥନୈତିକ ମହାଶକ୍ତି ହୋଇ ଠିଆ ହେବ । ୨୦୩୦ ମସିହା ବେଳକୁ ଭାରତ; ଫ୍ରାନ୍ସ, ଜର୍ମାନୀ, ଇଟାଲୀକୁ ଓ ୨୦୩୨ ମସିହାରେ ଜାପାନ୍‌କୁ ଟପିବ ଏବଂ ପରେ ପରେ ଅନ୍ୟ ଧନୀ ଦେଶମାନଙ୍କ ପାଖରେ ଠିଆ ହେବ । 'ଜି-ସେଭେନ୍' ପରେ ଆସିଯିବେ 'ନେକ୍ସଟ୍ ଇଲେଭେନ୍' - ଅର୍ଥାତ୍ ଆଉ ଏଗାରଟି ଦେଶ । ଏମାନେ ହେଲେ ବାଂଲାଦେଶ, ଇଜିପ୍ଟ, ଇଣ୍ଡୋନେସିଆ, ଇରାନ୍, କୋରିଆ, ମେକ୍ସିକୋ,

ନାଇଜେରିଆ, ପାକିସ୍ତାନ, ଫିଲିପାଇନ୍‌ସ, ତୁର୍କୀ ଓ ଭିଏତ୍‌ନାମ । ଏକବିଂଶ ଶତାବ୍ଦୀରେ ଏହି ୧୫ଟି ଦେଶ ବିଶ୍ୱ ଅର୍ଥନୀତିକୁ ଓଲଟ ପାଲଟ କରିଦେବେ । ଏମାନଙ୍କ ମଧ୍ୟରୁ କୋରିଆ ଓ ମେକ୍ସିକୋର ଆୟ; ଜର୍ମାନୀ, ଫ୍ରାନ୍‌ସ, ଇଟାଲୀ, ଜାପାନ୍ ଓ ଇଂଲଣ୍ଡଠାରୁ ଅଧିକ ହେବ । ବିଶ୍ୱର ୨୫ଟି ବୃହତ୍ତମ ମହାନଗରୀ ମଧ୍ୟରୁ ୨୦ଟି ମହାନଗରୀ ରହିବେ ଉପରୋକ୍ତ ୧୫ଟି ଦେଶରେ ।

ଏହାଛଡ଼ା ୨୦୧୫ ମସିହା ବେଳକୁ ଏହି ୧୫ଟି ଦେଶର ପ୍ରାୟ ୧୦୦ କୋଟି ଲୋକଙ୍କର ଜଣ ପିଛା ବାର୍ଷିକ ଆୟ ୩୦୦୦ ଡଲାର ବା ୧୪୦ ହଜାର ଟଙ୍କାକୁ ଅତିକ୍ରମ କରିଯିବ । ଯାହାଙ୍କର ମୁଣ୍ଡପିଛା ବାର୍ଷିକ ଆୟ ୩୦୦୦ ଡଲାରରୁ ଅଧିକ, ବିକାଶଶୀଳ ଦେଶରେ ସେମାନଙ୍କୁ ମଧ୍ୟବିତ୍ତ ଶ୍ରେଣୀ ବା ମିଡ଼ିଲ୍ କ୍ଲାସ୍ ବୋଲି କୁହାଯାଏ । ଏବେ ଭାରତରେ ହାରାହାରି ମୁଣ୍ଡପିଛା ବାର୍ଷିକ ଆୟ ୧୧୭୯୯ ଟଙ୍କା । ୨୦୨୫ ସୁଦ୍ଧା ଏହି ଆୟ ୪ ଗୁଣ ବଢ଼ିଯିବ । ୧୫ ବର୍ଷ ଭିତରେ ଭାରତର ମଧ୍ୟବିତ୍ତ ଶ୍ରେଣୀଙ୍କର ମୁଣ୍ଡପିଛା ଆୟ ୩୦୦୦ ଡଲାରରେ ପହଞ୍ଚିବ । ଆମ ଦେଶରେ ପ୍ରାୟ ୩୦ କୋଟି ମଧ୍ୟବିତ୍ତ ଅଛନ୍ତି । ମଧ୍ୟବିତ୍ତ ସଂଖ୍ୟା ବଢ଼ିବା ସଙ୍ଗେସଙ୍ଗେ ଗରିବ ଲୋକଙ୍କ ସଂଖ୍ୟା କମିବ ଏବଂ ଗରିବଙ୍କ ସଂଖ୍ୟା ହ୍ରାସ ହେବା ଫଳରେ ଦେଶର ଆର୍ଥିକ ବିକାଶ ତ୍ୱରାନ୍ୱିତ ହେବ । କିନ୍ତୁ ଏହି ପ୍ରକ୍ରିୟା ମନକୁ ମନ ଚାଲିବ ନାହିଁ । ରାଜନୈତିକ ସ୍ଥିରତା, ଅର୍ଥନୈତିକ ସଂସ୍କାର, ସାମାଜିକ ନିରାପତ୍ତା, ଉତ୍ପାଦନ ବୃଦ୍ଧି, ସୁଷମ ବଣ୍ଟନ ଓ ଶାନ୍ତି ଉପରେ ଏହା ନିର୍ଭର କରିବ । ଗତ ୧୦ବର୍ଷ ହେଲା ଭାରତୀୟ ଅର୍ଥନୀତିର ବେଗ ଯଦି ଆଉ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ଚାଲୁ ରହିବ, ତେବେ ଭାରତକୁ ପୃଥିବୀର ତୃତୀୟ ବୃହତ୍ତମ ଅର୍ଥନୈତିକ ଶକ୍ତି ହେବାରୁ କେହି ବିଚ୍ୟୁତ କରିପାରିବେ ନାହିଁ ।

ଏହି ଭବିଷ୍ୟତ ବାଣୀ ଜ୍ୟୋତିଷମାନଙ୍କ ମୁଖ ନିଃସୃତ ନୁହେଁ । ଏହା ବିଶେଷଜ୍ଞମାନଙ୍କ ଗବେଷଣା ଓ ଅନୁଧ୍ୟାନ ଉପରେ ଆଧାରିତ । ୨୦୩୫ ରୁ ୨୦୫୦ ମସିହା ମଧ୍ୟରେ ବିଭିନ୍ନ ଦେଶରେ ଥିବା - ଜନସଂଖ୍ୟାର ସ୍ୱରୂପ ଓ ଚରିତ୍ର, ସେମାନଙ୍କର ସାକ୍ଷରତା ହାର, ସ୍ୱାସ୍ଥ୍ୟ ଓ ଶିକ୍ଷାର ମାନ ଏବଂ ଜ୍ଞାନ-କୌଶଳର ପରିସ୍ଥିତିରୁ ଏହା ଜଣାପଡ଼ିବ । ୨୦୫୦ ମସିହା ବେଳକୁ କେଉଁ ଦେଶରେ କେତେ ଲୋକ ସମର୍ଥ ଓ କାର୍ଯ୍ୟକ୍ଷମ ରହିବେ; କେତେ ପିଲା, କେତେ ବୁଢ଼ା, କେତେ ରୁଗ୍‌ଣ, କେତେ ବେକାର, କେତେ ଗରିବ ଓ କେତେ ଧନୀ ଲୋକ ସେ ଜନସଂଖ୍ୟାରେ ଥିବେ; ଦେଶର ମାଟି, ପାଣି, ପବନ ଓ ପରିବେଶର ଅବସ୍ଥା କିପରି ଥିବ; ପଡ଼ୋଶୀ

ଦେଶମାନଙ୍କ ସହ ଶାନ୍ତି ଓ ସଦ୍‌ଭାବ ଏବଂ ଦେଶ ଭିତରେ ବିଭିନ୍ନ ଜାତି, ଧର୍ମ, ସମ୍ପ୍ରଦାୟଙ୍କ ମଧ୍ୟରେ ବୁଝାମଣା, ମହିଳାମାନଙ୍କ ଅବସ୍ଥା ଏବଂ ସର୍ବୋପରି ଗଣତାନ୍ତ୍ରିକ ବ୍ୟବସ୍ଥା ଓ ଦୁର୍ନୀତିମୁକ୍ତ ଶାସନ ପ୍ରଣାଳୀ ଥିବ କି ନାହିଁ; ତା ଉପରେ ଏହି ବିକାଶର ଗତି ନିର୍ଭର କରିବ ।

କେବଳ କାର୍ଯ୍ୟକ୍ଷମ ଜନସଂଖ୍ୟାକୁ ବିଚାର କଲେ - ବ୍ରାଜିଲ୍, ରୁଷିଆ, ଇଣ୍ଡିଆ ଓ ଚାଇନା ('ବ୍ରିକ୍') ମଧ୍ୟରେ ଆମ ଦେଶର କ୍ଷମତା ୨୦୫୦ ବେଳକୁ ଅନ୍ୟମାନଙ୍କ ଅପେକ୍ଷା ଉପରେ ଥିବ । ୧୫ ରୁ ୫୯ ବର୍ଷ ମଧ୍ୟରେ ଥିବା ଅବସ୍ଥାକୁ କାର୍ଯ୍ୟକ୍ରମ ଓ ଉତ୍ପାଦନକ୍ଷମ ବୟସ ବୋଲି ଧରାଯାଏ । ୨୦୫୦ ମସିହାରେ ଏହି ବୟସର ଲୋକେ ଚୀନ୍‌ରେ ଥିବେ ପ୍ରତି ଶହେ ଜଣରେ ମାତ୍ର ୫୨ ଜଣ । 'ଜି-ଛଅ' ଦେଶରେ ଥିବେ ଶତକଡ଼ା ୫୩ ଜଣ । ରୁଷିଆରେ ଥିବେ ୫୪ ଜଣ ଓ ବ୍ରାଜିଲ୍‌ରେ ଥିବେ ୫୬ ଜଣ ଏବଂ ସବୁଠାରୁ ବେଶି କାର୍ଯ୍ୟକ୍ଷମ ଓ ଉତ୍ପାଦନକ୍ଷମ ଲୋକ ଥିବେ ଭାରତରେ - ପ୍ରତି ଶହେ ଜଣରେ ୬୦ (ଷାଠିଏ) ଜଣ । ଏହି କାରଣରୁ କୁହାଯାଇଛି ଯେ ଯଦି ଅନ୍ୟାନ୍ୟ ସହାୟକ ସ୍ଥିତି ଅନୁକୂଳ ରହେ, ଭାରତ ୨୦୫୦ ମସିହାରେ ବିଶ୍ୱର ଦ୍ୱିତୀୟ ମହାଶକ୍ତି ହୋଇ ଠିଆ ହେବାର ସମ୍ଭାବନାକୁ ମଧ୍ୟ ଅସ୍ୱୀକାର କରିହେବ ନାହିଁ । ତେଣୁ ଏବକାର 'ଜି-ଛଅ'ର ସ୍ୱରୂପ ୨୦୫୦ରେ ନାଟକୀୟ ଭାବରେ ବଦଳିଯିବ । ସେତେବେଳେ ଯେଉଁ ଛଅଟି ବଡ଼ ଅର୍ଥନୈତିକ ଶକ୍ତି ଭାବେ ଉଭା ହେବେ - ସେମାନେ ହେଲେ - ବ୍ରାଜିଲ୍, ଇଣ୍ଡିଆ, ରୁଷିଆ, ଚାଇନା, ଜାପାନ୍ ଓ ଯୁକ୍ତରାଷ୍ଟ୍ର ଆମେରିକା । ଜର୍ମାନୀ, ଇଂଲଣ୍ଡ, ଫ୍ରାନ୍‌ସ, ଇଟାଲୀ ଓ କାନଡ଼ା ଏହି ଗ୍ରୁପ୍‌ରୁ ବାଦ୍ ପଡ଼ିବେ ।

ତେବେ 'ଗ୍ରୁପ୍ ଛଅ' ସଭ୍ୟ ହୋଇଗଲେ ବି ଭାରତ ଅର୍ଥନୈତିକ ଦୃଷ୍ଟିରୁ ଆମେରିକା ସମକକ୍ଷ ହୋଇ ପାରିବ ନାହିଁ । କାରଣ ୨୦୫୦ରେ ଆମେରିକାରେ ମୁଣ୍ଡପିଛା ହାରାହାରି ଆୟ ବଢ଼ିଯାଇ ଅଶୀହଜାର ଡଲାରରେ ପହଞ୍ଚିବ । ଦକ୍ଷିଣ କୋରିଆରେ ଏହା ହେବ ୮୧,୪୬୨ ଡଲାର, ମେକ୍ସିକୋରେ ୫୨,୯୯୦ ଡଲାର । ତେଣୁ 'ବୃହତ୍ ଅର୍ଥନୀତି' ଓ ମୁଣ୍ଡପିଛା ଆୟ ଦୁଇଟି ଅଲଗା କଥା । ବ୍ୟକ୍ତିଗତ ଆୟ ବଢ଼େଇବାକୁ ହେଲେ ଭାରତକୁ ଆହୁରି ପରିଶ୍ରମ ଓ ସମୟ ଲାଗିବ । ପ୍ରତ୍ୟେକ ବ୍ୟକ୍ତିଙ୍କପାଇଁ ମନପସନ୍ଦ ସୁଯୋଗ ସୃଷ୍ଟି କରିବାକୁ ହେବ । ସୋସିଆଲ ସେକ୍ଟର ବା ସାମାଜିକ କ୍ଷେତ୍ରରେ ଖର୍ଚ୍ଚ ବୃଦ୍ଧି କରିବାକୁ ହେବ, ଉତ୍ପାଦନ ଓ ବଣ୍ଟନ ବ୍ୟବସ୍ଥାକୁ ସଜାଡ଼ିବାକୁ ହେବ - ଇତ୍ୟାଦି । ଅପରପକ୍ଷରେ ଯେଉଁ ସବୁ ଦେଶରେ ମୁଣ୍ଡପିଛା ଆୟ ଦ୍ରୁତଗତିରେ ବଢେ ତାହାର ପ୍ରଭାବ ପରିବେଶ ଉପରେ ପଡ଼େ । ଲୋକେ ଅଧିକ

ମୋଟରଗାଡ଼ି, ଅଧିକ ପେଟ୍ରୋଲ୍, ଅଧିକ ବିଜୁଳି, ଅଧିକ ଜଳ, ଅଧିକ ଖାଉଟିଦ୍ରବ୍ୟ ବ୍ୟବହାର କରନ୍ତି । ଅଧିକ ପ୍ରଦୂଷଣ କରନ୍ତି । ତେଣୁ ସବୁ ଉନ୍ନତ ଦେଶରେ ପ୍ରଦୂଷଣ ବେଶି । ତେଣୁ ପଞ୍ଚଦଶକରେ ପ୍ରଥମ ଶ୍ରେଣୀ ଦେଶ ଭାବେ ଗଣା ହେବା ଚେଷ୍ଟାରେ ଆମେ ନିଜର ପ୍ରକୃତି ଓ ପରିବେଶକୁ ଅବହେଳା କରିପାରିବା ନାହିଁ । ଏବଂ ଏବେ ଯେଉଁ ୨୨ କୋଟି ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ଅଛନ୍ତି, ସେମାନେ ସୀମା ଉପରକୁ ଉଠିଲେ ଯାଇ ଆମେ ହେବା ପ୍ରକୃତରେ ପ୍ରଥମଶ୍ରେଣୀୟ ଦେଶ ।

*୧୯ ଏପ୍ରିଲ, ୨୦୦୭*



# ତୃତୀୟ ମହାଶକ୍ତି, ଚତୁର୍ଥ ବିଶ୍ୱ

ଦୁଇ ହଜାର ଏକ ମସିହାରେ ବିଶ୍ୱସ୍ତରରେ ଓ ରାଜ୍ୟ ସ୍ତରରେ ଦୁଇଟି ପରସ୍ପର ବିରୋଧୀ ଘଟଣା ଚିନ୍ତାଶୀଳ ବ୍ୟକ୍ତିଙ୍କୁ ବିସ୍ମିତ କରିଦେଇଥିଲା । ଏକ ପକ୍ଷରେ ମିଳିତ ଜାତିସଙ୍ଘ ଅନୁସାରେ ୨୦୦୧ ମସିହାକୁ 'ଆନ୍ତର୍ଜାତିକ ସ୍ୱେଚ୍ଛାସେବା ବର୍ଷ' ଭାବରେ ଘୋଷଣା କରାଗଲା ବେଳକୁ ଅପର ପକ୍ଷରେ ଠିକ୍ ସେହି ବର୍ଷ ଏପ୍ରିଲ୍ ୯ ତାରିଖରେ ଓଡ଼ିଶା ବିଧାନସଭାରେ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କୁ ସରକାରୀ ନିୟନ୍ତ୍ରଣ ଅଧୀନସ୍ଥ କରିବା ପାଇଁ ପ୍ରସ୍ତାବ ପାସ୍ ହୋଇଗଲା । ଓଡ଼ିଶାରେ ଜନଶକ୍ତି ଓ କଲ୍ୟାଣପାଇଁ କାମ କରୁଥିବା ବ୍ୟକ୍ତି ଓ ସଂସ୍ଥାମାନଙ୍କପାଇଁ ଏହା ଥିଲା ଏକ କଳାଦିବସ, କିନ୍ତୁ ବିଶ୍ୱର ଅନ୍ୟତ୍ର ୨୦୦୧ ଥିଲା ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ଓ ମାନବ କଲ୍ୟାଣପାଇଁ ଶାନ୍ତି, ସେବା, ସହଯୋଗ, ସ୍ୱୀକୃତି ଓ ସମର୍ଥନର ବର୍ଷ । 'କର୍ମୀ'ମାନଙ୍କୁ 'କର୍ମଚାରୀ'ଙ୍କ କବଳକୁ ଓ ନାଗରିକ ସମାଜକୁ ସରକାରଙ୍କ ଅଧୀନକୁ ଆଣିବାପାଇଁ ସରକାରଙ୍କ ଉଦ୍ୟମ ଓଡ଼ିଶାର ବହୁ ନିଷ୍ଠାପର ବ୍ୟକ୍ତି ଓ ଅନୁଷ୍ଠାନଙ୍କୁ ବ୍ୟଥିତ କରିଥିଲା ।

ଏହା ବୁଝିବା ଦରକାର ଯେ ନିଷ୍ଠାପର ବ୍ୟକ୍ତି, ଅନୁଷ୍ଠାନ ଓ 'ନାଗରିକ ସମାଜ'ର ସହଯୋଗ ବିନା ଉନ୍ନୟନ ଯୋଜନାମାନ ବିଫଳ ହୁଏ ଓ ଦେଶ ଦୁର୍ବଳ ହୋଇଯାଏ । ଓଡ଼ିଶାରେ ମହାବାତ୍ୟା, ମହାରାଷ୍ଟ୍ର ଓ ଗୁଜୁରାଟରେ ଭୂମିକମ୍ପ, କାରଗିଲ୍‌ରେ ବିଦେଶୀ ଆକ୍ରମଣ ବେଳେ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ସର୍ବ ପ୍ରଥମେ ସାହାଯ୍ୟ ଓ ସମର୍ଥନ ନେଇ ଆଗେଇ ଆସିଥିଲେ । ଜନଶକ୍ତି ସଦାବେଳେ ରାଜଶକ୍ତିଠାରୁ ବଳିଷ୍ଠ, ଅଧିକ ସମ୍ବେଦନଶୀଳ ଓ ଅଧିକ ସୃଜନଶୀଳ । ତେଣୁ ମହାତ୍ମାଗାନ୍ଧୀ ସ୍ୱାଧୀନତା ପରେ କଂଗ୍ରେସ ଦଳକୁ ଭାଙ୍ଗି ଦେଇ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଢ଼ିବାକୁ ପରାମର୍ଶ ଦେଇଥିଲେ । କଂଗ୍ରେସ ଦଳ ଏହି ପ୍ରସ୍ତାବକୁ ଗ୍ରହଣ କଲା ନାହିଁ କିନ୍ତୁ ସ୍ୱାଧୀନତା ପରବର୍ତ୍ତୀ କାଳରେ ଦେଶର ବିଭିନ୍ନ ଅଞ୍ଚଳରେ ହଜାର ହଜାର ସାମାଜିକ ଅନୁଷ୍ଠାନ ଗଢ଼ି ଉଠିଲା । ବହୁ

ବ୍ୟକ୍ତି ଓ ସଂସ୍ଥା ଦେଶର ଅଗମ୍ୟ ପଛୁଆ ଅଞ୍ଚଳରେ ପଶି ଶିକ୍ଷା, ସ୍ୱାସ୍ଥ୍ୟ ଓ ବିଭିନ୍ନ ଉନ୍ନୟନ କାମପାଇଁ ଲୋକଙ୍କୁ ଏକଜୁଟ କଲେ । ସାକ୍ଷରତା ମିଶନ ଭଳି ସରକାରୀ ଅଭିଯାନକୁ ଲୋକଙ୍କ ପାଖକୁ ନେଇଗଲେ, ଲୋକ ବିରୋଧୀ ଯୋଜନାପାଇଁ ସରକାରଙ୍କୁ ତାଗିଦ କଲେ; ପରିବେଶ ସୁରକ୍ଷା, ମହିଳା ସଶକ୍ତୀକରଣ ଓ ମାନବ ଅଧିକାର ସୁରକ୍ଷା ପାଇଁ ସମାଜ ଓ ସରକାରଙ୍କୁ ଗୋଟିଏ ମଞ୍ଚରେ ଠିଆ ହେବାପାଇଁ ବାଧ କଲେ, ଲକ୍ଷ ଲକ୍ଷ ଯୁବକ, ଯୁବତୀଙ୍କୁ ତାଲିମ ଦେଇ ନିଜ ଗୋଡରେ ଠିଆ କରାଇଲେ, ଅଣୁ ଋଣ ମାଧ୍ୟମରେ ୩୦ ଲକ୍ଷ ସ୍ୱୟଂ ସହାୟକ ଗୋଷ୍ଠୀ ଗଢିଲେ, ସମ୍ପୂର୍ଣ୍ଣ କ୍ରାନ୍ତି ଓ ନବନିର୍ମାଣ ଭଳି ଆନ୍ଦୋଳନଦ୍ୱାରା ସରକାର ବଦଳାଇ ଦେଲେ – ଏମିତି କେତେ କ'ଣ ! ତା ସାଙ୍ଗକୁ ଏନ୍‌ସିସି, ଏନ୍‌ଏସ୍‌ଏସ୍, ସ୍କାଉଟସ୍ – ଗାଇଡ୍‌ସ ଓ ନେହେରୁ ଯୁବକେନ୍ଦ୍ର ଭଳି ସଂସ୍ଥାରେ ଏବେ ୨ କୋଟି ସ୍ୱୟଂସେବୀ ବିନା ପଇସାରେ ସମାଜସେବା କାର୍ଯ୍ୟ କରି ଆସୁଛନ୍ତି ।

ଯେପରି ସବୁ ରାସ୍ତା ଅଙ୍କା ବଙ୍କା ନୁହେଁ ବା ସବୁ ଗଛ ସିଧା ସଳଖ ନୁହଁନ୍ତି, ସେହିପରି ସବୁ ପଞ୍ଜୀକୃତ ଅନୁଷ୍ଠାନ ଅସାଧୁ ନୁହଁନ୍ତି । ତା ହୋଇଥିଲେ ରାମକୃଷ୍ଣ ମିଶନ୍ ବା ରେଡକ୍ରସ, ଗ୍ରାମୀଣ ବ୍ୟାଙ୍କ, ଅକ୍‌ସଫାମ୍, କେୟାର ଭଳି ଅନେକ ସାମାଜିକ ଅନୁଷ୍ଠାନ ଆଜି ନଥାନ୍ତେ ଏବଂ ବୁଦ୍ଧ, ଗାନ୍ଧୀ, ମାର୍ଟିନ୍ ଲୁଥର, କିଙ୍ଗ ଓ ନେଲସନ୍ ମାଣ୍ଡେଲା, ମଦର ଟେରେସାଙ୍କ ଭଳି ବ୍ୟକ୍ତିମାନେ ବିଶ୍ୱର ବିବେକ-ପୁରୁଷ ଭାବେ ସମ୍ମାନିତ ହେଉନଥାନ୍ତେ । ସମାଜ ଓ ସଭ୍ୟତାର ପ୍ରଗତି ଓ ପରିବର୍ତ୍ତନରେ ସରକାରଙ୍କ ଅପେକ୍ଷା ନାଗରିକ ସମାଜ, ବେସରକାରୀ ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କ ଅବଦାନ ସବୁଠାରୁ ଅଧିକ ।

ଏମାନେ ସରକାରଙ୍କୁ ପ୍ରଭୁ ଓ ନିଜକୁ ଭୃତ୍ୟ ବୋଲି ଭାବନ୍ତି ନାହିଁ । ସରକାରଙ୍କ ଆର୍ଥିକ ସାହାଯ୍ୟ ଉପରେ ନିର୍ଭରଶୀଳ ନୁହଁନ୍ତି । ଅପର ପକ୍ଷରେ ବିଭିନ୍ନ ଉନ୍ନୟନ କାର୍ଯ୍ୟରେ ସଫଳତାପାଇଁ ସରକାର ଏମାନଙ୍କର ସାହାଯ୍ୟ, ସମର୍ଥନ ଲୋଡିଥାନ୍ତି । ରାଷ୍ଟ୍ରୀୟ ଓ ଆନ୍ତର୍ଜାତିକ କ୍ଷେତ୍ରରେ ମାନବ କଲ୍ୟାଣ ଓ ଅଧିକାରପାଇଁ ଆୟୋଜିତ ସବୁ ସଭା, ସମ୍ମିଳନୀରେ ସ୍ୱେଚ୍ଛାସେବୀ ସଂସ୍ଥା ଓ ନାଗରିକ ସମାଜ ବା ସିଭିଲ୍ ସୋସାଇଟିକୁ ଆମନ୍ତ୍ରିତ କରାଯାଏ । ବିଶ୍ୱ ସମ୍ମିଳନୀର ଘୋଷଣା ପତ୍ରରେ ସେମାନଙ୍କ ମତାମତକୁ ଗୁରୁତ୍ୱ ଦିଆଯାଏ । ଏହିସବୁ ଦୃଷ୍ଟିରୁ ସ୍ୱେଚ୍ଛାସେବୀ ସଂସ୍ଥା ଓ ନାଗରିକ ସମାଜକୁ "ଚତୁର୍ଥ ବିଶ୍ୱ" ବୋଲି କୁହାଯାଏ । ଏବେ ମିଳିତ ରାଷ୍ଟ୍ରସଙ୍ଘରେ "ଚତୁର୍ଥ ବିଶ୍ୱ"ର ଉପଯୁକ୍ତ ପ୍ରତିନିଧିତ୍ୱପାଇଁ ଏକ ବିକଳ୍ପ ଜେନେରାଲ ଆସେମ୍ବ୍ଲିପାଇଁ ଲବି ଆରମ୍ଭ ହେଲାଣି । ସେହିଭଳି ରାଷ୍ଟ୍ର ଓ ରାଜ୍ୟ ସ୍ତରରେ ବିକଳ୍ପ ପାର୍ଲାମେଣ୍ଟ ଓ ବିଧାନ ସଭା

ପାଇଁ ବିଚାର ଆଲୋଚନା ଚାଲିଲାଣି । ରାଜନୈତିକ ଦଳମାନେ ସର୍ବଦା ଦେଶର ସ୍ୱାର୍ଥ ଠାରୁ ଦଳର ସ୍ୱାର୍ଥକୁ ଉଚ୍ଚ ସ୍ଥାନ ଦେଉଥିବାରୁ ଓ ବିଭିନ୍ନ ରାଷ୍ଟ୍ରରେ ସରକାରଙ୍କ କ୍ରମାଗତ ଅପରାଗତାଯୋଗୁଁ ଏହିଭଳି ସଂସ୍ଥା ସବୁ ଉପରେ ଜନସାଧାରଣଙ୍କ ଆସ୍ଥା ବଢ଼ିଛି ଏବଂ ବିକାଶମୂଳକ କାର୍ଯ୍ୟପାଇଁ ଏଭଳି ସଂସ୍ଥା ବିଭିନ୍ନ ଦେଶର ସରକାରଙ୍କ ଉପରେ ଚାପ ଦେଉଛନ୍ତି । ଉଦାହରଣ ସ୍ୱରୂପ ଓଡ଼ିଶା ସରକାର ବିଭିନ୍ନ ଯୋଜନାପାଇଁ ବରାଦ ଅର୍ଥର ୫୦ ଭାଗରୁ ଅଧିକ ଖର୍ଚ୍ଚ କରିପାରନ୍ତି ନାହିଁ । ତା'ମଧ୍ୟରୁ ଅଧାରୁ ଅଧିକ ଅର୍ଥ ଲୋକଙ୍କ ପାଖରେ ନ ପହଞ୍ଚି ବଟମାରଣା ହୋଇଯାଏ । କେନ୍ଦ୍ରସରକାର ମଧ୍ୟ ନିଜେ ସୃଷ୍ଟି କରିଥିବା ନିୟମ କାନୁନ୍‌ଦ୍ୱାରା ବାନ୍ଧି ହୋଇପଡ଼ିବାରୁ ସେଥିରୁ ମୁକୁଳିବାପାଇଁ ରେଜିଷ୍ଟ୍ରେଡ୍ ସୋସାଇଟି ଗଢ଼ି ସେମାନଙ୍କ ଜରିଆରେ ଯୋଜନା ସବୁ କାର୍ଯ୍ୟକାରୀ କରନ୍ତି । ଏ ମଧ୍ୟରେ କେନ୍ଦ୍ର ଓ ରାଜ୍ୟ ସରକାର ଉଭୟ ନିଜ ନିଜର ଅପାରଗତାକୁ ଘୋଡାଇବା ପାଇଁ ପ୍ରାୟ ଏକ ହଜାର ରୁ ଅଧିକ ସୋସାଇଟି ଗଢ଼ି ସାରିଲେଣି । କାରଣ ସୋସାଇଟିରେ ଅଙ୍କୁଶ ଓ ନିୟନ୍ତ୍ରଣ କମ୍ ଏବଂ କାମ କରିବାପାଇଁ ସ୍ୱାଧୀନତା ବେଶି ।

ସାରା ବିଶ୍ୱରେ ଭଲ୍ୟୁଣ୍ଟାରି ସେକ୍ଟର ଉପରେ କ୍ରମାଗତ ନିର୍ଭରଶୀଳତାର ଯେଉଁ କେତେକ ଖାସ୍ କାରଣ ରହିଛି, ସେଗୁଡିକ ହେଲା ଏହିପରି - (୧) ଏମାନଙ୍କ ମଧ୍ୟରୁ ଅନେକ ଲୋକଙ୍କ ସୁଖଦୁଃଖରେ ନିଜକୁ ସାମିଲ କରିଥାନ୍ତି । (୨) ଲୋକଙ୍କଦ୍ୱାରା, ଲୋକଙ୍କ ସହ, ଲୋକଙ୍କପାଇଁ କାମ କରିବା ସହିତ ଅନ୍ୟାୟ, ଶୋଷଣ ବିରୋଧରେ ସେମାନଙ୍କୁ ଏକଜୁଟ କରନ୍ତି । (୩) ସାମାଜିକ ଓ ଆର୍ଥିକ ପରିବର୍ତ୍ତନପାଇଁ ନୂଆ ଉପାୟ ଓ ବିଚାରଧାରା ପ୍ରୟୋଗ କରନ୍ତି । (୪) ପ୍ରଶାସନିକ ଖର୍ଚ୍ଚ କମ୍ କରି ପ୍ରୋଗ୍ରାମ୍ ଖର୍ଚ୍ଚ ଅଧିକ କରନ୍ତି । (୫) ଲୋକଶକ୍ତିରେ ଆସ୍ଥା ରଖନ୍ତି । (୬) କର୍ମଚାରୀ ନ ହୋଇ 'କର୍ମୀ' ଭାବରେ ରହନ୍ତି । (୭) କାମରେ ଦୃଢ଼ ମନୋବଳ, ନୈତିକତା ଓ ନିଷ୍ଠା ଦେଖାନ୍ତି ଓ ରାଜନୀତି, ଲାଭ ଓ ଲୋଭରୁ ଦୂରରେ ରହନ୍ତି । (୮) କର୍ମୀମାନେ ନିଜ କର୍ମ କ୍ଷେତ୍ରରେ ବିଶେଷଜ୍ଞ । (୯) ସରକାରଙ୍କ ସହ ସହଯୋଗ କରନ୍ତି, କିନ୍ତୁ ଭିନ୍ନ ମତ ବି ଦିଅନ୍ତି । (୧୦) ଏଠାରେ କାମ ଅଧିକ ହେଲେ ବି ବ୍ୟକ୍ତିଗତ ଆୟ, ସୁଖସୁବିଧା, ଭତ୍ତା ଇତ୍ୟାଦିପାଇଁ ଧର୍ମଘଟ, ଆନ୍ଦୋଳନ, କାମବନ୍ଦ ହୁଏ ନାହିଁ । ସମସ୍ତେ ଏକାଠି ବସି ନିଷ୍ପତ୍ତି ନିଅନ୍ତି । ଆତ୍ମନିର୍ଭରଶୀଳ ହେବାପାଇଁ ଚେଷ୍ଟା କରନ୍ତି ।

ସ୍ୱେଚ୍ଛାସେବୀ ମାଧ୍ୟମରେ ବିଭିନ୍ନ ପ୍ରଗତିମୂଳକ କାମପାଇଁ ଅର୍ଥ କେଉଁଠୁ ଆସେ ? ସବୁଠାରୁ କମ୍ ଅର୍ଥ ଦିଅନ୍ତି ସରକାର ଓ ସବୁଠୁ ଅଧିକ ଅର୍ଥ ଦାନ କରନ୍ତି ଲୋକେ । ଏବଂ ଭାରତର ସବୁ ରାଜ୍ୟ ସରକାରଙ୍କ ତୁଳନାରେ ଓଡ଼ିଶା ସରକାର ସବୁଠାରୁ କମ୍

ଅନୁଦାନ ଦିଅନ୍ତି । ଅନେକ ସ୍ୱେଚ୍ଛାସେବୀ ସଂସ୍ଥା, ସରକାରଙ୍କଠାରୁ କୌଣସି ଅନୁଦାନ ନ ନେଇ ଲୋକସମ୍ବଳ ଉପରେ ନିର୍ଭର କରନ୍ତି । ବିଭିନ୍ନ ବର୍ଗରୁ ଅନ୍ୟକୁ ସାହାଯ୍ୟ କରିବାପାଇଁ ଉଦ୍‌ବୁଦ୍ଧ ବ୍ୟକ୍ତିମାନେ ଶ୍ରମ ଓ ଅର୍ଥ ଦାନ କରିଥାନ୍ତି । ଉଦାହରଣ ସ୍ୱରୂପ (ଅକ୍ଟୋବର ୨୦୦୬) ଗତ ବର୍ଷ ଆମେରିକାର ଦ୍ୱିତୀୟ କୁବେର ୱାରେନ୍ ବଫେଟ୍ ବିଶ୍ୱର ଗରିବ ଓ ଅସୁସ୍ଥ ଲୋକଙ୍କପାଇଁ ସ୍ୱେଚ୍ଛାସେବୀ ଅନୁଷ୍ଠାନ "ବିଲ୍ ଓ ମେଲିଣ୍ଡା ଗେଟ୍‌ସ" ଫାଉଣ୍ଡେସନ୍‌କୁ ୧୩୦ ହଜାର କୋଟି ଟଙ୍କା ଦାନ କରିଛନ୍ତି । ଭାରତରେ ପ୍ରତିବର୍ଷ ସମାଜସେବାପାଇଁ ସାଧାରଣ ବ୍ୟକ୍ତିଙ୍କର ଦାନ ୨୦ ହଜାର କୋଟିରୁ ଅଧିକ । ଚାରିଟେବଲ୍ ଟ୍ରଷ୍ଟମାନଙ୍କର ଦାନ ଏଥିରେ ଅନ୍ତର୍ଭୁକ୍ତ ନୁହେଁ । ୟୁଏନ୍ ସହାୟତାରେ ପ୍ରସ୍ତୁତ ଏକ ସର୍ବେକ୍ଷଣ ଅନୁସାରେ ପୃଥିବୀର ୧୯୭ ଦେଶ ଭିତରୁ କେବଳ ୨୨ଟି ଦେଶରେ କାମ କରିଥିବା ଏନ୍‌ଜିଓମାନଙ୍କୁ ଜନକଲ୍ୟାଣପାଇଁ ବେସରକାରୀ ଅନୁଷ୍ଠାନମାନେ ଦାନ କରିଛନ୍ତି ୪ ଲକ୍ଷ କୋଟିରୁ ଅଧିକ ଟଙ୍କା । ଏହାଦ୍ୱାରା ପ୍ରାୟ ୧ କୋଟି ୯୦ ଲକ୍ଷ ଲୋକ ଚାକିରି ପାଇଛନ୍ତି । ଓଡ଼ିଶାରେ ସରକାର ଯେତିକି ଅନୁଷ୍ଠାନ ଚଳାନ୍ତି, ନାଗରିକ ସମାଜ ତା'ଠାରୁ ୧୦ ଗୁଣ ଅଧିକ ଅନୁଷ୍ଠାନ ଚଳାନ୍ତି । ଏଥିପାଇଁ ଗାଁ ଗାଁ ରେ ସାମାଜିକ ପାଣ୍ଠି ଥାଏ ।

ଜଗତୀକରଣ ପରେ ଜନମଙ୍ଗଳ ରାଷ୍ଟ୍ରମାନେ ଦୁର୍ବଳ ହୋଇପଡ଼ିଲେଣି । ତେଣୁ ଜନହିତକର କାମପାଇଁ ଖର୍ଚ୍ଚ କମି କମି ଯାଉଛି । ଏହି ପରିପ୍ରେକ୍ଷୀରେ ସମାଜସେବୀ ଅନୁଷ୍ଠାନମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ବଢ଼ିଯାଇଛି । ଓଡ଼ିଶା ଭଳି ରାଜ୍ୟରେ ସେମାନଙ୍କର ଆବଶ୍ୟକତା ବେଶି ।

*୩ ମେ, ୨୦୦୭*



# ସ୍ୱେଚ୍ଛାସେବା, ନାଗରିକ ସମାଜ ଓ ସରକାର

ସରକାର ଓ ବଜାର ଏହି ଦୁଇଟି ହେଲେ କ୍ଷମତା ଓ ଅର୍ଥର ପ୍ରତିନିଧି ଓ ପ୍ରତୀକ । ଏହି ଦୁଇ ମହାଶକ୍ତି ଛଡ଼ା ତୃତୀୟ ମହାଶକ୍ତି ହେଲା ନାଗରିକ ସମାଜ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନ । ଏହି ତ୍ରିଶକ୍ତିଙ୍କର ବିଚାର, ଆଚରଣରେ ସମନ୍ୱୟ ଓ ପରସ୍ପର ସମ୍ପର୍କ ଉପରେ ଦେଶର ଉନ୍ନତି ନିର୍ଭରଶୀଳ । ଏକ ବେସରକାରୀ ହିସାବରୁ ଜଣାଯାଏ ଯେ ସ୍ୱୟଂସହାୟକ ଗୋଷ୍ଠୀକୁ ଛାଡ଼ିଦେଲେ ଭାରତରେ ପ୍ରାୟ କୋଡ଼ିଏ ଲକ୍ଷ ପଞ୍ଜୀକୃତ ସୋସାଇଟି ଓ ଟ୍ରଷ୍ଟ ଅଛନ୍ତି । ଏମାନଙ୍କ ଭିତରେ ଅଛନ୍ତି ପ୍ରାୟ ୩ ଲକ୍ଷରୁ ଅଧିକ ଯୁବକ ସଙ୍ଘ ଓ ମହିଳା ମଣ୍ଡଳ, ଏହାଛଡ଼ା ପ୍ରାଇଭେଟ୍ ସ୍କୁଲ ଓ ଚିକିତ୍ସାଳୟ, ଧାର୍ମିକ ଅନୁଷ୍ଠାନ, ଯୋଗ, ଆଧ୍ୟାତ୍ମିକ ସଂସ୍ଥା, ଜନକଲ୍ୟାଣ ଓ ସେବା ଅନୁଷ୍ଠାନ ଇତ୍ୟାଦି । ଏହି ୨୦ ଲକ୍ଷ ମଧ୍ୟରୁ ସ୍ୱେଚ୍ଛାସେବୀ ସଂସ୍ଥା ଓ ସାମାଜିକ ଆନ୍ଦୋଳନମାନଙ୍କର ସଂଖ୍ୟା ଶତକଡ଼ା ୧୦ ଭାଗରୁ ଅଧିକ ନୁହେଁ । ସେହିଭଳି ଏହି ୨୦ ଲକ୍ଷ ବେସରକାରୀ ଅନୁଷ୍ଠାନ ଓ ସଂସ୍ଥା ମଧ୍ୟରୁ ମାତ୍ର ୨୦ ହଜାର ବିଦେଶୀ ଅନୁଦାନପାଇଁ ପଞ୍ଜୀକୃତ ଏବଂ କେବଳ ୧୦ ହଜାର ସଂସ୍ଥାକୁ ସରକାରୀ ଅନୁଦାନ ମିଳିଥାଏ । ବିଦେଶୀ ଅନୁଦାନ ପାଉଥିବା ପଞ୍ଜୀକୃତ ସଂସ୍ଥା ମଧ୍ୟରୁ ଅଧିକାଂଶ ଧାର୍ମିକ ଅନୁଷ୍ଠାନ । ଯୋଜନା କମିଶନଙ୍କ ଅଧ୍ୟୟନ (୨୦୦୨) ଅନୁସାରେ ୧୩ ହଜାର ବେସରକାରୀ ସଂସ୍ଥାକୁ ସରକାରୀ ଅନୁଦାନ ମିଳେ ଏବଂ ବିଦେଶରୁ ଯେତେ ଅନୁଦାନ ଆସେ ସେଥିରୁ ଶତକଡ଼ା ୯୫ ଭାଗରୁ ଅଧିକ ପାଆନ୍ତି ସ୍ୱୟଂ ସରକାର । ଗାନ୍ଧି ଏଡ୍ ଫାଉଣ୍ଡେସନଙ୍କ ହିସାବ ଅନୁସାରେ ଭାରତରେ ପ୍ରାୟ ୩୦ ହଜାର ସ୍ୱେଚ୍ଛାସେବୀ ସଂସ୍ଥା ଅତ୍ୟନ୍ତ ସକ୍ରିୟ । ଏମାନଙ୍କ ମଧ୍ୟରୁ ଶତକଡ଼ା ୮୦ ଭାଗ ହେଉଛନ୍ତି ଛୋଟ ଛୋଟ ଅନୁଷ୍ଠାନ, ଏମାନଙ୍କର ୨ ବା ୩ ଜଣ କର୍ମୀ ଏବଂ ବାର୍ଷିକ ବଜେଟ୍ ୫୦ ହଜାରରୁ ୫ ଲକ୍ଷ ଟଙ୍କା ଭିତରେ ।

ଏଥିରୁ ଜଣାପଡ଼େ ପଞ୍ଜୀକୃତ ଅନୁଷ୍ଠାନମାନଙ୍କ ମଧ୍ୟରୁ ମାତ୍ର ଶତକଡ଼ା ୭ ଭାଗ ସଂସ୍ଥା ସରକାରୀ ଓ ବିଦେଶୀ ଅନୁଦାନ ପାଇଥାନ୍ତି ବା ପ୍ରତି ଶହେ ଅନୁଷ୍ଠାନରୁ ୯୩ଟି ଅନୁଷ୍ଠାନ କୌଣସି ଅନୁଦାନ ଉପରେ ନିର୍ଭରଶୀଳ ନୁହଁନ୍ତି ଏବଂ ଯେଉଁ ୭ ଭାଗ ଅନୁଷ୍ଠାନ ସରକାରୀ ଅନୁଦାନ ପାଆନ୍ତି, ସେମାନଙ୍କ ମଧ୍ୟରୁ ପ୍ରାୟ ଏକ ତୃତୀୟାଂଶକୁ ସରକାର ନିଜେ ଡାକି ଅନୁଦାନ ଦେଇଥାନ୍ତି, କାରଣ ଏମାନଙ୍କ ସହଯୋଗ ବିନା ସରକାରୀ ଯୋଜନା କାର୍ଯ୍ୟକାରୀ ହୋଇପାରେ ନାହିଁ । ଗତ ୫୦ ବର୍ଷ ଭିତରେ ପରିବେଶ ସୁରକ୍ଷା, ନିରକ୍ଷରତା ଦୂରୀକରଣ, ମାନବ ଅଧିକାର, ମହିଳା ସଶକ୍ତୀକରଣ, ପଛୁଆ ବର୍ଗର ଉତ୍‌ଥାନ, ସମାଜ ଓ ଶାସନ ସଂସ୍କାର, କର୍ମନିଯୁକ୍ତି, ଗରିବୀ ଦୂରୀକରଣ ଏବଂ ସର୍ବୋପରି ଧର୍ମ ନିରପେକ୍ଷତା, ଜାତୀୟ ସଂହତି ଓ ଗଣତନ୍ତ୍ର ସୁରକ୍ଷାପାଇଁ ଯେତେ ନୂଆ ଆଇନ୍ କାନୁନ୍ ଓ ନୀତି ପ୍ରଣୟନ କରାଯାଇଛି, ସେସବୁ ନାଗରିକ ସମାଜ ଓ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କର ମିଳିତ ବିଚାର ଓ ଜନ ଆନ୍ଦୋଳନର ଫଳ । ଉଦାହରଣ ସ୍ୱରୂପ ପଞ୍ଚାୟତ ଓ ସ୍ୱାୟତ୍ତ ଶାସନ ସଂସ୍ଥାମାନଙ୍କୁ ଅଧିକ କ୍ଷମତା ଦେବାପାଇଁ ୭୩ ଓ ୭୪ତମ ସମ୍ବିଧାନ ସଂଶୋଧନ ପଛରେ ସ୍ୱେଚ୍ଛାସେବୀ ସଂସ୍ଥା ଓ ନାଗରିକ ସମାଜର ୪୦ ବର୍ଷ ସଂଘର୍ଷର ଇତିହାସ ରହିଛି । ଓଡ଼ିଶାରେ ପ୍ରାକୃତିକ ଓ ଖଣିଜ ସମ୍ପଦର ସୁରକ୍ଷାପାଇଁ, ଜନସ୍ୱାର୍ଥ ଓ ରାଜ୍ୟସ୍ୱାର୍ଥପାଇଁ, ନିର୍ମଳ ଶାସନପାଇଁ, ସୂଚନା ଅଧିକାରପାଇଁ ଚାଲିଥିବା ସଂଘର୍ଷର ଆଗ ଧାଡ଼ିରେ ଅଛନ୍ତି ସ୍ୱେଚ୍ଛାସେବୀ ସଂସ୍ଥାମାନେ । ବହୁ ଉଦୀୟମାନ, ଉଚ୍ଚ ଶିକ୍ଷାପ୍ରାପ୍ତ ବ୍ୟକ୍ତି ସରକାରୀ ଚାକିରିର ଲୋଭ ତ୍ୟାଗ କରି ଦୂରଦୂରାନ୍ତର ବଣ ଜଙ୍ଗଲ ମଧ୍ୟରେ ରହି କାମ କରୁଛନ୍ତି । ଅମୃତଭାଣ୍ଡରେ ବୁନ୍ଦାଏ ବିଷ ପଡ଼ିଲେ ଯେପରି ସମଗ୍ର ଭାଣ୍ଡଟି ଦୂଷିତ ହୋଇଯାଏ, ଅତି ଅଳ୍ପ ସଂଖ୍ୟକ ଅନୁଷ୍ଠାନଙ୍କର କାର୍ଯ୍ୟକଳାପଦ୍ୱାରା ଆଜି ସମଗ୍ର ଭଲ୍ୟୁଣ୍ଟାରୀ ସେକ୍ଟରକୁ ବଦନାମର ବୋଝ ଉଠାଇବାକୁ ପଡୁଛି । ସବୁଠାରୁ ଦୁର୍ଭାଗ୍ୟର କଥା ଯେ ଯେଉଁମାନଙ୍କର ଲୋକ ଅନୁଷ୍ଠାନ ସମ୍ପର୍କରେ ଜ୍ଞାନ କମ୍, ଅଧ୍ୟୟନ ଶୂନ ଏବଂ ଅବଧାନ ନଗଣ୍ୟ, ସେହିମାନେ ଏହି 'ଆନ୍ଦୋଳନ' ଉପରେ ଅତିରଞ୍ଜିତ, ଅବିଚାରିତ, ଆକ୍ଷେପମୂଳକ ଲଘୁମନ୍ତବ୍ୟ ଦେବାରେ ସବୁଠୁ ଆଗରେ ଅଛନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଜଣା ନାହିଁ ଯେ ଏବେ କର୍ପୋରେଟ୍ ସେକ୍ଟର ମୋଟା ଦରମା ଦେଇ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କରେ କାମ କରୁଥିବା ଦକ୍ଷ ଓ ଅଭିଜ୍ଞ ପ୍ରଫେସନାଲମାନଙ୍କୁ ନେଇ ଯାଉଛନ୍ତି ଏବଂ ଦେଶର ପ୍ରଧାନମନ୍ତ୍ରୀ ଓ ଶାସନ କମିଶନ ସବୁ ଉନ୍ନୟନ କାର୍ଯ୍ୟରେ ବାରମ୍ବାର ସିଭିଲ ସୋସାଇଟିର ସହଯୋଗ ଭିକ୍ଷା କରୁଛନ୍ତି ।

ଏହି ଉଦ୍ଦେଶ୍ୟରେ ଏବେ ଭଲ୍ୟୁଣ୍ଟାରୀ ସେକ୍ଟରପାଇଁ ଏକ ରାଷ୍ଟ୍ରୀୟ ନୀତି ପ୍ରଣୟନ କରାଯାଇଛି । ଏହି ନୀତିର ପ୍ରଥମ ଧାରାରେ ସରକାର, ଦେଶ ଏକ ସ୍ୱାଧୀନ,

ସୃଜନଶୀଳ, ଦୃଢ଼ ସ୍ୱେଚ୍ଛାସେବୀ ଆନ୍ଦୋଳନପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି କରିବାକୁ ନିଜର ସଂକଳ୍ପ ଘୋଷଣା କରିଛନ୍ତି । ଦେଶର ସାମାଜିକ, ଆର୍ଥିକ ପ୍ରଗତି ଓ ପରିବର୍ତ୍ତନରେ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କର ଅମୂଲ୍ୟ ଅବଦାନକୁ ସ୍ୱୀକାର କରାଯାଇଛି । ଧାରା ୨.୨ରେ କୁହାଯାଇଛି ଯେ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ସ୍ୱୟଂଶାସିତ, ସରକାରଙ୍କ ଅଧୀନସ୍ଥ ନୁହଁନ୍ତି, ତେଣୁ ସେମାନଙ୍କ ସ୍ୱାଧୀନତାରେ ସରକାର ହସ୍ତକ୍ଷେପ କରିବେ ନାହିଁ ବା ଏହାକୁ କ୍ଷୁଣ୍ଣ କରିବାପାଇଁ କୌଣସି ନୀତି, ନିୟମ, ଆଇନ୍ କାନୁନ୍ ପ୍ରଣୟନ କରାଯିବ ନାହିଁ । ତେବେ ଦାୟିତ୍ୱର ସହ କାର୍ଯ୍ୟ ସମ୍ପାଦନ ଓ ଆତ୍ମ ନିୟନ୍ତ୍ରଣ ପାଇଁ ଏମାନଙ୍କୁ ଉତ୍ସାହିତ କରାଯିବ । ସେହିପରି ସମାଜସେବୀ ସଂସ୍ଥା, ଚାରିଟେବୁଲ ଟ୍ରଷ୍ଟଙ୍କୁ ହଇରାଣ, ହରକତ କରୁଥିବା ନିୟମାବଳୀକୁ ସରସ କରିବାପାଇଁ ରାଜ୍ୟ ସରକାରମାନଙ୍କୁ ଉତ୍ସାହିତ କରାଯିବ । ପ୍ରୋଜେକ୍ଟ ଫଣ୍ଡର ୮୫ ଭାଗ ସେହି ବର୍ଷ ଖର୍ଚ୍ଚ କରିବା ଆଉ ବାଧ୍ୟତାମୂଳକ ହେବ ନାହିଁ । 'ଇନକମ୍ ଟ୍ୟାକ୍ସ' ଓ 'ଏଫ୍‌ସିଆର୍‌ଏ' ସଂଶୋଧନ ଓ ସରଳୀକରଣ କରାଯିବ ।

ସ୍ୱେଚ୍ଛାସେବୀ ସଂସ୍ଥାରେ କାମ କରୁଥିବା ବିଶେଷଜ୍ଞମାନଙ୍କୁ ସରକାରୀ ଯୋଜନା ଓ ନୀତି ନିୟାମକ ସଂସ୍ଥାମାନଙ୍କରେ ପ୍ରତିନିଧିତ୍ୱ ଦିଆଯିବ । ସରକାରୀ ଅନୁଦାନ ଯେପରି ସହଜରେ ମିଳିପାରିବ ଏଥିପାଇଁ କେନ୍ଦ୍ର ସରକାର ରାଜ୍ୟ ସ୍ତରରେ ମେକାନିଜିମ୍ ସୃଷ୍ଟି କରିବେ । ଏଥିରେ ବେସରକାରୀ ସଂସ୍ଥାରେ କାର୍ଯ୍ୟ କରୁଥିବା ବିଶିଷ୍ଟ ବ୍ୟକ୍ତି ଓ ଅନୁଷ୍ଠାନଙ୍କ ପ୍ରତିନିଧିତ୍ୱ ରହିବ । ଏବେ ଯେପରି ଶିକ୍ଷାନୁଷ୍ଠାନ / ବିଶ୍ୱବିଦ୍ୟାଳୟମାନଙ୍କୁ ଆକ୍ରେଡିଟେସନ୍ ଓ ଗ୍ରେଡିଂ କରାଯାଉଛି, ସେହିଭଳି ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କୁ ଗ୍ରେଡିଂ କରାଯିବ । ଏହା କେଉଁ ଭିତ୍ତିରେ ଓ କିଭଳି ହେବ, ତାହା ସରକାର ନାଗରିକ ସମାଜ, ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କର ପ୍ରତିନିଧିଙ୍କ ସହ ଆଲୋଚନା କରି ସ୍ଥିର କରିବେ । ଯେହେତୁ ସରକାର ସବୁ ଉନ୍ନୟନମୂଳକ କାମ କରିପାରିବେ ନାହିଁ, ସ୍ୱୟଂସେବୀ ଓ ସମାଜସେବୀ ସଂସ୍ଥାମାନଙ୍କ ଜରିଆରେ ତୃଣମୂଳ ସ୍ତରର ଉନ୍ନୟନ କାର୍ଯ୍ୟମାନ କରାଯିବ । କେଉଁ ସଂସ୍ଥାକୁ କେଉଁ କାର୍ଯ୍ୟପାଇଁ କେତେ ଅନୁଦାନ ଦିଆଯାଉଛି, ଯେ ସମ୍ପର୍କିତ ସମସ୍ତ ସୂଚନା ୱେବସାଇଟ୍‌ରେ ରଖାଯିବ । କଲ୍ୟାଣମୂଳକ କାର୍ଯ୍ୟପାଇଁ ସାଧାରଣ ଜନତା ଦେଉଥିବା ଦାନକୁ କରମୁକ୍ତ ରଖିବାପାଇଁ ଆବଶ୍ୟକୀୟ ବ୍ୟବସ୍ଥା କରାଯିବ । ସରକାର ଓ ବେସରକାରୀ ଅନୁଷ୍ଠାନ ପରସ୍ପର ଶ୍ରଦ୍ଧା, ବିଶ୍ୱାସ ଓ ସମ୍ମାନ ଭିତ୍ତିରେ କାନ୍ଧକୁ କାନ୍ଧ ଓ ହାତକୁ ହାତ ମିଳାଇ ଦେଶର ସମୃଦ୍ଧ ପ୍ରଗତି ଓ ସାମାଜିକ ପରିବର୍ତ୍ତନପାଇଁ କାମ କରିବେ ।

ଏହି ରାଷ୍ଟ୍ରୀୟ ନୀତି ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ଏହାଦ୍ୱାରା ଶାସନ ଓ ସ୍ୱୟଂସେବୀ ଅନୁଷ୍ଠାନମାନଙ୍କ ମଧ୍ୟରେ ସମ୍ପର୍କର ଉତ୍ତାପ କମିବ । ରାଜ୍ୟ ସରକାରମାନେ

କିଭଳି ଭାବରେ ଏହି ନୀତିକୁ କାର୍ଯ୍ୟକାରୀ କରିବେ ତା'ଉପରେ ଏହାର ସଫଳତା ନିର୍ଭର କରିବ । ଆଗାମୀ ବର୍ଷମାନଙ୍କରେ ସ୍ୱୟଂସେବୀ ଅନୁଷ୍ଠାନମାନେ ନିଜ କାର୍ଯ୍ୟ ପ୍ରଣାଳୀଯୋଗୁଁ ବିଭିନ୍ନ ସମସ୍ୟାର ସମ୍ମୁଖୀନ ହେବେ । କାରଣ ଏବେ ଜନମଙ୍ଗଳ ଅପେକ୍ଷା ଜନଶକ୍ତି ଉପରେ ଏବଂ ଜନସ୍ୱାର୍ଥ ବିରୋଧୀ ନୀତି ଉପରେ ଏମାନେ ବେଶି ଗୁରୁତ୍ୱ ଦେଉଛନ୍ତି । ବଜାରୀକରଣର ଲାଭଖୋର ପ୍ରବୃତ୍ତି, ଶାସନତନ୍ତ୍ରର କ୍ଷମତା ଲୋଭ ଓ ଜନବିରୋଧୀ ନୀତିର ବିରୋଧ କରିବାକୁ ହେଲେ - ଆଗେ ନିଜେ ନିଜକୁ ସଜାଡ଼ିବାକୁ ହେବ । ନିଜ ଅନୁଷ୍ଠାନର ପରିଚାଳନା, ଅର୍ଥ ବିନିଯୋଗ ପଦ୍ଧତିକୁ ନିର୍ମଳ ଓ ସ୍ୱଚ୍ଛ ରଖିବାକୁ ହେବ । ଅନୁଷ୍ଠାନକୁ ବ୍ୟକ୍ତିଗତ, ବ୍ୟକ୍ତିକୈନ୍ଦ୍ରିକ, ପାରିବାରିକ କରିବା ମୋହ ଛାଡ଼ିବାକୁ ପଡ଼ିବ, ଦୁର୍ନୀତିଗ୍ରସ୍ତ ହୋଇ ଯାଇଥିବା ଅନୁଷ୍ଠାନମାନଙ୍କର ବିରୋଧ ଓ ବାଛନ୍ଦ କରିବାକୁ ପଡ଼ିବ । ଅନୁଷ୍ଠାନର ନୀତି ନିୟାମକ ପ୍ରକ୍ରିୟାକୁ ଅଧିକ ଗଣତାନ୍ତ୍ରିତ କରିବାକୁ ହେବ ।

ଗଣତାନ୍ତ୍ରିକ ବ୍ୟବସ୍ଥାରେ ନିର୍ବାଚିତ ପ୍ରତିନିଧିମାନେ ଭୋଟରଙ୍କ ପ୍ରତି ଉତ୍ତରଦାୟୀ, ସରକାର, ପାର୍ଲାମେଣ୍ଟ ଓ ଆସେମ୍ବ୍ଲିକୁ ଉତ୍ତରଦାୟୀ, ବ୍ୟୁରୋକ୍ରାସି ଲୋକପ୍ରତିନିଧି ଓ ମନ୍ତ୍ରୀଙ୍କୁ ଉତ୍ତରଦାୟୀ । ଏହି ଉତ୍ତରଦାୟିତ୍ୱ ପାଳନ କରି ନ ପାରିଲେ ଲୋକେ, ପ୍ରତିନିଧି ଓ ସରକାର - ଉଭୟଙ୍କୁ ବଦଳାଇ ଦିଅନ୍ତି । ସେହିପରି ସ୍ୱୟଂସେବୀ ଅନୁଷ୍ଠାନମାନେ କାହା ପ୍ରତି ଉତ୍ତରଦାୟୀ - ଏଭଳି ପ୍ରଶ୍ନ ଉଠିଲାଣି । ଯେତେବେଳେ ଏକ ସ୍ୱୟଂସେବୀ ସଂସ୍ଥା ପଞ୍ଜୀକରଣ ହୁଏ, ପଞ୍ଜୀକୃତ ବାଇ ଲ ରେ ସଂସ୍ଥା କାହା ପ୍ରତି ଉତ୍ତରଦାୟୀ ଓ କିପରି ପରିଚାଳିତ ହେବ ସେ କଥା ସ୍ପଷ୍ଟ ଭାବରେ ଉଲ୍ଲେଖ ଥାଏ - ଏକଥା ଅଧିକାଂଶ ଲୋକ ଜାଣିନଥିବାରୁ ଏଭଳି ପ୍ରଶ୍ନ ଉଠୁଛି । ତେବେ ଏହି ପ୍ରଶ୍ନକୁ ଏଡାଇ ଦେଇ ହେବ ନାହିଁ । କାରଣ ଏହା ସହ ସମାଜରେ ସଂସ୍ଥାର ପ୍ରତିଛବି ପ୍ରଶ୍ନ ଜଡ଼ିତ, ବିଶେଷ କରି ଯେଉଁ ଲୋକଙ୍କ ଭିତରେ ସଂସ୍ଥା କାମ କରୁଛି, ସେମାନଙ୍କର ସଂସ୍ଥା ଉପରେ ଧାରଣା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏ ସମ୍ପର୍କରେ ଆତ୍ମସମୀକ୍ଷାର ସମୟ ଆସିଲାଣି । ସ୍ୱୟଂସେବୀ ସଂସ୍ଥାମାନଙ୍କପାଇଁ ରାଷ୍ଟ୍ରୀୟ ନୀତିରେ ମଧ୍ୟ ଏକଥା ଉଲ୍ଲେଖ କରାଯାଇଛି । ରାଜ୍ୟ ଓ ରାଷ୍ଟ୍ର ସ୍ତରରେ ସ୍ୱୟଂସେବୀ ଅନୁଷ୍ଠାନମାନେ ଏପର୍ଯ୍ୟନ୍ତ ସର୍ବସମ୍ମତ ଫୋରମ୍ ଗଢ଼ି ପାରି ନାହାନ୍ତି । ଆଜି ଏହାର ଆବଶ୍ୟକତା ସବୁଠୁ ବେଶି । ଯେଉଁମାନେ ଲୋକଙ୍କୁ ଏକାଠି କରିବାରେ ପାରଙ୍ଗମ, ଏବେ ନିଜକୁ ଏକାଠି କରନ୍ତୁ, ନିଜ ଘରକୁ ସଜାଡନ୍ତୁ ଏବଂ ଉଭୟ ସରକାର ଓ ବଜାରକୁ ବିକାଶର ନୂତନ ଦିଗ୍‌ଦର୍ଶନ ଦିଅନ୍ତୁ ।

*୧୭ ମେ , ୨୦୦୭*



# ରୋଗଶଯ୍ୟାରେ ବିଶ୍ୱର କ୍ଷୁଦ୍ରତମ ଗଣତନ୍ତ୍ର

ଏହା ବିଶ୍ୱର ସବୁଠାରୁ ଛୋଟ ଗଣତନ୍ତ୍ର ଓ କ୍ଷୁଦ୍ରତମ ଜନମଙ୍ଗଳ ରାଷ୍ଟ୍ର । ମଣିଷ ସମାଜର ମୂଳଦୁଆ । ଏଠି ଦେଶର ଭବିଷ୍ୟତ ନାଗରିକମାନେ ଜନ୍ମ ନିଅନ୍ତି, ବଢ଼ନ୍ତି, ସମସ୍ତେ ମିଳିମିଶି ରହନ୍ତି, ଜାତି, ଧର୍ମ, ବର୍ଣ୍ଣ ଭାଷା, ଆଞ୍ଚଳିକତା, ଭେଦଭାବ ନାହିଁ, ସମସ୍ତେ ସାମ୍ୟବାଦୀ, ଶକ୍ତି ଅନୁସାରେ ପରିଶ୍ରମ କରନ୍ତି, ଉତ୍ପାଦନ, ଅର୍ଜନ, ଆବଶ୍ୟକତା ଅନୁସାରେ ବଣ୍ଟା ହୁଏ । ଏଠି ସମର୍ଥ, ଅସମର୍ଥ, ପିଲା, ବୁଢ଼ା, ସ୍ତ୍ରୀ, ପୁରୁଷ, ସୁସ୍ଥ-ଅସୁସ୍ଥ ସମସ୍ତଙ୍କପାଇଁ ସ୍ଥାନ ଅଛି । ଏଠି ମତାନ୍ତର, ମନାନ୍ତର, ବିରୋଧ, ବାଦ, ବିବାଦ, ବିଷାଦ ବି ଅଛି । ଏ ସବୁର ସମାଧାନପାଇଁ ଚୌକି, ମାଇକ୍ ଭଙ୍ଗା ଫୋପଡା ଯାଏ ନାହିଁ, ଏକାଠି ବସି ସବୁ ସମ୍ମତିଦ୍ୱାରା ତୁଟାଯାଏ । ଏହି ଛୋଟ ଜନମଙ୍ଗଳ ରାଷ୍ଟ୍ର, ନିଜ ଗୋଡ଼ରେ ଠିଆ ହେଲା ପର୍ଯ୍ୟନ୍ତ ଏଠାରେ ରହୁଥିବା ନାଗରିକଙ୍କ ଖାଦ୍ୟ, ବସ୍ତ୍ର, ଆଶ୍ରୟ, ଶିକ୍ଷା, ସ୍ୱାସ୍ଥ୍ୟର ସମସ୍ତ ଦାୟିତ୍ୱ ନେଇଥାଏ, ସମସ୍ତଙ୍କପାଇଁ ଅଲଗା ଅଲଗା ଲକ୍ଷ୍ମଣରେଖା ନିର୍ଦ୍ଧାରିତ ଥାଏ । ଏଠି ସଭିଙ୍କୁ ସ୍ନେହ, ପ୍ରେମ, ସ୍ୱାଧୀନତା, ସୁରକ୍ଷା ମିଳିଥାଏ । ବିଶ୍ୱର ଏହି କ୍ଷୁଦ୍ରତମ ଜନମଙ୍ଗଳ ରାଷ୍ଟ୍ରର ନାଁ ହେଲା 'ପରିବାର' ବା 'ଫ୍ୟାମିଲି' । ଯେଉଁ 'ପରିବାର' ଆଜି ପର୍ଯ୍ୟନ୍ତ ମାନବ ସମାଜ, ସଂସ୍କୃତି ଓ ସଭ୍ୟତାକୁ ବଞ୍ଚାଇ ରଖିଛି, ସେ ଏବେ ଘୋର ସଂକଟର ସମ୍ମୁଖୀନ । ଅର୍ଥନୈତିକ ଦୃଷ୍ଟିରୁ ଉନ୍ନତ ଦେଶମାନଙ୍କରେ ପରିବାର ପ୍ରାୟ ଭାଙ୍ଗି ରୁଜି ଗଲାଣି । ଆମ ଦେଶରେ ଏହା ଦିନକୁ ଦିନ ଦୁର୍ବଳ ହେଉଛି ।

ଭାରତରେ ଗତ ୬୦ ବର୍ଷ ଭିତରେ ଛାଡ଼ପତ୍ର ସଂଖ୍ୟା ୧୦ ଗୁଣରୁ ଅଧିକ ହେଲାଣି । ମହାନଗରମାନଙ୍କରେ ଅନୁପାତ ସବୁଠୁ ଅଧିକ । ଇଂଲଣ୍ଡରେ ବିବାହିତ

ମହିଳାଙ୍କ ସଂଖ୍ୟା ଅବିବାହିତା ମହିଳାଙ୍କ ଅପେକ୍ଷା କମ୍ ହୋଇଗଲାଣି । ଛାଡ଼ପତ୍ର ସଂଖ୍ୟା ବଢ଼ିଯିବାରୁ ଗତ ୧୦ ବର୍ଷ ମଧ୍ୟରେ ଏକାକୀ ମାତା, ଏକାକୀ ପିତାଙ୍କ ସଂଖ୍ୟା ଦ୍ରୁତ ଗତିରେ ବଢ଼ିବାରେ ଲାଗିଛି । ବିବାହ ଓ ପରିବାରକୁ କିପରି ରକ୍ଷା କରାଯିବ - ଏ ବିଷୟରେ ବିଭିନ୍ନ ଦେଶର ରାଜନୈତିକ ଦଳମାନେ ବିଚାର ଆଲୋଚନା ଆରମ୍ଭ କଲେଣି । ନିଉୟର୍କ ଟାଇମ୍‌ସ ଓ ସେନ୍‌ସସ୍ ବ୍ୟୁରୋ ରିପୋର୍ଟ ଅନୁସାରେ ୨୦୦୫ ମସିହାରେ ଆମେରିକାର ଶତକଡ଼ା ୫୨ ଭାଗ ଲୋକ ବିବାହ ଓ ପରିବାର ପରିସର ବାହାରେ ଥିଲେ । ଏ ଦେଶର ୧୧ କୋଟି 'ହାଉସ୍‌ହୋଲ୍‌ଡ'ରୁ ପ୍ରାୟ ଅର୍ଦ୍ଧେକ ଘରେ ପିଲା ଥାଆନ୍ତି । ୫୧ ଭାଗ ମହିଳା ବିବାହ କରିନାହାନ୍ତି ।

ଜାପାନ୍, ଦକ୍ଷିଣ କୋରିଆ, ସିଙ୍ଗାପୁର ଓ ୟୁରୋପର ଅନେକ ଦେଶର ଅବସ୍ଥା ମଧ୍ୟ ପ୍ରାୟ ଏହିପରି । କୋରିଆ ମହିଳାମାନଙ୍କର କ୍ରମବର୍ଦ୍ଧିଷ୍ଣୁ ବିବାହ-ଅନିଛାଯୋଗୁଁ ପୁରୁଷମାନେ ଦଲାଲ ଓ ମଧ୍ୟସ୍ଥଙ୍କ ସହାୟତାରେ ଚାଇନା, ଭିଏତ୍‌ନାମ, ମଙ୍ଗୋଲିଆ, ଥାଇଲାଣ୍ଡ, ଫିଲିପାଇନ୍‌ସ, ଇଣ୍ଡୋନେସିଆ, କମ୍ବୋଡିଆ ଓ ଉଜବେକିସ୍ଥାନରୁ କନ୍ୟା ଆଣି ବାହା ହେଉଛନ୍ତି । ଭାରତର ଗ୍ରାମାଞ୍ଚଳରେ କମ୍ ବୟସ୍କ କନ୍ୟା ବିବାହ (୪୫ ପ୍ରତିଶତ) ଏକ ପ୍ରଧାନ ସମସ୍ୟା ହୋଇଥିଲା ବେଳେ, ଧନୀ ଦେଶମାନଙ୍କରେ ବିଳମ୍ବ-ବିବାହ ଏକ ବହୁଚର୍ଚ୍ଚିତ ସାମାଜିକ ସମସ୍ୟା । ଯେଉଁମାନେ ବାହା ହେଉଛନ୍ତି ପିଲା ଜନ୍ମ ପାଇଁ ପଛାଉଛନ୍ତି । ଫଳରେ ମାତୃତ୍ୱର ବୟସ ମଧ୍ୟ ଘୁଞ୍ଚି ଘୁଞ୍ଚି ଯାଉଛି । ଇଂଲଣ୍ଡରେ ୧୯୯୫ ମସିହାରେ ୪୫ ବର୍ଷ ମଧ୍ୟରେ ପ୍ରଥମ ସନ୍ତାନକୁ ଜନ୍ମ ଦେଉଥିବା ମହିଳାଙ୍କ ସଂଖ୍ୟା ଯେତିକି ଥିଲା, ୨୦୦୬ ମସିହାରେ ସେ ସଂଖ୍ୟା ବଢ଼ି ଦ୍ୱିଗୁଣିତ ହୋଇଯାଇଛି । ଏବେ ନୂଆ ପୋପ୍ ବେନେଡ଼ିକ୍, କ୍ୟାଥଲିକ ମହିଳାମାନଙ୍କୁ ସମାଜର ନିରାପତ୍ତା ଓ କଲ୍ୟାଣପାଇଁ ଅଧିକ ସନ୍ତାନ ପ୍ରସବ କରିବାପାଇଁ ଉପଦେଶ ଦେଇଛନ୍ତି ଏବଂ ଭାଙ୍ଗି ଯାଉଥିବା ପରିବାର ବ୍ୟବସ୍ଥା ସମ୍ପର୍କରେ ଉଦ୍‌ବେଗ ପ୍ରକାଶ କରିଛନ୍ତି । ହଂକଂ ରାଜ୍ୟରେ ଅତି କମ୍‌ରେ ପରିବାରରେ ୩ଟି ସନ୍ତାନପାଇଁ ସରକାର ଲୋକଙ୍କୁ ଉତ୍ସାହିତ କରିବାକୁ ଦ୍ୱିତୀୟ ଓ ତୃତୀୟ ସନ୍ତାନ ଜନ୍ମପାଇଁ ୫୦ ହଜାର ଡଲାର ଦେଉଛନ୍ତି ।

ଏହାର ପ୍ରଥମ କାରଣ ହେଲା ଅନେକ ମହିଳା ଘର ଜଞ୍ଜାଳରେ ବାନ୍ଧି ନ ହୋଇ ବାହାରେ କାମ କରିବାକୁ ପସନ୍ଦ କରୁଛନ୍ତି । ତେଣୁ ଚାକିରି, ବ୍ୟବସାୟ ଓ କ୍ୟାରିୟର ପାଇଁ ବିବାହ, ଗର୍ଭଧାରଣ, ଶିଶୁ ପାଳନକୁ ଅଡୁଆ ବୋଲି ଭାବୁଛନ୍ତି । ବିବାହିତ ମହିଳାଙ୍କ ପ୍ରତି ପରିବାର ଓ ସ୍ୱାମୀଙ୍କର ଅସହଯୋଗ ଓ ହିଂସା ଆଚରଣ ଏହାର ଅନ୍ୟ

ଏକ କାରଣ । ରାଷ୍ଟ୍ରୀୟ ପାରିବାରିକ ସ୍ୱାସ୍ଥ୍ୟ ସର୍ଭେ - ୨୦୦୬ ଅନୁସାରେ ଭାରତର ୩୭ ପ୍ରତିଶତ ମହିଳା ସ୍ୱାମୀଙ୍କ ହିଂସାଚରଣର ଶିକାର ହୋଇଥାନ୍ତି । ଗ୍ରାମାଞ୍ଚଳ ଅପେକ୍ଷା ସହରାଞ୍ଚଳରେ ଏ ସମସ୍ୟା ଅଧିକ ଗୁରୁତର । ପ୍ରସବ ଜନିତ ମାତୃ ମୃତ୍ୟୁ ହାର ମଧ୍ୟ ଭାରତରେ ଅଧିକ ଓ ଓଡ଼ିଶାରେ ସର୍ବାଧିକ । ଏହାଛଡ଼ା ମହିଳାମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର, ସ୍ୱାବଲମ୍ବନତା ବୃଦ୍ଧି ଓ ସଚେତନତା ଫଳରେ ପୁରୁଷପ୍ରଧାନ ପରିବାରମାନଙ୍କରେ କ୍ରମାଗତ କଳହ, ଅଶାନ୍ତି ଓ ବିଚ୍ଛେଦ, ବିବାହପାଇଁ ଆଉ ଏକ ଅଶୁଭ ଲକ୍ଷଣ ।

ମହିଳାଙ୍କ ଭଳି ପୁରୁଷମାନେ ବି ଏବେ ବିବାହ ବିମୁଖ ହେଲେଣି । ବିବାହ ସମ୍ପର୍କୀୟ ନୂଆ ନୂଆ ଆଇନ୍‌କୁ ଏମାନେ ପୁରୁଷ ବିରୋଧୀ ଆଇନ୍ ବୋଲି ଭାବୁଛନ୍ତି । ଏହି ଆଇନ୍ ସବୁର ଅପବ୍ୟବହାର ମଧ୍ୟ ହେଲାଣି ଓ ଅନେକ ନିର୍ଦ୍ଦୋଷ ପୁରୁଷ ଏହାର ଶିକାର ହେଉଛନ୍ତି । ଏବେ ଏମାନେ ଏକାଠି ହୋଇ 'ପ୍ରୋଟେକ୍ଟ ଇଣ୍ଡିଆନ୍ ଫ୍ୟାମିଲି', 'ସେଭ୍ ଇଣ୍ଡିଆ ଫ୍ୟାମିଲି' ଇତ୍ୟାଦି ନାମରେ ସଂସ୍ଥାମାନ ଗଢ଼ି 'ପତ୍ନୀ ଅତ୍ୟାଚାର' ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେଣି । ଏମାନଙ୍କ କହିବା ଅନୁସାରେ ଆଲ୍‌ଫ୍ରେଡ୍ ନୋବେଲ କନ୍‌ଷ୍ଟ୍ରକ୍‌ସନ୍ ବା ନିର୍ମାଣ କାମ ସହଜ କରିବାପାଇଁ ଡିନାମାଇଟ୍ ଉଦ୍ଭାବନ କରିଥିଲେ - ଲୋକଙ୍କୁ ମାରିବାପାଇଁ ନୁହେଁ । ସେହିଭଳି ମହିଳାଙ୍କ ସୁରକ୍ଷାପାଇଁ ତିଆରି ଆଇନ୍ ସାହାଯ୍ୟରେ ଏବେ ପୁରୁଷମାନଙ୍କୁ ହଇରାଣ କରାଯାଉଛି । ଏହା ଫଳରେ ଆଇନ୍ ସମସ୍ତଙ୍କୁ ସମାନ ଅଧିକାର ଦେବା ପରିବର୍ତ୍ତେ ଅସମାନତା ବଢ଼ାଉଛି । ଏଭଳି ଯୁକ୍ତି ପଛରେ କେତେ ଯଥାର୍ଥତା ରହିଛି ତାହା ବିଚାର କରିବା ବେଳ ଆସିଲାଣି ।

ତେବେ ଏକଥା ସତ୍ୟ ଯେ, ସ୍ତ୍ରୀଙ୍କ ଉପରେ ନିଷ୍ଠୁର ସ୍ୱାମୀଙ୍କ ହିଂସାଚରଣର ବହୁଳ ଦୃଷ୍ଟାନ୍ତ ଥିଲେ ବି ସ୍ୱାମୀଙ୍କ ଉପରେ କ୍ରୂର ସ୍ତ୍ରୀଙ୍କ ଅତାଚାର ଦୃଷ୍ଟାନ୍ତ ବିରଳ ନୁହେଁ । ଏବେ ପୁରୁଷ-ସ୍ତ୍ରୀଙ୍କ ସମ୍ପର୍କକୁ ନିୟନ୍ତ୍ରଣ କରିବାପାଇଁ ଏତେ ଆଇନ୍ କାନୁନ୍ ହେଲାଣି ଯେ ସାଧାରଣ ଛୋଟ ଛୋଟ ଘଟଣାକୁ ନେଇ ସ୍ୱାମୀଙ୍କୁ ଜେଲ୍ ଯିବାକୁ ପଡିପାରେ । ନିକଟରେ ଭାରତୀୟ ପିଙ୍ଗଳ କୋଡ୍ ଧାରା ୪୯୭କୁ ସଂଶୋଧନ କରିବାକୁ କେନ୍ଦ୍ର ସରକାରଙ୍କ ପ୍ରସ୍ତାବକୁ ରାଷ୍ଟ୍ରୀୟ ମହିଳା କମିଶନ ଅଗ୍ରାହ୍ୟ କରିଦେଇଛନ୍ତି । ଏଥିରେ ପରକୀୟା ପ୍ରୀତିପାଇଁ ପୁରୁଷ ପ୍ରତି ଯେଉଁ ଦଣ୍ଡ ବ୍ୟବସ୍ଥା ଅଛି, ପର ପୁରୁଷ ପ୍ରେମପାଇଁ ସ୍ତ୍ରୀ ପ୍ରତି ସେହିଭଳି ଦଣ୍ଡ ବ୍ୟବସ୍ଥା ପାଇଁ ପ୍ରସ୍ତାବ ଦିଆଯାଇଥିଲା । ସୁପ୍ରିମକୋର୍ଟଙ୍କ ଆଉ ଏକ ନିଷ୍ପତ୍ତି ଅନୁସାରେ ଛାଡ଼ପତ୍ର ପରେ ମହିଳା ପୁନର୍ବିବାହ କଲା ପରେ ମଧ୍ୟ ମାଙ୍କ ପ୍ରଥମ ପତିଙ୍କ ଔରସରୁ ଜାତ ସନ୍ତାନଙ୍କ 'କଷ୍ଟୋଡି' ବା ହେପାଜତର ଅଧିକାର

ରହିବ । ଏତଦ୍ ବ୍ୟତୀତ ଏବେ ସ୍ତ୍ରୀଙ୍କ ପ୍ରତି ଶାରୀରିକ ଅତ୍ୟାଚାର ସାଙ୍ଗକୁ ମାନସିକ ଓ ବାଚନିକ ଅତ୍ୟାଚାର ଧର୍ତ୍ତବ୍ୟ ଅପରାଧ ଭାବେ ଗଣ୍ୟ ହେବ । ଯାହା ଜଣାପଡୁଛି ନିକଟ ଭବିଷ୍ୟତରେ ପରିବାର ଏକ ଆଇନ୍ ଯୁଦ୍ଧର କ୍ଷେତ୍ର ହେବାକୁ ଯାଉଛି । ବହୁ ପୁରୁଷ ଏଥିପାଇଁ ସତର୍କ ହେଲେଣି । ପୁରୁଷମାନଙ୍କ ବିବାହ - ବିମୁଖତାର ଏହା ଅନ୍ୟ ଏକ କାରଣ । ବାହାଘର ଓ ପରିବାରକୁ ସହଜରେ ଭାଙ୍ଗିବାକୁ ଯେତେ ଆଇନ୍ ହେଲାଣି, ଗଢ଼ିବାକୁ ସେତେ ଆଇନ୍ ନାହିଁ ।

ସମାଜ ସ୍ତ୍ରୀ ଓ ପୁରୁଷଙ୍କପାଇଁ ଯେଉଁ 'ସ୍ତ୍ରୀ-କ୍ଷେତ୍ର' ଓ 'ପୁରୁଷ-କ୍ଷେତ୍ର' ନିର୍ଦ୍ଧାରଣ କରିଥିଲା ସେଥିରୁ ସ୍ତ୍ରୀମାନେ କ୍ରମେ ନିର୍ଦ୍ଧାରିତ 'ସ୍ତ୍ରୀ-କ୍ଷେତ୍ର'ରୁ ମୁକୁଳିବାରେ ଅଧିକ ସକ୍ଷମ ହେଲେଣି । କିନ୍ତୁ ପୁରୁଷମାନେ ଏବେ ବି 'ପୁରୁଷ-କ୍ଷେତ୍ର'ର ମାନସିକତାରେ ବାନ୍ଧି ହୋଇ ରହିଛନ୍ତି । ପରିବାରର ଭରଣ ପୋଷଣ ଦାୟିତ୍ୱ, ରୋଜଗାର, ପିଲାଙ୍କ ଶିକ୍ଷା, ବିବାହ ଓ ଗୁରୁତ୍ୱପୂର୍ଣ୍ଣ ପାରିବାରିକ ନିଷ୍ପତ୍ତି କେବଳ 'ପୁରୁଷ-କ୍ଷେତ୍ର' ବୋଲି ସମାଜ ବିଚାର କରେ । 'ଯୋରୁକାଗୁଲାମ', 'ମାଇଚିଆ, ମର୍ଦ୍ଦାଙ୍ଗି', 'କାପୁରୁଷତା', 'ହେନ୍‌ପେକ୍‌ଡ' ଇତ୍ୟାଦି ଶବ୍ଦ ଓ ସଂଜ୍ଞା ପୁରୁଷ ଉଦ୍ଦେଶ୍ୟରେ ବ୍ୟବହାର କରାଯାଏ । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ କେବଳ 'ପୁରୁଷ' ହେବା ଉଦ୍ୟମରେ ପୁରୁଷର ଜୀବନ କଟିଯାଏ - ପୁତ୍ର, ଭ୍ରାତା, ପିତା, ସ୍ୱାମୀ, ପିତାମହପାଇଁ ନିର୍ଦ୍ଦିଷ୍ଟ ଦାୟିତ୍ୱ ଓ କର୍ତ୍ତବ୍ୟର ବୋଝ ଉଠାଇବାକୁ ପଡ଼େ । ଏହା ନ କଲେ ତଥାକଥିତ ପୌରୁଷରେ ଆଞ୍ଚ ଲାଗେ ।

ସେହିଭଳି ସ୍ତ୍ରୀମାନେ ପୁରୁଷଙ୍କ ସ୍ଥାନ ନେବାକୁ ଚେଷ୍ଟା କଲେ ସେମାନଙ୍କୁ 'ଅଣିରାଚଣ୍ଡୀ' କୁହାଯାଏ । ପିଲା ଜନ୍ମ କରିବା, ରୋଷେଇ କରିବା, ପିଲା ପାଳିବା, ବାସନ ମାଜିବା, ଲୁଗା କାଚିବା, ସିଲେଇ କରିବା, ବଡ଼ି, ପାମ୍ପଡ଼ ତିଆରି କରିବା ଏବଂ ମଥାରେ ସିନ୍ଦୂର, ହାତରେ କାଚ ଥାଉ ଥାଉ ସ୍ୱାମୀଙ୍କ ପୂର୍ବରୁ ସଂସାର ତ୍ୟାଗ କରିବା ହେଉଛି ତଥାକଥିତ 'ସ୍ତ୍ରୀ-କ୍ଷେତ୍ର' । ଏସବୁ ନିୟମ ଏବେ ଓଲଟପାଲଟ ହେଉଥିବାରୁ ପରିବାର ଏକ ସାମାଜିକ ପରିବର୍ତ୍ତନ ଦେଇ ଗତି କରୁଛି । ଦଶ ହଜାର ବର୍ଷ ପୁରୁଣା ପାରିବାରିକ ବ୍ୟବସ୍ଥା ଆଉ ପାରମ୍ପରିକ ଢ଼ାଞ୍ଚାରେ ଚାଲିପାରିବ ନାହିଁ । ସେଥିପାଇଁ ନୂଆ ନୀତି, ନିୟମ, ଆଚାର, ବ୍ୟବହାର ଏପରିକି ନୂଆ ସଂଜ୍ଞା ତିଆରି ହେଲାଣି ଓ ଏମାନଙ୍କୁ ନେଇ ବ୍ୟବସାୟ ଚାଲିଲାଣି ।

ବାରମ୍ବାର ବିବାହ ଓ ବିଚ୍ଛେଦ ପରେ ଚିତ୍ରତାରକା ଏଲିଜାବେଥ୍ ହର୍ଲେ ଓ ମଡେଲ୍ ଅରୁଣ ନାୟାରଙ୍କର ଭାରତୀୟ ରୀତିରେ ଅନୁଷ୍ଠିତ ସଦ୍ୟ ବିବାହର ବଜାର ମୂଲ୍ୟ ହେଲା ଚାରି ମିଲିଅନ୍ ପାଉଣ୍ଡ ବା ୩୨ କୋଟି ଟଙ୍କା । ୬ ମାସ ଭିତରେ ସେମାନେ ଯଦି

ପୁଣି ମନ ପରିବର୍ତ୍ତନ କରନ୍ତି ଓ ପୁନର୍ବିବାହ କରନ୍ତି ତାହାର ବଜାର ମୂଲ୍ୟ ଆହୁରି ଅଧିକ ହୋଇପାରେ । ବିବାହ ଓ ପରିବାର ହାଟ ବଜାରରେ କିଣା ବିକାର ବିଷୟ ନ ହୋଇ ହୃଦୟ କିଣା ବିକାର ମାଧମ ହେଲେ ଏହି ସର୍ବ ପୁରାତନ ମାନବୀୟ ଅନୁଷ୍ଠାନକୁ ଧ୍ୱଂସ ମୁଖରୁ ରକ୍ଷାକରାଯାଇ ପାରିବ । ସେଥିପାଇଁ ଉଭୟ ପୁରୁଷ ଓ ମହିଳାଙ୍କୁ କିଛି ତ୍ୟାଗ କରିବାକୁ ପଡ଼ିବ । ସ୍ୱାମୀ ଓ ସ୍ତ୍ରୀ ହେଉଛନ୍ତି ପରିବାରର ଦୁଇଟି ଆଖି । ଗୋଟିଏ ଫୁଟିଗଲେ ପରିବାର କଣା ଓ ଦୁଇଟି ଫୁଟିଗଲେ ଅନ୍ଧ ହୋଇଯିବ ।

*୩୧ ମେ, ୨୦୦୬*

■ ■ ■

# ବିବାହ ଓ ପରିବାର ସୁରକ୍ଷା ପାଇଁ

କ୍ରମଶଃ ଭାଙ୍ଗିରୁଜି ଯାଉଥିବା ବିବାହ ବ୍ୟବସ୍ଥା ଓ ପରିବାରକୁ କିପରି ରକ୍ଷା କରାଯାଇ ପାରିବ ? ଭବିଷ୍ୟତରେ ପରିବାରର ସଂଜ୍ଞା, ପ୍ରକୃତି ଓ ସ୍ୱରୂପ କ'ଣ ହେବ ? ପରିବାରର ଏକ ଛୋଟ ସଂଜ୍ଞା ହେଉଛି ଯେଉଁଠି ରକ୍ତ ସମ୍ପର୍କ, ବିବାହ ସମ୍ପର୍କ ଓ ନିକଟ ସମ୍ପର୍କ ଲୋକେ ଏକାଠି ରହନ୍ତି । ଏହାକୁ ବିସ୍ତାରିତ କରି ମିଳିତ ରାଷ୍ଟ୍ରସଙ୍ଘ ଯେଉଁ ସଂଜ୍ଞା ଦେଇଛି ସେ ହେଲା : ପରସ୍ପର ସମ୍ମତି ସହ ଯେତେବେଳେ ଦୁଇ ବା ତଦୂର୍ଦ୍ଧ୍ୱ ବ୍ୟକ୍ତି ଏକାଠି ରହନ୍ତି ଏବଂ ଏକାଠି ଜନ୍ମିତ ବା ପାଳିତ ସନ୍ତାନମାନଙ୍କର ପାଳନ ପୋଷଣର ସମସ୍ତ ଦାୟିତ୍ୱ ନେଇଥାନ୍ତି । ଏବେ ଏହି ସଂଜ୍ଞାକୁ ଆହୁରି ବ୍ୟାପକ କରିବାପାଇଁ ଉଦ୍ୟମ ହେଲାଣି । ପରିବାର ସଂଜ୍ଞାରୁ 'ବିବାହ' ଶବ୍ଦକୁ ଉଠାଇ ଦେବା ପରେ, ଏବେ ପୁରୁଷ ଓ ସ୍ତ୍ରୀ ଶବ୍ଦକୁ ବି ଉଠାଇ ଦିଆଗଲା । ଏବେ ଆନ୍ଦୋଳନ ଆରମ୍ଭ ହେଲାଣି - ପୁରୁଷ-ପୁରୁଷ ମଧ୍ୟରେ ବିବାହ, ସ୍ତ୍ରୀ-ସ୍ତ୍ରୀ ମଧ୍ୟରେ ବିବାହକୁ ଆଇନ୍ ସ୍ୱୀକୃତି ଦେଉ । ନିକଟରେ ଓଡ଼ିଶାରେ ଏପରି ଏକ ଘଟଣା ଘଟିଛି । ସମଲିଙ୍ଗୀ ଓ ଉଭୟଲିଙ୍ଗୀ ଯୌନ-ସମ୍ପର୍କ, ହିଞ୍ଜଡ଼ାଙ୍କ ଯୌନ ଜୀବନକୁ ସ୍ୱାଭାବିକ ସମ୍ପର୍କ ଭାବରେ ଗ୍ରହଣ କରାଯିବାକୁ ଆଇନ୍‌ଲାଗି ଶାସନ ଓ ସମାଜ ଉପରେ ଚାପ ଦିଆଯାଉଛି । ସେହିପରି ବାହା ନ ହୋଇ ଏକାଠି ରହୁଥିବା ଯୁଗଳ ବ୍ୟକ୍ତିଙ୍କୁ ଏବେ ପାଶ୍ଚାତ୍ୟ ଦେଶମାନଙ୍କରେ ପରିବାର ସଂଜ୍ଞା ଅନ୍ତର୍ଭୁକ୍ତ କରାଗଲାଣି ।

ଫ୍ରାନ୍ସରେ ଏହି ସମ୍ପର୍କକୁ "ସିଭିଲ୍ ପାର୍ଟନରସିପ୍" କହି ଆଇନ୍‌ସିଦ୍ଧ କରାଯାଇଛି । ଆଫ୍ରିକାର ଏନ୍‌ଜିଓମାନେ ୨୦୦୪ ମସିହାରେ ନାଇଜେରିଆରେ ଏକତ୍ର ହୋଇ 'ବିକଳ୍ପ ପରିବାର'ପାଇଁ ନୂଆ ସଂଜ୍ଞା ଦେଇଛନ୍ତି । ଯେଉଁ ଧର୍ମମାନଙ୍କରେ 'ପାରମ୍ପରିକ ପରିବାର'କୁ ଏକ ପତ୍ନୀ, ଦୁଇ ପତ୍ନୀ ବା ଚାରି ପତ୍ନୀ ବିଶିଷ୍ଟ ପରିବାର ସଂଜ୍ଞାରେ ସୀମିତ କରାଯାଇଛି, ତାହା ଆଫ୍ରିକାର କେତେକ ସଂସ୍କୃତି ଗ୍ରହଣ କରେ

ନାହିଁ । ଏଠାରେ କେବଳ ପଲିଗାମି ବା 'ବହୁ ପତ୍ନୀ ବ୍ୟବସ୍ଥା' ନୁହେଁ, ଯେତେ ଇଚ୍ଛା ସେତେ ପତ୍ନୀ ଏକ ସ୍ୱୀକୃତ ପରମ୍ପରା । ନାଇଜେରିଆରେ ବିବାହିତ ପୁରୁଷଙ୍କ ନାଁ ପତ୍ନୀ ଓ ବିବାହିତ ମହିଳାଙ୍କୁ କୁହାଯାଏ ପତି । ଭାରତର କେତେକ ଅଞ୍ଚଳରେ ବହୁପତି ବ୍ୟବସ୍ଥା ଅଛି । ଏହିପରି ବିଭିନ୍ନ ଦେଶ ଓ ସଂସ୍କୃତିରେ ବିବିଧ ସଂଜ୍ଞା ଓ ଚାଲିଚଳଣି । ଏହା ସାଙ୍ଗକୁ କ୍ରମାଗତ ଭାବରେ ଯୌଥ ପରିବାରର ସଂଖ୍ୟାହ୍ରାସ, ସ୍ୱାମୀ-ସ୍ତ୍ରୀଙ୍କର ଭିନ୍ନ ଭିନ୍ନ ସ୍ଥାନରେ କାର୍ଯ୍ୟକ୍ଷେତ୍ର, ପରସ୍ପର ପ୍ରତି ସହନଶୀଳତାର ଅଭାବ, ଗଣମାଧ୍ୟମଦ୍ୱାରା ବିଦେଶୀ ସଂସ୍କୃତିର ପ୍ରଚାର ଓ ପ୍ରଭାବ ଇତ୍ୟାଦି କାରଣରୁ ପୃଥିବୀର ଏହି କ୍ଷୁଦ୍ରତମ ଗଣତନ୍ତ୍ର ଦୁର୍ବଳ ହୋଇଯାଉଛି ।

ଏକ ଜନମଙ୍ଗଳ ରାଷ୍ଟ୍ର ନିଜର ନାଗରିକଙ୍କପାଇଁ ଯେପରି ବିଭିନ୍ନ କଲ୍ୟାଣକାରୀ ଯୋଜନା କାର୍ଯ୍ୟକାରୀ କରିଥାଏ, ସେହିପରି ଏକ ପରିବାର ନିଜର ସଦସ୍ୟଙ୍କ କଲ୍ୟାଣ ପାଇଁ ସମସ୍ତ ଦାୟିତ୍ୱ ନେଇଥାଏ । ଯେଉଁ ଦେଶରେ ପାରିବାରିକ ବ୍ୟବସ୍ଥା ସୁଦୃଢ ସେଠି ସରକାରଙ୍କୁ ସୋସିଆଲ୍ ସେକ୍ଟରରେ କମ୍ ଖର୍ଚ୍ଚ କରିବାକୁ ପଡ଼ିଥାଏ, କାରଣ ପରିବାରମାନେ ନିଜ ନିଜ ବୋଝ ଉଠାଇଥାନ୍ତି । ଭାରତରେ ପରିବାର ଦୁର୍ବଳ ହେଲେ ସରକାରଙ୍କ ସମସ୍ତ ଧନରାଶି ପିଲା ଓ ବୁଢ଼ାଙ୍କପାଇଁ ଖର୍ଚ୍ଚ କରିବାକୁ ପଡ଼ିବ । ଦାରିଦ୍ର୍ୟ ନିରାକରଣ ଯୋଜନା ଭୁଶୁଡ଼ି ପଡ଼ିବ ।

ତେଣୁ ବିବାହ ଓ ପରିବାରର ସୁରକ୍ଷା ଏବଂ ସୁଦୃଢ଼ତାପାଇଁ ମିଳିତ ରାଷ୍ଟ୍ରସଙ୍ଘ ୧୯୯୪ ମସିହାକୁ 'ଆନ୍ତର୍ଜାତିକ ପରିବାର ବର୍ଷ' ଭାବରେ ଘୋଷଣା କରିଥିଲେ । ଏହାର ଦଶବର୍ଷ ପରେ ୨୦୦୪ ମସିହାରେ ପୁ'ଣି ଥରେ 'ପରିବାର ବର୍ଷ' ସମ୍ପର୍କୀୟ କାର୍ଯ୍ୟକ୍ରମ ସମୀକ୍ଷା କରାଯାଇଥିଲା । 'ଦୋହା'ଠାରେ ଅନୁଷ୍ଠିତ ଏହି ବିଶ୍ୱ ସମ୍ମିଳନୀରେ ଯେଉଁ ମୂଳନୀତିଗୁଡ଼ିକ ସର୍ବସମ୍ମତି ରୂପେ ଗୃହୀତ ହୋଇଥିଲା ତାହା ହେଲା :-

- ପରିବାର ସମାଜର ମୌଳିକ ଅଙ୍ଗ, ଉନ୍ନୟନ କାର୍ଯ୍ୟରେ ପରିବାରର ସ୍ୱାତନ୍ତ୍ର୍ୟକୁ ସମର୍ଥନ ।
- ବିଭିନ୍ନ ଦେଶ ଓ ସଂସ୍କୃତି ଉପରେ ପର୍ଯ୍ୟବେକ୍ଷିତ ପାରିବାରିକ ବ୍ୟବସ୍ଥା ପ୍ରତି ସମ୍ମାନ ।
- ପରିବାର ମଧ୍ୟରେ ପ୍ରତ୍ୟେକ ସଦସ୍ୟଙ୍କର ମାନବୀୟ ଅଧିକାରର ସୁରକ୍ଷା ।
- ପରିବାରରେ ରହୁଥିବା ସ୍ତ୍ରୀ ଓ ପୁରୁଷଙ୍କ ମଧ୍ୟରେ ସମାନତା ।
- ବିକଳ୍ପ ପାରିବାରିକ ବ୍ୟବସ୍ଥା ସୃଷ୍ଟି ନ କରି ପ୍ରଚଳିତ ବ୍ୟବସ୍ଥାର ସୁଦୃଢ଼ୀକରଣ ।

- ପରିବାର କଲ୍ୟାଣ, ପ୍ରଗତି ଓ ସୁରକ୍ଷାପାଇଁ ରାଷ୍ଟ୍ରୀୟ ନୀତି ଓ ଗବେଷଣାପାଇଁ ରାଷ୍ଟ୍ରୀୟ ଅନୁଷ୍ଠାନ ।

- ଯେଉଁ ଅନୁଷ୍ଠାନ/ସଂସ୍ଥା ପରିବାର ଉନ୍ନୟନପାଇଁ କାମ କରୁଛନ୍ତି, ସେମାନଙ୍କୁ ଉତ୍ସାହ, ସାହାଯ୍ୟ, ସମର୍ଥନ ।

- ପରିବାରରେ ବାସ କରୁଥିବା ଶିଶୁ, କିଶୋର, ଯୁବକ-ଯୁବତୀ, ମହିଳା, ଭିନ୍ନକ୍ଷମ ଓ ବୟସ୍କଙ୍କପାଇଁ ସ୍ୱତନ୍ତ୍ର ଯୋଜନା ଓ କାର୍ଯ୍ୟକ୍ରମ ଇତ୍ୟାଦି ।

ସମୀକ୍ଷା ବେଳେ ପରିବାରର ଯେଉଁ ମୁଖ୍ୟ ସମସ୍ୟା ସମ୍ପର୍କରେ ବିଶ୍ୱବାସୀଙ୍କ ଧ୍ୟାନ ଆକର୍ଷଣ କରାଯାଇଥିଲା, ସେଗୁଡ଼ିକ ହେଲା :- ଜନ୍ମହାରରେ ହ୍ରାସ, ଯୌଥରୁ କ୍ଷୁଦ୍ର, ଅତିକ୍ଷୁଦ୍ର (ଜଣିକିଆ) ପରିବାର ସୃଷ୍ଟି, ଛାଡ଼ପତ୍ର ସଂଖ୍ୟା ବୃଦ୍ଧି, କର୍ମ ଅନ୍ୱେଷଣରେ ଗୃହତ୍ୟାଗ, ଯୌନ ପରିପକ୍ୱତା ବୟସରେ ହ୍ରାସ ଓ ବିବାହଯୋଗ୍ୟ ବୟସରେ ବୃଦ୍ଧି, ଅଧିକ ବୟସରେ ସନ୍ତାନ ପ୍ରସବ, ପରିବାରରେ ବୟସାଧିକଙ୍କ ସଂଖ୍ୟା ବୃଦ୍ଧି, ରୋଜଗାରକ୍ଷମଙ୍କ ସଂଖ୍ୟା ହ୍ରାସ, ଅବିବାହିତା କନ୍ୟାଙ୍କର ଯୌନ ଶୋଷଣ, ଏଚ୍‌ଆଇଭି / ଏଡ୍‌ସର ପ୍ରଭାବ, ପାରିବାରିକ ସ୍ୱାସ୍ଥ୍ୟରେ ଅବନତି, ପରିବାର ଜୀବନ ଶୈଳୀ ଉପରେ ଗଣମାଧ୍ୟମର କୁପ୍ରଭାବ, ଦୁର୍ବଳ ସାମାଜିକ ମୂଲ୍ୟବୋଧ, ଅତ୍ୟଧିକ ବ୍ୟକ୍ତି ସ୍ୱାଧୀନତା ଇତ୍ୟାଦି ।

ଏହି ସମସ୍ୟାଗୁଡ଼ିକର ସମ୍ମୁଖୀନ ହେବାପାଇଁ ସର୍ବପ୍ରଥମେ ସାଂସ୍କୃତିକ, ଆଧ୍ୟାତ୍ମିକ ଓ ସାମାଜିକ ମୂଲ୍ୟବୋଧର ପ୍ରଚାର, ପ୍ରସାରପାଇଁ ବିଶ୍ୱବାସୀଙ୍କୁ ଆହ୍ୱାନ ଦିଆଯାଇଛି । ପରିବାରରେ ବଢ଼ୁଥିବା ପିଲାଙ୍କପାଇଁ ଉତ୍ତମ ପୋଷଣ, ଶିକ୍ଷା, ସ୍ୱାସ୍ଥ୍ୟ, ନିଯୁକ୍ତିର ସୁଯୋଗ ଓ ସାମାଜିକ ନିରାପତ୍ତାର ଆବଶ୍ୟକତା ରହିଛି । ଯୁଗ ଯୁଗ ଧରି ଚଳି ଆସୁଥିବା ବିବାହ ଅନୁଷ୍ଠାନକୁ ସୁରକ୍ଷା ଦେବାପାଇଁ ସବୁ ପ୍ରକାର ଉଦ୍ୟମ ନିମନ୍ତେ ସରକାର ଓ ନାଗରିକ ସମାଜ ଆଗେଇ ଆସିବାକୁ ହେବ । ବିବାହ ଓ ପରିବାରକୁ ବଞ୍ଚାଇ ରଖିବା ପାଇଁ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କୁ ସମାନ ଅଧିକାର ଦେବାକୁ ସମ୍ମିଳନୀ ଆହ୍ୱାନ ଦେଇଛନ୍ତି । ବିବାହ ଓ ପରିବାର ଦୁର୍ବଳ ହେଲେ ମାନବ ଜାତି ଘୋର ବିପଦର ସମ୍ମୁଖୀନ ହେବ - ଏ କଥା ଆନ୍ତର୍ଜାତିକ ମଣ୍ଡପରେ ପ୍ରଥମଥରପାଇଁ ସ୍ୱୀକାର କରାଯାଇଛି ।

ସୌଭାଗ୍ୟବଶତଃ ଏବେ ବି ଭାରତ ଏକ ପରିବାର-ପ୍ରେମୀ ଦେଶ ଏବଂ ଦେଶରେ ଶତକଡ଼ା ୯୯ ଭାଗରୁ ଅଧିକ ଲୋକ ପରିବାରରେ ରହନ୍ତି । ବର୍ଷକୁ ପ୍ରାୟ ଏକ କୋଟି ବାହାଘର ହୁଏ, ଦୁଇ କୋଟି ସତୁରୀ ଲକ୍ଷ ପିଲା ଜନ୍ମ ହୁଅନ୍ତି । କିନ୍ତୁ

ଏଠାରେ ବାଲ୍ୟ ବିବାହ, ଯୌତୁକ ପ୍ରଥା, ପତ୍ନୀ ଅତ୍ୟାଚାର, କନ୍ୟାଭ୍ରୂଣ ହତ୍ୟା, ପବିତ୍ର ବିବାହ ଅନୁଷ୍ଠାନକୁ ଏବେ ବି କଳଙ୍କିତ କରୁଛି । ଏଠାରେ ବର କନ୍ୟାଙ୍କୁ; ବିବାହ, ଯୌନ ଜୀବନ, ସନ୍ତାନ ପାଳନ ସମ୍ପର୍କରେ ତାଲିମ ଦିଆଯାଏ ନାହିଁ । ନବ ଦମ୍ପତି ଅଜ୍ଞତାର ବୋଝ ମୁଣ୍ଡାଇ ସଂସାରରେ ପ୍ରବେଶ କରନ୍ତି ଏବଂ ଏହି କାରଣରୁ ପରବର୍ତ୍ତୀ କାଳରେ ନିଜ ପିଲାମାନଙ୍କପାଇଁ ଏ ସମ୍ପର୍କୀୟ ତାଲିମର ଆବଶ୍ୟକତା ଅନୁଭବ କରିପାରନ୍ତି ନାହିଁ ।

ବିବାହ ଓ ପରିବାର ବିଶାରଦମାନେ କହନ୍ତି ଯେ ବୈବାହିକ ଜୀବନକୁ ସରସ ଓ ପାରିବାରିକ ସୁଖ ଶାନ୍ତିପାଇଁ ୪ଟି ଜିନିଷ ଦରକାର । ଇଂରାଜୀରେ ଏହି ୪ଟିକୁ 'ଫୋର୍ ଟି ପ୍ରିନ୍‌ସପଲ୍' କୁହାଯାଏ । ପ୍ରଥମଟି ହେଲା 'ଟ୍ରଷ୍ଟ' - ପରସ୍ପର ପ୍ରତି ଆସ୍ଥା ଓ ବିଶ୍ୱାସ । ଦ୍ୱିତୀୟଟି ହେଲା - 'ଟଚ୍' ବା ସ୍ପର୍ଶ ଶକ୍ତି । ଏହାଦ୍ୱାରା ସ୍ୱାମୀ-ସ୍ତ୍ରୀ ଓ ପିଲାମାନେ ପରସ୍ପର ନିକଟତର ହୋଇଥାନ୍ତି । ବନ୍ଧନ ମଜଭୁତ୍ ହୋଇଥାଏ । ତୃତୀୟଟି ହେଲା -'ଟାଇମ୍' ବା ସମୟ । ସ୍ୱାମୀଙ୍କର ସ୍ତ୍ରୀପାଇଁ, ସ୍ତ୍ରୀଙ୍କର ସ୍ୱାମୀପାଇଁ, ଉଭୟଙ୍କର ପିଲାମାନଙ୍କପାଇଁ, ସମସ୍ତଙ୍କର ବୟସ୍କ ଓ ଗୁରୁଜନମାନଙ୍କପାଇଁ ସମୟ ଥିବା ଦରକାର । ସମୟ ଦେଇ ନ ପାରିଲେ ସମ୍ପର୍କ ଶିଥିଳ ହୋଇଯାଏ । ଚତୁର୍ଥ ସୂତ୍ରଟି ହେଲା - 'ଟକ୍' ବା ବାର୍ତ୍ତାଳାପ । ପରିବାରରେ କଥାଭାଷାଦ୍ୱାରା ଅନେକ ସମସ୍ୟା ଦୂର ହୁଏ, ବୁଝାମଣା ବଢ଼େ । ତେଣୁ ପରିବାରକୁ କହନ୍ତି କ୍ଷୁଦ୍ରତମ ଗଣତନ୍ତ୍ର । ଏବେ ବ୍ୟସ୍ତ ପିତାମାତାଙ୍କୁ ପିଲାଙ୍କ ସହ କଥା ହେବାକୁ ବେଳ ନାହିଁ, ସ୍ୱାମୀ-ସ୍ତ୍ରୀ ପରସ୍ପର ସହ କଥା ହେବାକୁ ସମୟ ପାଉନାହାନ୍ତି ।

ପରିବାର ସମ୍ପର୍କରେ ଗବେଷଣା କରୁଥିବା ବିଶେଷଜ୍ଞମାନେ ଏବେ କହୁଛନ୍ତି ଯେ ପରିବାରରେ ରହୁଥିବା ବିବାହିତ, ଅବିବାହିତ, ସବୁ ସଦସ୍ୟ ଅଧିକ ଦିନ ବଞ୍ଚନ୍ତି । ସେମାନଙ୍କର ଶାରୀରିକ, ମାନସିକ ବ୍ୟାଧି କମ୍ ଏବଂ ସୁଖର ମାତ୍ରା ଅଧିକ । ଇଂଲଣ୍ଡ ସିଟି ୟୁନିଭରସିଟିର ପ୍ରଫେସର ଇନ୍‌ଗ୍ରିଡ୍ ସ୍କୁନ୍‌ଙ୍କଦ୍ୱାରା ୧୦ ହଜାର ବ୍ୟକ୍ତିଙ୍କ ଜୀବନ ଶୈଳୀ ଉପରେ କରାଯାଇଥିବା ଏକ ଅଧ୍ୟୟନରୁ ଜଣାପଡ଼ିଛି ଯେ ୩୦ ବର୍ଷ ବୟସ୍କ ସୁଶିକ୍ଷିତ ପ୍ରଫେସନାଲ୍‌ଙ୍କ ମଧ୍ୟରୁ ଯେଉଁମାନଙ୍କର ପରିବାର ଓ ସନ୍ତାନ ଅଛି ସେମାନେ ଅନ୍ୟମାନଙ୍କ ଅପେକ୍ଷା ଅଧିକ ଖୁସି । ଏବେ ମନସ୍ତତ୍ତ୍ୱବିତ୍ ରବର୍ଟ ବର୍ନ୍‌ଷ୍ଟିନ୍ ଓ ତାଙ୍କ ପତ୍ନୀ ମେରୀଙ୍କଦ୍ୱାରା ଲିଖିତ ପୁସ୍ତକ 'ହେଲ୍ ଦି ଡିପେଣ୍ଡେନ୍‌ସି' ଅନୁସାରେ ସ୍ୱାଧୀନତା ଅପେକ୍ଷା ପରସ୍ପର ନିର୍ଭରଶୀଳତା ବିବାହ ବନ୍ଧନକୁ ସୁଦୃଢ଼ କରିଥାଏ ।

ବ୍ୟକ୍ତିଗତ ସ୍ୱାଧୀନତାପାଇଁ ଗଳାଫଟା ଚିତ୍କାର ଭିତରେ ପାରିବାରିକ ସ୍ନେହ, ଶ୍ରଦ୍ଧା, ତ୍ୟାଗ, ସହଯୋଗ, ପରସ୍ପର ଉପରେ ସ୍ୱାସ୍ଥ୍ୟକର ନିର୍ଭରଶୀଳତା, ସହାୟତା, ଏକତା ଆଦି ମୂଲ୍ୟବୋଧ ନୀରବ ହୋଇଗଲେଣି । କାରଣ ଏ ସବୁ ବିଷୟରେ ଆଲୋଚନା "ପଲିଟିକାଲି କରେକ୍ଟ" ହେବ ନାହିଁ ବା ମୌଳବାଦୀଙ୍କ ପ୍ରଳାପ ବୋଲି କୁହାଯିବ । ଏହା ସତ୍ତ୍ୱେ ବିଶ୍ୱର ବିଭିନ୍ନ ଦେଶରେ 'ଫାମିଲି ଲାଇଫ୍ ଏଜୁକେଶନ୍' ବା ପାରିବାରିକ ଜୀବନ ଶିକ୍ଷାକୁ ପାଠ୍ୟକ୍ରମର ଅଙ୍ଗ କରାଗଲାଣି । ଭଲ ସ୍ୱାମୀ, ଭଲ ପିତା,ଭଲ ମାତା, ଭଲ ସ୍ତ୍ରୀ, ଭଲ ସନ୍ତାନ ହେବାପାଇଁ ପରିବାର ବିଷୟରେ ଶିକ୍ଷା ଅତ୍ୟନ୍ତ ଆବଶ୍ୟକ । ପରିବାର ଆମକୁ ସ୍ୱାମୀ, ସ୍ତ୍ରୀ, ପିତା-ମାତା, ଭାଇ-ଭଉଣୀ ପୁତ୍ର-କନ୍ୟା ଇତ୍ୟାଦି ସଂଜ୍ଞା ଦେଇଥାଏ ଏବଂ ଏଇସବୁ ସମ୍ପର୍କ ଓ ସଂଜ୍ଞା ଆମର ଆଚାର, ବ୍ୟବହାର, ସଂସ୍କୃତି ଓ ମୂଲ୍ୟବୋଧକୁ ପ୍ରଭାବିତ କରିଥାନ୍ତି । ତେଣୁ ଭାରତରେ ପରିବାର ବଞ୍ଚି ରହିଲେ ହିଁ ଭାରତୀୟ ସଭ୍ୟତା ଓ ସଂସ୍କୃତି ବଞ୍ଚି ରହିବ ।

*୧୪ ଜୁନ୍, ୨୦୦୭*



# ଯୌନ ସ୍ୱାସ୍ଥ୍ୟପାଇଁ ଯୌନ ଶିକ୍ଷା

ଛାତ୍ରଛାତ୍ରୀମାନଙ୍କର ନୀରବ ସମର୍ଥନ ସତ୍ତ୍ୱେ, ଓଡିଶାର ଗଣମାଧ୍ୟମରେ ଏବେ ଯୌନ ଶିକ୍ଷା ସମ୍ପର୍କରେ ବିବାଦ ଓ ବିରୋଧ ପ୍ରକାଶିତ ହେଲାଣି । ବିଳମ୍ବରେ ହେଲେ ମଧ୍ୟ ଏହା ଏକ ଶୁଭ ଲକ୍ଷଣ । ଏହି ସ୍ପର୍ଶକାତର ବିଷୟରେ ଯେତେ ଅଧିକ ଆଲୋଚନା, ପର୍ଯ୍ୟାଲୋଚନା ହେବ, ସେତେ ଭଲ । କାରଣ ଯୌନ ଶିକ୍ଷା ସମ୍ପର୍କରେ ପୃଥିବୀର ପ୍ରଥମ ପୁସ୍ତକ ରଚନା କରାଯାଇଥିଲା ଭାରତରେ । ବହିର ନାଁ 'କାମସୂତ୍ର' ଓ ରଚୟିତା ଥିଲେ ମହାଋଷି ବାତ୍ସାୟନ । ଏହି ପୃଥିବୀ ପ୍ରସିଦ୍ଧ ଏବଂ ଲୋକପ୍ରିୟ ପୁସ୍ତକ ଏବେ ଦେଶ ବିଦେଶର ବିଭିନ୍ନ ଭାଷାରେ ଅନୂଦିତ ହୋଇସାରିଲାଣି । ଶ୍ରୀମନ୍ଦିର, କୋଣାର୍କ, ସୂର୍ଯ୍ୟମନ୍ଦିର, ଖଜୁରାହୋ ଭଳି ବିଭିନ୍ନ ପୁରାତନ ମନ୍ଦିର ଓ ଅଟ୍ଟାଳିକା ଗାତ୍ରରେ ଯୌନ ଚିତ୍ର ଓ କାରୁକାର୍ଯ୍ୟ ଦେଖିବାପାଇଁ ପ୍ରତିବର୍ଷ ଲକ୍ଷାଧିକ ପର୍ଯ୍ୟଟକ ବା ଟୁରିଷ୍ଟଙ୍କ ସଂଖ୍ୟା ଆହୁରି ବେଶୀ । ଏହାର ଧାର୍ମିକ ଓ ମାର୍ମିକ ଅର୍ଥ ଅର୍ଥାନ୍ତର କରାଯାଇ ଯେତେ କଥା କୁହାଗଲେ ମଧ୍ୟ, ଏହା ଯେ ପ୍ରାଚୀନ ଭାରତୀୟ ଯୌନ ଶିକ୍ଷାର ଏକ ସମୃଦ୍ଧ ଆଧ୍ୟାତ୍ମିକ ପରମ୍ପରା, ଏ କଥା ଅସ୍ୱୀକାର କରି ହେବ ନାହିଁ ।

ଏଠାରେ ସହସ୍ରାଧିକ ମନ୍ଦିରରେ ସ୍ତ୍ରୀ ଓ ପୁରୁଷ ଯୌନାଙ୍ଗକୁ ଅତ୍ୟନ୍ତ ସମ୍ମାନର ସହ ଶକ୍ତି ଓ ସୃଷ୍ଟିର ପ୍ରତୀକ ଭାବରେ ପୂଜା କରାଯାଏ । ନୂଆ ପିଲାଟିଏ ଜନ୍ମ ହେଲେ ସମସ୍ତଙ୍କ ପ୍ରଥମ ପ୍ରଶ୍ନ - ପିଲାର ଲିଙ୍ଗ ବା ସେକ୍ସ କ'ଣ ? ପୁଅ ନା ଝିଅ ? ସରକାରୀ ଫର୍ମଠାରୁ ଆରମ୍ଭ କରି ଟ୍ରେନ୍ ଟିକଟ ପର୍ଯ୍ୟନ୍ତ ସବୁଥିରେ ପଚରାଯାଏ - ସମ୍ପୃକ୍ତ ବ୍ୟକ୍ତିଙ୍କର 'ସେକ୍ସ' ମେଲ୍ ନା ଫିମେଲ୍ ? ସ୍ତ୍ରୀଲିଙ୍ଗ ଓ ପୁଲିଙ୍ଗ ହେଉଛି ସମ୍ପୃକ୍ତ ସ୍ତ୍ରୀ ଓ ପୁରୁଷଙ୍କର 'ସେକ୍ସୁଆଲ୍ ଆଇଡେଣ୍ଟିଟି' - ପୃଥିବୀରେ ପଦାର୍ପଣର ପ୍ରଥମ ପରିଚୟ ପତ୍ର । ଏହାକୁ ଭିତ୍ତି କରି ସମାଜ ଓ ପରିବାରରେ ସ୍ତ୍ରୀ ପୁରୁଷଙ୍କପାଇଁ ସ୍ୱତନ୍ତ୍ର

ଆଚରଣବିଧି ପ୍ରସ୍ତୁତ ହୁଏ । ବର୍ଣ୍ଣଭେଦ ଭଳି ଲିଙ୍ଗ ଭେଦ ବା 'ସେକ୍ସୁଆଲ୍ ଡିସ୍କ୍ରିମିନେସନ୍' ବିରୋଧରେ ଏବେ ଆନ୍ଦୋଳନ ଚାଲିଛି । କାରଣ ଲିଙ୍ଗ ବା ସେକ୍ସ ସହ ଅନେକ ସାମାଜିକ ଭେଦଭାବ ଯୋଡ଼ି ହୋଇଥାଏ । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଲିଙ୍ଗ ଆମର ସଂଜ୍ଞା ନିର୍ଦ୍ଧାରଣ କରେ ।

ଏହି ପରିପ୍ରେକ୍ଷୀରେ ଯୌନ ଶିକ୍ଷାର ଆବଶ୍ୟକତା ବିଚାର କରିବାକୁ ହେବ । ଓଡ଼ିଶାପାଇଁ ଏହା ବିଶେଷ ଗୁରୁତ୍ୱପୂର୍ଣ୍ଣ - ବିଶେଷ କରି ଘରେ ବାହାରେ ବଢ଼ୁଥିବା ଆମ ପିଲାମାନଙ୍କପାଇଁ । ୨୦୦୫ ମସିହା ସୁଦ୍ଧା ଓଡ଼ିଶାରେ ୧୦ ରୁ ୧୯ ବର୍ଷ ବୟସର ପିଲାଙ୍କ ସଂଖ୍ୟା ଥିଲା ପ୍ରାୟ ନବେ ଲକ୍ଷ - ରାଜ୍ୟ ଜନସଂଖ୍ୟାର ଏକୋଇଶି ଭାଗ । ତା'ମଧ୍ୟରୁ ଝିଅ ପିଲାଙ୍କ ସଂଖ୍ୟା ୪୪ ଲକ୍ଷ । ଏମାନଙ୍କ ମଧ୍ୟରୁ ଶତକଡ଼ା ୩୭ ଭାଗ ଝିଅ ଅଠର ବର୍ଷ ହେବା ପୂର୍ବରୁ ବିବାହ କରିଥାନ୍ତି । ୟୁନିସେଫ୍ ଓ ଅନ୍ୟ ଅଧ୍ୟୟନ ଅନୁସାରେ ଏହି ଅନୁପାତ ଆହୁରି ଅଧିକ । ଫଳରେ ଓଡ଼ିଶାରେ ଶିଶୁ ମୃତ୍ୟୁ ଓ ପ୍ରସୂତି ମୃତ୍ୟୁ ହାର ସର୍ବାଧିକ । ଏହି ଅଳ୍ପ ବୟସ୍କା ବିବାହିତାଙ୍କ ମଧ୍ୟରୁ ଶତକଡ଼ା ୨୮ ଭାଗ ଯୌନାଙ୍ଗ ସମ୍ପର୍କିତ ରୋଗଦ୍ୱାରା ଆକ୍ରାନ୍ତ । ଏମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଗର୍ଭଧାରଣ, ପ୍ରସବ ଓ ସନ୍ତାନ ପାଳନ ବିଷୟରେ କୌଣସି ସ୍ପଷ୍ଟ ଧାରଣା ନଥାଏ । ଏହି କାରଣରୁ ୧୫ ରୁ ୧୯ ବର୍ଷ ମଧ୍ୟରେ ଗର୍ଭଧାରଣ କରୁଥିବା ଅନେକ ମହିଳା ମୃତ୍ୟୁ ମୁଖରେ ପଡ଼ନ୍ତି । ଓଡ଼ିଶାର ନବରଙ୍ଗପୁର ଜିଲ୍ଲାରେ ଅଳ୍ପ ବୟସରେ ଗର୍ଭିଣୀ ମା'ଙ୍କ ସଂଖ୍ୟା ସବୁଠୁ ବେଶୀ । ତା ପଛରେ ଅଛନ୍ତି କୋରାପୁଟ, କଳାହାଣ୍ଡି, ବଲାଙ୍ଗୀର, ମାଲକାନଗିରି ଓ ନୟାଗଡ଼ ଜିଲ୍ଲା । ନିରକ୍ଷରତା, ଦାରିଦ୍ର୍ୟ ଓ ଗର୍ଭନିରୋଧକ ଜ୍ଞାନ ଓ କୌଶଳର ଅଭାବ ଏହି ପରିସ୍ଥିତିକୁ ଅଧିକ ଜଟିଳ କରି ଦେଇଛି । ଅନ୍ୟ ଏକ ଅଧ୍ୟୟନରୁ ଜଣାପଡ଼େ, ଶତକଡ଼ା ୨୦ ଭାଗ ପୁଅ ଓ ପ୍ରାୟ ୬୫ ଭାଗ ଝିଅଙ୍କର ମଧୁଚନ୍ଦ୍ରିକା ବା ବିବାହର ପ୍ରଥମ ମିଳନ ସମ୍ପର୍କରେ ସ୍ପଷ୍ଟ ଧାରଣା ନଥାଏ ।

ଅଳ୍ପ ବୟସରେ ଯୌନ ସମ୍ପର୍କ ଓ ଗର୍ଭପାତ ସଂଖ୍ୟା ଏବେ ବଢ଼ିବାରେ ଲାଗିଛି । ପୃଥିବୀରେ ପ୍ରତିଦିନ ୫୫୦୦୦ ଗର୍ଭପାତ କରାଯାଏ ଏବଂ ସେଥିରୁ ପ୍ରାୟ ଶତକଡ଼ା ନବେ ଭାଗ ଅସୁରକ୍ଷିତ । ତା ମଧ୍ୟରୁ ଅଧିକାଂଶ ଅଳ୍ପ ବୟସର କିଶୋରୀ । ତିନି ବର୍ଷ ତଳେ ଭୁବନେଶ୍ୱର ସହରରେ ନ'ଶହ ଅବିବାହିତ କିଶୋରୀ ଅସୁରକ୍ଷିତ ଓ ଅସ୍ୱାସ୍ଥ୍ୟକର ପରିବେଶରେ ଗର୍ଭପାତ କରିଥିବା ଖବର ରାଜ୍ୟରେ ଚହଳ ସୃଷ୍ଟି କରିଥିଲା । ସେହିପରି ଭାରତରେ ଦେହ ବ୍ୟବସାୟୀଙ୍କ ମଧ୍ୟରୁ ଶତକଡ଼ା ତିରିଶ ଭାଗ ହେଉଛନ୍ତି

ପିଲା । 'ମାଇଁ ହାର୍ଟ' ସଂସ୍ଥାଦ୍ୱାରା ଆଦିବାସୀ ଅଞ୍ଚଳରେ ହୋଇଥିବା ଅଧ୍ୟୟନ ଅନୁସାରେ ୧୦ ରୁ ୧୩ ବର୍ଷ ବୟସ ମଧ୍ୟରେ ଶତକଡ଼ା ୪୦ ଭାଗ ପୁଅ ଝିଅ ପ୍ରଥମ ଯୌନ ସମ୍ପର୍କର ଅଭିଜ୍ଞତା ଲାଭ କରିଥାନ୍ତି । ତା'ମଧ୍ୟରୁ ୪୦ ପ୍ରତିଶତ ନିଜ ପାଖ ଲୋକ, ନିକଟ ସମ୍ପର୍କୀୟ ଓ ସାଥୀମାନଙ୍କଦ୍ୱାରା ପ୍ରଭାବିତ ହୋଇଥାନ୍ତି । ଉପକୂଳ ଜିଲ୍ଲା ଓ ସହର ଅଞ୍ଚଳର ଅବସ୍ଥା ମଧ୍ୟ ଏହାଠାରୁ ଭଲ ନୁହେଁ ।

ଭାରତରେ ଏବେ ୨୫ ଲକ୍ଷ ଲୋକ 'ଏଚ୍ଆଇଭି' ଓ ଏଡ୍ସଦ୍ୱାରା ସଂକ୍ରମିତ ଓ ପୀଡିତ । ତା'ମଧ୍ୟରୁ ପ୍ରାୟ ୮୦ ଭାଗ ସଂକ୍ରମଣ ଅସୁରକ୍ଷିତ ଯୌନ ସମ୍ପର୍କଦ୍ୱାରା ହୋଇଥାଏ । ସେହିପରି ଆହୁରି କୋଟିଏ ଲୋକ ବିଭିନ୍ନ ପ୍ରକାର ଯୌନ ରୋଗଦ୍ୱାରା ପୀଡିତ । ସେମାନଙ୍କ ମଧ୍ୟରୁ ଅଧିକାଂଶ କୈଶୋର ଓ ଯୁବାବସ୍ଥାରେ ଏହି ରୋଗଦ୍ୱାରା ଆକ୍ରାନ୍ତ ହୋଇଥାନ୍ତି । ଯୌନ ଆଚରଣରେ ସାମାନ୍ୟତମ ତ୍ରୁଟି ଆମ ପିଲାଙ୍କୁ ମୃତ୍ୟୁ ମୁଖକୁ ଠେଲି ଦିଏ । ଯୌନ ସମ୍ପର୍କ ବିଷୟରେ ଜ୍ଞାନର ଅଭାବ ଏହାର ମୁଖ୍ୟ କାରଣ । ଉଦାହରଣ ସ୍ୱରୂପ କୈଶୋର ଅବସ୍ଥାର ଏକ ସ୍ୱାଭାବିକ ଶାରୀରିକ ପ୍ରକ୍ରିୟାକୁ 'ସ୍ୱପ୍ନଦୋଷ' ନାମ ଦେଇ ତା'ର ଚିକିତ୍ସାପାଇଁ ପ୍ରତିବର୍ଷ 'କ୍ୱାକ୍' ମାନେ ୧୦ ହଜାର କୋଟି ଟଙ୍କାର ବ୍ୟବସାୟ କରିଥାନ୍ତି । ସେହିପରି ସ୍ତ୍ରୀ ଶରୀରର ମାସିକ ଧର୍ମ ବା ଋତୁ ଭଳି ଏକ ପ୍ରାକୃତିକ କ୍ରିୟା ସମ୍ପର୍କରେ ପିଲାମାନଙ୍କୁ ଘରେ ବା ସ୍କୁଲରେ ଉପଯୁକ୍ତ ଶିକ୍ଷା ବା ପରାମର୍ଶ ମିଳେ ନାହିଁ । ଛୋଟ ପିଲାମାନଙ୍କୁ ନିଜର ଯୌନାଙ୍ଗକୁ ସଫା ସୁତୁରା ରଖିବାପାଇଁ କହିବାକୁ ବାପା ମା'ମାନେ ସଙ୍କୋଚବୋଧ କରନ୍ତି । "ମୁଁ କେମିତି ଜନ୍ମ ହେଲି' ଶିଶୁମାନଙ୍କର ଏହି ସରଳ ନିଷ୍ପାପ ପ୍ରଶ୍ନ ପିତାମାତାଙ୍କୁ ବ୍ୟସ୍ତ ଓ ବିବ୍ରତ କରିଥାଏ ।

୧୦ ରୁ ୧୯ ବର୍ଷ ମଧ୍ୟରେ ଉଭୟ ପୁଅ ଓ ଝିଅ ପିଲାଙ୍କ ଶରୀରରେ ଦ୍ରୁତ ପରିବର୍ତ୍ତନ ଘଟେ । କେବଳ ଉଚ୍ଚତା ନୁହେଁ ବଢ଼ିଯାଏ । ପରସ୍ପର ପ୍ରତି ଆକର୍ଷଣ ବଢ଼େ, କୌତୂହଳ ଜନ୍ମେ । ଯେହେତୁ ଗୃହ ଓ ବିଦ୍ୟାଳୟ ଏ ବିଷୟରେ ଚୁପ୍ ରହନ୍ତି, ପିଲାମାନେ ଅଜ୍ଞ ସାଙ୍ଗ ସାଥୀ ଓ ଅଶ୍ଳୀଳ ପୁସ୍ତକର ଆଶ୍ରୟ ନେଇଥାନ୍ତି । ଫଳରେ ବିପଥଗାମୀ ହୁଅନ୍ତି, ବିପଦରେ ପଡ଼ନ୍ତି । ୧୮ ରୁ ୩୦ ବର୍ଷ ମଧ୍ୟରେ ଝିଅ ଓ ପୁଅ ମାନେ ବିବାହ ଓ ପରିବାର ଗଠନ ସହ ସନ୍ତାନ ଜନ୍ମ କରିଥାନ୍ତି । କିନ୍ତୁ ଏ ବିଷୟରେ ସେମାନଙ୍କୁ କୌଣସି ଶିକ୍ଷା ବା ପରାମର୍ଶ ମିଳେ ନାହିଁ । ଯୌନ ଉଦ୍ଦୀପକ ଚଳଚ୍ଚିତ୍ର, ଭିଡିଓ ସଙ୍ଗୀତ ନୃତ୍ୟ ପିଲାମାନଙ୍କୁ ଅଳ୍ପ ବୟସରେ ଯୌନ କ୍ରିୟାପାଇଁ ପ୍ରେରିତ କରୁଛି ବୋଲି ଏବେ ଏକ ବିଶ୍ୱସ୍ତରୀୟ ଅଧ୍ୟୟନରୁ ଜଣାପଡ଼ିଛି । ଏହି କାରଣରୁ ଧର୍ଷଣ,

ବଳାତ୍କାର ସଂଖ୍ୟା ମଧ୍ୟ ବଢ଼ୁଛି ଏବଂ ଝିଅ ପିଲାମାନେ ଏବେ ତାଙ୍କ ଗୋସେଇଁ ମା'ଙ୍କ ଦେଢ଼ ବର୍ଷ ଆଗରୁ ପୁଷ୍ପବତୀ ହେଉଛନ୍ତି । ଅନେକ ଯୁବକ ଯୁବତୀ ଡେରିରେ ବିବାହ କରୁଥିବାଯୋଗୁଁ ଶୃଙ୍ଖଳିତ ଯୌନ ଜୀବନର ସମୟସୀମା ବଢ଼ିବାରେ ଲାଗିଛି । ଗର୍ଭ ନିରୋଧ ବା କଣ୍ଟ୍ରାସେପ୍‌ଟିଭ୍ ବ୍ୟବହାର ଅନିଚ୍ଛାକୃତ ଗର୍ଭନିରୋଧ କରିବା ସଙ୍ଗେ ସଙ୍ଗେ ସ୍ୱାଧୀନ, ଉଚ୍ଛୃଙ୍ଖଳ ଯୌନ ସମ୍ପର୍କପାଇଁ ମଧ୍ୟ ପ୍ରେରଣା ଦେଉଛି । ଅନେକ ଦେଶରେ ଯୌନ ଶିକ୍ଷା ବା ସେକ୍ସ ଏଜୁକେସନ୍‌କୁ ରିପ୍ରଡକ୍ଟିଭ୍ ହେଲ୍‌ଥ ଏଜୁକେସନ୍ କୁହାଯାଏ ।

ଏହିସବୁ ସମସ୍ୟାକୁ ସାମନା କରିବାର ବେଳ ଆସିଛି । 'ଯୌନ ଶିକ୍ଷା' ଶବ୍ଦ ଦୁଇଟି ଏବେ ବିବାଦୀୟ ହୋଇ ପଡ଼ିଲାଣି । ଏହା ପ୍ରକୃତରେ ସୁସ୍ଥ ପାରିବାରିକ ଜୀବନପାଇଁ ଶିକ୍ଷା । ବ୍ରହ୍ମଚର୍ଯ୍ୟ ମଧ୍ୟ ଏକ ଯୌନ ଶିକ୍ଷା, ଗାର୍ହସ୍ଥ୍ୟପାଇଁ ମଧ୍ୟ ଯୌନ ଶିକ୍ଷା ଆବଶ୍ୟକ । ୧୯୯୪ ମସିହାରେ "ଜନସଂଖ୍ୟା ଓ ପ୍ରଗତି" ସମ୍ପର୍କରେ କାଇରୋ ଠାରେ ଅନୁଷ୍ଠିତ ବିଶ୍ୱ ସମ୍ମିଳନୀରେ ଯୋଗ ଦେଇଥିବା ୧୭୯ଟି ଦେଶ କିଶୋର ଓ କିଶୋରୀଙ୍କପାଇଁ ଯୌନ ଓ ପ୍ରଜନନ ଶିକ୍ଷା ପ୍ରବର୍ତ୍ତନପାଇଁ ସର୍ବସମ୍ମତି କ୍ରମେ ସୁପାରିଶ କରିଥିଲେ । ଏହି ଶିକ୍ଷା ସବୁ ପିଲାଙ୍କପାଇଁ ଏକ ପ୍ରକାର ନୁହେଁ । ଶିଶୁମାନଙ୍କପାଇଁ ଯୌନାଙ୍ଗ ସ୍ୱାସ୍ଥ୍ୟରକ୍ଷା ହେଉଛି ଯୌନ ଶିକ୍ଷା, ବିବାହିତଙ୍କପାଇଁ ଗର୍ଭଧାରଣ, ପ୍ରସବ, ପ୍ରଜନନ, ସ୍ୱାସ୍ଥ୍ୟରକ୍ଷା ହେଲା ଯୌନ ଶିକ୍ଷା । ଯୌନ ଶିକ୍ଷାପାଇଁ କରିକୁଲମ୍ ବା ଶିକ୍ଷା ଖସଡ଼ା ତିଆରି ବେଳେ ବାପା, ମାଙ୍କୁ ବିଶ୍ୱାସକୁ ନେବା ଦରକାର, ସେମାନଙ୍କ ସହ ପରାମର୍ଶ କରିବା ଆବଶ୍ୟକ । ଏହା ବାରମ୍ବାର ପ୍ରମାଣିତ ହୋଇ ସାରିଲାଣି ଯେ ଯେଉଁ ଦେଶ ବା ରାଜ୍ୟରେ ସୁଚିନ୍ତିତ ଯୌନ ଶିକ୍ଷା ପ୍ରବର୍ତ୍ତନ କରାଯାଇଛି, ସେଠାରେ କିଶୋର କିଶୋରୀଙ୍କର ଯୌନ ସ୍ୱାସ୍ଥ୍ୟ ଅନ୍ୟମାନଙ୍କ ଅପେକ୍ଷା ଭଲ । ଭାରତରେ କରାଯାଇଥିବା ଆଉ ଏକ ଅଧ୍ୟୟନରୁ ଜଣାପଡ଼େ, ଆମ ଦେଶର ଅଧିକାଂଶ କିଶୋର କିଶୋରୀ ଯୌନ ଶିକ୍ଷା ଓ ଯୌନ ସ୍ୱାସ୍ଥ୍ୟ ସମ୍ପର୍କରେ ଅଧିକ ଜାଣିବାକୁ ଚାହାନ୍ତି । ଏଥିପାଇଁ ପିତା ମାତା ଓ ଶିକ୍ଷକ ଶିକ୍ଷୟିତ୍ରୀଙ୍କୁ ଆଗ ଯୌନ ସ୍ୱାସ୍ଥ୍ୟ ଓ ଶିକ୍ଷା ପରିସରକୁ ଆଣିବାକୁ ପଡ଼ିବ । କିନ୍ତୁ ଏଥିପାଇଁ ପାଶ୍ଚାତ୍ୟ ପଦ୍ଧତିର ଅନ୍ଧ ଅନୁସରଣର ଆବଶ୍ୟକତା ନାହିଁ ।

*୨୮ ଜୁନ୍, ୨୦୦୭*



# ମଧ୍ୟାହ୍ନ ଭୋଜନ ବିରତି

ସରକାରୀ କାର୍ଯ୍ୟାଳୟମାନଙ୍କରେ ପ୍ରଚଳିତ ମଧ୍ୟାହ୍ନ ଭୋଜନ ବିରତି ବ୍ୟବସ୍ଥାକୁ ବନ୍ଦ କରିବାକୁ ଓଡ଼ିଶା ବିଧାନସଭାର ମାନ୍ୟବର ବିଧାୟକମାନେ ଦାବି କରିଛନ୍ତି । କାରଣ ଦର୍ଶାଇ କୁହାଯାଇଛି ଯେ ଲଞ୍ଚ୍ ଖାଇବା ନାଁରେ ଅଫିସରମାନେ ଦୁଇ ତିନି ଘଣ୍ଟା ଧରି ଗାଏବ ହୋଇଯାଉଛନ୍ତି । ଏହା ଫଳରେ ସରକାରୀ କାମ ବାଧାପ୍ରାପ୍ତ ହେବା ସହ ସାଧାରଣ ଲୋକେ ବି ହିନସ୍ତା ହେଉଛନ୍ତି । ଘଣ୍ଟା ଘଣ୍ଟା ଧରି ଅଫିସରଙ୍କୁ ଅପେକ୍ଷା କରି ବସୁଛନ୍ତି । ଡେରିରେ ଅଫିସ୍ ଆସିବା ଓ ଲଞ୍ଚ୍‌ପାଇଁ କାର୍ଯ୍ୟାଳୟକୁ ସରକାରୀ ଗାଡ଼ିରେ ଯିବା ଆସିବାରେ ଦୈନିକ ପ୍ରାୟ ପାଞ୍ଚ ଘଣ୍ଟା ସମୟ ନଷ୍ଟ ହୁଏ ବୋଲି ହିସାବ କରାଯାଉଛି । ସମୟକୁ ଏବେ ଏକ ମହତ୍ତ୍ୱପୂର୍ଣ୍ଣ ସମ୍ବଳ ଭାବରେ ବିଚାର କରାଯାଉଥିବାରୁ ପ୍ରତ୍ୟହ ଏହି ନଷ୍ଟ ସମୟର ମାସିକ ମୂଲ୍ୟ ଜଣ ପିଛା ଅଧା ମାସର ଦରମାରୁ ଅଧିକ । ଅନ୍ୟ ପକ୍ଷରେ ଅଫିସରମାନେ କହନ୍ତି ଯେ ସେମାନେ ଅନେକ ସମୟରେ ଅଫିସ୍‌ରୁ ବିଳମ୍ବରେ ଘରକୁ ଫେରନ୍ତି ଏବଂ ବେଳେବେଳେ ଘରେ ଅଫିସ୍ କାମ କରିବାକୁ ପଡ଼େ । ଏହି ଯୁକ୍ତିର ସୁଯୋଗ ନେଇ ଅଧସ୍ତନ କର୍ମଚାରୀମାନେ ମଧ୍ୟ ଅଫିସରୁ ଗାଏବ ହୁଅନ୍ତି । ଯେ କୌଣସି ସମୟରେ ଓଡ଼ିଶା ସେକ୍ରେଟାରିଏଟ୍‌ରେ ପ୍ରାୟ ୩୦ ଭାଗ କର୍ମଚାରୀଙ୍କ ସିଟ୍ ଖାଲି ପଡ଼ିଥାଏ । ବାବୁ ଲଞ୍ଚ୍ ଖାଇବାକୁ ଯାଇଥାନ୍ତି ବା ଚା ଖାଇବାକୁ ଯାଇଥାନ୍ତି ବା ବଡ଼ବାବୁଙ୍କ ପାଖରେ ଥାନ୍ତି । ଏହା କେବଳ ଓଡ଼ିଶାରେ ନୁହେଁ, ବାହାର ରାଜ୍ୟ ସରକାରୀ କାର୍ଯ୍ୟାଳୟରେ ବି ଏକ ଗତାନୁଗତିକ ପ୍ରଥା ହେଲାଣି । ସିପିଏମ୍ ଶାସିତ ପଡ଼ୋଶୀ ରାଜ୍ୟ ପଶ୍ଚିମବଙ୍ଗ 'ରାଇଟର୍ସ ବିଲ୍‌ଡ଼ିଂ'ରେ ବିନା ଛୁଟିରେ ଅନୁପସ୍ଥିତ କର୍ମଚାରୀଙ୍କ ସଂଖ୍ୟା ଶତକଡ଼ା ୫୦ ଭାଗରୁ ଅଧିକ ।

ଏହା କେବଳ ସରକାରୀ କାର୍ଯ୍ୟାଳୟ ସ୍ତରରେ ସୀମିତ ନୁହେଁ । ବିଧାନସଭା ଓ ପାର୍ଲିଆମେଣ୍ଟରେ ମଧ୍ୟ ଅନେକ ସମସ୍ୟା ସବୁ କୋରମ୍ ଅଭାବରୁ ଆଲୋଚନା ନହୋଇ

ରହିଯାଏ । ମନ୍ତ୍ରୀ ମନ୍ତ୍ରଣାଳୟକୁ ନ ଆସିବାରୁ ହଜାର ହଜାର ସଂଖ୍ୟାରେ ଫାଇଲ୍ ସବୁ ପଡ଼ି ରହିଥାଏ । ସୋସିଆଲ୍ ୱାଚ୍ ତରଫରୁ ସଦ୍ୟ ପ୍ରକାଶିତ ରିପୋର୍ଟ ଅନୁସାରେ ପାର୍ଲାମେଣ୍ଟ କାର୍ଯ୍ୟ ସମ୍ପାଦନପାଇଁ ପ୍ରତି ମିନିଟ୍‌ରେ ୨୬ ହଜାର ଟଙ୍କା ଖର୍ଚ୍ଚ ହୁଏ । ଆମ ଦେଶର କୋର୍ଟ କଚେରିରେ ବହୁ ମକଦ୍ଦମା ଫଇସଲା ନ ହୋଇ ପଡ଼ିରହିଛି ବର୍ଷ ବର୍ଷ ଧରି । ସୁପ୍ରିମ୍‌କୋର୍ଟରେ ୩୩ ଲକ୍ଷ ଓ ହାଇକୋର୍ଟମାନଙ୍କରେ ପ୍ରାୟ ୩୪ ଲକ୍ଷ ମାମଲା ଫଇସଲା ଅପେକ୍ଷାରେ । କୋର୍ଟମାନଙ୍କର ଲମ୍ବା ଛୁଟି ଏହାର ଅନ୍ୟତମ କାରଣ । ଆମ ଦେଶ ଏକ ଛୁଟି ପ୍ରବଣ ଦେଶ । ଏତେ ଛୁଟି ଅନ୍ୟ ଦେଶରେ ନାହିଁ । ଉଦାହରଣ ସ୍ୱରୂପ ତତ୍କାଳୀନ ସୋଭିଏତ୍ ୟୁନିଅନ୍‌ର ପ୍ରେସିଡେଣ୍ଟ ବ୍ରେଜନେଭ୍‌ଙ୍କ ମୃତ୍ୟୁ ବେଳେ ସେ ଦେଶର କଳ, କାରଖାନା, ସ୍କୁଲ, କଲେଜ ଓ କାର୍ଯ୍ୟାଳୟ ମାତ୍ର ୫ ମିନିଟ୍‌ପାଇଁ ବନ୍ଦ ରହିଥିଲା । ଆମେରିକାର ବହୁ ବିଶ୍ୱବିଦ୍ୟାଳୟ ଗ୍ରୀଷ୍ମ ଓ ଶୀତ ଭଳି ଲମ୍ବା ଛୁଟିରେ ଅଧ୍ୟାପକମାନଙ୍କୁ ଦରମା ଦିଅନ୍ତି ନାହିଁ ।

କର୍ମଚାରୀମାନଙ୍କୁ କାର୍ଯ୍ୟାଳୟରେ ପୂରା ସମୟ ରଖିବାକୁ ବିଭିନ୍ନ ଦେଶରେ ନୂଆ ନୂଆ ଉପାୟ ପ୍ରୟୋଗ କରାଯାଉଛି । ଭାରତର ପୂର୍ବତନ ଯୁବ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧି ୫ ଦିନିଆ - ସପ୍ତାହ ବା ଫାଇଭ ଡେ ୱିକ୍ ପ୍ରବର୍ତ୍ତନ କରି ଆଶା କରିଥିଲେ ଯେ କର୍ମଚାରୀମାନେ ପ୍ରତି ସପ୍ତାହରେ ଦୁଇ ଦିନ ଆରାମରେ କଟାଇ ବାକି ପାଞ୍ଚଦିନ ଦ୍ୱିଗୁଣ ଉତ୍ସାହରେ କାମ କରିବେ । ୟୁରୋପର କେତେକ ଦେଶରେ ଏବେ 'ଚାରିଦିନିଆ-ସପ୍ତାହ' ଓ ତିରିଶ ଘଣ୍ଟା କାମ ବ୍ୟବସ୍ଥା ପ୍ରବର୍ତ୍ତନ କରାଗଲାଣି । ସୂଚନା ବିଜ୍ଞାନରେ ଅତି ଉନ୍ନତ ଦେଶମାନଙ୍କରେ ଘରେ ବସି ଅଫିସ୍ କାମ କରିବାର ସୁଯୋଗ ଦିଆଗଲାଣି । ଏକଦା ଚୀନ୍‌ରେ ମଧ୍ୟାହ୍ନ ଭୋଜନ ବିରତି ସମୟ ଓଡ଼ିଶାଠାରୁ ଅଧିକ ଥିଲା । ଜଗତୀକରଣ ଓ ଉଦାରୀକରଣ ପରେ ଆଉ ସେ ସୁବିଧା ମିଳୁନାହିଁ । ପଡ଼ୋଶୀ ବାଂଲାଦେଶରେ ଅଫିସ୍ ସମୟ ସକାଳ ୮ଟାରୁ ଦିନ ୨ଟା ପର୍ଯ୍ୟନ୍ତ ଥିଲା, ତେଣୁ ମଧ୍ୟାହ୍ନ ଭୋଜନ ବିରତିର ଆବଶ୍ୟକତା ପଡୁନଥିଲା । ସରକାରୀ ଦରମା କମ୍ ଥିବାରୁ କର୍ମଚାରୀମାନଙ୍କୁ ଦିନ ଦୁଇଟା ପରେ ନିଜ ନିଜ ଧନ୍ଦା ଓ ବ୍ୟବସାୟ ଜରିଆରେ ଅଧିକ ରୋଜଗାରପାଇଁ ସୁଯୋଗ ଦେବା ଉଦ୍ଦେଶ୍ୟରେ ଏପରି ବ୍ୟବସ୍ଥା ଥିଲା । ଏବେ ସେଠାକାର ସରକାର ଏହି ବ୍ୟବସ୍ଥାକୁ ରଦ୍ଦ କରି ଦେଲେଣି । କାରଣ ଅନୁଧ୍ୟାନରୁ ଜଣାପଡ଼ିଲା ଯେ କର୍ମଚାରୀମାନେ ଅଫିସ୍ କାମ ଛାଡ଼ି ବ୍ୟବସାୟରେ ଅଧିକ ସମୟ ଓ ମନ ଦେଉଛନ୍ତି ।

ଅନେକ ଇସ୍‌ଲାମୀୟ ଦେଶରେ ଧାର୍ମିକ କାରଣରୁ ଶୁକ୍ରବାର ଦିନ କର୍ମଚାରୀଙ୍କୁ ଛୁଟି ଦିଆଯାଏ । କିନ୍ତୁ ଏବେ ଏହି ପ୍ରଥାର ପୁନର୍ବିଚାର ହେଲାଣି ଏବଂ କେତେକ ଦେଶରେ ଶୁକ୍ରବାର ବଦଳରେ ରବିବାରକୁ ସାପ୍ତାହିକ ଛୁଟି ଦିବସ ଭାବରେ ରଖାଯାଇଛି । କାରଣ ଶୁକ୍ରବାର ଦିନ ବିଶ୍ୱ ବଜାର ଖୋଲା ଓ ଇସ୍‌ଲାମିକ୍ ଦେଶମାନଙ୍କ ଅଫିସ୍ ଓ ବଜାର ବନ୍ଦ ରହୁଥିବାଯୋଗୁଁ ଏ ଦେଶମାନେ ବିପୁଳ କ୍ଷତି ସହୁଥିଲେ । ଇଂଲଣ୍ଡରେ ମାସିକ ଦରମା ନ ଦେଇ ସାପ୍ତାହିକ ଦରମା ଦିଆଯାଏ । ଆଉ କେତେକ ଦେଶରେ ଘଣ୍ଟାକୁ ଘଣ୍ଟା ହିସାବରେ ପାରିଶ୍ରମିକ ଦିଆଯାଏ । ପୁଣି କର୍ମଚାରୀ ନିଜ ସମୟକୁ ବିଭିନ୍ନ ସଂସ୍ଥା, କାର୍ଯ୍ୟାଳୟ ଓ କମ୍ପାନିମାନଙ୍କୁ ବିକନ୍ତି । ଏହା ଫଳରେ ଜଣେ ବ୍ୟକ୍ତି ଗୋଟିଏ ଦିନରେ ତିନିଟି ଅଫିସ୍‌ପାଇଁ କାମ କରିପାରନ୍ତି । ମାଳଦ୍ୱୀପରେ ଜଣେ ସରକାରୀ ଚାକିରିରେ ଥାଇ ପାର୍ଲାମେଣ୍ଟ ମେମ୍ବର ହୋଇପାରିବ ।

ଜାପାନ୍, ମାଲେସିଆ, ସିଙ୍ଗାପୁର ଓ ଇଣ୍ଡୋନେସିଆ ଭଳି ଦକ୍ଷିଣ-ପୂର୍ବ ଏସୀୟ ଦେଶମାନଙ୍କରେ କର୍ମଚାରୀମାନଙ୍କୁ କର୍ମ ବନ୍ଧନରେ ବାନ୍ଧି ରଖିବାକୁ ବିଭିନ୍ନ ଆକର୍ଷଣୀୟ ଉପାୟ ଓ ପଦ୍ଧତି ପ୍ରୟୋଗ ହୁଏ । ଉଦାହରଣ ସ୍ୱରୂପ ସିଙ୍ଗାପୁରରେ ମନ୍ତ୍ରୀ ଓ ସିଭିଲ୍ ସର୍ଭାଣ୍ଟମାନଙ୍କୁ ସବୁଠୁ ଅଧିକ ଦରମା ଦିଆଯାଏ । ସେଠାରେ ଏକ ଲୋକପ୍ରିୟ ଉକ୍ତି ଅଛି - 'ଇଫ୍ ୟୁ ଗିଭ୍ ପି ନଟସ୍, ୟୁ କ୍ୟାନ ଗେଟ୍ ଓନ୍‌ଲି ମଙ୍କିଜ୍' ଅର୍ଥାତ୍ ଚିନାବାଦାମ ଫିଙ୍ଗିଲେ କେବଳ ମାଙ୍କଡ଼ମାନେ ମିଳିବେ । ତେଣୁ ଅଳ୍ପ ଦରମାରେ ଅଧିକ ଦକ୍ଷ, ସଚ୍ଚୋଟ କର୍ମଚାରୀ ମିଳିବେ ନାହିଁ । କିନ୍ତୁ ଏହି ଉକ୍ତି ସବୁ ସ୍ଥଳରେ ପ୍ରଯୁଜ୍ୟ ନୁହେଁ । ଭାରତରେ ପଞ୍ଚମ ବେତନ କମିଶନ ଓ ୟୁଜିସି ମୋଟା ଦରମା ଦ୍ୱାରା ବ୍ୟୁରୋକ୍ରାସି ବା ଅଧ୍ୟାପକମାନଙ୍କ ମଧ୍ୟରେ ଦକ୍ଷତା ବା ନିଷ୍ଠା ବଢ଼ିଲା ନାହିଁ ବୋଲି ଏକ ଅଧ୍ୟୟନରୁ ଜଣାପଡ଼ିଛି ।

କିନ୍ତୁ ଶ୍ରୀ ସୁହାର୍ତୋ ଇଣ୍ଡୋନେସିଆର ପ୍ରେସିଡେଣ୍ଟ ଥିଲା ବେଳେ କେତେକ ନୂଆ ବ୍ୟବସ୍ଥା ପ୍ରବର୍ତ୍ତନ କରି କର୍ମଚାରୀଙ୍କ ଉପସ୍ଥିତି ଓ କାର୍ଯ୍ୟଦକ୍ଷତା ବଢ଼ାଇବାରେ ସକ୍ଷମ ହୋଇଥିଲେ । ପୃଥିବୀର ସର୍ବବୃହତ୍ ମୁସ୍‌ଲିମ୍ ଦେଶ ହେଲା ଇଣ୍ଡୋନେସିଆ । ସୁହାର୍ତୋ ଏକ ଅଧ୍ୟୟନରୁ ଜାଣିଲେ, କର୍ମଚାରୀମାନେ ଅଫିସ୍ ସମୟରେ ଦୁଇରୁ ତିନି ଥର ନମାଜ ପାଇଁ, ଦୁଇ ଥର ଚା'ପାଇଁ ଓ ଥରେ ମଧ୍ୟାହ୍ନ ଭୋଜନପାଇଁ ଏପରି ଦିନରେ ପାଞ୍ଚଥର ଅଫିସ୍ ଛାଡ଼ି ଯାଉଛନ୍ତି । ଏହା ଫଳରେ ସରକାରୀ କାର୍ଯ୍ୟ ବିଶେଷ ବାଧାପ୍ରାପ୍ତ ହେଉଛି । ଏହା ଜାଣି ଇଣ୍ଡୋନେସିଆ ସରକାର କର୍ମଚାରୀମାନଙ୍କପାଇଁ ମାଗଣାରେ ଦୁଇଥର ଚା, ମଧ୍ୟାହ୍ନ ଭୋଜନ ଓ ସେକ୍ରେଟାରିଏଟ୍‌ର ପ୍ରତି ମହଲାରେ ପୁରୁଷ ଓ ସ୍ତ୍ରୀ କର୍ମଚାରୀମାନଙ୍କପାଇଁ ଧାର୍ମିକ ପ୍ରାର୍ଥନାର ବ୍ୟବସ୍ଥା କରିଦେଲେ ।

ଏହା ଫଳରେ ଦେଖାଗଲା ଯେ ଅଫିସର ଓ କର୍ମଚାରୀମାନେ ଅଫିସ୍ ଛାଡି ବାହାରେ ଚା, ଜଳଖିଆ, ଲଞ୍ଚ ଖାଇବାକୁ ଓ ମସ୍‌ଜିଦ୍ ଯାଇ ପ୍ରାର୍ଥନା କରିବାକୁ ପସନ୍ଦ କଲେ ନାହିଁ । ଏହାଦ୍ୱାରା ସରକାର ଓ ସାଧାରଣ ଜନତା ବି ଉପକୃତ ହେଲେ । ଆର୍ଥିକ ଦୃଷ୍ଟିରୁ ମଧ୍ୟ ଏହା ଶସ୍ତା ପଡ଼ିଲା । କାରଣ ମାଗଣା ଚା ଓ ମଧ୍ୟାହ୍ନ ଭୋଜନ ବାବଦରେ ଯେତିକି ଖର୍ଚ୍ଚ ହେଲା, କର୍ମଚାରୀମାନଙ୍କ ଦୈନିକ ପାଞ୍ଚ ଥର ଅନୁପସ୍ଥିତି ସମୟର ମୂଲ୍ୟ ତା'ଠାରୁ ୫୦ ଗୁଣ ଅଧିକ ଥିଲା । ଭାରତରେ ବିଭିନ୍ନ ଦେଶୀ ଓ ବହୁଦେଶୀୟ କମ୍ପାନିମାନେ ଏଭଳି ବ୍ୟବସ୍ଥା କଲେଣି । ଇନ୍‌ଫୋସିସ୍, ୱିପ୍ରୋ, ଟିସିଏସ୍ ଭଳି ସଫ୍‌ଟୱେର କମ୍ପାନିମାନେ ନିଜ କର୍ମଚାରୀଙ୍କ କାର୍ଯ୍ୟକ୍ଷେତ୍ର ଓ ପରିବେଶକୁ ଏଭଳି ଆକର୍ଷଣୀୟ କଲେଣି ଯାହା ଫଳରେ କର୍ମଚାରୀମାନେ ଏବେ ଆବଶ୍ୟକତାଠାରୁ ଅଧିକ ସମୟ ଅଫିସ୍‌ରେ କଟାଇବାକୁ ଚାହୁଁଛନ୍ତି ।

ଓଡ଼ିଶାର ସେକ୍ରେଟାରିଏଟ୍ ଓ ଅନ୍ୟ ସରକାରୀ କାର୍ଯ୍ୟାଳୟରେ ଅନୁପସ୍ଥିତି ରୋକିବାପାଇଁ ଆକର୍ଷଣୀୟ ପରିବେଶ ସୃଷ୍ଟି କରିବା ସଙ୍ଗେସଙ୍ଗେ ଦୃଢ଼ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ କରିବାକୁ ହେବ । ବଡ଼ବାବୁମାନେ ଯେଉଁ ଆଦର୍ଶ ଦେଖାଇବେ, ସାନବାବୁମାନେ ସେଇ ବାଟରେ ଚାଲିବାକୁ ଅନୁପ୍ରାଣିତ ହେବେ । ଲଞ୍ଚ୍ ବାକ୍ସ ଧରି ଅଫିସ୍ ଆସିବା ଅଭ୍ୟାସ କରିବାକୁ ପଡ଼ିବ । ଦେଶର ରାଜଧାନୀ ଦିଲ୍ଲୀରେ ବଡ଼ ବଡ଼ ବାବୁମାନେ ଏପରିକି ମନ୍ତ୍ରୀମାନେ ନିଜ ଲଞ୍ଚ୍ ସାଙ୍ଗରେ ନେଇ ଆସନ୍ତି । ଲାଲକୃଷ୍ଣ ଆଡ଼ଭାନୀ ମନ୍ତ୍ରୀ ଥିଲା ବେଳେ ନିଜ ଲଞ୍ଚ୍ ଡବା ହାତରେ ଧରି ଆସୁଥିବା ମୁଁ ନିଜେ ଦେଖିଛି । ମଧୁ ଦଣ୍ଡବତେ, ଜର୍ଜ ଫର୍ଣ୍ଣାଡିଜ୍, ମନମୋହନ ସିଂ ଲଞ୍ଚ୍‌ପାଇଁ ଘରକୁ ଯାଆନ୍ତି ନାହିଁ । ଓଡ଼ିଶା ବିଧାନସଭାର ମାନ୍ୟବର ସଭ୍ୟମାନେ ନିଜ ତରଫରୁ ମଧ୍ୟାହ୍ନ ଭୋଜନ ବିରତିକୁ ଦୁଇଘଣ୍ଟାରୁ କାଟି ଏକ ଘଣ୍ଟାରେ ସୀମିତ ରଖିବାପାଇଁ ଦେଇଥିବା ପ୍ରସ୍ତାବ ସ୍ୱାଗତଯୋଗ୍ୟ ଏବଂ ଏକ ଶୁଭଲକ୍ଷଣ ।

*ଜୁଲାଇ, ୨୦୦୬*



# ଯୌନଜୀବନ ଶିକ୍ଷା କାହିଁକି ?

ବିଶିଷ୍ଟ ଶିକ୍ଷାବିତ୍, ମନୋବୈଜ୍ଞାନିକ ଓ ରାଷ୍ଟ୍ରୀୟ ସ୍ୱାସ୍ଥ୍ୟ ନୀତିକୁ ଖାତିର ନ କରି ଓଡ଼ିଶାର ସ୍କୁଲ୍ କଲେଜରେ ପଢୁଥିବା ଯୁବବର୍ଗଙ୍କୁ ଯୌନ ଶିକ୍ଷାରୁ ବଞ୍ଚିତ କରିବା ଦୁର୍ଭାଗ୍ୟଜନକ । କ୍ଷିପ୍ର ଗତିବିଶିଷ୍ଟ ଓ ଉଡ଼ିବାପାଇଁ ଅସମର୍ଥ ଆଫ୍ରିକୀୟ ଓଟପକ୍ଷୀ ବା ଅଷ୍ଟ୍ରିଚ୍ ମରୁଭୂମିରେ ଝଡ ବତାସକୁ ଅସ୍ୱୀକାର କରିବାପାଇଁ ବାଲିରେ ମୁଣ୍ଡ ପୋତିଦିଏ । ତେଣୁ 'ଅପ୍ରିୟ ସତ୍ୟ'ର ସମ୍ମୁଖୀନ ହେବାପାଇଁ ଅନିଚ୍ଛୁକ ବ୍ୟକ୍ତିଙ୍କୁ ଓଟପକ୍ଷୀର ଏପରି ବ୍ୟବହାର ସହ ତୁଳନା କରାଯାଇଥାଏ । ଯୌନ ଶିକ୍ଷା ସମ୍ପର୍କରେ ଆମର ଆଚରଣ ଅନେକ ଅଧିକେ ସେହିପରି । ଜଗତୀକରଣ, ଅତ୍ୟଧିକ ଯୌନ ଉଦ୍ଦୀପକ ଚଳଚ୍ଚିତ୍ର, ଅଶ୍ଳୀଳ ପୁସ୍ତକ ଏବଂ ସଙ୍ଗୀତ, କାନ୍ଥବାଡ଼ରେ କାମୋଦ୍ଦୀପକ ପୋଷ୍ଟର, ଉଲଗ୍ନତାର ବ୍ୟବସାୟୀକରଣ, ଗଣମାଧ୍ୟମ ଓ ଇଣ୍ଟରନେଟ୍‌ର ଅପବ୍ୟବହାର ଆମ ଦେଶ ଓ ରାଜ୍ୟରେ ଯେଉଁ ଯୌନ ଉତ୍ତେଜନାର ଝଡ ସୃଷ୍ଟି କଲେଣି, ଯୌନ ଶିକ୍ଷାର ଆବଶ୍ୟକତାକୁ ପ୍ରତ୍ୟାଖ୍ୟାନ ବା ଅସ୍ୱୀକାର କରିବା - ଏହାର ଉତ୍ତର ନୁହେଁ । ବରଂ ଏହି ଝଡ଼ର କୁ-ପ୍ରଭାବରୁ ଆମ ପିଲାମାନଙ୍କୁ ରକ୍ଷା କରିବାକୁ ହେଲେ ଅଧିକ ଶିକ୍ଷାର ଆବଶ୍ୟକତା ରହିଛି ।

ବୋଧହୁଏ, ଯୌନଶିକ୍ଷାକୁ 'ରତିଶିକ୍ଷା' ବୋଲି ବୁଝାଯାଉଛି । ତେଣୁ ଏ ସମ୍ପର୍କରେ ଅଭିଭାବକମାନଙ୍କ ମନରେ ଆଶଙ୍କା ଉପୁଜିବା ସ୍ୱାଭାବିକ । ଶିକ୍ଷା ଜଗତରେ ମଧ୍ୟ ଏ ବିଷୟରେ ସଙ୍କୋଚ ରହିଛି, କାରଣ ଅଧିକାଂଶ ଶିକ୍ଷକ ଶିକ୍ଷୟିତ୍ରୀ ନିଜେ ଏ ବିଷୟରେ ଶିକ୍ଷା ବା ତାଲିମ ପାଇନାହାନ୍ତି । ରାଜନୀତିଜ୍ଞମାନଙ୍କପାଇଁ ଏହା ଏକ ଅସ୍ପୃଶ୍ୟ ବିଷୟ । ଫଳରେ ସରଳମତି କିଶୋର-କିଶୋରୀ 'ଯୌନ ଅଶିକ୍ଷା'ର ଶିକାର ହେଉଛନ୍ତି । ଅଜ୍ଞତାର ଅନ୍ଧକାର ଭିତରେ ପଥହରା ହେଉଛନ୍ତି । ଏହି ଅଜ୍ଞତା ହେତୁ ଆଦି ଶଙ୍କରାଚାର୍ଯ୍ୟଙ୍କୁ ଯୌନ ଜ୍ଞାନ ନିପୁଣା ଉଭୟ ଭାରତୀଙ୍କଠାରୁ ପରାଜୟ ସ୍ୱୀକାର

କରିବାକୁ ପଡ଼ିଥିଲା । ପରାସ୍ତ ଶଙ୍କରାଚାର୍ଯ୍ୟ ଅନ୍ୟ ଏକ ଶରୀରରେ ପ୍ରବେଶ କରି ଯୌନ ଶିକ୍ଷା ଗ୍ରହଣ କରିଥିଲେ ବୋଲି ପ୍ରବାଦ ରହିଛି । ଯେପରି ଜଣେ ଅନ୍ଧ ଆଉ ଜଣେ ଅନ୍ଧକୁ ବାଟ ବତାଇ ପାରନ୍ତି ନାହିଁ, ସେହିପରି ଜଣେ ଅଜ୍ଞ ବ୍ୟକ୍ତି ଆଉ ଜଣେ ଅଜ୍ଞ ବ୍ୟକ୍ତିଙ୍କୁ ଶିକ୍ଷା ଦେଇ ପାରିବେ ନାହିଁ । ତେଣୁ ସେକ୍‌ସୋଲଜି ବା ଯୌନବିଜ୍ଞାନ ବିଷୟରେ ସାରା ପୃଥିବୀରେ ଗବେଷଣା ଚାଲିଛି । ସ୍ତ୍ରୀ ପୁରୁଷ ଲିଙ୍ଗ ଚିହ୍ନ ନିର୍ଦ୍ଧାରଣ ଓ ସଂଜ୍ଞା, ଯୌନ ଆକର୍ଷଣ, ବିବାହ, କ୍ରୋମୋଜମ୍‌, ସନ୍ତାନ ସନ୍ତତି ପ୍ରଜନନ, ଯୌନ ପ୍ରବୃତ୍ତି, ଯୌନ ଶୋଷଣ, ଲିଙ୍ଗ-ଭିତ୍ତିକ ବିଭେଦ, ଲିଙ୍ଗ ପରିବର୍ତ୍ତନ ଏବଂ ସର୍ବୋପରି ଶୃଙ୍ଖଳିତ ଯୌନ-ଜୀବନ ସମ୍ପର୍କରେ ଆମର ଶିକ୍ଷକ-ଶିକ୍ଷୟିତ୍ରୀମାନେ ଅଧିକ ଜାଣିବା ଦରକାର । ସେହିପରି ଅଭିଭାବକମାନେ ମଧ୍ୟ ଏ ବିଷୟରେ ତାଲିମ ନେବା ଆବଶ୍ୟକ । ଯୌନ ଶିକ୍ଷା ପ୍ରକୃତରେ ଯୌନ ସ୍ୱାସ୍ଥ୍ୟ ଓ ଯୌନ ଜୀବନ ସମ୍ପର୍କରେ ଶିକ୍ଷା ।

ପ୍ରାୟ ୧୦ ରୁ ୧୨ ବର୍ଷ ଭିତରେ ଝିଅ ପୁଅଙ୍କର ଯୌନ-ଜୀବନ ଆରମ୍ଭ ହୁଏ ଓ ସେମାନେ ପ୍ରଥମ ଯୌବନାବସ୍ଥାରେ ପ୍ରବେଶ କରିଥାନ୍ତି । ଝିଅଙ୍କର ମାସିକ ଋତୁ ଓ ପୁଅଙ୍କର ଶରୀରରେ ଶୁକ୍ରାଣୁ ସୃଷ୍ଟି ଏହି ସମୟରେ ହୁଏ । ଏହା ସହ ଶୈଶବ ଜୀବନ ସମାପ୍ତ ହୁଏ । ଭିନ୍ନ ଭିନ୍ନ ସମାଜ ଓ ସଂସ୍କୃତି ଏହାକୁ ବିଭିନ୍ନ ଭାବରେ ସ୍ୱୀକାର କରିଥାନ୍ତି । ଆଗେ ଓଡ଼ିଶା ଓ ପୂର୍ବାଞ୍ଚଳ ରାଜ୍ୟମାନଙ୍କରେ କୁମାରୀମାନଙ୍କର ପ୍ରଥମ ଯୌବନ ପ୍ରାପ୍ତିକୁ ବାଜା ବଜାଇ ସ୍ୱାଗତ କରାଯାଉଥିଲା । ଆଦିବାସୀ ସମାଜରେ ଧାଙ୍ଗଡା ଓ ଧାଙ୍ଗଡୀମାନେ ଏହି ସମୟଠାରୁ ବାହାଘର ପର୍ଯ୍ୟନ୍ତ ସ୍ୱତନ୍ତ୍ର 'ଡର୍ମିଟରି'ରେ ସ୍ୱାଧୀନ ଭାବରେ ରହିବାର ବ୍ୟବସ୍ଥା କରାଯାଏ । ଆଫ୍ରିକା ଓ କେତେକ ଆରବ ଦେଶରେ ଯୋନି ପରଦା ଓ ଲିଙ୍ଗାଗ୍ର ଚର୍ମ ଛେଦନ କରାଯାଇଥାଏ । ନାକ, କାନ ଫୋଡି, କମକୁଟି, ଗୋଟିଏ ଦାନ୍ତ ଉପାଡ଼ି ଦେଇ କେତେକ ସମାଜରେ ପ୍ରଥମ ଯୌବନକୁ ସ୍ୱାଗତ କରାଯାଇଥାଏ । ଏହାପରେ ଝିଅ ପିଲାକୁ ଘର ବାହାରକୁ ଯିବାକୁ ଅନୁମତି ଦିଆଯାଏ ନାହିଁ । ତେଣୁ ଓଡ଼ିଶାରେ 'ପ୍ୟୁବର୍ଟି'ର ଅନ୍ୟ ନାମ ଥିଲା 'ଘରେ ରହିଲା' ବା 'ଗୃହଯୋଗ୍ୟା' ହେଲା । ଏହାପରେ ବିବାହ ଜରିଆରେ ସମାଜ ସ୍ୱୀକୃତ ଜୀବନପାଇଁ ବର ଖୋଜା ଆରମ୍ଭ ହେଉଥିଲା ।

ଏବେ ସେ ପରିସ୍ଥିତି ବା ପରିବେଶ ନାହିଁ । କୃଷିଭିତ୍ତିକ ସମାଜ ଦୁର୍ବଳ ହୋଇ ପଡ଼ିଲାଣି । କୋଟି କୋଟି ଯୁବକ ଯୁବତୀ ପେଟପାଟଣାପାଇଁ ଘରଛାଡ଼ି ବାହାରେ ବୁଲୁଛନ୍ତି । ଶିଳ୍ପାୟନ ଓ ସହରୀ ସଭ୍ୟତା ବ୍ୟାପିବା ଫଳରେ ଜୀବନଧାରଣ ପ୍ରଣାଳୀ ବି ବଦଳି ଗଲାଣି । ଇଣ୍ଟରନେଟ୍‌ ଓ ସୂଚନା ବିପ୍ଳବଦ୍ୱାରା ଦେଶମାନଙ୍କର ସୀମାରେଖା ଲିଭି ଯାଉଛି । ବିଦେଶୀ ସଂସ୍କୃତି ଓ ବିଶେଷ କରି ଯୌନ ଆଚରଣ ଆମ

ପିଲାମାନଙ୍କୁ ପ୍ରଭାବିତ କରୁଛି । ଯୌନ ଆଚରଣର ୩ଟି ଧାରା ହେଲା - ପ୍ରୋକ୍ରିଏସନାଲ୍ ସେକ୍ସ (ସନ୍ତାନ ସନ୍ତତିପାଇଁ) ରିକ୍ରିଏସନାଲ୍ ସେକ୍ସ (କେବଳ ଆନନ୍ଦ ପାଇଁ) ଓ ରିଲେସନାଲ ସେକ୍ସ (ସମ୍ପର୍କପାଇଁ) । ଏହି ତିନୋଟି ମଧ୍ୟରୁ ଏବେ ରିକ୍ରିଏସନାଲ୍ ବା କେବଳ ଆନନ୍ଦପାଇଁ ସେକ୍ସକୁ ପ୍ରାଧାନ୍ୟ ଦିଆଯାଉଛି । ଇଂରାଜୀରେ ଏହାକୁ କୁହାଯାଉଛି 'ଫନ୍' । ତେଣୁ ଆଜିର ସମାଜକୁ ଏବଂ ଆମର ଯୁବପିଢିକୁ ଏଭଳି "ଫନ୍' ଅପସଂସ୍କୃତିରୁ ରକ୍ଷା କରିବାକୁ ହେଲେ ଯୌନ ଜୀବନ ଶିକ୍ଷା ଅତ୍ୟନ୍ତ ଜରୁରୀ ।

ପ୍ରଥମ କାମ ହେଲା ଯୌନ-ଅଜ୍ଞାନତା ଓ ଅନ୍ଧବିଶ୍ୱାସ ଦୂର କରିବା । କାରଣ ଏହା ସହ ଆମର ଅନେକ ସାମାଜିକ ବିଶ୍ୱାସ ଓ ଆଚରଣ ଜଡିତ । ଉଦାହରଣ ସ୍ୱରୂପ ଅନେକଙ୍କୁ ଜଣା ନାହିଁ ଯେ ୪୬ କ୍ରୋମୋଜମ୍ ଭିତରୁ ମାତ୍ର ଏକ ହଳ ଶରୀରର ଲିଙ୍ଗ ନିର୍ଣ୍ଣୟ କରନ୍ତି । ଏଥିରେ ଜନକ ବା ଜନନୀଙ୍କର କୌଣସି ନିୟନ୍ତ୍ରଣ ବା ଭୂମିକା ନଥାଏ । କିନ୍ତୁ ପୁତ୍ର ସନ୍ତାନ ଜନ୍ମ ନ କରିପାରିବାର ବୋଝ ଜନନୀଙ୍କ ମୁଣ୍ଡରେ ଲଦି ଦିଆଯାଏ । ଲିଙ୍ଗ ଭିତ୍ତିରେ ସ୍ତ୍ରୀ ଲୋକଙ୍କ ସମ୍ବନ୍ଧରେ ଏଭଳି ବହୁ ପ୍ରତିକୂଳ ଓ ବିଭେଦମୂଳକ ବିଚାର ସମାଜରେ ରହିଛି । ସେହିପରି ପରସ୍ପର ଶରୀର ସମ୍ପର୍କରେ ଅଜ୍ଞତା ହେତୁ ସ୍ତ୍ରୀଙ୍କର ପୁରୁଷ ବିଷୟରେ ଓ ପୁରୁଷଙ୍କର ସ୍ତ୍ରୀ ବିଷୟରେ ଅଦ୍ଭୁତ ଧାରଣାମାନ ଥାଏ । ମାସିକ ରକ୍ତ, ଶୁକ୍ରାଣୁ, ସ୍ତନ ଓ ଲିଙ୍ଗର ଆକାର, ଗର୍ଭଧାରଣ, ନିଶ, ଦାଢ଼ି, ମୁଖବ୍ରଣ, ବୟସ, ଛଉ ଇତ୍ୟାଦି ବିଷୟରେ କୌଣସି ସ୍ପଷ୍ଟ ଧାରଣା ନଥାଏ । ଶରୀରର ସ୍ୱାଭାବିକ ପରିବର୍ତ୍ତନକୁ ଅସ୍ୱାଭାବିକ ବୋଲି ଚିତ୍ରିତ କରି କୋମଳମତି ବାଳକ ବାଳିକାଙ୍କୁ ବିବ୍ରତ କରାଯାଏ । ଯୌନ ରୋଗ ବିଷୟରେ ଏହି ଅଜ୍ଞାନତା ସବୁଠାରୁ ବେଶି ।

ତେଣୁ ଆମ ପିଲାଏ ଯେପରି ସଚେତନତା ସହ ସ୍ୱାଭାବିକ ଓ ସୁସ୍ଥ ଯୌନ ଜୀବନ ଯାପନ କରିପାରିବେ - ସେଥିପାଇଁ ଶିକ୍ଷକ, ଅଭିଭାବକ ଓ ସମାଜର ସ୍ୱତନ୍ତ୍ର ଦାୟିତ୍ୱ ରହିଛି । ଯୌନ ସ୍ୱାସ୍ଥ୍ୟ ରକ୍ଷା ବିଷୟରେ ଶିକ୍ଷା ଦେଲେ ପିଲାଏ ଉଚ୍ଛୃଙ୍ଖଳିତ ନ ହୋଇ ଶୃଙ୍ଖଳିତ ହେବେ । ବିପଦରୁ ନିଜକୁ ରକ୍ଷା କରିପାରିବେ, ବିପଥ ବିଷୟରେ ସତର୍କ ରହିବେ, ଦାୟିତ୍ୱହୀନ ଯୌନ ସମ୍ପର୍କଠାରୁ ଦୂରରେ ରହିବେ, ଉତ୍ତମ ବୈବାହିକ ଜୀବନପାଇଁ ନିଜକୁ ପ୍ରସ୍ତୁତ କରିପାରିବେ ଏବଂ ସର୍ବୋପରି ନିଜ ପିଲାଙ୍କପାଇଁ ପ୍ରଥମ ଯୌନ-ଶିକ୍ଷକ ଶିକ୍ଷୟିତ୍ରୀ ଭାବରେ କାମ କରିପାରିବେ । ଏହିସବୁ କଥାକୁ ବିଚାର କରି ଯୌନ ସ୍ୱାସ୍ଥ୍ୟ ଶିକ୍ଷାକୁ ୫ ଭାଗରେ ବିଭକ୍ତ କରାଯାଇଥାଏ ।

୧) ସାମାଜିକ ଓ ବ୍ୟକ୍ତିଗତ ନୈତିକତାକୁ ଆଖି ଆଗରେ ରଖି ସୁଖ, ଶାନ୍ତି ଓ ଆନନ୍ଦ ପାଇଁ ଯୌନ ଆଚରଣକୁ ଶୃଙ୍ଖଳିତ ଓ ବିପଦମୁକ୍ତ ରଖିବା ।

୨) ପବିତ୍ର ଯୌନ ସମ୍ପର୍କକୁ ଅଜ୍ଞାନତା, ଭୟ, ପ୍ରବଞ୍ଚନା, ଅନ୍ଧବିଶ୍ୱାସ, ପାପ ଓ ଦୋଷୀ ମନୋବୃତ୍ତିରୁ ମୁକ୍ତ ରଖିବା, ସକାରାତ୍ମକ ରୂପ ଦେବା, ଶିକ୍ଷାର ଅଙ୍ଗ କରିବା ।

୩) ଯୌନ ଓ ପ୍ରଜନନ କ୍ରିୟାକୁ ଶାରୀରିକ ଅସୁସ୍ଥତା, ରୋଗ ଓ ବିପଦରୁ ରକ୍ଷା କରିବା, ସ୍ୱାସ୍ଥ୍ୟ ବ୍ୟବସ୍ଥାକୁ ସେହି ଅନୁସାରେ ସଜାଡ଼ିବା ।

୪) ସ୍ତ୍ରୀ ପୁରୁଷ ଯୌନ ସମ୍ପର୍କକୁ ସମ୍ମାନ ଓ ସ୍ୱୀକୃତି ଦେବା, ଦୀର୍ଘସ୍ଥାୟୀ ଓ ଦୀର୍ଘ ଜୀବନ ଦେବା, ପରିବାର ସମାଜ ଓ ଦେଶର କଲ୍ୟାଣ ସହ ଯୋଡ଼ିବା ।

୫) କୈଶୋର ଅବସ୍ଥାରେ ଯୌନ ସମ୍ପର୍କର କୁପରିଣାମ ସମ୍ପର୍କରେ ପିଲାମାନଙ୍କୁ ସୂଚନା ଦେବା, ସତର୍କ କରାଇବା, ବ୍ରହ୍ମଚର୍ଯ୍ୟ ବ୍ରତପାଇଁ ଉତ୍ସାହିତ କରିବା, ସୁରକ୍ଷିତ ସମ୍ପର୍କପାଇଁ ଆବଶ୍ୟକ ଜ୍ଞାନ କୌଶଳ ଦେବା ।

ଅନେକ ଉନ୍ନତ ଓ ପ୍ରଗତିଶୀଳ ଦେଶରେ ଯୌନ ଶିକ୍ଷାକୁ ଜୀବନ-କୌଶଳ ଶିକ୍ଷା ଭାବରେ ଗ୍ରହଣ କରାଯାଉଛି । ଆଜିର ଯୁବବର୍ଗ ଜୀବନ ସଂଗ୍ରାମରେ ଅନେକ ଆହ୍ୱାନର ସମ୍ମୁଖୀନ ହେଉଛନ୍ତି । ଛୋଟ ପରିବାରରେ ବଢ଼ିବା, ସମବୟସ୍କ ପିଲାମାନଙ୍କ ସହିତ ତୀବ୍ର ପ୍ରତିଯୋଗିତା, କ୍ୟାରିଅର୍ ଚିନ୍ତା, ବିଳମ୍ବ ବିବାହ ଓ ତା'ପୂର୍ବରୁ ଲମ୍ବା ଯୌନ ଜୀବନକୁ ଶୃଙ୍ଖଳିତ ରଖିବାପାଇଁ ଯୌନ ଶିକ୍ଷା ପିଲାମାନଙ୍କପାଇଁ ବରଦାନ ସଦୃଶ କାମ କରେ । ପୃଥିବୀର ଯେଉଁ ଯେଉଁ ଦେଶରେ ଯୌନ ସ୍ୱାସ୍ଥ୍ୟ ଓ ଯୌନ ଜୀବନ ସମ୍ପର୍କରେ ଆବଶ୍ୟକୀୟ ସୂଚନା, ସତ୍ୟ, ତଥ୍ୟ ଓ ତାଲିମ ଦିଆଯାଉଛି, ସେ ସବୁଠାରେ ପରିଣାମ ଶୁଭଙ୍କର ହୋଇଛି । ସବୁ ଦେଶରେ, ସବୁ ସମାଜରେ ପିଲାମାନେ ନିଜ ଶରୀର ଓ ଯୌନ ଜୀବନ ସମ୍ପର୍କରେ ଅଧିକ ଜାଣିବାକୁ ଚାହାନ୍ତି ଓ ଏହି ଜ୍ଞାନର ଅଭାବରେ ଯୌନ ଅଜ୍ଞାନତା ଓ ଯୌନ କୁଶିକ୍ଷାଦ୍ୱାରା ପ୍ରଭାବିତ ହୁଅନ୍ତି । ଏପରି କୁଶିକ୍ଷା ଓ କୁସଙ୍ଗରୁ ସେମାନଙ୍କୁ ରକ୍ଷା କରିବାପାଇଁ ଆବଶ୍ୟକ ଯୌନ-ସ୍ୱାସ୍ଥ୍ୟ-ଶିକ୍ଷା ଓ ନିରାପଦ ଯୌନ ଜୀବନଯାପନ ପ୍ରଣାଳୀ ଓ କୌଶଳ ।

*୧୨ ଜୁଲାଇ, ୨୦୦୭'*



# ହେ ପ୍ରଭୁ! ଏମାନଙ୍କୁ କ୍ଷମାକର

ଦୁଇହଜାର ସାତ ମସିହା ଜୁଲାଇ ମାସ ଗୁରୁବାର ଦିନ ଯୁକ୍ତରାଷ୍ଟ୍ର ଆମେରିକାର ସିନେଟ୍‌ରେ ଏକ ଐତିହାସିକ ଘଟଣା ଅନେକଙ୍କୁ ଚକିତ ଓ ଅଳ୍ପ କେତେକଙ୍କୁ ବ୍ୟସ୍ତ ବିବ୍ରତ କରିଛି । ସେଦିନ ସକାଳ ଅଧିବେଶନର ବାଚସ୍ପତି ଶ୍ରୀ ବବ୍ କେସି ଅଧିବେଶନ ଆରମ୍ଭ ହେବା ପୂର୍ବରୁ ନେଭାଡା ରାଜ୍ୟର ରେନୋ ସହରର ଅଧିବାସୀ ହିନ୍ଦୁ ଧର୍ମଯାଜକ ଓ ପୁରୋହିତ ଶ୍ରୀଯୁକ୍ତ ରାଜନ୍ ଜେଦ୍‌ଙ୍କୁ ବୈଦିକ ପ୍ରାର୍ଥନା କରିବାକୁ ଆମନ୍ତ୍ରଣ ଜଣାଇଥିଲେ । ମଥାରେ ତିଳକ, ଗଳାରେ ରୁଦ୍ରାକ୍ଷମାଳା ଓ ପୀତବସ୍ତ୍ର ପରିଧାନ କରି ପଣ୍ଡିତ ରାଜନ୍ ସିନେଟରମାନଙ୍କୁ ଆହ୍ବାନ ଦେଇ କହିଲେ : "ଆସନ୍ତୁ ଆମେ ସମସ୍ତେ ସାରା ବିଶ୍ୱ ବ୍ରହ୍ମାଣ୍ଡ, ଆକାଶ, ପାତାଳ ଓ ଆମ ସମସ୍ତଙ୍କ ହୃଦୟାଧିପତି ପରମବ୍ରହ୍ମ ସତ୍ୟ ସନାତନଙ୍କୁ ଧ୍ୟାନ କରିବା । ସେ ଆମକୁ ଅସତ୍ୟରୁ ସତ୍ୟକୁ, ଅନ୍ଧାରରୁ ଆଲୋକକୁ ଏବଂ ମୃତ୍ୟୁରୁ ଅମରତ୍ୱ ପ୍ରାପ୍ତିପାଇଁ ବାଟ ଦେଖାନ୍ତୁ । ଆମ ସମସ୍ତଙ୍କୁ ଶକ୍ତି ସୁରକ୍ଷା ସମୃଦ୍ଧି ପ୍ରଦାନ କରନ୍ତୁ, ମିଳିମିଶି ରହିବା ଓ କାମ କରିବାର ପ୍ରେରଣା ଦିଅନ୍ତୁ, ମାନବ ଜୀବନ ଜ୍ଞାନ ଓ ଧ୍ୟାନାଲୋକରେ ପ୍ରଜ୍ୱଳିତ ହେଉ" ।

ଋଗ୍‌ବେଦ ଓ ଭଗବତ୍ ଗୀତାର ଏହି ମହାନ୍ ବାଣୀ ସିନେଟରମାନେ ଆଗ୍ରହର ସହ ଶୁଣୁଥିବା ବେଳେ ସେଠାରେ ଉପସ୍ଥିତ ୩ ଜଣ କଠୋରପନ୍ଥୀ ଖ୍ରୀଷ୍ଟିୟାନ୍ ଏହାର ପ୍ରତିବାଦ କରି ଉଚ୍ଚ ସ୍ୱରରେ କହିବାକୁ ଆରମ୍ଭ କଲେ - "ହେ ଯୀଶୁ, ଏପରି ଖଳ ଜଘନ୍ୟ, ମିଥ୍ୟା ଓ ଅନିଷ୍ଟକର ପ୍ରାର୍ଥନାପାଇଁ ଅନୁମତି ଦେଇଥିବାରୁ ସିନେଟ୍ ଓ ଦେଶକୁ କ୍ଷମା କରନ୍ତୁ । ଆପଣ ଜଗତର ଏକମାତ୍ର ଈଶ୍ୱର, ଆମେ ଆଉ କୌଣସି ଧର୍ମ ବା ଈଶ୍ୱରଙ୍କୁ ଘୃଣା ଓ ପ୍ରତ୍ୟାଖ୍ୟାନ କରୁଛୁ !" ଗୃହର ଗରିମା ଓ ଶୃଙ୍ଖଳା ରକ୍ଷାପାଇଁ ସିନେଟ୍‌ର ବବ୍ କେସି ମାର୍ଶାଲମାନଙ୍କ ସାହାଯ୍ୟରେ ପ୍ରତିବାଦୀ ଆଣ୍ଟେ ପାଭ୍‌କୋଭି,

କାଥି ପାଉ୍‌କୋଭି ଓ କ୍ରିଷ୍ଟେନ୍‌ ସୁଗାରଙ୍କୁ ବହିଷ୍କାର କରି ଦେଇଥିଲେ । ଖ୍ରୀଷ୍ଟିୟାନ୍‌ ଐତିହାସିକ ଡେଭିଡ୍‌ ବାର୍ଟନ୍‌, ପ୍ରତିବାଦୀମାନଙ୍କୁ ସମର୍ଥନ କରି କହିଛନ୍ତି ଯେ "ବହୁ ଈଶ୍ୱରବାଦୀ" ହିନ୍ଦୁ ଧର୍ମ ସହ ଏକେଶ୍ୱରବାଦୀ ଖ୍ରୀଷ୍ଟିୟାନିଟିର ବିରୋଧ ରହିଛି । ଅଜ୍ଞ ଓ ଅନଭିଜ୍ଞ ଡେଭିଡ୍‌ ବାର୍ଟନ୍‌ ଅଦ୍ୱୈତ ବେଦାନ୍ତ ପଢ଼ିନାହାନ୍ତି ବା "ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି" - ଈଶ୍ୱର ଏକ, କିନ୍ତୁ ଧର୍ମଯାଜକମାନେ ତାଙ୍କୁ ବିଭିନ୍ନ ଭାବ ଓ ରୂପରେ ଉପସ୍ଥାପନା କରିଥାନ୍ତି - ଏହି ପ୍ରସିଦ୍ଧ ଶାସ୍ତ୍ରୀୟ ଉକ୍ତି ସମ୍ପର୍କରେ ଜାଣିନାହାନ୍ତି । ହେ ଯୀଶୁ, ତାଙ୍କୁ କ୍ଷମା କରିଦିଅନ୍ତୁ । ସୁଖର କଥା ବହୁ ଧର୍ମ ଓ ସଂସ୍କୃତିର ଦେଶ ଆମେରିକାର ସାଧାରଣ ଜନତା ଏହି ପ୍ରତିବାଦକୁ ସମର୍ଥନ କରି ନାହାନ୍ତି । ବରଂ ଚର୍ଚ୍ଚ ଓ ରାଷ୍ଟ୍ରକୁ ଅଲଗା ରଖିବାପାଇଁ ଆନ୍ଦୋଳନ ଚଳାଉଥିବା ସଂସ୍ଥାମାନେ ଏହି ଘଟଣାର ନିନ୍ଦା କରିଛନ୍ତି ।

ଧାର୍ମିକ ଅସହିଷ୍ଣୁତା କେବଳ ଗୋଟିଏ ଧର୍ମରେ ସୀମିତ ନୁହେଁ । ସିଆ-ସୁନ୍ନୀ-ଅହମଦିଆ, ଶିଖ-ନିରଙ୍କାରୀ-ସଚ୍ଚା-ସୌଦା, କାଥଲିକ୍‌-ପ୍ରୋଟେଷ୍ଟାଣ୍ଟ - ପ୍ରତ୍ୟେକ ଧର୍ମ ବିଭିନ୍ନ ଦଳରେ ବିଭକ୍ତ । ହିନ୍ଦୁମାନଙ୍କ ମଧ୍ୟରେ ଧର୍ମଭିତ୍ତିକ ଗୋଷ୍ଠୀ ଅନେକ । ଆମେରିକାର ଅନେକ ହିନ୍ଦୁ ମନ୍ଦିରର ବେଦି ଉପରେ ଏକା ସାଙ୍ଗରେ ଭାରତର ବିଭିନ୍ନ ଅଞ୍ଚଳର ସ୍ଥାନାଧିପତି ଦେବଦେବୀମାନଙ୍କୁ ବସାଇ ପୂଜା କରାଯାଉଥିବାରୁ, ଅନେକ ଆମେରିକୀୟଙ୍କ ଧାରଣା ଯେ ହିନ୍ଦୁ ଧର୍ମରେ ଭଗବାନ ବା ଈଶ୍ୱର ଅନେକ । ଜିମ୍ବାୱେର ହାରାରେ ନଗରୀରେ ଭାରତର ବିଭିନ୍ନ ଅଞ୍ଚଳରୁ ଯାଇଥିବା ହିନ୍ଦୁମାନେ ଏହି ଆଞ୍ଚଳିକ ବିବାଦ ଓ ବିରୋଧାଭାସର ସମାଧାନ କରିବାପାଇଁ ମନ୍ଦିରରେ କେବଳ 'ଓମ୍‌'ର ପୂଜା କରନ୍ତି । ମୁଁ ନିଜେ ଏହି ମନ୍ଦିର ଦେଖି ଆସିଛି । ଓଡ଼ିଶାରେ ଗୋଟିଏ ନୁହେଁ, ବହୁ କେରଡାଗଡ ଅଛି, ଯେଉଁଠି ମନ୍ଦିର କେତେକ ନିର୍ଦ୍ଦିଷ୍ଟ ଜାତିଙ୍କପାଇଁ ଉନ୍ମୁକ୍ତ । ଶ୍ରୀ ଜଗନ୍ନାଥଙ୍କୁ ଏବେ ବି ଜଗତର ନାଥ ପରିବର୍ତ୍ତେ ରକ୍ଷଣଶୀଳ ହିନ୍ଦୁନାଥ ଭଳି ରଖାଯାଇଛି । ଶ୍ରୀୟା ଚଣ୍ଡାଳୁଣୀ, ଦାସିଆ ବାଉରୀ, ଭକ୍ତ ସାଲବେଗଙ୍କ ବଂଶଧରଙ୍କର ମନ୍ଦିର ପ୍ରବେଶ ଅଧିକାର ନାହିଁ । ରାଷ୍ଟ୍ରପିତା ମହାତ୍ମା ଗାନ୍ଧି, ଆଚାର୍ଯ୍ୟ ବିନୋବା ସିଂହଦ୍ୱାରଠାରୁ ଫେରି ଯାଇଛନ୍ତି, ଦେଶର ପ୍ରଥମ ମହିଳା ପ୍ରଧାନମନ୍ତ୍ରୀ, କାଶ୍ମୀର ବ୍ରାହ୍ମଣ ଓ ପଣ୍ଡିତ ପରିବାରର କନ୍ୟା ଶ୍ରୀମତୀ ଇନ୍ଦିରା ଗାନ୍ଧି ଶ୍ରୀମନ୍ଦିରରେ ପ୍ରବେଶ କରିପାରି ନାହାନ୍ତି । ଘରେ ଘରେ ଗୁରୁବାର ମାଣବସା ଚାଲିଛି, ଲକ୍ଷ୍ମୀପୁରାଣ ପଢ଼ା ହେଉଛି, କିନ୍ତୁ ଜାତିପ୍ରଥା ବିରୁଦ୍ଧରେ ଲଢ଼ି ଲାଞ୍ଛିତ ଲକ୍ଷ୍ମୀ ଠାକୁରାଣୀଙ୍କ ସଂଗ୍ରାମ ସରିନାହିଁ । ହିନ୍ଦୁ ଧର୍ମ ଶତଧା ବିଭକ୍ତ ହୋଇ ରହିଛି ।

ସେହିପରି ଇସ୍‌ଲାମ୍ ଜଗତକୁ ମୌଳବାଦୀ ଓ ଆତଙ୍କବାଦୀମାନେ ଆଚ୍ଛାଦିତ କରି ରଖିଛନ୍ତି । ଧର୍ମଯୁଦ୍ଧ ନାମରେ ନରହତ୍ୟା ଜାରି ରହିଛି । ଉଦାରବାଦୀ ମୁସଲମାନଙ୍କ ସ୍ୱର ଶିଥିଳ ଓ ଦୁର୍ବଳ ହୋଇଗଲାଣି । କେବଳ ଜଣେ ଇସ୍‌ଲାମୀ ମାର୍ଟିନ୍ ଲୁଥର୍ କିଙ୍ଗ୍ ହିଁ ଏ ଅବସ୍ଥାରେ ପରିବର୍ତ୍ତନ ଆଣିପାରିବେ ବୋଲି ଆଶା କରାଯାଉଛି । ଏବେ ଖ୍ରୀଷ୍ଟିୟାନ୍‌ଙ୍କ ଧର୍ମଗୁରୁ ଷୋଡ଼ଶ ପୋପ୍ ବେନେଡିକ୍ଟ କହିଲେଣି ଅର୍ଥୋଡକ୍ସ ଚର୍ଚ୍ଚ ଓ ବିଭିନ୍ନ ଚର୍ଚ୍ଚ ଗ୍ରୁପ୍ ଦୋଷ ତ୍ରୁଟିପୂର୍ଣ୍ଣ, କାରଣ ପ୍ରାର୍ଥନା ପଦ୍ଧତି ଠିକ୍ ନୁହେଁ । ଏବେ ପ୍ରାର୍ଥନା ଲାଟିନ୍ ଭାଷାରେ ନ ହୋଇ ଆଞ୍ଚଳିକ ଭାଷାରେ ହେଉଛି, ଗିଟାର ବାଜୁଛି; ତାଙ୍କ ମତରେ ଏହା ଧର୍ମ ବିରୋଧୀ । କେରଳ ସମେତ ପୃଥିବୀର ବିଭିନ୍ନ ଅଞ୍ଚଳରେ ବସବାସ କରୁଥିବା ପ୍ରୋଟେଷ୍ଟାଣ୍ଟମାନେ ଏହାର ପ୍ରତିବାଦ କଲେଣି । ଯେଉଁ କାଥଲିକ୍ ଗ୍ରୁପ୍ ପ୍ରାର୍ଥନା ଓ ରୀତିନୀତିରେ ସଂସ୍କାର ଓ ପରିବର୍ତ୍ତନପାଇଁ ୩୦ ବର୍ଷ ହେଲା ସଂଗ୍ରାମ ଚଳାଇଛନ୍ତି, ସେମାନେ ଭାଟିକାନ୍ ଓ ପୋପ୍‌ଙ୍କର ବିଭିନ୍ନ ରକ୍ଷଣଶୀଳ ଉକ୍ତିଦ୍ୱାରା ଅସନ୍ତୁଷ୍ଟ ଅଛନ୍ତି ।

ଧର୍ମକୁ ରାଜନୀତିରୁ ଅଲଗା ରଖିବାକୁ ବିଭିନ୍ନ ଦେଶରେ ଆନ୍ଦୋଳନ ଚାଲିଥିବା ବେଳେ, ଭାରତରେ ଧର୍ମ ପରିବର୍ତ୍ତନ ରାଜନୀତିଦ୍ୱାରା ପ୍ରଭାବିତ ହେଉଛି । ଏକ ପକ୍ଷରେ ଗୁରୁ ଗୋବିନ୍ଦ ସିଂଙ୍କ ଭଳି ପୋଷାକ ପରିଧାନ କରିଥିବାରୁ ଜଣେ ଧର୍ମଗୁରୁ ଓ ତାଙ୍କ ପତ୍ନୀ ଲୋକଙ୍କୁ ହଇରାଣ ହରକତ କରାଯାଉଛି, ଅନ୍ୟ ପକ୍ଷରେ ରାମଲୀଳା, କୃଷ୍ଣଲୀଳାରେ ସ୍ୱୟଂ ଈଶ୍ୱରଙ୍କ ପୋଷାକ ପିନ୍ଧି ଅଭିନୟ କରୁଥିବା କଳାକାରମାନଙ୍କୁ ଦର୍ଶକମାନେ କରତାଳି ଦେଇ ସ୍ୱାଗତ କରୁଛନ୍ତି । ଭାରତୀୟ ଉପମହାଦେଶର ଦୁଇଜଣ ପ୍ରସିଦ୍ଧ ଲେଖକ ଓ ଲେଖିକା - ସଲମନ୍ ରସ୍‌ଦି ଓ ତସଲିମା ନସ୍‌ରିନ୍‌ଙ୍କ ମୁଣ୍ଡ ଉପରେ ଅସହିଷ୍ଣୁ ମୁଲ୍ଲାଙ୍କର ଫତୁଆ ଖଣ୍ଡା ଝୁଲୁଛି । ଅନାମଧେୟ ପତ୍ରିକାରେ ଅନାମଧେୟ କଳାକାରଙ୍କ କାର୍ଟୁନ୍ ପ୍ରତିବାଦରେ ହଜାର ହଜାର ଲୋକ ରାସ୍ତାକୁ ଓହ୍ଲାଇ ପ୍ରତିବାଦ ଓ ପୁତ୍ତଳିକା ଦାହ କରୁଛନ୍ତି । ମହା କବି କାଳିଦାସଙ୍କ "କଜ୍ଜ୍ୱଳ ପୂରିତ ଲୋଚନ ଧାରେ, ସ୍ତନଯୁଗ ଶୋଭିତ ମୁକ୍ତାହାରେ" ପ୍ରତି ସରସ୍ୱତୀ ପୂଜାରେ ବୋଲା ଯାଉଥିବା ବେଳେ, ଏମ୍ ଏଫ୍ ହୁସେନ୍ ଏବେ କେତେ ଦେବଦେବୀଙ୍କର ରୂପର ପେଣ୍ଟିଂ କରି ଅତି ବୃଦ୍ଧ ବୟସରେ କଚେରି ଦଉଡୁଛନ୍ତି । କ୍ରିକେଟ୍‌ରେ ହାରି ଯାଉଥିବା ଲୋକପ୍ରିୟ ଖେଳାଳିଙ୍କ ଘରେ ନିଆଁ ଲଗାଇ ଦିଆଯାଉଛି । କ୍ରୁଶ୍, ବୁର୍ଖା, କୃପାଣ, ପଗଡ଼ି, ଦାଢ଼ି, ଚୁଟି, ତିଳକ ନେଇ ବିଶ୍ୱର ବିଭିନ୍ନ ଅଞ୍ଚଳରେ ଉତ୍ତେଜନା ଓ ଉନ୍ମାଦନା ବଢ଼ିବାରେ ଲାଗିଛି । ଭାରତୀୟ ପାର୍ଲାମେଣ୍ଟକୁ ନିର୍ବାଚିତ ଜଣେ ଏମ୍.ପି, କୃପାଣ ସହ ଲୋକସଭାରେ ପଶିବାପାଇଁ ଜିଦ୍ କରି ୫ ବର୍ଷ କାଳ ପାର୍ଲାମେଣ୍ଟ ବାହାରେ ରହିଲେ ।

କଙ୍ଗି ଓ କୃପାଣ ସମସ୍ୟାଯୋଗୁଁ ଏହି ମାନ୍ୟବର ଲୋକ ପ୍ରତିନିଧି ଲୋକଙ୍କ ପ୍ରକୃତ ସମସ୍ୟା ଭୁଲିଗଲେ ।

ଏପରି ଧାର୍ମିକ ଉନ୍ମାଦନା ଓ ଉତ୍ତେଜନା ଦେଖିଲା ପରେ ବୋଧହୁଏ କାର୍ଲ ମାର୍କ୍ସ ଧର୍ମକୁ "ଓପିଅମ୍ ଅଫ୍ ଦି ମାସେସ୍" ଆଖ୍ୟା ଦେଇଥିଲେ । କାରଣ ଧର୍ମର ପ୍ରକୃତ ସ୍ୱରୂପ ଓ ଆତ୍ମା, ରୀତିନୀତି ଓ ରିଚୁଆଲ୍‌ର ମୋଟା ଚାଦର ତଳେ ଅଣ ନିଶ୍ୱାସୀ ହୋଇ ପଡ଼ିଲାଣି । ବହୁବର୍ଷ ତଳେ ଦିଲ୍ଲୀର ଏକ ପ୍ରସିଦ୍ଧ କନ୍ୟା ବିଦ୍ୟାଳୟର ପିଲାମାନେ ମଞ୍ଚ ଉପରେ ବସିଥିବା ଆମ ଭଳି ଅତିଥିମାନଙ୍କୁ ସ୍ୱାଗତ କରି ଯେଉଁ ଗୀତ ଗାଇଥିଲେ ତା'ର ପ୍ରଥମ ଧାଡ଼ିଟି ଏଠାରେ ଉଦ୍ଧାର କରିବା ପ୍ରାସଙ୍ଗିକ ହେବ । ଏହି ହିନ୍ଦୀ ଗୀତର ପ୍ରଥମ ଦୁଇଧାଡ଼ି ଏପରି ଥିଲା :-

"ଧରତୀ ବାଣ୍ଟି, ସାଗର ବାଣ୍ଟା, ବାଣ୍ଟଲିୟା ଭଗବାନ କୋ,

ଅବ୍ ମତ୍ ବାଣ୍ଟୋ ଇନ୍‌ସାନ୍‌କୋ, ମତ୍ ବାଣ୍ଟୋ ଇନ୍‌ସାନ୍‌କୋ ।"

ପୃଥିବୀ ଓ ସାଗର ପ୍ରାୟ ବଣ୍ଟା ସରିଲାଣି, ଏବେ ମଣିଷ ବାଣ୍ଟିବା ଖେଳ ଆରମ୍ଭ ହୋଇଛି ।

*ଅଗଷ୍ଟ, ୨୦୦୭*



# କୂପ ମଣ୍ଡୂକ ଓ ସମୁଦ୍ର ବେଙ୍ଗ

ମୁଁ ସବୁଠୁ ବଡ଼, ମୋ ଧର୍ମ ଏକମାତ୍ର ଧର୍ମ, ମୋ ଜାତି ସବୁଠୁ ଉଚ୍ଚରେ - ଆଉ ସମସ୍ତେ ପତିତ, ବର୍ବର, ମ୍ଳେଚ୍ଛ, ଅସ୍ପୃଶ୍ୟ - ଯେଉଁ ଦେଶରେ ଏପରି ମାନସିକତା ଥିବା ଲୋକଙ୍କ ସଂଖ୍ୟା ଅଧିକ, ସେ ଦେଶ ଏକ ଦୁର୍ବଳ, ରୁଗ୍ଣ ଦେଶ ; ବିଶ୍ୱ ଶାନ୍ତି ଓ ମୈତ୍ରୀପାଇଁ ବିପଦ । ନିଜ ଦେଶ, ଭାଷା, ସଂସ୍କୃତି ଓ ଧର୍ମକୁ ଭଲ ପାଇବା ମାନସିକ ରୁଗ୍ଣତା ନୁହେଁ - ନିଜକୁ ବଡ଼ ଓ ଅନ୍ୟକୁ ଛୋଟ ବୋଲି ଭାବିବା ଓ ସେହିପରି ବ୍ୟବହାର କରିବା ସଂକୀର୍ଣ୍ଣତା ଓ ଅସହିଷ୍ଣୁତାର ଲକ୍ଷଣ । ଯେତେବେଳେ ଇଂରେଜମାନେ ଭାରତ ଶାସନ କରୁଥିଲେ, ବିଶ୍ୱବାସୀଙ୍କୁ ବୁଝାଇ କହୁଥିଲେ - ଆମେ ପତିତ ଭାରତୀୟମାନଙ୍କୁ ଉଦ୍ଧାର କରିବାକୁ ଆସିଛୁ, ସେମାନେ ଶ୍ୱେତକାୟ ସଂସ୍କୃତି, ସଭ୍ୟତା ଉପରେ ବୋଝ - "ହ୍ୱାଇଟ୍ ମ୍ୟାନ୍ସ ବର୍ଡନ୍ ।" ପୂର୍ବତନ ପୋପ୍ ଜନ୍ ପଲ୍ - ଦ୍ୱିତୀୟ ତାଙ୍କର ଶେଷ ଭାରତ ଯାତ୍ରା ବେଳେ ବମ୍ବେରେ ପହଞ୍ଚି ଯେତେବେଳେ ସାମ୍ବାଦିକମାନଙ୍କୁ କହିଲେ ଯେ ଆମେ ଏଠାରେ ତଳେ ପଡ଼ିଥିବା ପତିତମାନଙ୍କୁ ଉଦ୍ଧାର ପାଇଁ ଆସିଛୁ, ସାରା ଭାରତରେ ପ୍ରତିବାଦର ସ୍ୱର ଉଠିଥିଲା । ଦ୍ୱିତୀୟ ବିଶ୍ୱ ମହାଯୁଦ୍ଧର ଏକ ପ୍ରଧାନ କାରଣ ଥିଲା ହିଟ୍ଲରଙ୍କ ରୁଗ୍ଣ ମାନସିକତା । ସେ ଭାବୁଥିଲେ ଜର୍ମାନ୍ମାନେ ବିଶ୍ୱର ସର୍ବଶ୍ରେଷ୍ଠ ଜାତି ଓ ସାରା ପୃଥିବୀର ଅଧୀଶ୍ୱର ହେବାପାଇଁ ଯୋଗ୍ୟ ।

ସେହିପରି ଚୀନ୍ ଦେଶର ପୁରାତନ ସମ୍ରାଟ୍ମାନେ ଭାବୁଥିଲେ ଚୀନ୍ ଛଡ଼ା ଆଉ ଦେଶ ନାହିଁ; ସଭ୍ୟତା ନାହିଁ । ଏପରିକି ଆତଙ୍କବାଦୀମାନେ ୨୦୦୧ ମସିହାରେ ବିଶ୍ୱ ବାଣିଜ୍ୟ କେନ୍ଦ୍ରକୁ ଧ୍ୱଂସ କରିବା ପୂର୍ବରୁ ଅଧିକାଂଶ ଆମେରିକାବାସୀଙ୍କ ଧାରଣା ଥିଲା ଆମେରିକା ହିଁ ପୃଥିବୀ । ତେଣୁ ଅନ୍ୟ ଧର୍ମ, ଭାଷା, ସଂସ୍କୃତିକୁ ଜାଣିବା ବୁଝିବାପାଇଁ ସେମାନଙ୍କର ବିଶେଷ ଆଗ୍ରହ ନଥିଲା । ଏହି ଘଟଣା ପରେ ଆମେରିକା ଲୋକେ

କୋରାନ୍ ଓ ଇସ୍‌ଲାମ ସମ୍ପର୍କରେ ଅଧିକ ଜାଣିବାପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଏହି କାରଣରୁ ଶ୍ରୀ ରାମକୃଷ୍ଣ ପରମହଂସ ନିଜ ଜୀବନର ଅନେକ କାଳ ଅନ୍ୟ ଧର୍ମକୁ ଜାଣିବା ଓ ବୁଝିବାରେ କଟାଇଥିଲେ । ସ୍ତ୍ରୀ ହୋଇ ସ୍ତ୍ରୀ କୁ ଜାଣିବା, ମୁସଲ୍‌ମାନ ହୋଇ ଇସ୍‌ଲାମକୁ ଚିହ୍ନିବା ଓ ଖ୍ରୀଷ୍ଟିୟାନ୍ ହୋଇ ଖ୍ରୀଷ୍ଟଧର୍ମକୁ ବୁଝିବାପାଇଁ ରାମକୃଷ୍ଣ ପରମହଂସଙ୍କ ପ୍ରଚେଷ୍ଟା ଥିଲା ପୃଥିବୀରେ ଅନ୍ୟକୁ ବୁଝିବାର ସର୍ବପ୍ରଥମ ଉଦାହରଣ ।

ଏହି ବିଚାର ଓ ଆଦର୍ଶକୁ ସ୍ୱାମୀ ବିବେକାନନ୍ଦ ୧୮୯୩ ମସିହା ସେପ୍‌ଟେମ୍ବର ୧୧ ରୁ ୨୭ ତାରିଖ ପର୍ଯ୍ୟନ୍ତ ଚିକାଗୋରେ ଅନୁଷ୍ଠିତ ୱାର୍ଲ୍‌ଡ୍ ପାର୍ଲିଆମେଣ୍ଟ ଅଫ୍ ରିଲିଜନ୍‌ସ - ବା ବିଶ୍ୱ ଧର୍ମ ମହାସଭାରେ ଉପସ୍ଥାପିତ କରିଥିଲେ । ୧୧ ତାରିଖ ଦିନ ଯେତେବେଳେ ବିଭିନ୍ନ ଧର୍ମ ଓ ସମ୍ପ୍ରଦାୟ ମଧ୍ୟରେ ସହନଶୀଳତାର ଆବଶ୍ୟକତା ଉପରେ ଭାଷଣ ଚାଲିଥିଲା, ବିବେକାନନ୍ଦ ଆମେରିକାବାସୀଙ୍କୁ ନିଜର ଭଉଣୀ ଓ ଭାଇ ଭାବରେ ସମ୍ବୋଧନ କରି ସମସ୍ତଙ୍କ ହୃଦୟ ଜୟ କରିଥିଲେ ଏବଂ କହିଥିଲେ ପୃଥିବୀର ବିଭିନ୍ନ ଅଞ୍ଚଳରୁ ଧାର୍ମିକ ଓ ସାମ୍ପ୍ରଦାୟିକ ଅସହିଷ୍ଣୁତାର ଶିକାର ହୋଇ ଲୋକେ ଯେଉଁ ଭାରତକୁ ପଳାଇ ଆସିଥିଲେ ମୁଁ ସେଇ ଦେଶରୁ ଏଠାକୁ ଆସିଛି । ସମ୍ମିଳନୀ ଚାଲିଥିବା ବେଳେ ପୁଣି ଦିନେ ବିଭିନ୍ନ ଧର୍ମାଧିକାରୀମାନଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ, "ଅନ୍ୟ ଧର୍ମକୁ ପରାହତ ଓ ଧ୍ୱଂସ କରି ନିଜ ଧର୍ମର ବିଜୟ ବାନା ଉଡ଼ାଇଲେ ବିଶ୍ୱରେ ଏକତା ବା ଶାନ୍ତି ଆସିବ ନାହିଁ ।" ଯେପରି ମଞ୍ଜି, ମାଟି, ପାଣି, ପବନ, ଖରା ଖାଇ ମଧ୍ୟ ମାଟି, ପାଣି, ପବନ, ଖରା ନ ହୋଇ ଗଛ ହୁଏ, ସେହିପରି ପ୍ରତ୍ୟେକ ଧର୍ମାବଲମ୍ବୀ ଅନ୍ୟ ଧର୍ମ, ସଂସ୍କୃତିର ଭଲ ଗୁଣ ଗୁଡ଼ିକୁ ଗ୍ରହଣ କରି ନିଜ ଧର୍ମର କଲ୍ୟାଣ କରିପାରିବେ ।

ସେପ୍‌ଟେମ୍ବର ୧୫ ତାରିଖ ଦିନ ସ୍ୱାମୀଜୀ ବ୍ୟକ୍ତିଗତ, ସାମ୍ପ୍ରଦାୟିକ ଓ ଧାର୍ମିକ ସଂକୀର୍ଣ୍ଣତା ମଧ୍ୟରେ ବାନ୍ଧି ହୋଇ ନ ରହିବାକୁ ଧର୍ମଗୁରୁମାନଙ୍କୁ ଆହ୍ୱାନ ଦେଇଥିଲେ । ଏଇ କଥାଟିକୁ ପରିଷ୍କାର କରିବାକୁ ଯାଇ ଏକ ବେଙ୍ଗ ଗପ ଶୁଣାଇଥିଲେ । ଜୁଆରରେ ଠେଲି ହୋଇ ଏକ ସାମୁଦ୍ରିକ ବେଙ୍ଗ ସ୍ଥଳ ଭାଗର ଏକ ଛୋଟ କୂଅରେ ଆସି ପଡ଼ିଲା । କୂଅ ଭିତରେ ବହୁ ଦିନରୁ ରହୁଥିବା ପେଟୁଆ ବେଙ୍ଗଟି ସମୁଦ୍ର ବେଙ୍ଗକୁ ପଚାରିଲା ତୁ କେଉଁଠୁ ଆସି ଏଠି ପଡ଼ିଲୁ । ଉତ୍ତର ମିଳିଲା "ସମୁଦ୍ରରୁ" । ସମୁଦ୍ର କ'ଣ, କେମିତି, କେତେ ବଡ଼ ? ସମୁଦ୍ର ବେଙ୍ଗ ଉତ୍ତର ଦେଇ କହିଲା ବହୁତ ବଡ଼, ଆଖି ପାଇବ ନାହିଁ । କୂପ ମଣ୍ଡୂକ କୂଅ ଭିତରର ଗୋଟିଏ ପଟରୁ ଆରପଟକୁ ଡେଇଁ ପଡି କହିଲା ଏତିକି ବଡ଼ ? ସମୁଦ୍ର ବେଙ୍ଗ ହସି କହିଲା, ନାଁ ବହୁତ ବଡ଼, ଦେଖିଲେ

ଜାଣିବୁ । କୂପ ମଣ୍ଡୁକ ଆଉ ଥରେ ସେପଟରୁ ଏପଟକୁ ଡେଇଁ ପଡ଼ି କହିଲା ୨ଟା କୂଅର ପରିସର ଅପେକ୍ଷା ତୋ ସମୁଦ୍ର କେବେହେଲେ ବଡ଼ ହୋଇ ନଥିବ । ସମୁଦ୍ର ବେଙ୍ଗ ପୁଣି ଥରେ ହସି କହିଲା, କୂଅ ଭିତରେ ରହି ପୃଥିବୀର ତିନି ଭାଗ ବ୍ୟାପିଥିବା ସମୁଦ୍ରର ବିଶାଳତା କଳନା କରିହେବ ନାହିଁ । ଏ କଥା ଶୁଣି କୂପ ମଣ୍ଡୁକ ରାଗି ଯାଇ କହିଲା "ତାହେଲେ ତୁ ମିଛ କହୁଛୁ, ସମୁଦ୍ର ମିଥ୍ୟା, ପୃଥିବୀ ମିଥ୍ୟା, ଏଇ କୂଅ ହେଲା ସତ, ଏଇଟା ହିଁ ପୃଥିବୀ ଓ ଏହାର ଜଳ ହେଲା ପ୍ରକୃତ ସମୁଦ୍ର, ଯା ପଳା ।"

ବ୍ୟକ୍ତିଗତ କଳହ ହେଉ, ଗ୍ରାମ୍ୟ କଳହ ହେଉ, ଆନ୍ତଃ ରାଜ୍ୟ ବା ଅନ୍ତର୍ଦେଶୀୟ ବିବାଦ ହେଉ, ସବୁରି ପଛରେ ଏଇ ମାନସିକତା କାମ କରୁଛି । ମୋ ମତ, ମୋ ପଥ, ମୋ ସମ୍ପ୍ରଦାୟ, ମୋ ଜାତି, ମୋ ପରିବାର ହିଁ ପୃଥିବୀ । ସ୍ୱାମୀଜୀଙ୍କ ସ୍ୱଳ୍ପ ଜୀବନ କାଳ ଏହିଭଳି ବିଚାରଧାରା ବଦଳାଇବାରେ କଟି ଯାଇଥିଲା । ଏବେ ସମାଜତତ୍ତ୍ୱବିତ୍‌ମାନେ କହିଲେଣି, ଯେଉଁ ଦେଶରେ ବିଭିନ୍ନ ଭାଷାଭାଷୀ, ବିଭିନ୍ନ ଜାତି, ସମ୍ପ୍ରଦାୟ ଓ ଧର୍ମର ଲୋକେ ଏକାଠି ରହିବାର ସୁସ୍ଥ ପରିବେଶ ଅଛି, ସେ ଦେଶ ହିଁ ଶକ୍ତିଶାଳୀ ଦେଶ ।

ନେଲ୍‌ସନ୍ ମାଣ୍ଡେଲା ତାଙ୍କର ଆତ୍ମଜୀବନୀ "ଲଙ୍ଗ୍ ୱାକ୍ ଟୁ ଫ୍ରିଡମ୍"ରେ ବାଲ୍ୟ ଜୀବନରେ ଗ୍ରାମ୍ୟ ସଭାଗୁଡ଼ିକରୁ ସେ କିପରି ପରସ୍ପର ମତକୁ ସମ୍ମାନ ଦେବା ମୂଲ୍ୟବୋଧ ଶିଖିଥିଲେ, ସେ କଥା ବର୍ଣ୍ଣନା କରିଛନ୍ତି । ଦ୍ୱିତୀୟ ବିଶ୍ୱ ମହାଯୁଦ୍ଧରେ ପରାସ୍ତ ହେବା ପରେ ଜାପାନୀମାନେ ଗଭୀର ଆତ୍ମ ସମୀକ୍ଷା କରି ଏକ ନୂଆ ଜାପାନ ଗଢ଼ିବାପାଇଁ ନିଷ୍ପତ୍ତି ନେଇଥିଲେ - ସେମାନଙ୍କର ସ୍ଲୋଗାନ୍ ଥିଲା - ଚାଲ ଆମେ ସମସ୍ତଙ୍କ ମତକୁ ସମ୍ମାନ ଦେବା, ସମସ୍ତଙ୍କଠାରୁ ଶିଖିବା, ପୁଣି ଏକ ନୂଆ ଜାପାନ୍ ଗଢ଼ିବା । ଭାରତରେ ୧୬୦୦ ଭାଷା, ବୋଲି କହୁଥିବା ବିଭିନ୍ନ ଜାତି, ସମ୍ପ୍ରଦାୟ ଲୋକେ ସଂସଦୀୟ ଗଣତନ୍ତ୍ର ଓ ଧର୍ମ ନିରପେକ୍ଷ ରାଷ୍ଟ୍ର ଭାବରେ ଷାଠିଏ ବର୍ଷରୁ ଅଧିକ କାଳ ଏକାଠି ରହିଲେଣି । ଏହାକୁ ଆହୁରି ମଜଭୁତ କରିବାକୁ ହେଲେ କୂପ ମଣ୍ଡୁକଙ୍କ ସଂଖ୍ୟା କମାଇ ସମୁଦ୍ର ବେଙ୍ଗଙ୍କ ସଂଖ୍ୟା ବଢ଼ାଇବାକୁ ହେବ । ଅର୍ଥାତ୍ ସଂକୀର୍ଣ୍ଣତାରୁ ଊର୍ଦ୍ଧ୍ୱକୁ ଉଠିବାକୁ ପଡ଼ିବ ।

*୧୦ ଅଗଷ୍ଟ, ୨୦୦୭*



# ହିଂସା, ବିଦ୍ୱେଷର ରକ୍ତରଞ୍ଜିତ ଇତିହାସ

ସିନେଟ୍ ଅଧିବେଶନକୁ ହିନ୍ଦୁ ପଣ୍ଡିତଙ୍କ ବୈଦିକ ପ୍ରାର୍ଥନାଦ୍ୱାରା ଉଦ୍‌ଘାଟନ କରିବା ଆମେରିକାରେ ଏକ ନୂଆ ପରମ୍ପରା ଥିଲା - ତେଣୁ ଏହାର ବିରୋଧ ଅସ୍ୱାଭାବିକ ନୁହେଁ । ଭାରତରେ ମହାତ୍ମା ଗାନ୍ଧି ସର୍ବଧର୍ମ ପ୍ରାର୍ଥନାର ପରମ୍ପରା ସୃଷ୍ଟି କରି ବିଭିନ୍ନ ଧର୍ମାବଲମ୍ବୀଙ୍କୁ ଏକାଠି ଶାନ୍ତିରେ ରହିବାପାଇଁ କ୍ରମାଗତ ଭାବେ ପ୍ରେରଣା ଦେଉଥିଲେ; ଜାତିବାଦ ଓ ଅସ୍ପୃଶ୍ୟତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ । ଗାନ୍ଧି ଓ ବିନୋବାଙ୍କ ସମୂହ ପ୍ରାର୍ଥନାକୁ ଭାରତରେ ମଧ୍ୟ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଉଭୟେ ଅସ୍ପୃଶ୍ୟତା ଓ ରକ୍ଷଣଶୀଳତାର ବିରୋଧ କରି ସିଂହଦ୍ୱାରରୁ ଫେରି ଯାଇଥିଲେ । ମନ୍ଦିର ଈଶ୍ୱର ଓ ଇନ୍‌ସାନ୍‌ଙ୍କ ମିଳନର ପବିତ୍ର ସ୍ଥଳ - ପ୍ରାଚୀର ନୁହେଁ ।

ବିନୋବା ଯେତେବେଳେ ସହଯୋଗୀମାନଙ୍କୁ ମନ୍ଦିର ପ୍ରବେଶର ଅନୁମତି ନ ମିଳିବାରୁ ପ୍ରତିବାଦ କରି ସିଂହଦ୍ୱାରଠାରୁ ଫେରି ଯାଉଥିଲେ, ଜଣେ ପଣ୍ଡିତ ବଡ଼ ପାଟିରେ ତାଙ୍କୁ ସଂସ୍କୃତରେ ପଚାରିଲେ "ସର୍ବଧର୍ମ ସମୂହ ପ୍ରାର୍ଥନା ପରମ୍ପରା ସୃଷ୍ଟି କରି ଆପଣ ହିନ୍ଦୁ ଧର୍ମର ଅବମାନନା କରୁଛନ୍ତି, ଏହା ଅଶାସ୍ତ୍ରୀୟ" । ଏକଥା ଯେମିତି ତାଙ୍କ କାନରେ ବାଜିଲା, ସେ ତତ୍‌କ୍ଷଣାତ୍ ବୁଲିପଡ଼ି ଋଗ୍‌ବେଦର ଗାୟତ୍ରୀ ମନ୍ତ୍ରର ଚାରିଧାଡ଼ି ଯାକ ଶୁଣାଇ ଦେଇ କହିଲେ "ଧୀମହି, ଧୀମହି, ଧୀମହି ।" ଗାୟତ୍ରୀ ଏକ ସମୂହ ପ୍ରାର୍ଥନା ଏବଂ ସଂକ୍ଷିପ୍ତରେ ଏହାର ଅର୍ଥ ହେଲା "ହେ ପାପନାଶନ, ପତିତପାବନ, ଜ୍ୟୋତିଷ୍ମାନ୍ ଈଶ୍ୱର, "ଆମେ" ଆପଣଙ୍କୁ ଧ୍ୟାନ କରୁଛୁ, ଆପଣ ଆମ ବୁଦ୍ଧି ବିବେକ ଉଜ୍ଜ୍ୱଳ କରନ୍ତୁ; ଜ୍ଞାନ, ସଦ୍‌ଭାବନା ଓ ପ୍ରେରଣା ଦିଅନ୍ତୁ ।" ଏହା ଶୁଣି ପଣ୍ଡିତ ମହାଶୟ ଚୁପ୍ ହୋଇଯାଇଥିଲେ । ଆଚାର୍ଯ୍ୟ ବିନୋବା କେବଳ ଗାନ୍ଧିବାଦୀ ବା ସର୍ବୋଦୟ ଭୂଦାନ ଆନ୍ଦୋଳନର ଜନକ ନଥିଲେ, ସେ ଭାରତୀୟ ଶାସ୍ତ୍ରୀୟ ପରମ୍ପରାକୁ ଗଭୀର ଭାବରେ ଅଧ୍ୟୟନ କରିଥିଲେ ।

ଲକ୍ଷ ଲକ୍ଷ ଲୋକ ପୃଥିବୀରେ ଧର୍ମ, ସମ୍ପ୍ରଦାୟ, ଜାତି, ଗୋଷ୍ଠୀ, କଳହ ଓ ଅସହିଷ୍ଣୁତାର ଶିକାର ହେଲେଣି । କୁହାଯାଏ ଯେ ଏଠାରେ ଯୁଦ୍ଧ ଅପେକ୍ଷା ଧାର୍ମିକ କଳହରେ ମୃତ୍ୟୁ ବେଶୀ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ୫୦ ଲକ୍ଷ ଇହୁଦୀ ଏହାର ଶିକାର ହୋଇଥିଲେ । ଜାତି ଓ ଗୋଷ୍ଠୀ କଳହଯୋଗୁଁ ୟୁରୋପର ବୋସ୍‌ନିଆ ଓ ଆଫ୍ରିକାର ରୁଆଣ୍ଡାରେ ଆଠଲକ୍ଷ ଲୋକ ପ୍ରାଣ ହରାଇଲେଣି । ଧର୍ମକୁ ଆଧାର କରି ଚାଲିଥିବା ଆତଙ୍କବାଦଦ୍ୱାରା ଗତ ୫ବର୍ଷ ମଧ୍ୟରେ ୩ ଲକ୍ଷ ନିର୍ଦ୍ଦୋଷ ଲୋକଙ୍କ ଜୀବନ ଗଲାଣି । ୧୯୯୦ରୁ ଏପର୍ଯ୍ୟନ୍ତ ବିଭିନ୍ନ ଯୁଦ୍ଧରେ ପ୍ରାଣ ହରାଇଥିବା ଲୋକଙ୍କ ସଂଖ୍ୟା ୩୬ ଲକ୍ଷ (ଏଚ୍.ଡି.ଆର୍-୨୦୦୨ ୟୁଏନ୍‌ଡିପି) ଉତ୍ତର ଆମେରିକା ଓ ୟୁରୋପରେ ସାମ୍ପ୍ରଦାୟିକ ଘୃଣାଜନିତ ହିଂସା ବଢ଼ିବାରେ ଲାଗିଛି । ୨୦୦୨ ମସିହାରେ ଜର୍ମାନୀରେ ୧୨,୯୩୩ ଓ ସୁଇଡେନ୍‌ରେ ୨୩୯୧ଟି ହିଂସାତ୍ମକ ଘଟଣା ଘଟିଥିଲା । ଇଂଲଣ୍ଡ ଓ ଆମେରିକାରେ ଯଥାକ୍ରମେ ୩୫୯୭ ଓ ୭,୩୧୪ଟି ଘଟଣା ଘଟିଥିଲା ।

୨୦୦୩ ମସିହାରେ ହୋଇଥିବା ଏକ ସର୍ବେକ୍ଷଣ ଅନୁସାରେ ଏବେ ୧୩ଟି ଆତଙ୍କବାଦୀ ଗୋଷ୍ଠୀ ଧାର୍ମିକ ଅସହିଷ୍ଣୁତା ଓ ଘୃଣାର ପ୍ରଚାର କରୁଛନ୍ତି । ଭାରତ, ପାକିସ୍ତାନ, ଶ୍ରୀଲଙ୍କା ଓ ବାଂଲାଦେଶରେ ଏମାନଙ୍କ ପ୍ରଭାବ ବେଶୀ । ଆତଙ୍କବାଦୀ ସଂଗଠନ ଲସ୍କର-ଇ-ତୋଏବା ମତରେ, ଗଣତନ୍ତ୍ର ଓ ବ୍ୟକ୍ତି ସ୍ୱାଧୀନତା ଇସ୍‌ଲାମ ବିରୋଧୀ । ଏମାନେ ପାକିସ୍ତାନରେ ୧୪୦୦ ବର୍ଷ ତଳେ ମକ୍କାରେ ଚାଲିଥିବା ଶାସନ ବ୍ୟବସ୍ଥା ଚାହାନ୍ତି ଏବଂ ଖୋଲାଖୋଲି କହନ୍ତି ଯେ ଗଣତନ୍ତ୍ରର ଜବାବ ହେଉଛି ବୋମା ଓ ଗ୍ରେନେଡ୍ । ସେହିପରି ଇହୁଦୀ, ଗସ୍, ଏସୁନିମ୍ ନାମକ ସଂସ୍ଥା ସବୁ ପାଲେଷ୍ଟିନୀୟ ଲୋକଙ୍କୁ ତଡ଼ି ଏକ ବିଶୁଦ୍ଧ ଇସ୍ରାଏଲ୍ ଗଢ଼ିବା ଚାହାନ୍ତି । ଆଲ୍‌ଜେରିଆର ଏକ ମୌଳବାଦୀ ଗୋଷ୍ଠୀ, ପ୍ରାର୍ଥନା ନ କରୁଥିବା ଲୋକ ଓ ବୁର୍ଖା ନ ପିନ୍ଧୁଥିବା ମହିଳାଙ୍କୁ ଜୀବନରେ ମାରି ଦେଉଛନ୍ତି ।

ଯୁକ୍ତରାଷ୍ଟ୍ର ଆମେରିକାରେ 'ନାସ୍‌ନାଲ୍ ଆଲିଆନ୍‌ସ'. ନାମକ ଏକ ନାଜି ସଂଗଠନ ଆମେରିକାକୁ କେବଳ ଏକ ଶ୍ୱେତକାୟଙ୍କ ଦେଶରେ ପରିଣତ କରିବାକୁ ଉଦ୍ୟମ ଅବ୍ୟାହତ ରଖିଛନ୍ତି । ଉତ୍ତର ପୂର୍ବ ଭାରତରେ ନାଗା ଓ କୁକୀଙ୍କ ଭଳି ରୁଆଣ୍ଡାରେ 'ହୁଟୁ' ଓ 'ଟୁଟ୍‌ସି'ଙ୍କ ମଧ୍ୟରେ ହିଂସା ଓ ହତ୍ୟାକାଣ୍ଡ ଜାରି ରହିଛି । ଦକ୍ଷିଣ ପୂର୍ବ ଏସିଆରେ 'ଯେମା ଇସ୍‌ଲାମିୟା' ନାମକ ଏକ ଗୋଷ୍ଠୀ ଇଣ୍ଡୋନେସିଆ, ମାଲେସିଆ, ଫିଲିପାଇନ୍‌ସ ଓ ସିଙ୍ଗାପୁରକୁ ମିଶାଇ ଏକ ଏସିଆନ୍ ଇସ୍‌ଲାମିକ୍ ଦେଶ ଗଠନପାଇଁ ହିଂସାତ୍ମକ ଆନ୍ଦୋଳନ ଚଳାଇଛନ୍ତି । ଏ ଦେଶମାନଙ୍କରେ ଥିବା ଟାଇନିଜ୍ ଓ

ଖ୍ରୀଷ୍ଟୟାନ୍‌ମାନଙ୍କୁ 'କାଫିର' ନାମ ଦିଆଯାଇଛି । ଆଫ୍ରିକାରେ 'ଲର୍ଡସ୍ ରେଜିଷ୍ଟାନ୍‌ସ ଆର୍ମି' ନାମକ ସଂଗଠନ ବାଇବେଲ୍ ଓ 'ଟେନ୍ କମାଣ୍ଡମେଣ୍ଟ'କୁ ଆଧାର କରି ନୂଆ ସରକାର ଗଢ଼ିବାପାଇଁ ଆନ୍ଦୋଳନ ଆରମ୍ଭ କରିଦେଇଛି । ନିକଟରେ ପାକିସ୍ତାନ ଲାଲ୍ ମସଜିଦ୍‌ରେ ଆତ୍ମଗୋପନକାରୀ ଆତଙ୍କବାଦୀମାନେ ଦେଶରେ ଇସ୍‌ଲାମିକ୍ ସାରିଆତ୍ ପଦ୍ଧତି ପ୍ରବର୍ତ୍ତନପାଇଁ ହିଂସାକାଣ୍ଡ ଘଟାଇଥିଲେ । ଅଶୀ ଦଶକରେ ପଞ୍ଜାବକୁ ସାମ୍ପ୍ରଦାୟିକ ଭାବରେ ବିଭକ୍ତ କରି ଖାଲିସା ରାଜ ଓ ଶିଖ୍‌ଧର୍ମୀୟ ଶାସନପାଇଁ ଭିନ୍ଦ୍ରାନ୍‌ୱାଲେ ସ୍ୱର୍ଣ୍ଣ ମନ୍ଦିରରେ ଅସ୍ତ୍ରଶସ୍ତ୍ର ଏକାଠି କରି ବିଦ୍ରୋହ କରିଥିଲେ ।

ଏହିପରି ନିଜ ଧର୍ମ ଓ ସଂସ୍କୃତିକୁ କଦର୍ଥ କରି ନିଜ ଆଦର୍ଶକୁ ଦେଶ ଉପରେ ଲଦି ଦେବାପାଇଁ ପୃଥିବୀର ବିଭିନ୍ନ ଅଞ୍ଚଳରେ ଘୃଣା, ଅସହିଷ୍ଣୁତା ଓ ହିଂସାର ପ୍ରଚାର ଚାଲିଛି । ଆମର ଏପରି ଆଚରଣକୁ ଅଧ୍ୟୟନ କରି କେତେକ ନୃତତ୍ତ୍ୱବିତ୍ କହନ୍ତି ଯେ ପୃଥିବୀରେ ସିଂହ, ବାଘ, ଭାଲୁ ଭଳି ଜନ୍ତୁଙ୍କଠାରୁ ମଣିଷ ଅଧିକ ହିଂସାପରାୟଣ । କାରଣ ଏ ପର୍ଯ୍ୟନ୍ତ ମଣିଷ ଯେତେ ମଣିଷଙ୍କୁ ମାରି ସାରିଲେଣି, ଅନ୍ୟ କୌଣସି ଜନ୍ତୁ ସ୍ୱଜାତୀୟଙ୍କୁ ଏପରି ମାରି ନାହିଁ । ଏପର୍ଯ୍ୟନ୍ତ କୁହାଯାଉଥିଲା ଯେ ଆହାର, ନିଦ୍ରା, ଭୟ ଓ ମୈଥୁନ; ଏଇ ୪ ପ୍ରବୃତ୍ତିରେ ମଣିଷ ଓ ପଶୁଙ୍କ ଭିତରେ କୌଣସି ଫରକ୍ ନାହିଁ, କେବଳ ଉଚିତ୍ ଅନୁଚିତ୍, ଭଲ ମନ୍ଦ ଜ୍ଞାନ ଓ ବିବେକଯୋଗୁଁ ମଣିଷ ପଶୁଙ୍କଠାରୁ ଉଚ୍ଚରେ । ଆଜିର ହିଂସ୍ର ଅସହିଷ୍ଣୁ ବ୍ୟକ୍ତି ଓ ସଂଗଠନମାନଙ୍କର କାର୍ଯ୍ୟକଳାପକୁ ଲକ୍ଷ୍ୟ କଲେ ଏପରି ଧାରଣା ହୁଏ ନାହିଁ । ତେଣୁ ହେ ପ୍ରଭୁ, ଆମକୁ କ୍ଷମା କର ।

ଏହା ସତ୍ତ୍ୱେ ପୃଥିବୀ ପୃଷ୍ଠରେ ମାନବିକତା ବଞ୍ଚି ରହିଛି, ଶାନ୍ତି ଓ ସୌହାର୍ଦ୍ଦ୍ୟପାଇଁ ଉଦ୍ୟମ ଅବ୍ୟାହତ ରହିଛି । ଶାନ୍ତିପାଇଁ ନୋବେଲ୍ ପୁରସ୍କାର ବିଜୟୀ ତିବ୍ବତୀୟ ଧର୍ମଗୁରୁ ନିଜ ରାଜ୍ୟର ସ୍ୱାଧୀନତାପାଇଁ ଏ ପର୍ଯ୍ୟନ୍ତ ହିଂସାର ଆଶ୍ରୟ ନେଇନାହାନ୍ତି । ବର୍ମାରେ ନୋବେଲ୍ ଶାନ୍ତି ପୁରସ୍କାର ବିଜେତା "ସୁ କି" ଏପର୍ଯ୍ୟନ୍ତ ଅହିଂସାକୁ ଆଶ୍ରୟ କରି ସଂଗ୍ରାମ ଜାରି ରଖିଛନ୍ତି । ଲୋକପ୍ରିୟ ଲେଖକ ଡାନ୍ ବ୍ରାଉନ୍‌ଙ୍କ ପୁସ୍ତକ "ଦି ଦା ଭିନ୍‌ସି କୋଡ୍" ଖ୍ରୀଷ୍ଟଧର୍ମର ମୂଳଦୁଆ ହଲାଇଦେବା ସତ୍ତ୍ୱେ ଖ୍ରୀଷ୍ଟୟାନ୍‌ମାନେ ଶାନ୍ତ ଓ ସଂଯତ ରହିଛନ୍ତି । ଭେଲୋର ମେଡ଼ିକାଲ କଲେଜରେ ପ୍ରଫେସର ଥିବା ମୋର ଜଣେ ଅନ୍ତରଙ୍ଗ ଖ୍ରୀଷ୍ଟୟାନ୍ ବନ୍ଧୁଙ୍କୁ ଯେତେବେଳେ ଏ ପୁସ୍ତକ ବିଷୟରେ ପଚାରିଲି, ଉତ୍ତରରେ କହିଲେ ଏହା ଡାନ୍ ବ୍ରାଉନ୍‌ଙ୍କ ବ୍ୟକ୍ତିଗତ ବିଚାର, ଏଥିପାଇଁ ଆମେ କାହିଁକି ଏତେ ବ୍ୟସ୍ତ, ବିବ୍ରତ ବା ଉତ୍ତେଜିତ ହେବୁ ? ଓଡ଼ିଶାରେ ଭକ୍ତମାନେ ଜଗନ୍ନାଥଙ୍କୁ ଗାଳି ଦେବା ଅପରାଧ ବୋଲି ଧରାଯାଏ ନାହିଁ । ଧର୍ମରେ ବିଭିନ୍ନ ବିଚାରଧାରାପାଇଁ ସ୍ଥାନ ନ

ରହିଲେ ଧର୍ମ ଦୁର୍ବଳ ହୋଇଯାଏ । ଇରାକ୍‌ରେ ସିଆ ଓ କୁର୍ଦ୍ଦ ଦୁଇଟି ଗୋଷ୍ଠୀ - ଧର୍ମ ଗୋଟିଏ । ଏ ଦେଶର ନୂଆ ସମ୍ବିଧାନରେ ଉଭୟଙ୍କପାଇଁ ସ୍ଥାନ ରହିଛି । ଆଫଗାନିସ୍ଥାନରେ ପ୍ରଚଳିତ ଇସ୍‌ଲାମ୍‌ରେ ବହୁମତ ଓ ପନ୍ଥକୁ ସମ୍ବିଧାନ ସ୍ୱୀକୃତି ଦେଇଛି । ଭାରତର ସମ୍ବିଧାନ ଧର୍ମ-ନିରପେକ୍ଷ ରାଷ୍ଟ୍ର ଓ ସର୍ବଧର୍ମ ସମଭାବ ବିଚାରଧାରାଦ୍ୱାରା ଚାଳିତ । ସଭ୍ୟତାର ବିକାଶପାଇଁ ଧାର୍ମିକ ଓ ସାଂସ୍କୃତିକ ସ୍ୱାଧୀନତାର ଆବଶ୍ୟକତା ବେଶୀ । ଯେଉଁ ବ୍ୟକ୍ତି ଓ ସଂଗଠନ ଏହାକୁ ସହ୍ୟ କରିପାରନ୍ତି ନାହିଁ, ତା'ର ତିନିଟି କାରଣ ରହିଛି :-

୧. ପ୍ରଥମ କାରଣ ହେଲା, ଏମାନେ ଭାବନ୍ତି ଯେ ତାଙ୍କର ଧର୍ମ, ସଂସ୍କୃତି ଓ ପରମ୍ପରା ଅନ୍ୟମାନଙ୍କଠାରୁ ବହୁ ଉଚ୍ଚରେ, ଅନ୍ୟଗୁଡ଼ିକ ବହୁ ତଳେ ।

୨. ତେଣୁ ଅନ୍ୟମାନେ ଆମ ଧର୍ମ, ସଂସ୍କୃତି ଓ ସଭ୍ୟତାକୁ ଗ୍ରହଣ କରିବାକୁ ବାଧ୍ୟ । କେବଳ ଏହି ଉପାୟରେ ଏକ ବିଶୁଦ୍ଧ ସମାଜ ଗଢ଼ିବାକୁ ପଡ଼ିବ ।

୩. ଯେଉଁମାନେ ଏହାକୁ ଗ୍ରହଣ ନ କରିବେ, ସେମାନେ ପାପୀ ଓ ଦ୍ରୋହୀ, ନ ମାନିଲେ, ସେମାନଙ୍କୁ ଖତମ୍ କରିବା ଏକ ଧାର୍ମିକ କର୍ତ୍ତବ୍ୟ ।

୧୯୮୩ ମସିହାରେ ଆମେରିକାର ଚିକାଗୋ ସହରରେ ବିଶ୍ୱ ଧର୍ମ ସମ୍ମିଳନୀକୁ ଉଦ୍‌ବୋଧନ ଦେଇ ସ୍ୱାମୀ ବିବେକାନନ୍ଦ ଏପରି ମନୋବୃତ୍ତି ବିରୁଦ୍ଧରେ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ ।

*୬ ସେପ୍ଟେମ୍ବର, ୨୦୦୬*



# ଚମଡ଼ା ବେଶି, କପଡ଼ା କମ୍

ଭାରତୀୟ ସିନେମା ଜଗତର ଜଣେ ଅଳ୍ପ ବୟସ୍କା ଛୋଟ ତାରକା ଶାର୍ଲିନ୍ ଚୋପ୍ରା ୱେବ୍‌ସାଇଟ୍‌ରେ ରଖିଥିବା ନିଜର ଅର୍ଦ୍ଧନଗ୍ନ ଫଟୋ ଚୋରି ହୋଇ ଯାଇଥିବା ଅଭିଯୋଗ କରିଛନ୍ତି । ଅତୀତରେ ଜର୍ମାନୀର ଲିଣ୍ଡାଭ ସହରରେ ଜଣେ ବସ୍ ଚାଳକ ଭରା ଯାତ୍ରୀ ଥିବା ବସ୍‌ଟିକୁ ହଠାତ୍ ରୋକି ଦେଇ ତାଙ୍କ ପଛ ସିଟ୍‌ରେ ବସିଥିବା ଦେବୋରା ନାମ୍ନୀ ଜଣେ ବିଂଶବର୍ଷୀୟା ଯୁବତୀଙ୍କୁ ସବା ପଛ ସିଟ୍‌କୁ ଚାଲିଯିବାକୁ କିମ୍ୱା ବସ୍‌ରୁ ଓହ୍ଲାଇ ଯିବାକୁ ନିର୍ଦ୍ଦେଶ ଦେଲେ । ଅପ୍ରତିଭ ଓ ସମସ୍ତଙ୍କ ଆଗରେ ବସ୍ ଚାଳକଙ୍କ ଅପ୍ରତ୍ୟାଶିତ ବ୍ୟବହାରରେ ଅପମାନିତ ଦେବୋରା ଏହାର କାରଣ ପଚାରିବାରୁ ବସ୍ ଡ୍ରାଇଭର୍ ଉତ୍ତର ଦେଇ କହିଲେ "ମୋ ସାମନାରେ ଥିବା ଦର୍ପଣରେ ତୁମର ଅର୍ଦ୍ଧ ଉନ୍ମୁକ୍ତ ବକ୍ଷସ୍ଥଳର ପ୍ରତିଛବି ବାରମ୍ବାର ଦେଖି ମୋ ମନ ବିଚଳିତ ହେଉଛି, ମୁଁ ଠିକ୍ ଭାବରେ ଗାଡ଼ି ଚଲାଇ ପାରୁନାହିଁ ଏବଂ ଏହାଦ୍ୱାରା ମୋ ଗାଡ଼ିରେ ବସିଥିବା ଅନ୍ୟ ଯାତ୍ରୀମାନଙ୍କର ଜୀବନ ବିପନ୍ନ ହୋଇପାରେ ।" ଦେବୋରା ପ୍ରତିବାଦ କରିବାକୁ ଚାହୁଁଥିଲେ କିନ୍ତୁ ଅନ୍ୟ ଯାତ୍ରୀମାନଙ୍କ ସମର୍ଥନ ନ ପାଇ ସେ ପଛ ସିଟ୍‌ରେ ଯାଇ ବସିଲେ ଓ ପରେ ଏହାର ପ୍ରତିବାଦ କଲେ । କିନ୍ତୁ ବସ୍ କମ୍ପାନି ଦେବୋରାଙ୍କ ଅଭିଯୋଗ ନ ଶୁଣି, ବସ୍ ଚାଳକଙ୍କ ସମର୍ଥନ କରି କହିଲା ଯେ ଯାତ୍ରୀମାନଙ୍କ ନିରାପତ୍ତାପାଇଁ ଡ୍ରାଇଭର ଯାହା କଲେ, ସେହି ପରିସ୍ଥିତିରେ ତାଙ୍କର ସେଭଳି ଆଚରଣ ଯଥାର୍ଥ । ଦେବୋରା କୋର୍ଟକୁ ଗଲେ ନାହିଁ । ଜେଣ୍ଡର ଗୋଷ୍ଠୀ ଚୁପ୍ ରହିଲେ ।

ଭାରତର ପ୍ରଥମ ମହିଳା ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କ ଭଳି ଶ୍ରୀମତୀ ହିଲାରି କ୍ଲିଣ୍ଟନ୍ ନିଜ ପରିଧାନ ବିଷୟରେ ବେଶ ସଂଯତ । କିନ୍ତୁ ନିକଟରେ ରାଷ୍ଟ୍ରପତି ପଦପାଇଁ ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ପ୍ରାର୍ଥୀ ସିନେଟ୍‌ର ବରକ୍ ଓବାମାଙ୍କ ସହ ଜୁଲାଇ ମାସ ଅଠର ତାରିଖ ଦିନ (୨୦୦୭) ବିତର୍କ ବେଳେ ତାଙ୍କ ପୋଷାକ ବେକ ତଳରୁ ବେଶି ଖସି

ଆସିଥିବା ଲକ୍ଷ୍ୟ କରି ରବିନ୍ ଗିଭାନ୍ ନାମକ ଜଣେ ସାମ୍ବାଦିକ ବହୁ ପ୍ରସାରିତ "ୱାସିଂଟନ୍ ପୋଷ୍ଟ" ଖବରକାଗଜରେ ୭୪୬ ଶବ୍ଦର ଲେଖା ଛାପିଛନ୍ତି । ଯୁକ୍ତରାଷ୍ଟ୍ର ଆମେରିକାରେ ପ୍ରଥମ ଥରପାଇଁ ଜଣେ ନାରୀ ରାଷ୍ଟ୍ରପତି ପଦପାଇଁ ଲଢୁଥିବାରୁ ତାଙ୍କ ବେକ ତଳ ଫାଙ୍କ (କ୍ଲିଭେଜ୍) ଉଭୟ ନାରୀତ୍ୱ ଓ ଯୌନତ୍ୱର ସ୍ୱୀକୃତି ବୋଲି ରବିନ୍‌ଙ୍କର ମତ । ସୁଖର କଥା ଏହାଦ୍ୱାରା ଓବାମା ବିଚଳିତ ହୋଇନାହାନ୍ତି ବା ଉପର ବର୍ଣ୍ଣିତ ବସ୍ ଚାଳକଙ୍କ ଭଳି ବ୍ୟବହାର କରିନାହାନ୍ତି ।

ସେହିପରି କିଛିଦିନ ତଳେ ପୂର୍ବତନ ବ୍ରିଟିଶ ପ୍ରଧାନମନ୍ତ୍ରୀ ଟୋନି ବ୍ଲେଆରଙ୍କ ପତ୍ନୀ 'ଚେରି' ଓ ଫ୍ରାନ୍‌ସର ରାଷ୍ଟ୍ରପତି ପଦପାଇଁ ପ୍ରତିଦ୍ୱନ୍ଦ୍ୱିତା କରି ହାରି ଯାଇଥିବା ଚାରୋଟି ସନ୍ତାନର ଜନନୀ, ୫୩ ବର୍ଷ ବୟସ୍କା 'ସେଗୋଲିନ୍ ରୟାଲ୍'ଙ୍କର ବିକିନି ଓ ସୁଇମ୍ ସୁଟ୍ ପିନ୍ଧିଥିବା ଫଟୋ ବ୍ରିଟେନ୍ ଓ ଫ୍ରାନ୍‌ସର ମିଡ଼ିଆରେ ଚର୍ଚ୍ଚାର ବିଷୟ ହୋଇଛି । ଆମ ଦେଶର ପ୍ରଥମ ମହିଳା ରାଷ୍ଟ୍ରପତି ଶ୍ରୀମତୀ ପ୍ରତିଭା ପାଟିଲ୍ ବେଶ ପୋଷାକ ମାମଲାରେ ସର୍ବଦା ସତର୍କ ଓ ସଂଯତ । ଶ୍ରୀମତୀ ଗାନ୍ଧି ସଦାବେଳେ ଲମ୍ବା ଶାଢ଼ି ପିନ୍ଧି ଦେଶ ଓ ବିଦେଶର ସଭା ସମିତିରେ ଯୋଗ ଦେଉଥିଲେ ଏବଂ ଗ୍ରାମାଞ୍ଚଳ ଗସ୍ତ ବେଳେ ମୁଣ୍ଡ ଉପରକୁ ଓଢ଼ଣା ଟାଣି ଦେଉଥିଲେ । ପରିଧାନରେ ଦେଶ କାଳ ପାତ୍ର ଜ୍ଞାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ତେଣୁ ଭାରତର ପୁରାତନ ତୀର୍ଥ ସ୍ଥଳ ପୁଷ୍କରଠାରେ ଯେତେବେଳେ ଫିନ୍‌ଲାଣ୍ଡରୁ ଆସିଥିବା ଜଣେ ଯୁବତୀ ତୀର୍ଥସ୍ଥାନ ପୁଷ୍କର ଘାଟରେ ଉଲଗ୍ନ ସ୍ନାନ ସାରି ସେହି ଅବସ୍ଥାରେ ୩୦୦ ମିଟର ଦୂରରେ ଥିବା ହୋଟେଲ୍‌କୁ ଚାଲିକରି ଗଲେ, ସେଠାରେ ଉପସ୍ଥିତ ଲୋକେ ଲଜ୍ଜାରେ ନିଜ ଦୃଷ୍ଟି ଭୂମି ଉପରେ ରଖିଲେ । ଏହାର କିଛିଦିନ ପୂର୍ବରୁ ଦଳେ ଇସ୍ରାଏଲୀ ଭାରତ ଆସି ହିନ୍ଦୁ ରୀତିରେ ବିବାହ କରିବା ପରେ ବିଚ୍ ବଜାରରେ ନିଜର ଉଲଗ୍ନ କେଳେଙ୍କାରୀ ଆଚରଣଦ୍ୱାରା ସ୍ଥାନୀୟ ଲୋକଙ୍କୁ ଅପ୍ରତିଭ କରି ଦେଇଥିଲେ ।

ପାଶ୍ଚାତ୍ୟ ଦେଶମାନଙ୍କରେ ନଗ୍ନତା ଏକ ଆନ୍ଦୋଳନର ରୂପ ନେଲାଣି । ବିଭିନ୍ନ ଅଞ୍ଚଳରେ 'ନ୍ୟୁଡିଷ୍ଟ ସୋସାଇଟି' ବା ଲଙ୍ଗଳା ସଂଗଠନ ସବୁ ଗଢ଼ି ଉଠିଲାଣି ଏବଂ ଧୀରେ ଧୀରେ ଏ ବ୍ୟାଧି ଭାରତରେ ବି ପହଞ୍ଚିଲାଣି । ଅଳ୍ପ ଓ ଛୋଟ କପଡ଼ା ପିନ୍ଧିବାକୁ ରାଜି ଥିବା ଝିଅମାନଙ୍କୁ ସିନେମା ଜଗତରେ ଆଗ ଏଣ୍ଟ୍ରି ମିଳୁଛି । ମଲ୍ଲିକା ଶେରାୱାତ୍ ଓ ରାକ୍ଷୀ ସାୱନ୍ତଙ୍କ ଭଳି ଝିଅମାନେ ଅର୍ଦ୍ଧନଗ୍ନତାର ଶିଡି ଚଢ଼ି ବଲିଉଡ୍‌ର ସବା ଉପରେ ପହଞ୍ଚିଲେଣି । ଆମେରିକାର ବହୁ ସହରରେ ପୁଅ ପିଲାମାନେ ଅଧା

ପ୍ୟାଣ୍ଟକୁ ବି ଅଣ୍ଟା ତଳକୁ ଖସାଇ ପିନ୍ଧିବାକୁ ପସନ୍ଦ କରୁଛନ୍ତି । ନିଜ ଗାର୍ଲଫ୍ରେଣ୍ଡଙ୍କ ନାଁ ପିଚାରେ ଓ ହାତରେ କମକୁଟାଇବା ଆଉ ଏକ ଫେଶନ ହେଲାଣି ପୁଅ ପିଲାଙ୍କର । ଏବେ ୨୧ ବର୍ଷୀୟ ଇଂଲଣ୍ଡର ରାଜକୁମାର ହ୍ୟାରୀଙ୍କୁ ମିଲିଟାରୀ ପ୍ୟାରେଡ୍ ପୂର୍ବରୁ ଟ୍ରାଉଜର ଖସାଇ ପିଚା ଦେଖାଇବାକୁ ସାଣ୍ଡହର୍ଷ୍ଟ ଏକାଡେମୀର ଜଣେ ଅଫିସର ଆଦେଶ ଦେଇଥିଲେ । ହ୍ୟାରୀ ଭବିଷ୍ୟତରେ ଇଂଲଣ୍ଡର ରାଜା ହେବେ । କିନ୍ତୁ ତାଙ୍କ ଉପରିସ୍ଥ ମିଲିଟାରୀ ଅଫିସର କୁଆଡେ ଶୁଣିବାକୁ ପାଇଲେ ଯେ ହ୍ୟାରୀ ତାଙ୍କ ଗାର୍ଲ ଫ୍ରେଣ୍ଡ ଜିମ୍ବାୱେରେ ଜନ୍ମିତ ଚେଲ୍‌ସି ଡାଭିଙ୍କ ନାଁ ନିଜ ପିଚାରେ ଟାଟୁ କରିଛନ୍ତି । ଦେଶରକ୍ଷା କର୍ମୀଙ୍କୁ କମକୁଟାଇବା ମନା ।

ସେମିତି, ଗତ ମାସରେ ଦିଲ୍ଲୀର ପ୍ରସିଦ୍ଧ ସର୍ଦ୍ଦାର ପଟେଲ୍ ବିଦ୍ୟାଳୟରେ ଆଉ ଏକ ମେଡିକାଲ ରିସର୍ଚ୍ଚ ଟିମ୍ ପିଲାମାନଙ୍କ ଯୌନ ସ୍ୱାସ୍ଥ୍ୟ ପରୀକ୍ଷାପାଇଁ ଟ୍ରାଉଜର କାଢ଼ି ଦେଇଥିବା ଘଟଣାରେ ଅଭିଭାବକମାନେ ଅତ୍ୟନ୍ତ କ୍ଷୁବ୍ଧ ହୋଇ ଯାଇଥିଲେ । କିନ୍ତୁ ପିଲାମାନେ ଇଣ୍ଟରନେଟ୍ ଖୋଲି ଅଶ୍ଳୀଳ, ନଗ୍ନ ଦୃଶ୍ୟ ଦେଖୁଥିବା କଥା ଅନେକ ଅଭିଭାବକଙ୍କୁ ଜଣା ନାହିଁ । ପୃଥିବୀର ବିଭିନ୍ନ ଅଞ୍ଚଳରେ ପ୍ରତିବର୍ଷ ପ୍ରାୟ ୨୦ ହଜାରରୁ ଅଧିକ ଫେଶନ୍ ସୋ ହୁଏ ଏବଂ ପ୍ରାୟ ସବୁ ସୋ ରେ ନାରୀମାନଙ୍କୁ କମ୍ କପଡ଼ା ଓ ପୁରୁଷମାନଙ୍କୁ ଅଧିକ କପଡ଼ା ପିନ୍ଧାଇ ପ୍ରଦର୍ଶନୀରେ ବିକ୍ରି ସାମଗ୍ରୀ ଭଳି ଦେଖାଯାଏ । ବାପା ମା'ଙ୍କ ସହ ଟେଲିଭିଜନ୍ ଆଗରେ ବସି ଆମ ପିଲେ ଏହାକୁ ଦେଖନ୍ତି, ଶିଖନ୍ତି ଓ ଦେଖାନ୍ତି । ପ୍ରାୟ ଉଲଗ୍ନ ଏହି ମଡ଼େଲ୍‌ମାନଙ୍କୁ ଆମ ପିଲେ ପ୍ରକୃତ ଜୀବନରେ ମଡେଲ୍ ଭାବରେ ଗ୍ରହଣ ଓ ଅନୁସରଣ କରନ୍ତି ।

ଏବେ ପୂର୍ବତନ ବିଶ୍ୱ ସୁନ୍ଦରୀ ଅଷ୍ଟ୍ରେଲିଆନ୍ ଜେନିଫର୍ ହକିନ୍‌ସ, ଅଧିକ ପଇସା ଓ ପବ୍ଲିସିଟି ଲୋଭରେ ସେ ଦେଶର ଏକ କ୍ଲାସି ମାଗାଜିନ୍‌ରେ ନିଜର ଉଲଗ୍ନ ଫଟୋ ଛାପିବାକୁ ପ୍ରସ୍ତାବ ଦେଇଥିଲେ । ଏ ଖବର ଶୁଣି ଜଣେ ବିଶିଷ୍ଟ ନାଗରିକ 'ଡେଲି ଟେଲିଗ୍ରାଫ୍' ସମ୍ବାଦପତ୍ର ମାଧ୍ୟମରେ ଜେନିଫରଙ୍କୁ ପରାମର୍ଶ ଦେଇ ଲେଖିଥିଲେ "ଜେନିଫର୍ ପଇସାପାଇଁ, ନିଜର ଲଙ୍ଗଳା ଫଟୋ ଛାପ ନାହିଁ, ଥରେ ମାଗାଜିନ୍‌ରେ ଛପା ହେଲେ, ଆଉ ନିଜର ଉଲଗ୍ନତାକୁ ଲୁଚାଇ ପାରିବ ନାହିଁ । ଭବିଷ୍ୟତରେ ଯେତେବେଳେ ମା' ହେବ, ତମ ସନ୍ତାନ ତୁମର ଏ ଚେହେରା ଦେଖି ଲଜ୍ଜିତ ହେବେ । ଏହା ଏକ ଖରାପ ଉଦାହରଣ ସୃଷ୍ଟି କରିବ । ସବୁ ପିଲେ ନିଜ ମା'ମାନେ ଏପରି ବୋଲି ଭାବିବେ ।" ଜେନିଫର୍ ଏ ପ୍ରସ୍ତାବ ମାନିଲେ କି ନାହିଁ, ଏପର୍ଯ୍ୟନ୍ତ ଜଣା ନାହିଁ ।

ଆମେ ଆଶା କରୁଛୁ ଭାରତୀୟ ବିଶ୍ୱ ସୁନ୍ଦରୀ ଐଶ୍ୱର୍ଯ୍ୟା ରାୟ, ସୁସ୍ମିତା ସେନ୍, ଶିଳ୍ପା ସେଟ୍ଟି, କରୀନା, ଲାରା ଦତ୍ତା, ପ୍ରିୟଙ୍କା ଚୋପ୍ରା ଓ ଅନ୍ୟ ତଥାକଥିତ ସୁନ୍ଦରୀମାନେ; ପରିବାର, ସମାଜ, ଦେଶର କଲ୍ୟାଣପାଇଁ ଏଭଳି ପରାମର୍ଶକୁ ଧ୍ୟାନର ସହ ଶୁଣିବେ । ଆଗାମୀ ଦିନରେ ମଡେଲ୍‌ମାନଙ୍କୁ ନୂଆ ବାଟ ଦେଖାଇବେ । ଏ ମାସରେ ମହିଳାମାନଙ୍କର ବକ୍ଷବସ୍ତ୍ର ଓ ଅଧୋବସ୍ତ୍ର ତିଆରି କରୁଥିବା ବ୍ୟବସାୟୀମାନେ ନ୍ୟୁୟର୍କ ସହରରେ ଏକ ଆନ୍ତର୍ଜାତିକ ଫେଶନ ମେଳା ଆୟୋଜନ କରି ମଡ଼େଲ୍‌ମାନଙ୍କୁ କ୍ଷୁଦ୍ରରୁ କ୍ଷୁଦ୍ର, ସ୍ୱଚ୍ଛ ବ୍ରାସିଅର୍ ଓ ଅଣ୍ଡରଓ୍ୱାର୍ ପିନ୍ଧାଇ ଦର୍ଶକଙ୍କ ଆଗରେ ପ୍ୟାରେଡ୍ କରାଇଥିଲେ । ଛୋଟ ଓ ଟାଇଟ୍ ଜିନ୍ ପୋଷାକ ପିନ୍ଧୁଥିବା ବ୍ୟକ୍ତିଙ୍କ ଉପରେ ଗବେଷଣା କରି ଚିକିତ୍ସା ଓ ଯୌନ ବିଜ୍ଞାନୀମାନେ ଏବେ କହିଲେଣି ଯେ ଏହା ସ୍ତ୍ରୀଙ୍କର ବନ୍ଧ୍ୟାତ୍ୱ ଓ ପୁରୁଷଙ୍କର ନପୁଂସକତା ବଢ଼ାଇବାରେ ସାହାଯ୍ୟ କରେ ।

କପଡ଼ା କମ୍ କରି ଚମଡ଼ାକୁ ଅଧିକ ଦେଖାଇବାପାଇଁ ଏବେ ଏକ ପ୍ରକାର ପ୍ରତିଯୋଗିତା ଚାଲିଲାଣି । ଏହି କାରଣରୁ ମହାରାଷ୍ଟ୍ର ସରକାର ହୋଟେଲ, କ୍ଲବ୍ ଓ ବିଉଟି ପାର୍ଲରରେ ବାର୍ ଗାର୍ଲମାନଙ୍କ ଅର୍ଦ୍ଧନଗ୍ନ ନୃତ୍ୟକୁ ବେଆଇନ୍ ଘୋଷଣା କରିଛନ୍ତି । ନାରୀର ଲଜ୍ଜା ନିବାରଣପାଇଁ କେତେ ବସ୍ତ୍ର ଆବଶ୍ୟକ ସେ ବିଷୟକୁ ନେଇ ପୃଥିବୀ ଏବେ ଦୁଇ ଭାଗରେ ବିଭକ୍ତ ହେଲାଣି । ଏକ ଦିଗରେ ବୁର୍ଖା ପିନ୍ଧାଇ ନାରୀର ଶରୀରକୁ ସମ୍ପୂର୍ଣ୍ଣ ଘୋଡ଼ାଇ ରଖିବାପାଇଁ ଉଦ୍ୟମ ଚାଲିଥିଲା ବେଳେ ଅନ୍ୟ ଦିଗରେ ଉଲଗ୍ନତାକୁ ଆଧୁନିକତାର ନାମ ଦେଇ ଉତ୍ସାହିତ କରାଯାଉଛି । ଯେଉଁ ବସ୍ତ୍ର ମଣିଷ ଓ ପଶୁ ମଧ୍ୟରେ ଥିବା ପାର୍ଥକ୍ୟର ଚିହ୍ନ ଥିଲା, ଏବେ ତାକୁ ଶରୀରରୁ ହଟାଇ ପଶୁତ୍ୱ ଆଡ଼କୁ ପୁଣି ଥରେ ଫେରିଯିବାପାଇଁ ପ୍ରଚେଷ୍ଟା ଜାରି ରହିଛି । ଚମଡ଼ା ଓ କପଡ଼ା ମଧ୍ୟରେ ଲାଗିଥିବା ଲଢ଼େଇରେ, ମାନବ ସଭ୍ୟତା ଏବେ କ୍ଷତ ବିକ୍ଷତ ଓ ଉଲଗ୍ନ ହେଲାଣି । ଏହାର କୁପରିଣାମ ବିଷୟରେ ଆଜିଠାରୁ ବିଚାର ନ କଲେ, ବହୁତ ବିଳମ୍ବ ହୋଇଯିବ ଓ ଲେଡ଼ିଗୁଡ଼ କାହାଣୀକୁ ବହିଯିବ ।

*୨୦ ସେପ୍ଟେମ୍ବର, ୨୦୦୬*



# ଅର୍ଦ୍ଧ ଉଲଗ୍ନଙ୍କ ସଭ୍ୟତା

୧୯୬୪ ମସିହା ମାର୍ଚ୍ଚ ମାସରେ ନ୍ୟୁୟର୍କ ସହରର ଜଣେ ବାୟୋଲୋଜି ଅଧ୍ୟାପକ ଡକ୍ଟର ଲିଓକୋଚ୍ ନଗ୍ନତାକୁ ପ୍ରକୃତ ସଭ୍ୟତାର ସଂଜ୍ଞା ଦେଇ ସେତେବେଳେ କିଶୋର କିଶୋରୀଙ୍କୁ ବେଶ୍ ପ୍ରଭାବିତ କରିଥିଲେ । ଏହାପରେ ଗଢ଼ା ହେଲା 'ଇଷ୍ଟ୍ ବେ ସେକ୍ସୁଆଲ ଫ୍ରିଡ଼ମ୍ ଲିଗ୍' । ଏହାର ପ୍ରବକ୍ତା ୨୯ ବର୍ଷୀୟ ରିଚାର୍ଡ ଥୋମ୍ ଘୋଷଣା କଲେ ଯେ ଯେଉଁଦିନ ମଣିଷ ପିନ୍ଧା ଲୁଗା ବା ପୋଷାକ ପରିତ୍ୟାଗ କରିବ ସେଦିନ ହେବ ମାନବ ସମାଜର ପ୍ରକୃତ ସ୍ୱାଧୀନତା ଦିବସ । ହିପିମାନେ ସେତେବେଳେ ଏହାକୁ ସମର୍ଥନ କରି ସେଇଭଳି ଆଚରଣ ପ୍ରଦର୍ଶନ କରୁଥିଲେ । କିନ୍ତୁ ପାଶ୍ଚାତ୍ୟ ସଭ୍ୟତାର ମୁଖ୍ୟଧାରାରେ ଥିବା ଲୋକେ ଏହାକୁ କେବେହେଲେ ସମର୍ଥନ ବା ସ୍ୱୀକୃତି ଦେଇନାହାନ୍ତି ।

ତେଣୁ ୨୦୦୩ ମସିହାରେ କିଶୋର କିଶୋରୀମାନେ ଯେତେବେଳେ ଫ୍ଲୋରିଡ଼ା ନଗରୀରେ ଉଲଗ୍ନ ଗ୍ରୀଷ୍ମ ଶିବିର ସ୍ଥାପନ କଲେ, ସମଗ୍ର ଆମେରିକୀୟ ସମାଜ ଏହାର ପ୍ରତିବାଦ କରିଥିଲା । ଜୁଲାଇ ୬ ତାରିଖ ଦିନ ଭର୍ମଣ୍ଟ ସହରରେ ଜଣେ ୬୮ ବର୍ଷୀୟ ବ୍ୟକ୍ତି ଉଲଗ୍ନ ହୋଇ ବଜାରରେ ବୁଲୁଥିବା ଦେଖି ନାଗରିକମାନେ କ୍ଷୁବ୍ଧ ହୋଇଥିଲେ । ଇଟାଲୀର ସହରମାନଙ୍କରେ ଏବେ 'ଟୁଚି ନ୍ୟୁଡ଼ି' ବା ସମସ୍ତେ ଲଙ୍ଗଳା ନାମକ ରାତି ଅଧିଆ ନାଇଟ୍ ସୋ'ର ଲୋକପ୍ରିୟତା ଦେଖି ସରକାର ଚିନ୍ତିତ ହୋଇ ପଡ଼ିଲେଣି । ଆମେରିକା ଓ ୟୁରୋପର ବିଭିନ୍ନ ରାଜ୍ୟରେ ଏବେ ସାର୍ବଜନୀନ ନଗ୍ନତା ବିରୋଧରେ ଲୋକେ ପ୍ରତିବାଦ କଲେଣି ଓ ଏହାକୁ ବନ୍ଦ କରିବାପାଇଁ ଆଇନ୍‌ଗତ ପଦକ୍ଷେପ ନେବାକୁ  ଦାବି ହେଲାଣି ।

ଏବେ ଏକ ଅଧ୍ୟୟନରୁ ଜଣାପଡ଼ିଛି ଯେ ଭାରତର ବିଭିନ୍ନ ସହର ଓ ନଗରମାନଙ୍କରେ କମ୍ କପଡ଼ା ପିନ୍ଧୁଥିବା ଝିଅମାନେ ଅଧିକ ଧର୍ଷଣର ଶିକାର

ହେଉଛନ୍ତି । ଏ ବର୍ଷ (୨୦୦୮) ଆଇସିଏମ୍ ଓ ଆମନେଷ୍ଟି ଇଣ୍ଟରନାସନାଲ୍ ପକ୍ଷରୁ କରାଯାଇଥିବା ଅନ୍ୟ ଏକ ଅଧ୍ୟୟନରୁ ଜଣାପଡ଼େ ଯେ, ଇଂଲଣ୍ଡର ଏକ ତୃତୀୟାଂଶ ପୁରୁଷ ଓ ମହିଳା ବିଶ୍ୱାସ କରନ୍ତି କି ନାରୀର ଆଚରଣ ଓ ବେଶ ପୋଷାକ ଧର୍ଷଣର ଅନ୍ୟ ଏକ କାରଣ । ଏହି ରିପୋର୍ଟକୁ ବିଭିନ୍ନ ମହିଳା ସଂଗଠନ ବିରୋଧ କରିଥିଲେ ମଧ ଅନେକ ମହିଳା ସମର୍ଥନ ବି କରିଛନ୍ତି । ଟେକ୍ସାସ ବିଶ୍ୱବିଦ୍ୟାଳୟର ଆଉ ଏକ ଅଧ୍ୟୟନର ନିର୍ଯ୍ୟାସ କହେ, ନାରୀର ବକ୍ଷ (କିଲର୍ କର୍ଭ) ଓ ନିତମ୍ବ ଯୁଗେ ଯୁଗେ ପୁରୁଷକୁ ଆକର୍ଷିତ କରିଥାଏ, ତେଣୁ ଏହାର ନଗ୍ନତା ସଦାବେଳେ ନାରୀ ପ୍ରତି ବିପଦ ଆଣିଥାଏ । କିନ୍ତୁ କେତେକ ନାରୀ ଏହା ମାଧମରେ ପୁରୁଷକୁ ଆକୃଷ୍ଟ କରିବାପାଇଁ ଅଜାଣତରେ ଇଚ୍ଛା କରିଥାନ୍ତି । ଦେହକୁ ଚାପି ଧରି ବାହ୍ୟ ଆକାରକୁ ଠିକ୍ ଭାବେ ପ୍ରଦର୍ଶନ କରୁଥିବା ଅନ୍ତର୍ବସ୍ତ୍ର ଏବେ ବଜାରରେ ବେଶ୍ ଲୋକପ୍ରିୟ । ଏପରି ଚିପା ବସ୍ତ୍ର ଏବେ ନବଯୁବକମାନଙ୍କ ମଧରେ ବି ଆଦୃତ ହେଲାଣି ।

ଇରାନ୍‌ରେ ନବଯୁବତୀମାନେ ଛୋଟ କପଡ଼ା ପ୍ରତି ବିଶେଷ ଆକୃଷ୍ଟ ହେଉଥିବା ଲକ୍ଷ୍ୟ କରି ଜୁଲାଇ ୨୩ ତାରିଖରୁ ତେହେରାନ୍‌ର ରେସ୍ତୋରାଁ, ପାର୍କ, ବିଶ୍ୱବିଦ୍ୟାଳୟ ମାନଙ୍କରେ ପୁଲିସ୍ ମୁତୟନ କରାଯାଇ ମହିଳାମାନଙ୍କୁ ମୁଣ୍ଡରେ ଓଢ଼ଣୀ ଓ ବୁର୍ଖା ପରିଧାନପାଇଁ ଚାପ ପ୍ରୟୋଗ କରାଯାଉଛି । ମହିଳା ଟୁରିଷ୍ଟମାନଙ୍କପାଇଁ ତାଙ୍କ ଦେଶର ବିଦେଶ ମନ୍ତ୍ରଣାଳୟ ପରାମର୍ଶ ଦେଇ କହନ୍ତି ଯେ, ବିଦେଶରେ ସର୍ବଦା ନିଜର ବକ୍ଷ ଓ ପୃଷ୍ଠ ଭାଗକୁ ଆବୃତ ରଖ । ଏହା ନ କଲେ ବିପଦରେ ପଡ଼ିପାର । ଆଫଗାନିସ୍ତାନ, ପାକିସ୍ତାନରେ ଚରମପନ୍ଥୀ ତାଲିବାନ୍ ଓ କାଶ୍ମୀରରେ ଦୁଃଖତାରଣ ସଂସ୍ଥା ମହିଳାଙ୍କୁ ଇସ୍‌ଲାମୀୟ ପୋଷାକ ପିନ୍ଧିବାକୁ ବାଧ କରିବାକୁ ଫତୁଆ ଜାରି କରିଛନ୍ତି । ଯେଉଁ ମହିଳାଙ୍କ ପୋଷାକ ଆଣ୍ଠୁ ଉପର ପର୍ଯ୍ୟନ୍ତ ଥିବ ଓ କେଶବିନ୍ୟାସ ବାହାରକୁ ଦେଖା ଯାଉଥିବ ସେମାନଙ୍କୁ ପ୍ରଥମେ ତାଗିଦ୍ ଓ ତା'ପରେ ହାଜତକୁ ନିଆଯାଉଛି । ଏହା ଅଳ୍ପ ନୁହେଁ, ଅତି କପଡ଼ାର ଏକ ଉଦାହରଣ ।

ଦିଲ୍ଲୀରେ ଛୋଟ କପଡ଼ା ପିନ୍ଧି ସ୍ୱଚ୍ଛନ୍ଦରେ ବୁଲୁଥିବା ଉତ୍ତର-ପୂର୍ବାଞ୍ଚଳର ଝିଅମାନେ କ୍ରମାଗତ ଭାବରେ ଧର୍ଷଣର ଶିକାର ହେଉଥିବାରୁ ଏବେ ଅରୁଣାଚଳ କ୍ୟାଡରର ଜଣେ ବରିଷ୍ଠ ଆଇପିଏସ୍ ଅଫିସର ରବିନ୍ ହିବୁ ଏଭ ଝିଅଙ୍କପାଇଁ ଏକ ଆଚରଣବିଧି ପୁସ୍ତିକା ପ୍ରକାଶ କରି ସମାଲୋଚନାର ଶରବ୍ୟ ହୋଇଛନ୍ତି । ଏହି ପୁସ୍ତିକାରେ ସେ ନିଜ ଅଞ୍ଚଳର ଝିଅମାନଙ୍କୁ ପରାମର୍ଶ ଦେଇ ଲେଖିଛନ୍ତି "ଉନ୍ମୁକ୍ତ ଓ ଦୃଶ୍ୟମାନ ଛୋଟିଆ ପୋଷାକ ପିନ୍ଧ ନାହିଁ ଏବଂ ପିନ୍ଧି ନିର୍ଜନ ଗଳିରେ ଯାଅ ନାହିଁ, ଏହାଦ୍ୱାରା ଅନ୍ୟମାନେ ତୁମ ପ୍ରତି

ଅଯଥା ଆକୃଷ୍ଟ ହେବେ ଓ ଅଘଟଣ ଘଟିବାର ସମ୍ଭାବନା ସୃଷ୍ଟି ହେବ। ଯେଉଁ ଜାଗାରେ ଅଛ ସେଠା ଲୋକଙ୍କ ସଂସ୍କୃତି ଓ ସ୍ପର୍ଶକାତରତାକୁ ସମ୍ମାନ ଦିଅ, ଯେପରି ଚଳିଲେ ସେମାନେ କ୍ଷୁବ୍ଧ ହେବେ ନାହିଁ, ସେପରି ଚଳ ଓ ସତର୍କ ରୁହ ।" ହିବୁଙ୍କ ପରାମର୍ଶ ବହୁ ଝିଅଙ୍କୁ ଭଲ ଲାଗିଲା ନାହିଁ । ଏବେ ସେମାନେ ହିବୁଙ୍କୁ ସମାଲୋଚନା କରି କହୁଛନ୍ତି ଆମେ କ'ଣ ପିନ୍ଧିବୁ, କ'ଣ ଖାଇବୁ, କେଉଁଠିକି କେଉଁ ବାଟରେ ଯିବୁ ନ ଯିବୁ ସେ ବିଷୟରେ ପରାମର୍ଶ ଦେବା ହିବୁଙ୍କର ଅଧିକାର ବହିର୍ଭୂତ ବିଷୟ । ତେଣୁ କମ୍ କପଡ଼ା ଓ ବେଶି ଚମଡ଼ା ସଶକ୍ତୀକରଣର ଆଉ ଏକ ଚିହ୍ନ ଓ ଚେହେରା ହେଲାଣି ।

ଶାଢ଼ି, ସାଲୱାର କାମିଜ ବଜାରରୁ ଅଳ୍ପ ଦିନରେ ବିଦାୟ ନେବେ । ଓଢ଼ଣୀ ବା ଦୁପଟ୍ଟାକୁ ମହାନଗରୀର ମହିଳାମାନେ କେବେଠୁ ଫିଙ୍ଗି ଦେଲେଣି । ଏବେ ସେଗୁଡ଼ିକ ଛୋଟ ସହର ଓ ଗ୍ରାମାଞ୍ଚଳରେ ବଞ୍ଚି ରହିଛନ୍ତି । ଚୀନ୍, ଭିଏତ୍‌ନାମ ଭଳି ସାମ୍ୟବାଦୀ ଓ ଶୃଙ୍ଖଳିତ ଦେଶମାନଙ୍କରେ ମଧ୍ୟ ଏହିଭଳି ଅବସ୍ଥା । ବେଜିଂ ଓ ହୋ ଚି ମିନ୍ ସିଟିରେ ପୁଅ ଝିଅଙ୍କ ନଗ୍ନ ଆଚରଣ ରୋକିବାପାଇଁ କ୍ଲୋଜ୍ ସର୍କିଟ୍ ଟିଭି କ୍ୟାମେରା ଲଗାଗଲାଣି । ଯିଏ ନିଜେ ଲଙ୍ଗଳା ହୋଇ ନାଚିବାକୁ ଚାହିଁବେ, ତାଙ୍କୁ କିଏ ଲୁଗା ପିନ୍ଧାଇବ ?

ଯୌନ ଉଦ୍ଦୀପକ ବେଶ ପୋଷାକ, ଟିଭି, ମୁଭି ଓ ସଙ୍ଗୀତ, କାନ୍ଥ ବାଡ଼ରେ ଲଙ୍ଗଳା ପୋଷ୍ଟର ବନ୍ଦ କରିବାପାଇଁ ଉଦ୍ୟମ ମିଡ଼ିଆ ଅସହଯୋଗରୁ ସଫଳ ହୋଇପାରୁ ନାହିଁ । ଫିଲ୍ମ ସେନ୍‌ସର ବୋର୍ଡ ମଧ୍ୟ ଏ ବିଷୟରେ ଏକମତ ହୋଇପାରୁ ନାହାନ୍ତି । ବିଭିନ୍ନ ମୁନିଙ୍କର ଭିନ୍ନ ଭିନ୍ନ ମତ । ଏବେ ସୂଚନା ପ୍ରସାରଣ ମନ୍ତ୍ରଣାଳୟର ଏକ ଉଦ୍ୟମ ଓ ତତ୍ ସମ୍ପର୍କିତ ବିଲ୍ ସହମତି ଅଭାବରୁ ପଡ଼ିରହିଛି । ମହିଳା ସଂଗଠନମାନେ ଶରୀର ବ୍ୟବସାୟୀକରଣକୁ ବିରୋଧ କରୁଥିବା ବେଳେ, କମ୍ କପଡ଼ା ପିନ୍ଧି ଅଧିକ ଚମଡ଼ା ପ୍ରଦର୍ଶନ କରୁଥିବା ଆଚରଣର ଏ ପର୍ଯ୍ୟନ୍ତ ନିନ୍ଦା ବା ପ୍ରତିବାଦ କରିନାହାନ୍ତି ।

ଆଗେ ଆଡଭର୍ଟାଇଜିଂ କମ୍ପାନିମାନେ ଗୃହିଣୀମାନଙ୍କୁ ଟାର୍ଗେଟ୍ କରୁଥିଲେ, ଏବେ ଏମାନେ କିଶୋରୀମାନଙ୍କ ଶରୀର ଓ ଚମଡ଼ାକୁ ଟାର୍ଗେଟ୍ କଲେଣି । ତ୍ୱଚାକୁ ସୁନ୍ଦର, କୋମଳ ଓ ଆକର୍ଷଣୀୟ କରିବାପାଇଁ ବିଭିନ୍ନ ଲୋସନ୍ ଓ ମଲମର ବାର୍ଷିକ ମାର୍କେଟ୍ ମୂଲ୍ୟ ଆଠଶହ କୋଟି ଟଙ୍କା । ଆଡଭର୍ଟାଇଜର୍‌ମାନେ ଆଉ ଭାରତୀୟ ମହିଳାଙ୍କ ସ୍ୱଭାବ ସୁଲଭ ଗୁଣ ଉପରେ ଗୁରୁତ୍ୱ ନ ଦେଇ ସେମାନଙ୍କୁ କେବଳ ଏକ ଶାରୀରିକ ପ୍ରାଣୀ ଭାବରେ ଦେଖାଉଛନ୍ତି । ଅନେକ ଝିଅ ଏହାକୁ ସତ ଭାବି ସେଇ ମାନସିକତାରେ

ନିଜକୁ ବନ୍ଦୀ କରିଦେଲେଣି । ପ୍ରଚାରଦ୍ୱାରା ସେମାନଙ୍କୁ ଆଗେ ନିଜ ଶରୀରକୁ ଘୃଣା କରିବାକୁ ଶିଖା ଯାଉଛି ଏବଂ କେବଳ କସ୍‌ମେଟିକ୍‌ସ ମାଧ୍ୟମରେ ପୁଣି ସେହି ଶରୀରକୁ ଭଲ ପାଇବାକୁ କୁହାଯାଉଛି ।

କପଡ଼ା ଛୋଟ କଲେ ଗାର୍ମେଣ୍ଟ ଓ ଦ୍ରବ୍ୟ ବ୍ୟବସାୟୀ ଉଭୟଙ୍କର ମାର୍କେଟ୍ ଭଲ ଚାଲିବ । ସଭ୍ୟତା, ସଂସ୍କୃତି ଚୁଲୀକୁ ଯାଉ । ଯେଉଁମାନେ ପ୍ରତିବାଦ କରୁଛନ୍ତି ତାଙ୍କୁ ମୌଳବାଦୀ ଓ ମୋରାଲ୍ ପୋଲିସ୍ କହି ଗାଳି ଦିଆଯାଉଛି । ଶ୍ରୀକୃଷ୍ଣ ତାଙ୍କ କୈଶୋର କାଳରେ ଲଙ୍ଗଳା ହୋଇ ଯମୁନାରେ ଗାଧୋଉଥିବା ଗୋପୀମାନଙ୍କୁ ଉଚିତ୍ ଶିକ୍ଷା ଦେବା ପାଇଁ କୂଳରେ ପଡ଼ିଥିବା ସେମାନଙ୍କ କପଡ଼ାକୁ ଡାଳ ଉପରେ ନେଇ ଥୋଇଥିଲେ । ପରବର୍ତ୍ତୀ କାଳରେ କୁରୁସଭାରେ ଯେତେବେଳେ ଦ୍ରୌପଦୀଙ୍କର ବସ୍ତ୍ରହରଣପାଇଁ ଉଦ୍ୟମ ହୋଇଥିଲା, ପୀତବାସ ଦେବକୀନନ୍ଦନ କୋଟିବସ୍ତ୍ର ଦେଇ ଦ୍ରୌପଦୀଙ୍କର ଲଜ୍ଜା ନିବାରଣ କରିଥିଲେ । ଏବେ ଆମେ ନିଜେ ନଗ୍ନତା ଆଡ଼କୁ ଧାଇଁଲେଣି । ତେଣୁ ଲଜ୍ଜାବାରଣ ଆଉ ଆବଶ୍ୟକ ପଡୁନି ।

ନୃତତ୍ତ୍ୱବିତ୍‌ମାନେ କହନ୍ତି ପ୍ରାୟ ୫୦ ହଜାରରୁ ୭୦ ହଜାର ବର୍ଷ ତଳେ ମଣିଷ ବସ୍ତ୍ର ପିନ୍ଧିବା ବା ନିଜକୁ ଆବରଣ କରିବା ଆରମ୍ଭ କରିଥିଲା । ବିବର୍ତ୍ତନ ପ୍ରକ୍ରିୟାରେ ଯେତେବେଳେ ମଣିଷ ଦେହରୁ ଅଧିକାଂଶ ବାଳ ଝଡ଼ିଗଲା ସେତେବେଳେ ଶୀତପ୍ରଧାନ ଅଞ୍ଚଳରେ ପ୍ରଥମେ ଶରୀରକୁ ଆବୃତ କରିବା ଉଦ୍ୟମ ଆରମ୍ଭ ହୋଇଥିଲା । ପରବର୍ତ୍ତୀ କାଳରେ ବସ୍ତ୍ର ଲଜ୍ଜା ନିବାରଣପାଇଁ ବ୍ୟବହୃତ ହେଲା ଓ କ୍ରମେ ମାନବ ସଭ୍ୟତାର ଅବିଚ୍ଛେଦ୍ୟ ଅଙ୍ଗ ହୋଇଗଲା । ପରିବେଶକୁ ଖାପ ଖୁଆଇ ଭିନ୍ନ ଭିନ୍ନ କପଡ଼ା ଲୋକେ ପିନ୍ଧିଲେ । ପ୍ରଥମ ଅବସ୍ଥାରେ ଝିଅ ପୁଅଙ୍କ କପଡ଼ା ଗୋଟିଏ ପ୍ରକାରର ଥିଲା । ଭାରତରେ ତ ଶାଢ଼ି ଓ ଧୋତି ୧୨-୧୪ ଫୁଟ ଲମ୍ବର ମାତ୍ର ଖଣ୍ଡିଏ ଲେଖାଏଁ କପଡ଼ାକୁ ଲୋକେ ପିନ୍ଧୁଥିଲେ । ଅନେକ ଅଞ୍ଚଳରେ ଲୋକଙ୍କୁ ଲମ୍ବ ଓସାର ଥିବା କପଡ଼ା ମିଳୁନଥିଲା । ସାଧୁ ସନ୍ନ୍ୟାସୀମାନେ କପଡ଼ା ଉପରେ ଗୁରୁତ୍ୱ ଦେଉ ନ ଥିଲେ । ମହାତ୍ମା ଗାନ୍ଧି ଓଡ଼ିଶାର ଦାରିଦ୍ର୍ୟ ଦେଖିଲା ପରେ ନିଜ କପଡ଼ାକୁ ଛୋଟ କରି ଦେଇଥିଲେ । ତେଣୁ ଚର୍ଚ୍ଚିଲ୍ ତାଙ୍କ ନାଁ ଦେଇଥିଲେ 'ଅର୍ଦ୍ଧ ଉଲଗ୍ନ ଫକୀର' ବା ହାଫ୍ ନେକେଡ୍ ଫକୀର । ଏବେ ଅମୀର ଘର ପିଲାମାନେ ହାଫ୍ ନେକେଡ୍ ଫକୀର ହୋଇ ଡେଇଁଲେଣି ।

*୧୦ ଅକ୍ଟୋବର, ୨୦୦୭*



# 'ସାତୁ ବଂଶା, ସାତୁ ବାହାଷା, ସାତୁ ଦେଶା'

ପ୍ରାୟ ପନ୍ଦର ବର୍ଷ ତଳର କଥା । ସେତେବେଳେ ଭାରତ ସରକାରଙ୍କ ମାନବ ସମ୍ବଳ, ଯୁବ ଓ କ୍ରୀଡ଼ା ମନ୍ତ୍ରାଳୟରେ ପରାମର୍ଶଦାତା ଭାବରେ କାମ କରୁଥାଏ ଓ ଏହା ସହିତ "ୟୁନିଭରସିଟି ଟକ୍ ଏଡ୍‌ସ" ବା ବିଶ୍ୱବିଦ୍ୟାଳୟରେ ଏଡ୍‌ସ ଚର୍ଚ୍ଚା ନାମକ (ୟୁଟିଏ) ଏକ ରାଷ୍ଟ୍ରୀୟ ଯୁବ ଜାଗରଣ ଆନ୍ଦୋଳନର ରାଷ୍ଟ୍ରୀୟ ସଂଯୋଜନା ଦାୟିତ୍ୱରେ ଥାଏ । ଦେଶର ୧୯୦ଟି ବିଶ୍ୱବିଦ୍ୟାଳୟର ପ୍ରାୟ କୋଡ଼ିଏ ଲକ୍ଷ ଛାତ୍ର ଛାତ୍ରୀ ଏହି ସୂଚନା ଓ ଶିକ୍ଷା ଅଭିଯାନରେ ସାମିଲ ହୋଇ ସାରା ଦେଶରେ 'ଏଚ୍‌ଆଇଭି ଏବଂ ଏଡ୍‌ସ' ସମ୍ପର୍କରେ ସମାଜକୁ ସଚେତନ କରୁଥାନ୍ତି । ଦୁଇବର୍ଷ ଭିତରେ ଏହାର ଲୋକପ୍ରିୟତା ଓ ସଫଳତାରେ ପ୍ରଭାବିତ ହୋଇ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଏହାକୁ ପୃଥିବୀର ଏକ 'ବେଷ୍ଟ ପ୍ରାକ୍ଟିସ୍' ବୋଲି ଘୋଷଣା କରିବା ସଙ୍ଗେସଙ୍ଗେ ମତେ ପ୍ରଥମେ ଆମ୍‌ଷ୍ଟରଡାମ୍ ବିଶ୍ୱ ସମ୍ମିଳନୀ, ତା'ପରେ ବର୍ଲିନ୍ ବିଶ୍ୱ ସମ୍ମିଳନୀ ଏବଂ ଶେଷରେ ଦକ୍ଷିଣ ପୂର୍ବ ଏସିଆରେ ଏଡ୍‌ସ ଉପରେ କାମ କରୁଥିବା ଉଚ୍ଚ ପଦାଧିକାରୀମାନଙ୍କ ସମ୍ମିଳନୀରେ କହିବାକୁ ଡାକିଥିଲେ । ଶେଷ ସମ୍ମିଳନୀରେ ଇଣ୍ଡୋନେସିଆରୁ ଡବ୍ଲ୍ୟୁଏଚ୍‌ଓ ତରଫରୁ ଶ୍ରୀ ଜର୍ଜ ଲୋଥ୍ ଯୋଗ ଦେଇଥିଲେ । ୨୦ ଲକ୍ଷ ଛାତ୍ରଛାତ୍ରୀ ଓ ଅଧ୍ୟାପକ ବିନା ପଇସାରେ ଏହି ଶିକ୍ଷା ଓ ସୂଚନା ଆନ୍ଦୋଳନରେ କାମ କରୁଥିବା ଶୁଣି ସେ ସମ୍ପୂର୍ଣ୍ଣ ଆଶ୍ଚର୍ଯ୍ୟ ହୋଇଯାଇଥିଲେ ଓ ଇଣ୍ଡୋନେସିଆରେ ଏପରି ଏକ ଜାତୀୟ ଯୁବ-ଜାଗରଣର ଖସଡ଼ା ଓ ଯୋଜନା ପ୍ରସ୍ତୁତିରେ ମୁଁ ସାହାଯ୍ୟ କରିପାରିବି କି ବୋଲି ପଚାରିଥିଲେ । ମୁଁ କହିଲି ଆପଣ ଭାରତ ସରକାରଙ୍କୁ ପଚାରନ୍ତୁ । ଏହି ଘଟଣାର ତିନି ମାସ ଭିତରେ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଭାରତର ସ୍ୱାସ୍ଥ୍ୟ ମନ୍ତ୍ରାଳୟ ଓ ଯୁବ କଲ୍ୟାଣ

ମନ୍ତ୍ରାଳୟ ସହ ସମ୍ପର୍କ ରଖି ମତେ ଇଣ୍ଡୋନେସିଆରେ ପରାମର୍ଶଦାତା ଭାବରେ କାମ କରିବାକୁ ଅଫର୍ ଲେଟର ପଠାଇଦେଲେ ।

୧୯୯୫ ମସିହା ମେ ମାସରେ ମୁଁ ଏୟାର ଇଣ୍ଡିଆର ଏକ ବିମାନରେ ଯାଇ ଜାକର୍ତାର ସୁବର୍ଣ୍ଣପୁର ହାଟା ଆନ୍ତର୍ଜାତିକ ବିମାନ ବନ୍ଦରରେ ଓହ୍ଲାଇଲି । ଏୟାରପୋର୍ଟରୁ ମତେ ନେବାପାଇଁ ସେଠାକାର ଶିକ୍ଷା ମନ୍ତ୍ରାଳୟ ଜଣେ ପଦସ୍ଥ କର୍ମଚାରୀ ଓ ଗାଡି ପଠାଇଥିଲେ । ଗାଡିରେ ବସିଲା ପରେ ଡ୍ରାଇଭରଙ୍କୁ ପଚାରିଲି 'ତମ ନାଁ କ'ଣ ?' କହିଲେ 'ରାମ ଅହମ୍ମଦ' । ଇଣ୍ଡୋନେସିଆରେ ଏହା ଏକ ପୁରାତନ ପରମ୍ପରା । ଏଠାରେ ଶତକଡା ୮୫ ଭାଗ ଲୋକ ମୁସଲମାନ, କିନ୍ତୁ ଧର୍ମ ପରିବର୍ତ୍ତନ ପରେ ବି ନାମ ପରିବର୍ତ୍ତନ କରିନାହାନ୍ତି । ତେଣୁ ଅନେକ ନାମ ହିନ୍ଦୁ ଓ ଭାରତୀୟ ନାଁ ଭଳି ଶୁଭେ । ପ୍ରାୟ ହଜାରେ ବର୍ଷ କାଳ ସାମୁଦ୍ରିକ ବାଣିଜ୍ୟରେ ସମ୍ପୃକ୍ତ ଥିବାରୁ ଇଣ୍ଡୋନେସିଆର ଲୋକେ ବିଭିନ୍ନ ଦେଶ, ଭାଷା ଓ ସଂସ୍କୃତିଦ୍ୱାରା ପ୍ରଭାବିତ । ଡଚ୍ ଇଷ୍ଟଇଣ୍ଡିଆ କମ୍ପାନୀ, ୧୫୯୫ରେ ଓ ତା'ପରେ ୟୁରୋପୀୟମାନେ ଏ ଦେଶର ବାଣିଜ୍ୟ ବ୍ୟବସାୟକୁ କବ୍‌ଜା କଲେ । ଏହା ପୂର୍ବରୁ ତ୍ରୟୋଦଶ ଶତାବ୍ଦୀରେ ଇଣ୍ଡୋନେସିଆ ଇସ୍‌ଲାମ ପ୍ରଭାବାଧୀନ ହେଲା । ଏବଂ ତତ୍‌ପୂର୍ବରୁ ଏ ଦେଶର ଅଧିକାଂଶ ଲୋକ ହିନ୍ଦୁ ଓ ବୌଦ୍ଧ ଧର୍ମାବଲମ୍ବୀ ଥିଲେ ।

ଅଷ୍ଟମ ଶତାବ୍ଦୀରୁ ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ୫୦୦ ବର୍ଷ କାଳ ଏଠାରେ 'ଶ୍ରୀବିଜୟ' ଓ 'ମହାପାହିତ' ନାମକ ଦୁଇଟି ସାମ୍ରାଜ୍ୟର ଶାସନ ଥିଲା । ପ୍ରଥମଟି ହିନ୍ଦୁ ଓ ଦ୍ୱିତୀୟଟି ବୌଦ୍ଧ । ତେଣୁ ହିନ୍ଦୁ ଓ ବୌଦ୍ଧ ସଂସ୍କୃତିର ଅନେକ ଚିହ୍ନ ଏ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଛି । ଏୟାରପୋର୍ଟରୁ ହୋଟେଲ୍ ଯିବା ରାସ୍ତାରେ ଏକ ବଡ ଛକ ଉପରେ ନଜର ପଡିଲା ମାତ୍ରେ ରାମ ଅହମ୍ମଦକୁ ଗାଡି ରଖିବାକୁ କହିଲି । ଛକଟିର ନାଁ ହେଲା 'ଅର୍ଜୁନ-ବିଷାଦ ଯୋଗ ଛକ' ଏବଂ ଏହି ଗୋଲେଇ ଭିତରେ ଏକ ବିରାଟ ରଥ ପାଖରେ ପାଞ୍ଚଜନ୍ୟ ଶଙ୍ଖ ହାତରେ ଧରି ଶ୍ରୀକୃଷ୍ଣ ବିଷାଦଗ୍ରସ୍ତ ଅର୍ଜୁନଙ୍କୁ ମହାଭାରତ ଯୁଦ୍ଧ କ୍ଷେତ୍ରରେ ଗୀତା ଉପଦେଶ ଦେଉଥିବାର ସୁନ୍ଦର ପ୍ରସ୍ତର ମୂର୍ତ୍ତି । ଭାରତର ଛୋଟ ବଡ଼ ପାଞ୍ଚ ହଜାର ସହରର କୌଣସି ଛକରେ ଏପରି ଦୃଶ୍ୟ ଦେଖିବାକୁ ମିଳିବ ନାହିଁ । କାର୍ ଭିତରେ ମୋ ପାଖରେ ବସିଥିବା ମହିଳା ଶ୍ରୀମତୀ 'ବୁପୁର୍'ଙ୍କୁ ପଚାରିବାରୁ କହିଲେ "ଆମ ଦେଶରେ ରାମାୟଣ, ମହାଭାରତ ଓ ଏହାର ନାୟକ ଶ୍ରୀରାମ ଓ ଶ୍ରୀକୃଷ୍ଣ ଅତ୍ୟନ୍ତ ଲୋକପ୍ରିୟ । ଦେଶର ଅନେକ ଅଞ୍ଚଳରେ ରାମଲୀଳା ଓ କୃଷ୍ଣଲୀଳା ଲୋକେ ସାରା ରାତି ଉଜାଗର ରହି ଦେଖନ୍ତି । ଆମେ ରାମାୟଣ ଓ ମହାଭାରତକୁ

ଆମ ଦେଶ ଓ ସଂସ୍କୃତିର ଏକ ଅଂଶ ବୋଲି ବିଚାର କରୁ । ପ୍ରାଚୀନ ସଂସ୍କୃତି ଓ ଇସ୍‌ଲାମ ଧର୍ମ ଦୁଇଟି ଅଲଗା ଜିନିଷ । ଧର୍ମ କେବେହେଲେ ନିଜ ସଂସ୍କୃତି ଓ ପରମ୍ପରାକୁ ପରିତ୍ୟାଗ କରିବାକୁ କୁହେ ନାହିଁ । ଧର୍ମ ପରିବର୍ତ୍ତନ ହୋଇଗଲେ ଇତିହାସ ପରିବର୍ତ୍ତନ ହୁଏ ନାହିଁ । କେବଳ ବିଶ୍ୱାସ ପରିବର୍ତ୍ତନ ହୁଏ । "ଇଣ୍ଡୋନେସିଆ ଆରବ ହୋଇଯାଏ ନାହିଁ, ଆମ ନଦୀ ପର୍ବତ ବଦଳି ଯାଆନ୍ତି ନାହିଁ, ଆମ ରୂପ ରଙ୍ଗ, ଚେହେରା ଯେମିତି ଥିଲା ସେମିତି ଅଛି ।"

ଇଣ୍ଡୋନେସିଆର ସାଧାରଣ ଲୋକଙ୍କ ଏପରି ବିଚାର ଧାରା ବିବାଦମୁକ୍ତ ନୁହେଁ । ପାକିସ୍ଥାନ, ବାଂଲାଦେଶ ଓ କେତେକ ଆରବ ଦେଶରୁ ଏଠାକୁ ଆସିଥିବା ମୁଲ୍ଲାମାନେ ଏହାକୁ ପସନ୍ଦ କରନ୍ତି ନାହିଁ । ଜାକର୍ତା, ସୁରବାୟା, କାଲିମନ୍ତନ, ଯୋଗଜାକର୍ତା ପ୍ରଭୃତି ସହରରେ ଏହି ମୁଲ୍ଲାମାନେ ନିଜ ପ୍ରଭାବ ବିସ୍ତାର କରି ଇଣ୍ଡୋନେସୀୟମାନଙ୍କୁ ସେମାନଙ୍କର ପ୍ରାଚୀନ ସଂସ୍କୃତି ଓ ପରମ୍ପରାକୁ ଇସ୍‌ଲାମ ବିରୋଧୀ କହି ପରିତ୍ୟାଗ କରିବାକୁ ବାଧ କରୁଛନ୍ତି । ମୁଁ ଇଣ୍ଡୋନେସିଆରେ ଥିବା ସମୟରେ ଜଣେ ହେଲେ ବୁର୍ଖା ପିନ୍ଧା ମହିଳା ଦେଖିବାକୁ ପାଇନଥିଲି । ସେହିପରି ମାଲେସିଆ, ବ୍ରୁନେଇରେ ମଧ୍ୟ ଇସ୍‌ଲାମ୍‌ର ଏକ ଉଦାର ଚେହେରା ଦେଖିବାକୁ ମିଳେ । ଗତ ପନ୍ଦର ବର୍ଷ ଭିତରେ ଦକ୍ଷିଣ ପୂର୍ବ ଏସିଆର ଏହି ଅଞ୍ଚଳରେ ଅନେକ ପରିବର୍ତ୍ତନ ହେଲାଣି । କଠୋରପନ୍ଥୀମାନଙ୍କ ପ୍ରଭାବ ବଢିଲାଣି । ଇଣ୍ଡୋନେସିଆର ବାଲି ଉପଦ୍ୱୀପରେ ଦୁଇ ବର୍ଷ ତଳେ ବୋମା ବିସ୍ଫୋରଣରେ ଶତାଧିକ ଟୁରିଷ୍ଟଙ୍କ ମୃତ୍ୟୁରୁ ଏହା ସ୍ପଷ୍ଟ ଜଣାପଡେ । ଅନ୍ୟଥା, ଏ ଦେଶର ଲୋକେ ସ୍ୱଭାବରେ ଅତ୍ୟନ୍ତ ଭଦ୍ର, ଶାନ୍ତଶିଷ୍ଟ ଓ ମେଳାପୀ । ଖୁବ୍ ହସ, ପରିହାସ ପ୍ରିୟ । ବେଶ ପୋଷାକରେ ସଂଯତ । ମହିଳାମାନେ ନିଜର ବକ୍ଷ, ସ୍କନ୍ଧଭାଗ ଓ ପାଦ ଆବୃତ ରଖିଥାନ୍ତି । ବଳାତ୍କାର ଘଟଣା ବିରଳ । ଭାରତ ଭଳି ବାମ ହସ୍ତରେ କୌଣସି ଜିନିଷ ଦେବା ବା ନେବାକୁ ଲୋକେ ପସନ୍ଦ କରନ୍ତି ନାହିଁ ଓ ଏହା ଅଶୁଭ ବୋଲି ଭାବନ୍ତି । ଓଡ଼ିଶା ଭଳି ଭାତ, ମାଛ ପ୍ରିୟ ଖାଦ୍ୟ । ରମଜାନ ଉପାସ ବେଳେ ବିଡି, ସିଗାରେଟ୍, ଜୁଆ ଓ ମଦ୍ୟପାନ ନିଷିଦ୍ଧ ।

ବିଶ୍ୱର ସବୁଠାରୁ ଅଧିକ ମୁସଲମାନ ରହନ୍ତି ଇଣ୍ଡୋନେସିଆରେ, ତା'ପଛକୁ ଭାରତରେ । ଭାରତ ଭଳି ବିଭିନ୍ନ ଧର୍ମାବଲମ୍ବୀ ଓ ପ୍ରାୟ ୫୦ ପ୍ରକାର ଆଦିବାସୀ ଏଠାରେ ରହନ୍ତି । ଭୌଗୋଳିକ ଦୃଷ୍ଟିରୁ ବିରାଟ ଦେଶ । ଦ୍ୱୀପ, ଉପଦ୍ୱୀପ ସଂଖ୍ୟା ତେର ହଜାରରୁ ଅଧିକ । ୧୯୪୯ ମସିହାରେ ଡଚ୍ ଶାସନ କବଳରୁ ସ୍ୱାଧୀନ ଇଣ୍ଡୋନେସିଆର ପ୍ରଥମ ଓ ପ୍ରଧାନ ସମସ୍ୟା ଥିଲା କିପରି ୧୩ ହଜାର ଦ୍ୱୀପପୁଞ୍ଜରେ

ବିଭକ୍ତ ଦେଶକୁ ଏକାଠି ରଖାଯିବ । ସେତେବେଳେ ଦ୍ୱୀପପୁଞ୍ଜ ମଧ୍ୟରେ ଗମନାଗମନର କୌଣସି ସୁବିଧା ନଥିଲା । ବାତ୍ୟା, ଭୂମିକମ୍ପ ବେଳେ ଲୋକେ ଭାଗ୍ୟ ଆଦରି ରହୁଥିଲେ । ତା'ସାଙ୍ଗକୁ ଦାରିଦ୍ର୍ୟ,ନିରକ୍ଷରତା ଓ ବିଭିନ୍ନ ସଂପ୍ରଦାୟ ମଧ୍ୟରେ କନ୍ଦଳ, ବିଦ୍ୱେଷ । ପଡୋଶୀ ଚୀନ୍‌ରୁ କମ୍ୟୁନିଷ୍ଟ ଆନ୍ଦୋଳନର ଅନୁପ୍ରବେଶଦ୍ୱାରା ଅଶାନ୍ତି ଲାଗି ରହୁଥିଲା । ସ୍ୱାଧୀନତା ଆନ୍ଦୋଳନର ମୁଖ୍ୟ କର୍ଣ୍ଣଧାର ରାଷ୍ଟ୍ରପତି ସୁକର୍ଣ୍ଣ ଦେଶକୁ ଏକାଠି ରଖିବାପାଇଁ ଏକ ରାଷ୍ଟ୍ରୀୟ ନୀତିବାକ୍ୟ ବା 'ମଟୋ'କୁ ସମ୍ବିଧାନସ୍ୱୀକୃତ କରାଇଥିଲେ । ଏ ମଟୋକୁ ଇଣ୍ଡୋନେସିଆ ଭାଷାରେ କହନ୍ତି "ଭିନେକା ତୁଙ୍ଗଲିକା" - ୟୁନିଟି ଇନ୍ ଡାଇଭର୍ସିଟି ବା ବିଭିନ୍ନତା ଓ ବିବିଧତା ମଧ୍ୟରେ ଏକତା । ଭାରତକୁ ଏକାଠି ରଖିବା ପାଇଁ ପଣ୍ଡିତ ଜବାହରଲାଲ୍ ନେହେରୁ ମଧ୍ୟ ଏହି ଖଣ୍ଡ ବାକ୍ୟ ବାରମ୍ବାର ବ୍ୟବହାର କରୁଥିଲେ । ଏହାପରେ ପରେ ଇଣ୍ଡୋନେସିଆରେ ଆଉ ଏକ ଲୋକପ୍ରିୟ ସ୍ଲୋଗାନ୍ ହେଲା - "ସାତୁ ବଂଶା, ସାତୁ ବାହାଷା, ସାତୁ ଦେଶା ।" 'ସାତୁ' ମାନେ ଏକ । ଅର୍ଥାତ୍ ଆମେ ସବୁ ଗୋଟିଏ ବଂଶର ଲୋକ, ଆମର ଗୋଟିଏ ଭାଷା ଏବଂ ତେର ହଜାର ଦ୍ୱୀପରେ ବିଭକ୍ତ ହୋଇ ରହିଲେ ମଧ୍ୟ ଆମେ ସବୁ ଗୋଟିଏ ଦେଶର ଲୋକ । ଏ ଦେଶର ସୌଭାଗ୍ୟ ଯେ ପ୍ରାୟ ସବୁ ଲୋକ ଗୋଟିଏ ଭାଷା କହନ୍ତି । ଭାରତ ଭଳି ଏତେ ପ୍ରକାର ଭାଷା ନାହିଁ; ତେଣୁ ଭାଷାଭିତ୍ତିକ ଆନ୍ଦୋଳନ ନାହିଁ । ଗୋଟିଏ ଭାଷାର ସୂତାରେ ସମସ୍ତେ ବନ୍ଧା ।

ଭାରତ ଭଳି ଇଣ୍ଡୋନେସିଆର ସମସ୍ୟା ଅନେକ । ବିଚ୍ଛିନ୍ନତାବାଦ, ଆତଙ୍କବାଦ, ସାମ୍ପ୍ରଦାୟିକ ଦଙ୍ଗା, ଭୌଗୋଳିକ ସ୍ଥିତି, ପ୍ରାକୃତିକ ବିପର୍ଯ୍ୟୟ ଇତ୍ୟାଦି । ୧୯୬୫ ମସିହାରେ ଦେଶ ଭିତରେ କମ୍ୟୁନିଷ୍ଟ ଆନ୍ଦୋଳନରେ ପ୍ରାୟ ଦଶ ଲକ୍ଷ ଲୋକ ପ୍ରାଣ ହରାଇଥିଲେ । ଚାଇନିଜ୍ ଓ ମାଲେଙ୍କ ମଧ୍ୟରେ କ୍ରମାଗତ କଳହ, ମୁସଲମାନ ଓ ଖ୍ରୀଷ୍ଟିୟାନ୍‌ଙ୍କ ମଧ୍ୟରେ ବିବାଦ, ଚରମ ଓ ନରମପନ୍ଥୀଙ୍କ ମଧ୍ୟରେ ଝଗଡା ଏବଂ ଖ୍ରୀଷ୍ଟିୟାନ୍ ବହୁଳ ଇଷ୍ଟ ଟିମୁର ଅଲଗା ହୋଇଯିବା ସତ୍ତ୍ୱେ ଇଣ୍ଡୋନେସୀୟମାନେ ଏକାଠି ରହିଛନ୍ତି । "ସାତୁ ବଂଶା, ସାତୁ ବାହାଷା, ସାତୁ ଦେଶା"କୁ ଏକ ରାଷ୍ଟ୍ରୀୟ ଏକତା ଓ ଦର୍ଶନର ରୂପ ଦେବାପାଇଁ ଚେଷ୍ଟା ଜାରି ରହିଛି । କାରଣ କେବଳ ସ୍ଲୋଗାନ୍‌ଦ୍ୱାରା ଦେଶ ଏକାଠି ରହିପାରେ ନାହିଁ ।

*ସମ୍ବାଦ ପୁନଶ୍ଚ, ୨୦୦୬*



# ରାମଙ୍କ ନାମ ବଦନାମ ନ କର

ଇଣ୍ଡୋନେସିଆରେ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ସହିତ କାମ କରୁଥିଲା ବେଳେ ପ୍ରାୟ ୫୦ରୁ ଅଧିକ ବିଶ୍ୱ ବିଦ୍ୟାଳୟ ଓ କୁଳପତିମାନଙ୍କ ସମ୍ପର୍କରେ ଆସିଥିଲି । ମୋର ମୁଖ୍ୟ ଦାୟିତ୍ୱ ଥିଲା, ସେ ଦେଶର ଯୁବବର୍ଗଙ୍କ କଲ୍ୟାଣପାଇଁ ଏକ ରାଷ୍ଟ୍ରୀୟ ଯୋଜନାର ରୂପରେଖ ପ୍ରସ୍ତୁତ କରିବା, ଏକ ଯୁବ ସ୍ୱାସ୍ଥ୍ୟ ନୀତିର ଡ୍ରାଫ୍‌ଟ ତିଆରି କରିବା । ସେହି ଅବସରରେ ଯାଇଥିଲି ଯୋଗଜାକର୍ତା - ଦେଶର ଦ୍ୱିତୀୟ ବୃହତ୍ତମ ନଗରୀ । ମଧ୍ୟ ଜାଭା ଏବଂ ସାରା ଦେଶର ସାଂସ୍କୃତିକ ପ୍ରାଣକେନ୍ଦ୍ର, ଦେଶର ଆତ୍ମା - ନଗରୀ ବା 'ସୋଲ୍ ସିଟି' । ଦକ୍ଷିଣ ପଟେ ଭାରତୀୟ ମହାସାଗର ଓ ଉତ୍ତର ପଟେ ଆଗ୍ନେୟ ଗିରିମାଳା, ମଝିରେ ପାହାଡ଼, ଜଙ୍ଗଲ, ଧାନ ଜମି ଓ ଶହ ଶହ ପୁରାତନ ହିନ୍ଦୁ ଓ ବୌଦ୍ଧ ମନ୍ଦିର ଏବଂ ସ୍ତୂପ । ସବୁଠାରୁ ବଡ଼ ମନ୍ଦିର ହେଲା ପ୍ରମ୍ବାନନ୍ । ଉଚ୍ଚତା ୧୬୫ ଫୁଟ ଏବଂ ଅଷ୍ଟମ ଶତାବ୍ଦୀରେ ନିର୍ମିତ ଏହି ମନ୍ଦିରକୁ ପୃଥିବୀର ସବୁଠାରୁ ବଡ଼ ଓ ସୁନ୍ଦର ହିନ୍ଦୁ ମନ୍ଦିର ବୋଲି କୁହାଯାଏ । ସେହିପରି ନିକଟସ୍ଥ ବୋରୋବୁଦୁର (ବଡ଼ ବୁଦ୍ଧ) କେବଳ ଇଣ୍ଡୋନେସିଆରେ ନୁହେଁ, ସାରା ବିଶ୍ୱର ସବୁଠାରୁ ବଡ଼ ସ୍ତୂପ । ଏହି ସ୍ତୂପ ଉପରୁ ସୂର୍ଯ୍ୟୋଦୟ ଦେଖିବାପାଇଁ ଅନେକ ଟୁରିଷ୍ଟ ଆସନ୍ତି । ଏହାଛଡ଼ା, ଇଣ୍ଡୋନେସିଆର ପୁରାତତ୍ତ୍ୱ ବିଭାଗ ୨୧ ବର୍ଷ ଧରି ଖୋଦନ ପରେ, ଶାମ୍ବିଶିରୀ ନାମକ ଏକ ବିରାଟ ହିନ୍ଦୁ ମନ୍ଦିର ଆବିଷ୍କାର କରିଛନ୍ତି । ଏହା ପ୍ରାୟ ୫୦୦ ବର୍ଷ ହେଲା ମାଟି ତଳେ ପୋତି ହୋଇଯାଇଥିଲା । ଓଡ଼ିଶାର କୋଣାର୍କ ଭଳି । ଏକ ମୁସଲମାନ ବହୁଳ ଦେଶରେ ହିନ୍ଦୁ ମନ୍ଦିର ଓ ବୌଦ୍ଧ ସ୍ତୂପମାନଙ୍କର ସୁରକ୍ଷା ବ୍ୟବସ୍ଥା ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲି ।

ଯୋଗଜାକର୍ତା ଛାଡ଼ିବା ପୂର୍ବଦିନ ବିଶ୍ୱବିଦ୍ୟାଳୟର ଉପକୁଳପତି ବିଭିନ୍ନ ବିଭାଗ ଅଧ୍ୟକ୍ଷମାନଙ୍କ ସହ ରାତ୍ରି ଭୋଜନ ପରେ ତାଙ୍କ ଭିତରୁ ଜଣେ ପଚାରିଲେ, ଆପଣଙ୍କ

ଭାରତରେ ବାବ୍ରୀ ମସଜିଦ ଓ ରାମ ଜନ୍ମଭୂମିପାଇଁ କାହିଁକି ଏତେ କଳି, ଟକରାଳ ? ଆଉ ଜଣେ ଉଠି କହିଲେ, ରାମ ତ ଇଣ୍ଡୋନେସିଆରେ ଜନ୍ମ ହୋଇଥିଲେ ଆଉ ବାବର ଜନ୍ମ ହୋଇଥିଲେ ମଧ୍ୟ ଏସିଆରେ, ଏଥିପାଇଁ ଭାରତରେ କାହିଁକି ଏତେ ବିବାଦ ? ଏହି ପ୍ରଶ୍ନରେ ମୁଁ ଆଶ୍ଚର୍ଯ୍ୟ ଓ ଅପ୍ରତିଭ ହୋଇ ଯାଇଥିବା ଦେଖି କୁଳପତି କଥାଟିକୁ ଟିକେ ପରିଷ୍କାର କରି କହିଲେ, ଆପଣ ଖରାପ ଭାବିବେ ନାହିଁ, ଆମ ଦେଶରେ ଅଧିକାଂଶ ଲୋକଙ୍କର ବିଶ୍ୱାସ ଯେ ଶ୍ରୀରାମ ଇଣ୍ଡୋନେସିଆରେ ଜନ୍ମ ହୋଇଥିଲେ ଏବଂ ଅଯୋଧ୍ୟା ହେଉଛି ଯୋଗଜାକର୍ତା ନଗରୀର ପୁରାତନ ନାମ । ଆଗେ ଏହାର ନାମ ଥିଲା ଅଯୋଧ୍ୟା, ପରେ ଅପଭ୍ରଂଶ ହୋଇ କୁହାଗଲା 'ଅଯୋଗ୍ୟା' ଏବଂ ଆଧୁନିକ ଯୁଗରେ ନାଁ ପୂର୍ବରୁ 'ଅ' କାଟି ଦେଇ ନାଁ ପରେ ଜାକର୍ତା ଯୋଡି ଦେଇ କୁହାଗଲା 'ଯୋଗଜାକର୍ତା' । ଆମ ରାଜଧାନୀ ଜାକର୍ତା ଏଠାରୁ ମାତ୍ର ଛ'ଶହ କିଲୋମିଟର ।

ରାତ୍ରି ଭୋଜନ ପରେ ଆରମ୍ଭ ହେଲା 'ଫେୟାରୱେଲ୍ ସ୍ପିଚ୍' ବା ବିଦାୟୀ ଭାଷଣ । ଶେଷ ବକ୍ତା ଥିଲେ 'ଥିଓଲଜି' (ତାଙ୍କ ଭାଷାରେ 'ଆଗମ' ବିଭାଗ) ବିଭାଗର ଅଧକ୍ଷ । ସେ କହିଲେ ଆମେ ୪ଟି ବିଷୟରେ ଭାରତ ପ୍ରତି କୃତଜ୍ଞ । ପ୍ରଥମଟି ହେଲା - ଭାରତ ଆମକୁ ଦେଇଛି ହିନ୍ଦୁ ଧର୍ମ ଓ ସଭ୍ୟତା, ଦ୍ୱିତୀୟରେ ଭାରତରୁ ଏଠାକୁ ଆସିଛି ବୌଦ୍ଧଧର୍ମ ଏବଂ ତୃତୀୟରେ ଭାରତ ବି ଆମକୁ ଦେଇଛି ଇସଲାମ । ଚତୁର୍ଥରେ ଆମ ଭାଷା (ଇଣ୍ଡୋନେସିଆରେ କହନ୍ତି 'ବାହାଷା')ର ଜନନୀ ହେଉଛି ଆପଣଙ୍କ ଦେଶର ସର୍ବ ପୁରାତନ ଭାଷା ସଂସ୍କୃତ । ଭାଷଣ ସରିଲା ପରେ ତାଙ୍କ ପାଖକୁ ଯାଇ ପଚାରିଲି 'ଇସଲାମ୍ କେମିତି ଏଠାକୁ ଆସିଲା ଭାରତରୁ ? ଅଳ୍ପ ହସି କହିଲେ, ଆପଣ ବୋଧେ ଜାଣି ନାହାନ୍ତି - ଗୁଜୁରାଟର ମୁସଲିମ୍ ଟ୍ରେଡ଼ର୍ ବା ବ୍ୟବସାୟୀମାନେ ପ୍ରଥମେ ଏଠାରେ ଇସଲାମ୍ ଧର୍ମ ପ୍ରବର୍ତ୍ତନ କରିଥିଲେ । ପୁଣି କହିଲେ "ହଁ, ଶୁଣନ୍ତୁ, ଆମ ରାମ ଆମ ଅଯୋଧ୍ୟା (ଯୋଗ ଜାକର୍ତା) ରେ ସିନା ଜନ୍ମ ହୋଇଥିଲେ କିନ୍ତୁ ଆମେ ଅଯୋଧ୍ୟାକୁ ଏତେ ଗୁରୁତ୍ୱ ଦେଉନୁ କାରଣ ଅଯୋଧ୍ୟା ଛାଡ଼ିଲା ପରେ ହିଁ ଶ୍ରୀ ରାମଙ୍କ ଚରିତ୍ରର ପ୍ରକୃତ ବିକାଶ ଘଟିଥିଲା ।" ମୁଁ ଉତ୍ତର ଦେଇ କହିଲି ଭାରତ ଫେରିଲେ ଏକଥା ସମସ୍ତଙ୍କୁ କହିବି । ମନ ଭିତରେ ଭାବୁଥିଲି, ଏଠାରେ ଅଯୋଧ୍ୟା ଏକ କଳା, ସଂସ୍କୃତି ଓ ପ୍ରଗତିର ମହାନଗରୀ ହେଲାଣି, ଆମ ଅଯୋଧ୍ୟାରେ ନିଆଁ ଲାଗିଛି । ୫୦ ବର୍ଷ ଧରି ଜାତି, ଧର୍ମ ଓ ସାମ୍ପ୍ରଦାୟିକ ରାଜନୀତି ଓ କଳହ ପ୍ରଭାବରେ ଦେଶ କ୍ଳାନ୍ତ-ଶ୍ରାନ୍ତ ହୋଇଗଲାଣି ।

ରାମସେତୁ ନେଇ ଏବେ ପୁରାଣ ଓ ଇତିହାସ ମଧ୍ୟରେ କନ୍ଦଳ ହେଲାଣି, ବାବ୍ରୀ ଢାଞ୍ଚା ତଳୁ ରାମ ମନ୍ଦିରର ଧ୍ୱଂସାବଶେଷ ଖୋଜା ଚାଲିଛି । ମନ୍ତ୍ରୀ ଆଜି କହୁଛନ୍ତି ସେତୁ ବନ୍ଧ ମିଛ, ରାମ ମିଛ, ପୁଣି କାଲି କହୁଛନ୍ତି ରାମ ଓ ରାମାୟଣ ଆମ ଐତିହ୍ୟର ଅଙ୍ଗ। ଇତିହାସ, ଆର୍କେଲୋଜି ବା ପ୍ରତ୍ନତତ୍ତ୍ୱ କହୁଛି ଆମ ଗୋସେଇଁ ବାପାଙ୍କ ପୂର୍ବରୁ ଆଉ ସବୁ ପୁରାଣ, ତଥ୍ୟହୀନ । ଅଳ୍ପଦିନ ପରେ ଏମାନେ ପୁଣି କହିପାରନ୍ତି ରାମାୟଣର ରଚୟିତା ବାଲ୍ମିକୀ ଓ ମହାଭାରତର ଲେଖକ ବ୍ୟାସ ମଧ୍ୟ ମିଛ । କାରଣ ମ୍ୟୁନିସିପାଲିଟି ବା ପଞ୍ଚାୟତ ଜନ୍ମ ରେକର୍ଡରେ ଏମାନଙ୍କର ନାଁ ନାହିଁ । ତାଳପତ୍ର ପୋଥି ବିଶ୍ୱାସ ଯୋଗ୍ୟ ନୁହେଁ । ବେଦ, ଉପନିଷଦର ବାପା ମା ନାହାନ୍ତି କାରଣ ବୈଦିକ ଯୁଗରେ ଇତିହାସ ଲେଖା ହେଉନଥିଲା ।, ଶାସ୍ତ୍ରାର୍ଥ, ଜ୍ଞାନ, ଭକ୍ତି, କର୍ମ, ସମାଧି ଓ ନିର୍ବାଣର ଚର୍ଚ୍ଚା ହେଉଥିଲା । ପ୍ରସିଦ୍ଧ ପ୍ରତ୍ନତତ୍ତ୍ୱ ଓ ନୃତତ୍ତ୍ୱବିତ୍ ଏ.ଏଲ୍.ବାଶାମ୍ କହନ୍ତି, ପୁରାଣ ଭିତରେ ଇତିହାସ ଓ ଇତିହାସ ଭିତରେ ପୁରାଣ ଭର୍ତ୍ତି ହୋଇ ରହିଛି ।

ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ ଯେଉଁ ଅଯୋଧ୍ୟାକୁ ପରିତ୍ୟାଗ କରିଥିଲେ ଓ ରାଜପଦକୁ ଗୋଡ଼ରେ ଆଡ଼େଇ ଦେଇଥିଲେ, ସେହି ରାମଙ୍କ ପବିତ୍ର ନାମକୁ ଏବେ ପଦପଦବୀ ପ୍ରାପ୍ତିପାଇଁ ବ୍ୟବହାର କରାଯାଉଛି । ଶ୍ରୀରାମ ଓ ମା' ସୀତାଙ୍କ ପ୍ରତିମାକୁ ଏବେ 'ଟେମ୍ପରାରି ସେଡ୍'ରେ ରଖାଯାଇଛି ଓ ଚାରିପଟେ 'ବଙ୍କର' ଓ ସହସ୍ରାଧିକ ପୁଲିସ୍ ଘେରି ରହିଥିବା ମୁଁ ସ୍ୱଚକ୍ଷୁରେ ଦେଖି ଆସିଛି । ଏ ଅବସ୍ଥା ପ୍ରତ୍ୟେକ ରାମପ୍ରେମୀଙ୍କୁ ବ୍ୟଥିତ କରିବ । କିନ୍ତୁ ଏହିଭଳି ଅବସ୍ଥା ଜାରି ରହିବା ହିଁ ସାମ୍ପ୍ରଦାୟିକ ରାଜନୀତିପାଇଁ ଅନୁକୂଳ । ସମାଧାନ ହୋଇଗଲେ ଭୋଟ ବଜାରରେ ଉଭୟ ହିନ୍ଦୁ ଓ ମୁସଲମାନ ନେତାଙ୍କ ଭାଉ କମିଯିବ । ତଥାକଥିତ ଧର୍ମ ନିରପେକ୍ଷବାଦୀମାନେ ବି ଅଡୁଆରେ ପଡ଼ିବେ । କାରଣ ଏପରି ହେଲେ ଲୋକେ ଆଗେ ଭୋଟର ନ ହୋଇ ମଣିଷ ଭାବରେ ଗଣା ହେବେ ।

ସେତୁବନ୍ଧ ରାମେଶ୍ୱରରେ ମଧ୍ୟ ବିବାଦର ଚରିତ୍ର ଏକା । ଯେଉଁ ସମସ୍ୟାକୁ ସମୁଦ୍ର ବିଜ୍ଞାନୀ ଓ ପରିବେଶବିତ୍‌ମାନେ ବିଚାର କରି ସିଦ୍ଧାନ୍ତ ନେବା କଥା, ସେଥିରେ ବିରୋଧୀ ଦଳଙ୍କ ବିରୋଧ ବା ସରକାରଙ୍କ ସଫେଇ ଦେବାର ଆବଶ୍ୟକତା ନାହିଁ । ୫ ହଜାର ବର୍ଷ ପୁରୁଣା ରାମ ଓ ରାମାୟଣକୁ ଏ ବିବାଦ ଭିତରକୁ ଗୋଷାଡ଼ିବା ଦରକାର ନାହିଁ । ସୁଏଜ୍ କେନାଲଦ୍ୱାରା ଯେପରି ଏସିଆ ଓ ୟୁରୋପ ମଧ୍ୟରେ ଦୂରତ୍ୱ କମିଗଲା, ବାଣିଜ୍ୟ ବଢ଼ିଲା, ରାମସେତୁ ଦେଇ ଜଳ ଜାହାଜ ଯିବା ଆସିବା କଲେ ବଙ୍ଗୋପସାଗର ଓ ଆରବ ସାଗର ମଧ୍ୟରେ ଦୂରତା କମିଯିବ ୪୫୦ ମିଲୋମିଟର ଓ ଯାତ୍ରା ସମୟ କମିବ ଛତିଶ ଘଣ୍ଟା । ଆଉ ଶ୍ରୀଲଙ୍କା ପାରି ହୋଇଯିବାକୁ ପଡ଼ିବ ନାହିଁ ।

କେତେକ ପରିବେଶ ବିଜ୍ଞାନୀଙ୍କ ମତରେ ଏହାଦ୍ୱାରା ସୁନାମି ଆଶଙ୍କା ବଢ଼ିବ, ଝଡ଼ବାତ୍ୟା ବିରୋଧରେ ଥିବା ଏକ ଲକ୍ଷ ବର୍ଷ ପୁରୁଣା ପ୍ରାକୃତିକ ପ୍ରାଚୀର ଲୋପ ପାଇବ । ସାମରିକ ଦୃଷ୍ଟିରୁ ଏଲ୍‌ଟିଟି ଆତଙ୍କବାଦୀଙ୍କ ପ୍ରଭାବ ବଢ଼ିବ । ତେଣୁ ଏହା ରାମ ବା ରାମାୟଣ ସମସ୍ୟା ନୁହେଁ । ଆବେଗ, ଉତ୍ତାପ, ଆନ୍ଦୋଳନଦ୍ୱାରା ବା ନିଜ ପକ୍ଷ ସମର୍ଥନ କରି ଆଫିଡେଭିଟ୍ ବା ସତ୍ୟପାଠଦ୍ୱାରା ଏ ସମସ୍ୟାର ସମାଧାନ ହୋଇ ପାରିବ ନାହିଁ । ତେଣୁ ଏ ସମ୍ପର୍କରେ ଅଧିକ ବିତର୍କ, ବାଦ ବିବାଦ, ଧାରଣା, ଧର୍ମଘଟ ଛାଡ଼ି ଦେଶର ସମୂହ ସ୍ୱାର୍ଥ ଦୃଷ୍ଟିରୁ ଯେଉଁ ନିଷ୍ପତ୍ତି ଅନୁକୂଳ, ସେପରି ନିଷ୍ପତ୍ତି ନେବା ଦାୟିତ୍ୱ ବିଶେଷଜ୍ଞଙ୍କ ଉପରେ ଛାଡ଼ି ଦିଆଯାଉ । ଶ୍ରୀରାମ ସାରା ମାନବଜାତିପାଇଁ ଏକ ଆଦର୍ଶ ପୁରୁଷ, ରୋଲ୍ ମଡେଲ୍ । କବି ବାଲ୍ମିକୀ ତାଙ୍କୁ ଈଶ୍ୱରଙ୍କ ଅବତାର ଭାବେ ବର୍ଣ୍ଣନା ନ କରି ଏକ ଅସାଧାରଣ ମଣିଷ ଭାବରେ ଚିତ୍ରଣ କରିଛନ୍ତି । ସେ ଐତିହାସିକ ନୁହଁନ୍ତି ବା ପୌରାଣିକ ନୁହଁନ୍ତି, ହିନ୍ଦୁ ବା ଅଣହିନ୍ଦୁ ନୁହଁନ୍ତି । ସେ ଏକ ବିଶ୍ୱ ପ୍ରସିଦ୍ଧ ମହାକାବ୍ୟର ମହାନାୟକ, ୫ ହଜାର ବର୍ଷ ପୂର୍ବ ମାନବ ସଭ୍ୟତା ଓ ମୂଲ୍ୟବୋଧର ସର୍ବଶ୍ରେଷ୍ଠ ପ୍ରତୀକ । ତେଣୁ ସୁଦୂର ଇସଲାମିକ୍ ଇଣ୍ଡୋନେସିଆରେ ବି ସେ ଆଜି ପରମ ଆଦରଣୀୟ । ତାଙ୍କୁ ଭୋଟ ରାଜନୀତି ଭିତରକୁ ଟାଣିବା ଏକ ଅକ୍ଷମଣୀୟ ଅପରାଧ ହେବ ।

*୩୦ ଅକ୍ଟୋବର, ୨୦୦୭*



# 'ନାସିପୁତି, ସାୟୁର୍ ଆପାସାଜା'

ଜାକର୍ତାରେ ଶୀଘ୍ର ସୂର୍ଯ୍ୟୋଦୟ ହୁଏ । ଆମ ଦେଶଠାରୁ ପ୍ରାୟ ଅଢେଇ ଘଣ୍ଟା ପୂର୍ବରୁ । ମୋ ନିଦ ଭାଙ୍ଗିଲାବେଳକୁ ଚାରିଆଡ଼େ ଖରା ମାଡ଼ିଗଲାଣି । କିଛି ସମୟ ପରେ ଦୁଆର ବେଲ୍ ବାଜିଲା । କବାଟ ଖୋଲିଲା ବେଳକୁ ଅହମଦ ସାମ୍ନାରେ ଠିଆ ହୋଇଛନ୍ତି । କହିଲେ 'ସଲାମତ୍ ପାଗି' - ମାନେ ସୁପ୍ରଭାତ, ସ୍ୱାଗତମ୍ । ଆମେ ଏଥର ବାହାରିବା, ସମୟ ହୋଇଗଲାଣି । ତରବରରେ ନିତ୍ୟକର୍ମ ସାରି ବାହାରି ପଡ଼ିଲି । ଶିକ୍ଷା ମନ୍ତ୍ରଣାଳୟରେ ପହଞ୍ଚିଲୁ ଅଧଘଣ୍ଟା ଭିତରେ । ସେତେବେଳେ ଡାଇରେକ୍ଟର ଜେନେରାଲ ଥାନ୍ତି ଡକ୍ଟର ସୁହାର୍ତୋ । ଖୁବ୍ ଖୁସିବାସିଆ ଲୋକ । ମୋତେ ପାଛୋଟି ନେଇ ଗୋଟି ଗୋଟି କରି ସବୁ ଅଫିସରଙ୍କ ସହ ପରିଚିତ କରାଇ ଦେଲେ ଓ ଶେଷରେ ତାଙ୍କ ଅଫିସ୍ ପାଖରେ ଏକ କମରା ଭିତରକୁ ନେଇ କହିଲେ ଏହି ରୁମ୍‌ଟି ଆପଣଙ୍କର ଅଫିସ୍ । ଟେଲିଫୋନ୍, କମ୍ପ୍ୟୁଟର ଓ ଫାକ୍ସ ତଥା କପିଅର୍ ଅଛି । ଆଉ ଯାହା ଦରକାର କହିବେ । ଅହମଦଙ୍କୁ ଚୁପ୍ କରି ପଚାରିଲି ଏଠାରେ ସିନିଅର ଓ ସମ୍ମାନାସ୍ପଦ ଲୋକଙ୍କୁ କିପରି ସମ୍ବୋଧନ କରାଯାଏ । କହିଲେ ନାଁ ପୂର୍ବରୁ 'ପା' ଲଗାଇ ଦେଲେ ଚଳିବ । ପଚାରିଲାରୁ କହିଲେ ଡକ୍ଟର ସୁହାର୍ତୋଙ୍କୁ ପାହାର୍ତୋ ବୋଲି ଡାକିବେ ।

ଭାରତରେ ଇଂରାଜୀ ଭାଷା ଭଳି ଇଣ୍ଡୋନେସିଆରେ ଡଚ୍ ଭାଷା ବହୁ ଲୋକ କହନ୍ତି ଓ ବୁଝନ୍ତି । ଖୁବ୍ କମ୍ ଲୋକ ଇଂରାଜୀ ବୁଝନ୍ତି । ମୋତେ ତାଙ୍କ ଦେଶ ଭାଷା 'ବାହାଷା' ବା ଡଚ୍ ଜଣା ନଥିବାରୁ ପ୍ରଥମେ ନିଜକୁ ନିରକ୍ଷର ବୋଲି ଭାବୁଥିଲି । ତେଣୁ ପ୍ରଥମ ଦୁଇ ସପ୍ତାହ ଚାଲୁ 'ବାହାଷା' ଶିଖିବାରେ କଟି ଯାଇଥିଲା । ସୌଭାଗ୍ୟକ୍ରମେ ଅହମଦ ଓ ସୁହାର୍ତୋ ଇଂରାଜୀ କହି ବୋଲି ପାରୁଥିଲେ । ସେତେବେଳେ ଇଣ୍ଡୋନେସିଆରେ ଥିବା ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଶାଖାର ମୁଖ୍ୟ ଥିଲେ ରବର୍ଟ କିମ୍ ଫାର୍ଲେ । ସେ ମୋଠାରୁ ଭଲ 'ବାହାଷା' କହି ପାରୁଥିଲେ । ସେଦିନ

ରବର୍ଟ, ଡ. ସୁହାର୍ତୋ ଓ ମୁଁ ବସି ଆସନ୍ତା ତିନି ମାସପାଇଁ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ମୋ କାର୍ଯ୍ୟକ୍ରମ ଖସଡ଼ା ଚୂଡ଼ାନ୍ତ କଲୁ । ଲଞ୍ଚ୍ ବା ମଧ୍ୟାହ୍ନ ଭୋଜନ ପୂର୍ବରୁ ରବର୍ଟ ନିଜ ଅଫିସକୁ ଫେରିଗଲେ ।

ଲଞ୍ଚ୍ ଟାଇମ୍ ହେଲାରୁ ଅହମଦଙ୍କୁ ପଚାରିଲି, ଏଠି କୋଉଠି ଖାଇବାକୁ ମିଳିବ । କହିଲେ ଆପଣଙ୍କୁ ଏଇଠି ଲଞ୍ଚ ମିଳିବ । ଆମ ଦେଶର ସବୁ ଅଫିସରେ ଚା ଓ ୱାର୍କିଂ ଲଞ୍ଚ୍ ଫ୍ରି ମିଳେ । ଏହାଦ୍ୱାରା କର୍ମଚାରୀଙ୍କ ସମୟ ବଞ୍ଚେ ଓ ଅଧିକ କାମ ହୁଏ । ଅଫିସ୍ କରିଡର୍‌ରେ ଫୁଟନ୍ତା ପାଣି, ଚା, ଚିନି ଓ କ୍ରିମ୍ ରଖାଯାଇଥାଏ । ସପ୍ତାହରେ ୫ ଦିନ ଅଫିସ୍ ଚାଲେ । ଅଫିସରଙ୍କଠାରୁ ପିଅନ ପର୍ଯ୍ୟନ୍ତ ସମସ୍ତଙ୍କପାଇଁ ଏକ ଘଣ୍ଟା ଡ୍ରିଲ୍ ବାଧ୍ୟତାମୂଳକ । ସରକାର ଅଫିସରେ ମୋଟା, ପେଟୁଆ କର୍ମଚାରୀ ଚାହାନ୍ତି ନାହିଁ । ଡ୍ରିଲ୍ ପରେ ପ୍ରାର୍ଥନା ଓ ତାପରେ ଖାନା । ମହିଳାଙ୍କପାଇଁ ସ୍ୱତନ୍ତ୍ର ପ୍ରାର୍ଥନା ଗୃହ ଥାଏ । ମସଜିଦ୍ ଯିବା ଆବଶ୍ୟକ ପଡେ ନାହିଁ । ଇଣ୍ଡୋନେସିଆରେ ଧର୍ମପତ୍ନୀଙ୍କୁ କୁହାଯାଏ ଧର୍ମ ବନିତା ଏବଂ ଏମାନେ 'ଧର୍ମ-ବନିତା' ନାମକ ସ୍ୱେଚ୍ଛାସେବୀ ସଂସ୍ଥା ଗଢ଼ି ସାରା ଦେଶର ବିଭିନ୍ନ ଗଠନମୂଳକ କାମ କରିଥାନ୍ତି । ପ୍ରତି ସହରରେ ଏମାନଙ୍କ କାର୍ଯ୍ୟାଳୟ ଅଛି ।

ଏହିପରି କଥା ହେଉ ହେଉ ଲଞ୍ଚ୍ ଆସି ପହଞ୍ଚିଗଲା । ପ୍ଲାଷ୍ଟିକ୍ ପ୍ଲେଟ୍‌ରେ ଭାତ, ଦୁଇଖଣ୍ଡ ମାଂସ ଓ ସାଲାଡ୍ । କହିଲି ମୁଁ ତ ମାଂସ ଖାଏ ନାହିଁ । କହିଲେ ଏଇଟା ହେଉଛି ଖାଣ୍ଟି ଗୋ ମାଂସ, ଚାଖନ୍ତୁ, ଭାରି ଭଲ ଲାଗେ । ଉତ୍ତର ଦେଇ କହିଲି, ମୁଁ ଭାରତୀୟ ଓ ହିନ୍ଦୁ, ଆମେ ଗୋ ମାଂସ ଭକ୍ଷଣ କରୁନାହୁଁ । ଏହା ଶୁଣି ଖାନସାମା ପ୍ଲେଟ୍‌ଟି ଉଠାଇ ନେଲେ, ସେଥିରୁ କସା ଗୋମାଂସ ତକ ଚାମଚରେ କାଢ଼ି ନେଇ ପୁଣି ସେଇ ପ୍ଲେଟ୍‌କୁ ଆଣି ଥୋଇ ଦେଇ କହିଲେ ସାର୍ ଏଥର ଖାଆନ୍ତୁ । ମୁଁ କହିଲି ପ୍ଲେଟ୍‌ରେ ସବୁ ଲାଗିଛି, ବଦଳାଇ ଦିଅନ୍ତୁ । ମୁଁ କାହିଁକି ଏ କଥା କହୁଛି ସେ ବୁଝି ପାରିଲେ ନାହିଁ, କିନ୍ତୁ ପ୍ଲେଟ୍ ବଦଳାଇ ଭାତ ଓ ସାଲାଡ୍ ଦେଇଗଲେ । ସେଦିନ ଭାତ-ସାଲାଡ୍ ଲଞ୍ଚ୍ ଖାଇ କ୍ଷୁଧା ଶାନ୍ତ କଲି । ତା'ଆର ଦିନ ଲଞ୍ଚ୍ ବେଳକୁ ଆଣି ଥୋଇଦେଲେ ଚିକେନ୍ ବିରିଆନି । କହିଲେ ଏଇଟା ଇଣ୍ଡିଆନ୍ ଖାନା । ତାଙ୍କୁ ପୁଣି ବୁଝାଇ କହିଲି, ଦେଖ ମୁଁ ଚିକେନ୍ ଖାଏ ନାହିଁ । ସରି, ସରି କହି ଚାମଚରେ ଚିକେନ୍ ଟୁକୁଡ଼ା ସବୁ ବାଛି ନେଲେ ଏବଂ କହିଲେ, ସାର୍ ଏଥର ଖା'ନ୍ତୁ । ମୁଁ କହିଲି, ନାଇଁ, ନାଇଁ, ଏମିତି ନୁହଁ, ମୋତେ ସାଦା ଭାତ ଓ ଆଉ ଯାହା ଭେଜିଟେବଲ୍ (ପରିବା) ଅଛି ଦିଅ । ସେ ଦଶ ମିନିଟ୍ ପରେ ଭାତ ଓ କଞ୍ଚାକୋବି ପତ୍ର ଦେଇଗଲେ ।

ଇଣ୍ଡୋନେସିଆ ଲୋକେ ଭାରି ଚିକେନ୍ ପ୍ରିୟ । ତାଙ୍କ ଭାଷାରେ ଚିକେନ୍‌କୁ କହନ୍ତି 'ଅୟାମ୍' । ଏହାକୁ ବିଭିନ୍ନ ଭାବରେ ରନ୍ଧାଯାଏ । ରାସ୍ତାକଡ଼ ରେଷ୍ଟୋରାଁ ମାନଙ୍କରେ ଲୋକଙ୍କୁ ଆକୃଷ୍ଟ କରିବାକୁ ଚିକେନ୍ ଆଇଟମ୍‌ର ନାଁ ସବୁ ବଡ଼ ବଡ଼ ଅକ୍ଷରରେ ଲେଖାଯାଇଥାଏ । ସେମିତି କେତୋଟି ଆଇଟମ୍‌ର ନାଁ ଏବେ ବି ମୋର ମନେ ଅଛି । ସେଗୁଡ଼ିକ ହେଲା- ମି-ଅୟାମ୍, ବୁବୁର ଅୟାମ୍ , ସଟେଅୟାମ୍, ଅୟାମ୍ ବକର୍, ସାମ୍ ଅୟାମ୍ , ନାସି ଗୁଡେଙ୍ଗେ ଅୟାମ୍  ଇତ୍ୟାଦି । କଥାରେ ଅଛି, ତୁର୍କମେନ୍‌ଙ୍କୁ ଛାଡି ତୁର୍କମେନିସ୍ତାନ୍, ଛେନାକୁ ଛାଡ଼ି ଫ୍ରାନ୍‌ସ ଓ ବିଫ୍‌କୁ ଛାଡି ଟେକ୍ସାସ୍ କଥା ଯେପରି ଚିନ୍ତା କରାଯାଇପାରେନା, ସେହିପରି ଚିକେନ୍‌କୁ ଛାଡ଼ି ଇଣ୍ଡୋନେସିଆ କଥା ଭାବି ହେବ ନାହିଁ । ତେଣୁ "ବାର୍ଡ ଫ୍ଲୁ"ଯୋଗୁଁ ଏମାନେ ବିବ୍ରତ । ଏଠାରେ ଭେଜିଟାରିଆନ୍‌ର ଅର୍ଥ ଲୋକେ ବୁଝି ପାରନ୍ତି ନାହିଁ । ଥରେ ଏକ ଷ୍ଟେଟ୍ ଡିନର ପାର୍ଟିରେ ମୁଁ ଭାରତୀୟ, ହିନ୍ଦୁ ଓ ଗୋମାଂସ ଖାଏ ନାହିଁ ବୋଲି ଶୁଣି ଜଣେ ମନ୍ତ୍ରୀ ମୋତେ କହିଲେ, ଆପଣଙ୍କର ବହୁତ ଭେଜିଟାରିଆନ୍ ଆଇଟମ୍ ଅଛି ଏବଂ ଲମ୍ବା ଡିନର ଟେବୁଲ୍‌ର କ'ଣକୁ ମୋତେ ନେଇ ପ୍ରାୟ ୨୦ ପ୍ରକାର ସାଲାଡ୍ ଦେଖାଇ ଦେଲେ । ମୁଁ କିଛି ନ କହି ଖାଲି ସାଲାଡ୍ ଖାଇ ଫେରିଲି । ଏଠାରେ ଚିକେନ୍, ବିଫ୍ ଓ ମାଛ ଚାହିଦା ବେଶୀ । କିନ୍ତୁ ଏ ପର୍ଯ୍ୟନ୍ତ 'ଆରିଆନ୍ ଫ୍ଲୁ' ଏ ଦେଶକୁ ସଂକ୍ରମଣ କରିନାହିଁ । କିନ୍ତୁ ମ୍ୟାଡ୍ କାଓ ରୋଗ ଏଠାରେ ପହଞ୍ଚି ଯାଇଥିଲା ।

ତା'ଆରଦିନ ମୋତେ ସାହାଯ୍ୟ କରୁଥିବା ମହିଳା ସେକ୍ରେଟାରୀ ବୁପୁର ପଚାରିଲେ- "ସାର୍, ଆପଣ ଖରାପ ନ ଭାବିବେ ତ ଗୋଟେ କଥା ପଚାରିବି । କହିଲି ପଚାର । କହିଲେ ଭାରତୀୟ ହିନ୍ଦୁମାନେ କାହିଁକି ଗୋମାଂସ ଖାଆନ୍ତି ନାହିଁ ? ଉତ୍ତର ଦେଇ କହିଲି, ବୁପୁର, ତମ ଅଫିସର ବହୁ ଲୋକ ମୋତେ ଏକଥା ପଚାରି ସାରିଲେଣି । ମୁଁ ଜଣ ଜଣ କରି ଉତ୍ତର ଦେବା ଅପେକ୍ଷା ସମସ୍ତଙ୍କୁ ଏକାଠି ଭେଟି କହିବି । ବୁପୁର ସାଙ୍ଗେ ସାଙ୍ଗେ ସେମାନଙ୍କୁ ଡାକି ଆଣିଲେ ଓ ମୁଁ ଆରମ୍ଭ କଲି - ଶୁଣ, ଆମେ ଭାରତୀୟ ହିନ୍ଦୁମାନେ ଗାଈକୁ ମାତା ଦୃଷ୍ଟିରେ ଦେଖୁ, ଗୋମାତା କହୁ, ମା ଓ ଗାଈ କ୍ଷୀର ଖାଇ ବଢୁ । ତେଣୁ କ୍ଷୀର ଦେଉଥିବା ମା'କୁ ହତ୍ୟା କରି ତା ମାଂସ କିପରି ଖାଇବୁ ? ଏକଥା ଶୁଣି ସମସ୍ତେ ଖୁସି ହୋଇଗଲେ ଓ କହିଲେ ବିଚାର ଠିକ୍ । ଏକଥା ଆମକୁ କେହି କହିନଥିଲେ । କିନ୍ତୁ ସାଙ୍ଗେ ସାଙ୍ଗେ ଆଉ ଜଣେ ଉଠିପଡ଼ି ପଚାରିଲେ "ଆମ ମନକୁ କଥାଟା ପାଉଛି, କିନ୍ତୁ ଗାଈ ବଦଳରେ ବଳଦ ବା ବାଛୁରୀ ମାଂସ ଖାଇଲେ ତ କ୍ଷତି ନାହିଁ ।" ମୁଁ କହିଲି ଗୋମାଂସ ମାନେ ଗାଈ, ବଳଦ, ବାଛୁରୀ, ଷଣ୍ଢ ସମସ୍ତଙ୍କର ମାଂସ । ଆମେ ଗାଈକୁ ଯେପରି ଗୋମାତା କହୁ, ବଳଦ ସେମିତି ଆମର ଭାଇ, ଭାରତ

ଏକ କୃଷି ପ୍ରଧାନ ଦେଶ । ଏଠି ଚାଷବାସରେ ବଳଦ କୃଷକଙ୍କୁ ଭାଇ ଭଳି ସାହାଯ୍ୟ କରେ, କଳେଇ ବୋହିଆଣେ, ବେଙ୍ଗଳା ପକାଇ ଧାନ ଅମଳ କରେ, ଚାଷୀଙ୍କୁ ଶଗଡ଼ରେ ବସାଇ ହାଟ, ବଜାର ଓ ବନ୍ଧୁ ବାନ୍ଧବଙ୍କ ଘରକୁ ନେଇଯାଏ, ଗାଁରେ ଶଗଡ଼ ବିନା ପେଟ୍ରୋଲ୍‌ରେ ମଟର ଗାଡି ଭଳି କାମରେ ଆସେ, ଏପରିକି ଗାଈଗୋରୁଙ୍କ ଗୋବର ଖତ ପଡ଼ି ଫସଲ ହସି ଉଠେ । ସେପରି ଷଣ୍ଢଦ୍ୱାରା ଗାଈ ଗୋରୁଙ୍କ ବଂଶ ବୃଦ୍ଧି ହୁଏ । ଏପରି ଭାଇର ମାଂସ କେମିତି ଭାଇ ଖାଇବ ? ଗୋମାଂସ ଖାଇଲେ ଆମ କୃଷି ବ୍ୟାବସ୍ଥା ସମ୍ପୂର୍ଣ୍ଣ ଭୁଶୁଡି ପଡ଼ିବ, ଆମ ପିଲେ କ୍ଷୀର ଟୋପାଏ ପାଇବେ ନାହିଁ । ଏ କଥା ଶୁଣି ସମସ୍ତେ ଚୁପ୍ ହୋଇଗଲେ ଏବଂ ପରେ ଠିଆ ହୋଇ ଜୋର୍‌ରେ କରତାଳି ଦେଲେ । ବୁପୁର ଠିଆ ହୋଇ ଧନ୍ୟବାଦ ଦେଇ କହିଲେ- ଆପଣ ଆମ ମନରୁ ଭ୍ରାନ୍ତ ଧାରଣା ଦୂର କଲେ ।

ଲଞ୍ଚ୍ ବେଳ ଗଡ଼ି ଯାଇଥିଲା । ବୁପୁରଙ୍କୁ ପଚାରିଲି ମତେ ଭେଜିଟେରିଆନ୍ ମିଲ୍ କେଉଁଠି ମିଳିବ - ଖାଲି ଭାତ ଓ ପାଣିଆ ତରକାରି ହେଲେ ଚଳିବ । କ'ଣ କହି ମାଗିବି ? ସେ କହିଲେ ଗେଟ୍ ପାଖରେ ଗୋଟେ ଖାଇବା ଦୋକାନ ଅଛି । ଆପଣ କହିବେ ମତେ "ନାସିପୁତି ଓ ସାୟୁର ଆପାସାଜା" ଦିଅ । ନାସିପୁତି ହେଲା ଭାତ ଓ ସାୟୁର ଆପାସାଜା ହେଲା ପାଣି ସନ୍ତୁଳା ତରକାରି, ବିଭିନ୍ନ ପରିବା ପଡ଼ି ହୁଙ୍କା ହୋଇଥାଏ । ସେଇ ଦିନଠାରୁ ଭାରତ ଫେରିଲା ପର୍ଯ୍ୟନ୍ତ ନାସିପୁତି ଓ ସାୟୁର ଆପାସାଜା ଖାଇ ଇଣ୍ଡୋନେସିଆରେ ରହିଲି । ଫେରିବାର ସପ୍ତାହେ ପୂର୍ବରୁ ଜାକର୍ତାରେ ଥିବା ଭାରତୀୟ ଦୂତାବାସର ଜଣେ ବନ୍ଧୁଙ୍କୁ ଏ କଥା କହିବାରୁ ସେ ଅଳ୍ପ ହସି କହିଲେ ତମେ ଜାଣିଚ କି ଏଠାରେ ପରିବା ତରକାରିରେ ମଧ୍ୟ ଶୁଖିଲା ଗୋମାଂସ ଗୁଣ୍ଡ କରି ବେଳେବେଳେ ମସଲା ଭାବରେ ବ୍ୟବହାର କରନ୍ତି । ଓଡ଼ିଶାରେ ଶୁଖୁଆ ଗୁଣ୍ଡକୁ ତରକାରିରେ ପକାଇବା କଥା ଜାଣିଥିଲି । ତେଣୁ ତାଙ୍କ କଥା ଶୁଣି ରାମ୍ ରାମ୍ କହି ଥକା ହୋଇ ବସିପଡିଲି । ସେ ମୋ ଅବସ୍ଥା ଦେଖି ସାନ୍ତ୍ୱନା ଦେଇ କହିଲେ, ସାୟୁର ଆପାସାଜାରେ ଏମାନେ ଗୋମାଂସ ଗୁଣ୍ଡ ପକାନ୍ତି ନାହିଁ । ସେ ଯାହାହେଉ, ତୁମେ କାଲିଠାରୁ ଆମ ଦୂତାବାସର ଗେଷ୍ଟ ହାଉସ୍‌କୁ ଚାଲିଆସ ଓ ଆମ ଇଣ୍ଡିଆନ୍ କ୍ୟାଣ୍ଟିନ୍‌ରେ ଖାଅ । ଲଞ୍ଚ୍ ପ୍ୟାକେଟ୍ ନେଇ ଅଫିସ୍ ଯାଅ । ତାଙ୍କ କଥା ମାନି ଶେଷ ସପ୍ତାହଟି ଭାରତୀୟ ଦୂତାବାସରେ କଟାଇଲି । ଏବେବି ଇଣ୍ଡୋନେସୀୟଙ୍କୁ କୌଣସି ଆନ୍ତର୍ଜାତିକ ସଭା ସମ୍ମିଳନୀରେ ଦେଖିଲେ ମନେ ପଡ଼େ, ନାସିପୁତି ଓ ସାୟୁର ଆପାସାଜା କଥା ଓ ସାଲାଡ୍ ଲଞ୍ଚର ଅନୁଭୂତି ।

*୧୫ ନଭେମ୍ବର, ୨୦୦୭*



# 'ଦେବାନାମ୍ ଦେବା'

ଦ୍ୱୀପମାଳିନୀ ଇଣ୍ଡୋନେସିଆର ୩୨ଟି ପ୍ରଦେଶରୁ ସବୁଠାରୁ ବଡ଼ 'ଜାଭା' । ଆମ ଓଡ଼ିଆ ସାଧବ ପୁଅମାନେ ବାଣିଜ୍ୟପାଇଁ ଏଇ ଅଞ୍ଚଳକୁ ଯିବା ଆସିବା କରୁଥିଲେ । ଦେଶର ଅଧାରୁ ଅଧିକ ଲୋକ ଏଠି ରହନ୍ତି । ନବେ ଭାଗ ମୁସଲିମ୍ । ହଜାରେ କିଲୋମିଟର ଲମ୍ବା ଓ ଶହେଅଶୀ କିଲୋମିଟର ଚୌଡା ମହାଦ୍ୱୀପ । ଯୋଗଜାକର୍ତା ଗସ୍ତ ସମୟରେ ମୋ ସାଙ୍ଗରେ ଥାନ୍ତି ଇଣ୍ଡୋନେସିଆ ଶିକ୍ଷା ମନ୍ତ୍ରାଳୟର ଜଣେ ପଦସ୍ଥ କର୍ମଚାରୀ ଶ୍ରୀ ଅହମ୍ମଦ୍ । ଫେଆରୱେଲ୍ ମିଟିଂ ପରେ ଆମେ ଏକାଠି ହୋଟେଲ୍‌କୁ ଫେରୁଥିଲୁ । କହିଲେ "ଆପଣଙ୍କ ସାଙ୍ଗରେ ବୁଲିବାରୁ ମୁଁ ଏବେ ମୋ ଦେଶ ଓ ଆପଣଙ୍କ ଦେଶ ବିଷୟରେ ଅଧିକ ଜାଣିବାକୁ ପାଉଛି । ସତରେ, ଏପର୍ଯ୍ୟନ୍ତ ମୋର ଧାରଣା ଥିଲା, ରାମଙ୍କର ଜନ୍ମସ୍ଥାନ ଅଯୋଧ୍ୟା ହେଉଛି ଆମ ଯୋଗଜାକର୍ତା (ପୁରୁଣା ନାମ 'ଅଯୋଗ୍ୟା') । ଆଜି ଶୁଣିଲି ଭାରତରେ ବି ଗୋଟେ 'ଅଯୋଗ୍ୟା' ଅଛି । ରାମ କ'ଣ ସତରେ ଭାରତୀୟ ? କହିଲି 'ତମେ ଯେମିତି ଭାବୁଛ ରାମ ତମ ଦେଶରେ ଜନ୍ମ ହୋଇଥିଲେ, ଆମେ ଜାଣୁ ସେ ଆମ ଦେଶର ଅଯୋଧ୍ୟା ନଗରୀରେ ଜନ୍ମ ହୋଇଥିଲେ । ପ୍ରକୃତରେ ରାମଙ୍କ ଜନ୍ମସ୍ଥାନ ବା ନାସନାଲିଟି ଏତେ ଗୁରୁତ୍ୱପୂର୍ଣ୍ଣ ନୁହେଁ, ତାଙ୍କ କର୍ମ, ଆଚରଣ, ଚରିତ୍ର, ବିଚାର ଓ ସୁଶାସନଯୋଗୁଁ ସେ ଆମ ସମାଜର ରୋଲ୍ ମଡେଲ୍ । ସେହିଭଳି ପ୍ରଫେଟ୍ ମହମ୍ମଦ, ଯୀଶୁଖ୍ରୀଷ୍ଟ, ଗୌତମ ବୁଦ୍ଧ କୌଣସି ଦେଶର ଲୋକ ନୁହଁନ୍ତି । ସେମାନଙ୍କର ଚରିତ୍ର, ଚିନ୍ତା ଓ ବିଚାରକୁ ଭିସା, ପାସ୍‌ପୋର୍ଟରେ ବାନ୍ଧି ରଖିହେବ ନାହିଁ ।

ଏହିଭଳି କଥା ହେଉ ହେଉ ବାଟ ସରିଗଲା । ହୋଟେଲ୍‌ରେ ପହଞ୍ଚିଲୁ । ପଥ କଟିଯାଏ କଥାରେ, ବୁଦ୍ଧି ଲୁଚିଯାଏ ମଥାରେ । ତା' ଆରଦିନ ଅପରାହ୍ନରେ ଜାକର୍ତା ଫେରିଯିବାର କଥା । ଯୋଗଜାକର୍ତା ବିମାନ ବନ୍ଦର ନାଁ ଆଦି ସୁପିଟୋ ଏଆରପୋର୍ଟ । ଯେଉଁ ଏଆର୍‌ଲାଇନ୍‌ରେ ଫେରିବା କଥା ତା ନାଁ 'ସଂପାତି' - ରାମାୟଣର ଆଉ ଏକ

ଚରିତ୍ର । ସେତେବେଳେ ଇଣ୍ଡୋନେସିଆରେ ଦୁଇଟି ଏଆରଲାଇନ୍ ଥିଲା । ଇଣ୍ଟରନାସନାଲ ଏଆରଲାଇନ୍ ନାଁ ହେଲା ଗରୁଡ଼ ଓ ଡୋମେଷ୍ଟିକ୍ ଏଆରଲାଇନ୍ ନାଁ 'ସଂପାତି' । ନ ଜାଣିବା ଭଳି ଅହମ୍ମଦଙ୍କୁ ପଚାରିଲି 'ସଂପାତି' ମାନେ କ'ଣ ? କହିଲେ "ଜାଣିନାହାନ୍ତି ? ସୀତାଙ୍କୁ ହରଣ କରି ନେଉଥିବା ରାବଣଙ୍କ ପଥରୋଧ କରି ଯେଉଁ ପକ୍ଷୀରାଜ ଜଟାୟୁ ଲଢେଇ କରିଥିଲେ 'ସଂପାତି' ତାଙ୍କରି ସନ୍ତାନ ।" ସେ ପିତା ଜଟାୟୁଙ୍କଠାରୁ ଅଧିକ ବେଗରେ ଉଡ଼ି ପାରୁଥିଲେ ଓ ସୀତାଙ୍କ ଉଦ୍ଧାରପାଇଁ ଶ୍ରୀରାମଙ୍କୁ ସାହାଯ୍ୟ କରିଥିଲେ । ମତେ ଲାଗିଲା, ଭାରତ ଅପେକ୍ଷା ଏ ଦେଶର ଲୋକେ ରାମାୟଣ କଥା ବେଶି ଜାଣନ୍ତି, ରାମଙ୍କୁ ବେଶି ଶ୍ରଦ୍ଧା କରନ୍ତି ।

ଆମ ଦେଶର ଏକ ରାଜ୍ୟ ତାମିଲନାଡୁରେ ନାସ୍ତିକବାଦୀ ରାମସ୍ୱାମୀ ନାଇକରଙ୍କ ଅନ୍ଧ ସମର୍ଥକମାନେ ଥରେ ରାମଙ୍କ ଫଟୋରେ ଜୋତାମାଳ ପିନ୍ଧାଇ ରାସ୍ତାରେ ବୁଲାଇଥିଲେ । ପ୍ରତିକ୍ରିୟା ଓ ପରନିନ୍ଦାରେ ପରମ ଆନନ୍ଦ । ଏବେ ସେହି ରାଜ୍ୟର ଅହଙ୍କାରୀ ମୁଖ୍ୟମନ୍ତ୍ରୀ ପଚାରୁଛନ୍ତି ରାମ କିଏ ସେ, କୋଉ ଇଞ୍ଜିନିୟରିଂ କଲେଜରେ ପାଠ ପଢ଼ିଥିଲେ ? ଏହାର ଯଥାର୍ଥ ଉତ୍ତର ହେବ, କୋଣାର୍କ, ଖଜୁରାହ, ମିନାକ୍ଷୀ ମନ୍ଦିର, ରାଜାରାଣୀ, କାଠଯୋଡ଼ି ପଥର ବନ୍ଧ ଓ ତାଜମହଲ ଗଢ଼ିଥିବା କାରିଗରମାନେ କୋଉ ଇଞ୍ଜିନିୟରିଂ କଲେଜର ଛାତ୍ରଛାତ୍ରୀ ? ଆମ ରାଜ୍ୟରେ ଏକ ଉକ୍ତି ଅଛି - ସାତ କାଣ୍ଡ ରାମାୟଣ ଶୁଣି ସାରିଲା ପରେ ଜଣେ ମୂର୍ଖ (ଇଡିଅଟ୍) ପଚାରିଲା ସୀତା କିଏ ସେ ? ମାଇ କି ଅଣ୍ଡିରା ? ଏହିଭଳି ବ୍ୟକ୍ତିମାନେ ରାବଣଠାରୁ କୌଣସି ଗୁଣରେ କମ୍ ନୁହଁନ୍ତି ।

ତାଙ୍କ ରୁମ୍‌କୁ ଯିବା ପୂର୍ବରୁ ଅହମ୍ମଦ ପଚାରିଲେ ଆମର ଫ୍ଲାଇଟ୍ କାଲି ଅପରାହ୍ନରେ, ଯଦି ଆପଣଙ୍କର ଆପତ୍ତି ନଥାଏ ତେବେ ଫେରିବା ପୂର୍ବରୁ ଆମେ ପ୍ରମ୍ୱାନନ୍ ଓ ଗୁନୁଙ୍ଗ ମେରାପି ଦେଖି ଆସିବା । ମୁଁ ତତ୍‌କ୍ଷଣାତ୍ ରାଜି ହୋଇଗଲି । ପରଦିନ ସକାଳୁ ଆମେ ବାହାରିଲୁ ଗୁନୁଙ୍ଗ ମେରାପି - ସବୁଠାରୁ ବଡ଼ ଜୀବନ୍ତ ଆଗ୍ନେୟଗିରି । ଯେଉଁଠାରେ ଅଗ୍ନି ଉଦ୍‌ଗୀରଣ ହେଉଛି, ତା'ର ୫ କିଲୋମିଟର ଦୂରରୁ ଏକ ମଞ୍ଚା ଉପରେ ଚଢ଼ି ଫାୟାର୍ ମାଉଣ୍ଟେନ୍ ଗୁନୁଙ୍ଗ ମେରାପିର ପାଟିରୁ ବୋହି ଆସୁଥିବା ଉତ୍ତପ୍ତ ଲାର୍ଭାର ନଦୀ ଦେଖିଲୁ । ଭିକ୍ଟୋରିଆ ଓ ନାଏଗ୍ରା ଜଳପ୍ରପାତ ଚାରିପଟେ ଯେପରି ଜଳର ସମୁଦ୍ର ବ୍ୟାପିଥାଏ, ସେହିପରି ଗୁନୁଙ୍ଗ ମେରାପିର ୨୫ କିଲୋମିଟରେ ପରିଧି ଉତ୍ତପ୍ତ ଲାର୍ଭାର ପ୍ରବାହମାନ ସମୁଦ୍ର । ଏହି ଲାର୍ଭାଯୋଗୁଁ ଜାଭାର ମୃତ୍ତିକା ଅତ୍ୟନ୍ତ ଉର୍ବର । ଉତ୍ତର ଭାରତର ଗାଙ୍ଗେୟ ଉପତ୍ୟକା ପରି । ଏଠାରେ ଏକ ଘଣ୍ଟା ରହି ମନ୍ଦିରମାଳିନୀ ପ୍ରମ୍ୱାନନ୍ ଅଭିମୁଖେ ଯାତ୍ରା କଲୁ । ରାସ୍ତାର ଉଭୟ ପାର୍ଶ୍ୱରେ

ଧାନ କ୍ଷେତ ଓ ତା ପଛକୁ ଜଙ୍ଗଲ । କ୍ଷେତରେ କାମ କରୁଥିବା ଲୋକଙ୍କ ଭିତରୁ ଅଧିକାଂଶ ସ୍ତ୍ରୀ, ସବଳ, ହୃଷ୍ଟପୁଷ୍ଟ ଓ ହସମୁଖ । ପ୍ରକୃତି ଏ ରାଜ୍ୟ ପ୍ରତି ସଦୟ, କାରଣ ଏଠି ଦୁଇଟି ବର୍ଷାଋତୁ, ତେଣୁ ପରିବେଶ ସଦା ଶ୍ୟାମଳ । ଦିନବେଳା ତାପମାନ ୨୬ ରୁ ୨୮ ଡିଗ୍ରୀ ।

ଜାଭାରୁ ୨୦ କିଲୋମିଟର ଦୂର ଓ ରାଜରାସ୍ତାର କଡ଼ରେ ଅବସ୍ଥିତ ପ୍ରାମ୍ବାନନ୍ ମନ୍ଦିରମାନଙ୍କର ଶୀର୍ଷ ଭାଗ ଦଶ କିଲୋମିଟର ଦୂରରୁ ଦେଖାଯାଏ । ମନ୍ଦିର ପରିସର ଆମ ଜଗନ୍ନାଥ ମନ୍ଦିରଠାରୁ ପ୍ରାୟ ୫୦ ଗୁଣ ବଡ଼ । ତା'ଭିତରେ ଛୋଟ ବଡ଼ ହୋଇ ୨୨୪ଟି ମନ୍ଦିର (କାଣ୍ଡି - ଏଠି ମନ୍ଦିରକୁ କହନ୍ତି କାଣ୍ଡି) । ନବମ ଶତାବ୍ଦୀ ଶେଷ ଭାଗରେ ରାଜା ବଲିତୁଙ୍ଗ ଓ ଯକ୍ଷଙ୍କ ଅମଳରେ ନିର୍ମିତ । ଅଳ୍ପ ଦୂରରେ ଦ୍ୱିତୀୟ ବୃହତ୍ତମ ବୌଦ୍ଧ ମନ୍ଦିର 'ସେୟୁ' - ଅର୍ଥାତ୍ ଏକ ସହସ୍ର । ସେୟୁ ଏକ 'ମଣ୍ଡଳ' ମଧ୍ୟରେ ଅବସ୍ଥିତ ଏବଂ  ମଣ୍ଡଳ ସମଗ୍ର ବିଶ୍ୱର ପ୍ରତୀକ । ମଣ୍ଡଳକୁ ଘେରି ଚାରିପଟେ ଚାରିଟି ବଳୟ । ପ୍ରତ୍ୟେକ ବଳୟରେ ୨୫୦ଟି କ୍ଷୁଦ୍ର ମନ୍ଦିର । ଏହିପରି ଏକ ସହସ୍ର କ୍ଷୁଦ୍ର ମନ୍ଦିର ମଧ୍ୟରେ ଥିବାରୁ ନାମ 'ସେୟୁ' । ପଚାଶ 'ରୁପେୟା' (ଇଣ୍ଡୋନେସିଆ କରେନ୍‌ସି ବା ଟଙ୍କା ନାଁ ରୁପେୟା) ଦେଇ ମନ୍ଦିର ପରିସରରେ ପ୍ରବେଶ କଲୁ ।

ପାଖରେ ଥାନ୍ତି ଜଣେ ଗାଇଡ୍ - ନାଁ ରହମାନ୍ । ଟେମ୍ପଲ୍ ଟୁରିଜିମ୍‌ରେ ଡିପ୍ଲୋମାଧାରୀ । ହିନ୍ଦୁ ମନ୍ଦିରପାଇଁ ମୁସଲମାନ୍ ଗାଇଡ୍ ଦେଖି ଖୁସି ହେଲି । ପ୍ରଥମେ ଆମକୁ ନେଇଗଲେ ଏକ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ଦୁର୍ଗା ମନ୍ଦିରକୁ । ତ'ପରେ ଏହି ମନ୍ଦିରର ଇତିହାସ ବର୍ଣ୍ଣନା କଲେ । ଅତି ସୁନ୍ଦରୀ ଜାଭା ରାଜକନ୍ୟା 'ଲାରା'ଙ୍କୁ ମହାପରାକ୍ରମୀ ଅସୁର ରାଜା ବାନ୍ଦୁଙ୍ଗ ବୋଣ୍ଡୋୱସା ବିବାହ କରିବାକୁ ଚାହିଁଲେ । କିନ୍ତୁ ଲାରା ବାନ୍ଦୁଙ୍ଗଙ୍କୁ ବିବାହ କରିବାକୁ ଚାହୁଁନଥିଲେ । ତେଣୁ ଏକ ସର୍ତ୍ତ ରଖିଲେ - ଯଦି ବାନ୍ଦୁଙ୍ଗ୍ ଗୋଟିଏ ରାତିରେ ଏକ ସହସ୍ର ମୂର୍ତ୍ତି ତିଆରି କରିଦେବେ, ତେବେ ସେ ତାଙ୍କୁ ବାହା ହେବେ । ବାନ୍ଦୁଙ୍ଗ ରାଜି ହୋଇ ମୂର୍ତ୍ତି ତିଆରିରେ ଲାଗିଗଲେ । ରାତି ନ ପାହୁଣୁ ୯୯୯ ଟି ମୂର୍ତ୍ତି ଗଢ଼ିଦେଲେ । ଆଉ ଗୋଟିଏ ମୂର୍ତ୍ତି ବାକି ରହିଲା । ଏହା ଦେଖି ଲାରାଙ୍କ ସଖୀମାନେ ପାଳଗଦାରେ ନିଆଁ ଲଗାଇ ଦେଲେ, କୁକୁଡ଼ାମାନଙ୍କୁ ଉଠାଇ ଦେଲେ, ଧାନ କୁଟିବା ଆରମ୍ଭ କରିଦେଲେ । ଆଲୁଅ ଓ ସକାଳର ଅନ୍ୟ ସବୁ ଲକ୍ଷଣ ଦେଖି ବାନ୍ଦୁଙ୍ଗଙ୍କୁ ଶେଷ ମୂର୍ତ୍ତିଟି ଗଢ଼ିବା ବନ୍ଦ କରିବାକୁ ପଡ଼ିଲା । ବାଜି ହାରିଗଲେ । କିନ୍ତୁ ପରେ ଯେତେବେଳେ ଜାଣିପାରିଲେ ଯେ ଏହା ଏକ ଧୋକା, ଅତି କ୍ରୋଧରେ 'ଲାରା'ଙ୍କୁ ଅଭିଶାପ ଦେଇ କହିଲେ ତୁ ହୋଇଯା ଶେଷ ମୂର୍ତ୍ତି । ସେହିଦିନଠାରୁ 'ଲାରା' ଶେଷ ମୂର୍ତ୍ତି ହୋଇ ଦୁର୍ଗା ଭାବରେ ପୂଜା ପାଇଲେ ।

ଏହି କିମ୍ବଦନ୍ତୀଟି ଶୁଣାଇ ରହମାନ ଆମକୁ ନେଇଗଲେ ବିଶାଳ ଓ ବିସ୍ମୟ ମନ୍ଦିର ତ୍ରୟୀ ପ୍ରମ୍ବାନନ୍ ସାମ୍ନାକୁ । ତିନିଟି ମନ୍ଦିର - ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ନାମରେ । ଉତ୍ତରପଟେ ବିଷ୍ଣୁ, ଦକ୍ଷିଣ ପଟେ ବ୍ରହ୍ମା ଓ ମଝିରେ ଶିବ । ଭାରତରେ କେବଳ ପୁଷ୍କରଠାରେ ଏକ ବ୍ରହ୍ମା ମନ୍ଦିର ଦେଖିଥିଲି । - ଶିବ ଓ ବିଷ୍ଣୁ ମନ୍ଦିର ଅନେକ । ସ୍ରଷ୍ଟାଙ୍କୁ ସୃଷ୍ଟି ଭୁଲିଯାଇଛି । ବାପ, ମା'ଙ୍କୁ ପିଲାଏ ଭୁଲିଗଲା ଭଳି । ବିଷ୍ଣୁ ମନ୍ଦିର ସାମ୍ନାରେ ଗରୁଡ଼, ଶିବ ମନ୍ଦିର ସାମ୍ନାରେ ନନ୍ଦୀ ଓ ବ୍ରହ୍ମା ମନ୍ଦିର ସାମ୍ନାରେ ହଂସ - ତିନି ଦେବତାଙ୍କ ବାହନ ବା ଡ୍ରାଇଭରଙ୍କପାଇଁ ତିନୋଟି ଛୋଟ ମନ୍ଦିର । ଶିବ ମନ୍ଦିରର ବାରଟି ପାର୍ଶ୍ୱ ଓ ସେ ସବୁଥିରେ ସମ୍ପୂର୍ଣ୍ଣ ରାମାୟଣର ମନୋମୁଗ୍ଧକର ଚିତ୍ର - ପ୍ରସ୍ତର ଖୋଦିତ କଳା । ସେହିପରି ବିଷ୍ଣୁ ମନ୍ଦିର ଚାରିପଟେ କୃଷ୍ଣଲୀଳା ଓ ବ୍ରହ୍ମା ମନ୍ଦିର ଚତୁଃପାର୍ଶ୍ୱରେ ସୃଷ୍ଟିର ଇତିହାସ ଖୋଦିତ । ଶିବ ମନ୍ଦିରର ଉଚ୍ଚତା ୪୭ ମିଟରେ, ଉଭୟ ପାର୍ଶ୍ୱରେ ଥିବା ବିଷ୍ଣୁ ଓ ବ୍ରହ୍ମା ମନ୍ଦିର ତା'ଠାରୁ ସାନ । ଏବେ ଜାଭାରେ ଘଟିଥିବା ଭୂମିକମ୍ପଦ୍ୱାରା ପ୍ରମ୍ବାନନ୍ ଦୋହଲି ଯାଇଥିବାରୁ ପ୍ରତ୍ନତତ୍ତ୍ୱ ବିଭାଗ ରିପେୟାର୍ କାମରେ ଲାଗିଛନ୍ତି ।

ଗାଇଡ୍ ରହମାନଙ୍କୁ ପଚାରିଲି, ଶିବଙ୍କ ମନ୍ଦିର କାହିଁକି ବିଷ୍ଣୁ ଓ ବ୍ରହ୍ମାଙ୍କ ମନ୍ଦିର ମଝିରେ ଅଛି ଓ କାହିଁକି ଏହାର ଉଚ୍ଚତା ଅଧିକ ? ଇଂରାଜୀ ଓ ସଂସ୍କୃତକୁ ମିଶାଇ ଉତ୍ତର ଦେଲେ - "ବିଷ୍ଣୁ ଇଜ୍ ଦେବା, ବ୍ରହ୍ମା ଇଜ୍ ଦେବା, ବଟ୍ ଶିବା ଇଜ୍ ମହାଦେବା, ଦେବାନାମ୍ ଦେବା ।" ସେ ଦେବତାଙ୍କ ଦେବତା ତେଣୁ ମହାଦେବ, ବ୍ରହ୍ମା ଓ ବିଷ୍ଣୁଙ୍କଠାରୁ ବି ବଡ଼ । ପରେ ସେ ଜାଣି ପାରିଲେ ମୁଁ ଭାରତରୁ ଆସିଛି । କହିଲେ ଯେତିକି ଜାଣିଛି ସେତିକି କହିଲି । ତାଙ୍କୁ ଧନ୍ୟବାଦ ଦେଇ ଫେରିଲା ବେଳକୁ କହିଲେ ଆପଣମାନେ ସନ୍ଧ୍ୟା ପର୍ଯ୍ୟନ୍ତ ରହନ୍ତୁ, ରାମାୟଣ 'ବାଲେ' ଦେଖିକରି ଯିବେ । ସମଗ୍ର ଦକ୍ଷିଣ ପୂର୍ବ ଏସିଆରେ ରାମୟଣ 'ବାଲେ' ଅତ୍ୟନ୍ତ ଲୋକପ୍ରିୟ । ସମୟ ନଥିବାରୁ ରହିପାରିଲୁ ନାହିଁ । ଭାବୁଥିଲି, ଦକ୍ଷିଣ ପୂର୍ବ ଏସିଆର ହିରୋ ଶ୍ରୀରାମଙ୍କ ବିଷୟରେ ଭାରତରେ ପ୍ରଶ୍ନ ହେଉଛି, ସେ କେଉଁ ଇଞ୍ଜିନିୟରିଂ କଲେଜରେ ପାଠ ପଢ଼ିଥିଲେ । ଏହାପରେ ଦେଶ କାଳ ପାତ୍ର ଜ୍ଞାନହୀନ ମୂର୍ଖମାନେ ପଚାରିବେ ରାମଙ୍କ ସାର୍ଟିଫିକେଟ୍ ଦେଖାଅ । ରାମ୍ ରାମ୍ ।

*୨୮ ନଭେମ୍ବର, ୨୦୦୭*



# ଇନ୍ଦ୍ରଜାତି, ନବଲୋକ, ବାନ୍ଦୁଙ୍ଗ୍ ଓ ବାଲିଯାତ୍ରା

"ସାତୁ ବଂଶା, ସାତୁ ବାହାଷା ଓ ସାତୁ ଦେଶା", "ଦେବାନାମ୍ ଦେବା" ଓ "ନାସିପୁତା ସାୟୁର୍ ଆପାସାଜା" - ଏ ତିନିଟି ଲେଖାରେ ଇଣ୍ଡୋନେସିଆରେ ଭାରତୀୟ ସଂସ୍କୃତିର ପ୍ରଭାବ ଆଲୋଚନା କରିଥିଲି । ଏବେ ଆଉ ଏକ ନୂଆ ଅନୁଭୂତି । ବାନ୍ଦୁଙ୍ଗ୍ ଓ ବାଲିଦ୍ୱୀପ ଯାତ୍ରାକୁ ନେଇ । ଜାକର୍ତା ମହାନଗରୀଠାରୁ ବାନ୍ଦୁଙ୍ଗ୍ ୧୮୦ କିଲୋମିଟର - ରାଜରାସ୍ତାରେ ଆମକୁ କାରରେ ଲାଗିଲା ତିନି ଘଣ୍ଟା । ପଶ୍ଚିମ ଜାଭାର ରାଜଧାନୀ ବାନ୍ଦୁଙ୍ଗ୍ ଖୁବ୍ ସୁନ୍ଦର ସହର, ନାତିଶୀତୋଷ୍ଣ ଜଳବାୟୁ । ଲୋକସଂଖ୍ୟା ବାଇଶି ଲକ୍ଷରୁ ଅଧିକ - ଭୁବନେଶ୍ୱରର ପ୍ରାୟ ଦୁଇଗୁଣ । ୧୭୮୬ ମସିହାରେ ହଲାଣ୍ଡର ଡଚ୍‌ମାନେ ପ୍ରଥମେ ବାନ୍ଦୁଙ୍ଗ୍ ଓ ଜାକର୍ତା ମଧ୍ୟରେ ରାସ୍ତା ତିଆରି କରିଥିଲେ ଓ ୧୯୦୬ ମସିହାରେ ବାନ୍ଦୁଙ୍ଗ୍ ହେଲା ଏକ ମୁନିସିପାଲିଟି - ଏକ ସହର । ଏଠାରେ ବହୁ ଜାତୀୟ, ଅନ୍ତର୍ଜାତୀୟ ସମ୍ମିଳନୀ ଆୟୋଜିତ ହେଉଥିବାରୁ ବାନ୍ଦୁଙ୍ଗ୍‌କୁ "ସମ୍ମିଳନୀ-ନଗରୀ" ବା କନ୍‌ଫରେନ୍ସ ସିଟି ବୋଲି କୁହାଯାଏ । ୧୯୫୫ ମସିହାରେ ଏଠାରେ ପ୍ରଥମେ ଆଫ୍ରୋ-ଏସିଆ ସମ୍ମିଳନୀ ହୋଇଥିଲା ଓ ବାନ୍ଦୁଙ୍ଗ୍ ଘୋଷଣାପତ୍ରରେ ୨୯ଟି ଦେଶର ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରପତି ସ୍ୱାକ୍ଷର କରିଥିଲେ । ଏହି ସମ୍ମିଳନୀରେ ପଣ୍ଡିତ ଜବାହରଲାଲ ନେହେରୁ ସଦ୍ୟ ସ୍ୱାଧୀନ କମ୍ୟୁନିଷ୍ଟ ଚାଇନାର ପ୍ରଧାନମନ୍ତ୍ରୀ ଚଉ ଏନ୍ ଲାଇଙ୍କୁ ବିଭିନ୍ନ ଦେଶରୁ ଆସିଥିବା ଶାସନମୁଖ୍ୟଙ୍କ ସହ ପରିଚିତ କରାଇଥିଲେ । ଏହି କାରଣରୁ ଯୁକ୍ତରାଷ୍ଟ୍ର ଆମେରିକା ନେହେରୁଙ୍କ ଉପରେ ବିରକ୍ତ ହୋଇଥିଲା । ଏହା ପରେ ନାସେର୍, ଟିଟୋ, ସୁକର୍ଣ୍ଣ, ହୋ ଚି ମିନ୍, ଫାଇଡେଲ୍ କାଷ୍ଟ୍ରୋ ଓ ପଣ୍ଡିତ ନେହେରୁ ମିଶି ନିରପେକ୍ଷ ଦେଶଙ୍କ ସମ୍ମିଳନୀର ମୂଳଦୂଆ ପକାଇଥିଲେ ।

କୁହାଯାଏ ଯେ, ଭାରତର ସ୍ୱାଧୀନତା ଓ ବାନ୍ଦୁଙ୍ଗ୍ ସମ୍ମିଳନୀର ଘୋଷଣାନାମାର ପ୍ରେରଣା ଫଳରେ ପୃଥିବୀରେ ଉପନିବେଶବାଦର ଦୁର୍ଗ କ୍ରମେ ଦୁର୍ବଳ ଓ ପରେ ନିଶ୍ଚିହ୍ନ ହୋଇଯାଇଥିଲା । ବାନ୍ଦୁଙ୍ଗ୍ ସମ୍ମିଳନୀ ପରେ ଯେତେ ଦେଶ ସ୍ୱାଧୀନ ହେଲେ, ସେମାନେ ଆମେରିକା ବା ସୋଭିଏତ୍ ୟୁନିଅନ୍ ନେତୃତ୍ୱାଧୀନ ଗୋଷ୍ଠୀରେ ନ ରହି ନନ୍ ଆଲାଏନ୍‌ଡ ମୁଭ୍‌ମେଣ୍ଟ ('ନାମ୍')ରେ ଯୋଗଦେଇ ଗୋଷ୍ଠୀ ନିରପେକ୍ଷ ରହିଲେ । ପ୍ରାୟ ୨୫ ବର୍ଷ ଭିତରେ ଏହି ଦେଶମାନଙ୍କ ସଂଖ୍ୟା ଶହେକୁ ଟପିଗଲା । ଆନ୍ତର୍ଜାତିକ କ୍ଷେତ୍ରରେ ଏମାନଙ୍କୁ କୁହାଗଲା ତୃତୀୟ ବିଶ୍ୱ । ଏହି ତୃତୀୟ ବିଶ୍ୱର କ୍ରମାଗତ ଚାପ ଫଳରେ ଅବଶେଷରେ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣ ବୈଷମ୍ୟର ଶେଷ ଦୁର୍ଗ ଭୁଶୁଡ଼ି ପଡ଼ିଲା ୧୯୯୨ ମସିହାରେ । ନେହେରୁଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିବା ଆନ୍ଦୋଳନ ୪୦ ବର୍ଷ ପରେ ନେଲ୍‌ସନ୍ ମାଣ୍ଡେଲାଙ୍କ ମୁକ୍ତିରେ ସମାପ୍ତ ହେଲା ।

ବାନ୍ଦୁଙ୍ଗ୍ ସମ୍ମିଳନୀ ଯେଉଁଠାରେ ଅନୁଷ୍ଠିତ ହୋଇଥିଲା ତା'ପାଖ ରାସ୍ତା ନାଁ ଦିଆଯାଇଛି, 'ଆଫ୍ରୋ-ଏସିଆନ୍ ଷ୍ଟ୍ରିଟ୍' । ସାମ୍ନାରେ ମ୍ୟୁଜିୟମ୍ । ଏଇ ମ୍ୟୁଜିୟମ୍‌ରେ ପ୍ରଥମ ଥରପାଇଁ ଦେଖିଲି, ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କୁ ନେଇ ଯାଉଥିବା ଉଡ଼ାଜାହାଜ ଦୁର୍ଘଟଣାର ଚିତ୍ର ଓ ଦୃଶ୍ୟ । ସେଠାରୁ ଆମେ ଗଲୁ ବାନ୍ଦୁଙ୍ଗ୍ ଟେକ୍‌ନୋଲୋଜି ୟୁନିଭରସିଟି । ପ୍ରୋ-ଚାନ୍‌ସେଲରଙ୍କ ସହ ମିଟିଙ୍ଗ୍ ଥାଏ । ତାଙ୍କ ଅଫିସ୍ ଆଗରେ ନାମଫଳକରେ ଲେଖାଯାଇଛି, ପ୍ରଫେସର ଇନ୍ଦ୍ରଜାତି । ଭାବିଲି ହିନ୍ଦୁ ହୋଇଥିବେ । ଖୁବ୍ ଖୁସିବାସିଆ ଲୋକ ଓ ଧାର୍ମିକ ମୁସ୍‌ଲିମ୍ । ପଚାରିଲି ଆପଣଙ୍କ ନାଁର ଅର୍ଥ ଜାଣନ୍ତି ? ନାହିଁ କଲେ । ମୁଁ ଯେତେବେଳେ ସ୍ୱର୍ଗର ରାଜା ଇନ୍ଦ୍ରଙ୍କର ସେ ଜାତି ଭାଇ ବୋଲି କହିଲି, ଭାରି ଖୁସି ହୋଇଗଲେ । ସ୍ୱରଚିତ ଦୁଇଟି ପୁସ୍ତକ ତାଙ୍କୁ ଦେଲି, ଗୋଟିକର ନାଁ "ଏଡସ୍ ଏଡୁକେସନ୍ ଫର୍ ଷ୍ଟୁଡେଣ୍ଟ ୟୁଥ୍" । କହିଲେ ଆପଣଙ୍କର ଏ ମାନୁଆଲ ତ ଆମ ଦେଶରେ ବ୍ୟବହାର ହେଉଛି, ଜାଣି ନଥିଲି ଆପଣ ଏହାର ଲେଖକ । ବହି ଉପରେ ମୋ ଅଟୋଗ୍ରାଫ୍ ମାଗିଲେ ଓ ପାଞ୍ଚ ମିନିଟ୍‌ପାଇଁ ନିଜ କକ୍ଷ ଭିତରକୁ ଯାଇ, ବିଶ୍ୱବିଦ୍ୟାଳୟର ବାର୍ଷିକ ରିପୋର୍ଟଟି ଆଣି ମୋ ହାତରେ ଧରାଇ ଦେଲେ । କହିଲେ ମୁଁ ଲେଖକ ନୁହେଁ, ଆପଣଙ୍କ ବହି ବଦଳରେ ମୋ ବହି ଦେଇ ପାରିବି ନାହିଁ । ଏଇ ଆନୁଆଲ ରିପୋର୍ଟଟି ଦେଉଛି । ମଲାଟରେ ବିଶ୍ୱବିଦ୍ୟାଳୟର 'ଏମ୍‌ବ୍ଲେମ୍' ଉପରେ ମୋ ନଜର ପଡ଼ିଗଲା ଓ ଆଖି ଲାଖି ରହିଲା । ଏଇ ପ୍ରତୀକଟି ଥିଲା, ଗଜାନନ ଗଣେଶଙ୍କ ମୂର୍ତ୍ତି । ରିପୋର୍ଟଟି ଏ ପର୍ଯ୍ୟନ୍ତ ସାଇତି ରଖିଛି । ଆମ ଦେଶରେ ବନ୍ଦେ ମାତରମ୍, ଗଣେଶ ପୂଜା ଓ ସରସ୍ୱତୀ ବନ୍ଦନା ନେଇ ଏତେ ବିବାଦ । ମୁସ୍‌ଲିମ୍ ଇଣ୍ଡୋନେସିଆ, ଏହାକୁ କେତେ ସହଜରେ ଗ୍ରହଣ କରିନେଇଛି ।

ଇନ୍ଦ୍ରଜାତିଙ୍କଠାରୁ ବିଦାୟ ନେଇ ସହର ଉପକଣ୍ଠରେ ଥିବା ଚିଡିଆଖାନା ଦେଖିବାକୁ ଗଲୁ । ଗେଟ୍‌ରେ ପୁଣି ଗଣେଶଙ୍କ ବିରାଟ ମୂର୍ତ୍ତି । ଗାଇଡ୍‌କୁ ପଚାରିଲି ଚିଡିଆଖାନାରେ ଏପରି ମୂର୍ତ୍ତି କାହିଁକି ? କହିଲେ ଏହା ମଣିଷ ଓ ପଶୁଙ୍କ ମଧ୍ୟରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ପ୍ରତୀକ ।

ସେଇଦିନ ସନ୍ଧ୍ୟାରେ ଫେରିଆସିଲୁ ଜାକର୍ତ୍ତା । ତା'ଆରଦିନ ସକାଳେ ବାହାରିଲୁ ବାଲି ଦ୍ୱୀପ । ଜାକର୍ତ୍ତାରୁ ଉଡାଜାହାଜରେ ଦୁଇ ଘଣ୍ଟାର ବାଟ । ଓଡ଼ିଶାର ସାଧବପୁଅଙ୍କୁ ଲାଗୁଥିଲା ଦୁଇ ମାସରୁ ଅଧିକ । ଲୋକସଂଖ୍ୟା ପ୍ରାୟ ୩୦ ଲକ୍ଷ ଏବଂ ଆୟତନ ୫୬୩୨ ବର୍ଗକିଲୋମିଟର । ପୂର୍ବରୁ ପଶ୍ଚିମ ପ୍ରାନ୍ତ ମଧ୍ୟରେ ଦୂରତା ୯୦ କିଲୋମିଟର, ଭୁବନେଶ୍ୱରରୁ ନୟାଗଡ ପର୍ଯ୍ୟନ୍ତ । ସୁଖଦ ଜଳବାୟୁ (୨୦ ରୁ ୩୩ ଡିଗ୍ରୀ) ଲୋକଙ୍କ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର, ଶାନ୍ତିପୂର୍ଣ୍ଣ ପରିବେଶ ଏବଂ ଅତି ଉତ୍କୃଷ୍ଟ ବେଳାଭୂମିଯୋଗୁଁ ବାଲି ବିଶ୍ୱ ପର୍ଯ୍ୟଟନ ମାନଚିତ୍ରରେ ସଦା ଉପରେ ଥାଏ । ପ୍ରତିଦିନ ୨୦ଟି ବିମାନଭରା ପର୍ଯ୍ୟଟକ ଏଠାକୁ ଆସନ୍ତି । ଅନ୍ୟ ଆକର୍ଷଣ ହେଲା ବାଲିରେ ଥିବା ହିନ୍ଦୁ ଧର୍ମ, ସଭ୍ୟତା ଓ ସଂସ୍କୃତି । ଶତକଡା ୯୦ ଭାଗ ଲୋକ ହିନ୍ଦୁ । ଜଣେ ପର୍ଯ୍ୟଟକ କହିଲେ, ତମ ଭାରତରେ ହିନ୍ଦୁ ସଭ୍ୟତା, ସଂସ୍କୃତି ଭେଜାଲ ହୋଇ ଗଲାଣି - ଏଠି ନିର୍ଭେଜାଲ ।

ଅଙ୍ଗୁରା ରାଏ ବିମାନ ବନ୍ଦରରେ ଓହ୍ଲାଇ ରାଜଧାନୀ ଡେନ୍‌ପାସାରରେ ଥିବା 'ତୀର୍ଥ ଗଙ୍ଗାଜଳ' ହୋଟେଲ୍‌ରେ ରହିଲୁ । ଭାରତରେ ଏପରି ନାଁରେ ଗୋଟିଏ ହେଲେ ହୋଟେଲ୍ ନାହିଁ । ଆମ ବଡ଼ ବଡ଼ ହୋଟେଲ୍ ନାଁ ଲା'ମେରିଡିଆନ୍, ମେ ଫେଆର୍ ଲାଗୁନ୍, ହିଲ୍‌ଟନ୍ ପାଲ୍ ହାଇଟ୍‌ସ୍ ଇତ୍ୟାଦି । ପରଦିନ ଗଲୁ ଉଦୟନ ବିଶ୍ୱବିଦ୍ୟାଳୟ । ଉଭୟ ପଟେ ଧାନକ୍ଷେତ । ଆଗ୍ନେୟଗିରିର ଲାଭାରେ ଉର୍ବର ମୃତ୍ତିକା । ସବୁଆଡେ ଫୁଲର ମହକ, ବରଗଛ ଓ ତେନ୍ତୁଳି ଗଛ, ସବୁଆଡେ ଦୂରରୁ ଦେଖାଯାଏ, ପବିତ୍ର ପର୍ବତ ଗୁନୁଙ୍ଗ୍ ଅଗଙ୍ଗ୍ । ରଙ୍ଗ ବେରଙ୍ଗର ପୋଷାକ ପିନ୍ଧି କ୍ଷେତରେ କାମ କରୁଥିବା ସ୍ତ୍ରୀ ଲୋକ ଓ ଛୋଟ ପିଲା । ବାଲିରେ ଛୋଟ ପିଲାଙ୍କୁ କୁହାଯାଏ, ପରଲୋକରୁ ଫେରି ପୁନର୍ଜନ୍ମ ନେଇଥିବା ନୂତନ ଆତ୍ମା । ବାଲିର ମନ୍ଦିରସବୁ ଓଡ଼ିଶାର ମନ୍ଦିର ଭଳି । ଘରସବୁ ବାସ୍ତୁ ଶାସ୍ତ୍ର ଅନୁସାରେ ତିଆରି । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର - ଏପରି ଚାରିଜାତି ଅଛନ୍ତି, କିନ୍ତୁ ଅସ୍ପୃଶ୍ୟତା ନାହିଁ, ଅନ୍ୟ ଜାତିରେ ବାହା ହେବାପାଇଁ ସାମାଜିକ ବାରଣ ନାହିଁ । ହରେକୃଷ୍ଣ, ସତ୍ୟସାଇ, ରବିଶଙ୍କର, ଆନନ୍ଦମାର୍ଗୀ, ମହେଶଯୋଗୀଙ୍କ ପ୍ରଭାବ ଏଠି ବେଶୀ । ପ୍ରତିବର୍ଷ ଲୋକେ ଭାରତକୁ ତୀର୍ଥ ଯାତ୍ରାରେ ଆସନ୍ତି ।

ବାଲିରେ ହିନ୍ଦୁ ଧର୍ମ ସମ୍ପର୍କରେ ଦୁଇଟି ଥିଓରି ଅଛି । କ୍ଷତ୍ରିୟ ଥିଓରି ଓ ବୈଶ୍ୟ ଥିଓରି । ପ୍ରଥମ ଥିଓରି ଅନୁସାରେ, ଚୋଳ ସାମ୍ରାଜ୍ୟ କାଳରେ ଏଠାକୁ ଆସିଥିଲା ହିନ୍ଦୁ ଧର୍ମ । ଦ୍ୱିତୀୟ ଅନୁସାରେ, ବୈଶ୍ୟ(ସାଧବ ପୁଅ)ମାନେ ଏଠାକୁ ଆଣିଥିଲେ ହିନ୍ଦୁ ଧର୍ମ ଓ ସଂସ୍କୃତି । ଏକ ତୃତୀୟ ଥିଓରି ଅନୁସାରେ, ଇସ୍‌ଲାମ୍ ଧର୍ମ ଗ୍ରହଣପାଇଁ ରାଜି ନ ହୋଇଥିବା ଇଣ୍ଡୋନେସୀୟ ହିନ୍ଦୁମାନେ ଘରଦ୍ୱାର ଛାଡି ଏଠାକୁ ଆସି ବସବାସ କରିଥିଲେ । ୧୯୨୩ ମସିହାରେ ରବୀନ୍ଦ୍ରନାଥ ଠାକୁର, ବାଲି ଭ୍ରମଣରେ ଆସି ଏଠାରେ ଭାରତୀୟ ସଂସ୍କୃତିର ପ୍ରଭାବ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ପୂର୍ବତନ ରାଷ୍ଟ୍ରପତି ସୁକର୍ଣ୍ଣଙ୍କ ମା' ଥିଲେ ବାଲିନିଜ୍ ହିନ୍ଦୁ । ତେଣୁ ସୁକର୍ଣ୍ଣ ବିଭିନ୍ନ ଧର୍ମାବଲମ୍ବୀଙ୍କୁ ଏକାଠି ଶାନ୍ତିରେ ରହିବାକୁ ଉତ୍ସାହିତ କରୁଥିଲେ । ଆକ୍‌ବର ଓ ଯୋଧାବାଈଙ୍କ କାହାଣୀ ମନେ ପଡିଲା । ଧର୍ମ ଓ ଜାତିର ସୀମା ଡେଇଁ ଯେଉଁମାନେ ବିବାହ କରନ୍ତି ତାହା ଅବଶେଷରେ ସମାଜପାଇଁ ମଙ୍ଗଳମୟ ହୁଏ ।

ବାଲିରେ ରହିଥିଲି ମାତ୍ର ଦୁଇ ଦିନ ଓ ଦୁଇଟି ଘଟଣା ଅଭୁଲା । ପ୍ରଥମଟି ହେଲା, କାର୍ ଦୁର୍ଘଟଣାରେ ନିହତ ବାଲି ଗଭର୍ଣ୍ଣର ଓ ତାଙ୍କ ନାତିଙ୍କ ଅନ୍ତିମ ଶୋଭାଯାତ୍ରାରେ ଯୋଗ ଦେବା । ଏଥିପାଇଁ ବାଲି ପ୍ରଦେଶ ସରକାର ନିମନ୍ତ୍ରଣ କରିଥିଲେ ।ଶ୍ମଶାନଠାରୁ ୨ କିଲୋମିଟର ଦୂରରେ ଏକ ବିରାଟ ରଥ ଭିତରେ ଦେହାବଶେଷ ରଖାଯାଇଥାଏ । କଞ୍ଚା ବାଉଁଶରେ ନିର୍ମିତ, ଏଇ ଶ୍ମଶାନ ରଥ ଥିଲା ଏକ ନବତଳ ପ୍ରାସାଦ । ଉଠାଇବାପାଇଁ ସ୍ୱର୍ଗତ ଗଭର୍ଣ୍ଣରଙ୍କ ଅଞ୍ଚଳରୁ ଜ୍ଞାତି, କୁଟୁମ୍ବ ସହ ଆସିଥାନ୍ତି ୫୦୦୦ ଲୋକ । ପ୍ରାୟ ୫୦,୦୦୦ ଲୋକ ଏକାଠି ହୋଇଥାନ୍ତି ଏ ଦୃଶ୍ୟ ଦେଖିବାକୁ । ମୋ ସାଙ୍ଗରେ ଥିବା ଉଦୟନ ବିଶ୍ୱବିଦ୍ୟାଳୟର ପ୍ରଫେସର ମେଘବାନ୍‌ଙ୍କୁ ପଚାରିଲି, ଏପରି ନବତଳ ରଥ କାହିଁକି ? କହିଲେ, ଏହା ମର୍ତ୍ତ୍ୟ ଲୋକରୁ ଆରମ୍ଭ କରି ସତ୍ୟ ଲୋକ ପର୍ଯ୍ୟନ୍ତ ନବ ଲୋକର ପ୍ରତୀକ । ଆତ୍ମା ମର୍ତ୍ତ୍ୟରୁ ଆଠଟି ଲୋକ ଆରୋହଣ ଓ ଅତିକ୍ରମ କରି ଅମର ସତ୍ୟ ଲୋକରେ ପହଞ୍ଚିବ । ତା'ପରେ ଦେହାବଶେଷକୁ ଅଗ୍ନିରେ ସମର୍ପଣ କରାଯିବ । ଏହା ଏଠାକାର ହିନ୍ଦୁମାନଙ୍କର ବିଶ୍ୱାସ । ତାଙ୍କୁ ପୁଣି ପଚାରିଲି, ସାଧାରଣ ଲୋକେ ତ ଏତେ ବଡ଼ ନବତଳ ରଥ ତିଆରି କରି ପାରିବେନି । କହିଲେ ଏପରି ଛୋଟ ଆକାରରେ ମଧ୍ୟ ନବତଳ ବିଶିଷ୍ଟ ରଥସବୁ ଏଠି ତିଆରି ହୁଏ । ସାମର୍ଥ୍ୟ ଅନୁସାରେ ଲୋକେ ଆକାର ବାଛନ୍ତି ।

ସେଦିନ ରାତିରେ ଆମକୁ ନିମନ୍ତ୍ରଣ କରାଯାଇଥିଲା ମହାଭାରତର ଶଲ୍ୟ ପର୍ବ ଦେଖିବାକୁ । ପହଞ୍ଚିଲା ବେଳକୁ ପ୍ରାୟ ୩୦ ହଜାର ଲୋକ ମୁକ୍ତାକାଶ ଷ୍ଟାଡିଅମ୍‌ରେ

ଜମା ହୋଇଛନ୍ତି । ଷ୍ଟେଜ୍‌ରେ ପ୍ରାୟ ଶହେ ବାଦ୍ୟଯନ୍ତ୍ରୀ । ରାତି ଏଗାରଟାରୁ ତିନିଟା ପର୍ଯ୍ୟନ୍ତ ଲୋକେ ବସି କରତାଳି ଦେଇ ଉପଭୋଗ କରୁଥାନ୍ତି । ଓଡ଼ିଶାର ଯାତ୍ରାପାର୍ଟି ଭଳି ବାଲିରେ ଲୋକେ ମାସ ମାସ ଧରି ରାମାୟଣ ଓ ମହାଭାରତ ଦେଖନ୍ତି । ସେମାନେ ଭାରତକୁ ଭଲ ପାଆନ୍ତି ଓ ଜଗନ୍ନାଥଙ୍କ ଓଡ଼ିଶାକୁ ଜାଣନ୍ତି । ଏଠାରେ ରାମାୟଣ ଓ ମହାଭାରତର ବର୍ଣ୍ଣନାରେ ସ୍ଥାନୀୟ ପରମ୍ପରା, କାହାଣୀ, କିମ୍ବଦନ୍ତୀସବୁ ସ୍ଥାନ ପାଇଛନ୍ତି । ବାଲ୍ମିକୀ, ବ୍ୟାସଙ୍କ ମହାକାବ୍ୟକୁ ଆହୁରି ସମୃଦ୍ଧ କରାଯାଇଛି । ସେମାନେ ସମସ୍ତେ ଜାତି ଏବଂ ସମ୍ପ୍ରଦାୟ ନିର୍ବିଶେଷରେ ଜଗନ୍ନାଥଙ୍କୁ ଆପଣାନ୍ତି । କିନ୍ତୁ ବିଡମ୍ବନା, ଓଡ଼ିଶାରେ ଆମେ ଜଗତର ନାଥଙ୍କୁ ରକ୍ଷଣଶୀଳ ହିନ୍ଦୁନାଥ ଓ ପଣ୍ଡାନାଥ କରି ସାରିଲା ପରେ, ଏବେ ଅନାଥ କରି ଦେଲେଣି । ଅନତି ଦୂରରେ ଲୋକନାଥ ବି ଏବେ ଅଳ୍ପ ଲୋକଙ୍କ ନାଥ ହୋଇଗଲେଣି ।

ଏବେ ବାଲିରୁ ତୀର୍ଥଯାତ୍ରାରେ ଭାରତ ଆସିଥିବା ଏହି ସଚ୍ଚା ହିନ୍ଦୁମାନଙ୍କୁ ମଧ୍ୟ ଜଗନ୍ନାଥ ମନ୍ଦିରରେ ପ୍ରବେଶ ଅନୁମତି ମିଳିଲା ନାହିଁ । ଏହି ଶ୍ରୀମନ୍ଦିରରେ ସ୍ୱୟଂ ମହାଲକ୍ଷ୍ମୀ ଏକ ଜାତି-ଧର୍ମ-ବର୍ଣ୍ଣ ଓ ଉଚ୍ଚ-ନୀଚ ଭେଦଭାବ ଶୂନ୍ୟ ସମାଜପାଇଁ ସଂଗ୍ରାମ ଆରମ୍ଭ କରିଥିଲେ । ଇଣ୍ଡୋନେସିଆର ହିନ୍ଦୁମାନେ ହିଁ କଥା ଓ କାର୍ଯ୍ୟରେ ମହାଲକ୍ଷ୍ମୀଙ୍କର ପ୍ରକୃତ ଅନୁଗାମୀ ।

*୨୭ ଡିସେମ୍ବର, ୨୦୦୭*



# ମୃତ୍ୟୁଦଣ୍ଡ ବନାମ ପ୍ରତିହିଂସା

ଦୁଇ ହଜାର ଛ' ମସିହା ଅକ୍ଟୋବର ୫ ତାରିଖ ରବିବାର ଦିନ ଏକ ଇରାକୀ ଟ୍ରିବ୍ୟୁନାଲ, ଦେଶର ପୂର୍ବତନ ରାଷ୍ଟ୍ରପତି ସଦାମ ହୁସେନ୍‌ଙ୍କୁ ଫାଶିଦଣ୍ଡର ଆଦେଶ ଦେଲେ । ତାଙ୍କର ଅପରାଧ ହେଲା ସେ ୧୯୮୦ ମସିହାରୁ କ୍ରମାଗତ ଓ ନିଷ୍ଠୁର ଭାବରେ ହଜାର ହଜାର ସିଆ ମୁସଲମାନ୍‌ଙ୍କୁ ମୃତ୍ୟୁମୁଖକୁ ପଠାଇ ଦେଇଥିଲେ । ଇରାକ୍‌ର ସିଆ ବହୁଳ କୁର୍ଦ୍ଦିସ୍ତାନର ବହୁ ନିର୍ଦ୍ଦୋଷ ଲୋକ ସଦାମଙ୍କ ଅତ୍ୟାଚାରର ଶିକାର ହୋଇଥିବା ପ୍ରମାଣିତ ହେବା ପରେ ଇରାକୀ କୋର୍ଟ ତାଙ୍କ ରାୟ ଦେଇଥିଲେ । ସେହିପରି ଆଜିକୁ ପ୍ରାୟ ୬୦ ବର୍ଷ ପୂର୍ବେ ନୁରେମ୍‌ବର୍ଗ ଟ୍ରିବ୍ୟୁନାଲ ହିଟଲରଙ୍କ ସହଯୋଗୀମାନଙ୍କୁ ଇହୁଦୀମାନଙ୍କ ଗଣହତ୍ୟା ଅପରାଧରେ ଦୋଷୀ ସାବ୍ୟସ୍ତ କରି ମୃତ୍ୟୁଦଣ୍ଡ ଆଦେଶ ଦେଇଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ହିଟଲରଙ୍କ ନାଜି ସରକାର ପ୍ରାୟ ତିରିଶ ଲକ୍ଷ ଇହୁଦୀଙ୍କୁ ବର୍ବରୋଚିତ ଭାବରେ ହତ୍ୟା କରିଥିଲେ । ଆମେରିକାର ରାଜଧାନୀ ୱାସିଂଟନ୍ ନଗରୀର ସ୍ଥାପିତ ହୋଲକଷ୍ଟ ମ୍ୟୁଜିୟମ୍‌ରେ ଏହି ଗଣହତ୍ୟାର କାହାଣୀ ପଢ଼ିଲେ ଓ ଦେଖିଲେ ଆଖିରେ ଲୁହ ଆସିଯାଏ । ୧୯୭୧ ମସିହାରେ ବାଂଲାଦେଶର ବହୁ ନେତା, ବୁଦ୍ଧିଜୀବୀ ଏହିପରି ଗଣହତ୍ୟାର ଶିକାର ହୋଇଥିଲେ ଏବଂ ସେମାନଙ୍କ ସ୍ମୃତିରେ ସରକାର ଢାକା ସହରରେ ଏକ ଶହୀଦ ତୋରଣ ତିଆରି କରିଛନ୍ତି ।

ଭାରତରେ ଗତ କୋଡ଼ିଏ ବର୍ଷ ମଧ୍ୟରେ ଏକ ଲକ୍ଷରୁ ଅଧିକ ନିର୍ଦ୍ଦୋଷ ବ୍ୟକ୍ତି ଆତଙ୍କବାଦୀ ହିଂସାର ଶିକାର ହେଲେଣି । ଏମାନଙ୍କୁ ଦଣ୍ଡ ଦେବ କିଏ ? ଏ ସମ୍ପର୍କରେ ଆମ୍‌ନେଷ୍ଟି ଇଣ୍ଟରନ୍ୟାସନାଲ୍ ଏବେ ବି ନୀରବ । ପଞ୍ଜାବ, କାଶ୍ମୀର, ଗୁଜୁରାଟ, ମହାରାଷ୍ଟ୍ର, ଉତ୍ତରପ୍ରଦେଶ ଓ ଉତ୍ତରପୂର୍ବ ରାଜ୍ୟରେ ନିର୍ଦ୍ଦୋଷ ହତ୍ୟାଦ୍ୱାରା ଯେଉଁ ପରିବାରସବୁ ସର୍ବସ୍ୱାନ୍ତ ହୋଇଗଲେ, ସେମାନଙ୍କ ଦୁଃଖର ଉପଚାର କ'ଣ ?

ସ୍ୱୟଂ ମହାତ୍ମାଗାନ୍ଧିଙ୍କୁ ଯଦି ନାଥୁରାମ ବିନାୟକ ଗଡ୍‌ସେଙ୍କର ବିଚାରକ ନିଯୁକ୍ତ କରାଯାଇଥାନ୍ତା, ତେବେ ସେ କ'ଣ ରାୟ ଦେଇଥାନ୍ତେ ? ମୃତ୍ୟୁଦଣ୍ଡ ? ଆଜୀବନ କାରାଦଣ୍ଡ ? ନା ହୃଦୟ ପରିବର୍ତ୍ତନ ଦଣ୍ଡ ? ଯୀଶୁଖ୍ରୀଷ୍ଟ ତ କ୍ରୁସ୍‌ରେ ରକ୍ତାକ୍ତ ଅବସ୍ଥାରେ ଥାଇ ଆତତାୟୀଙ୍କୁ କ୍ଷମା ଦେବାପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରିଥିଲେ । ହିଂସାର ଉତ୍ତର ଅହିଂସା ନା ପ୍ରତିହିଂସା ? ଦେଶ ଓ ସମାଜର ହିତ ଏବଂ ସୁରକ୍ଷାର ଉପାୟ କ'ଣ ? ଶାସନ ଓ ବିଚାର ବ୍ୟବସ୍ଥାରେ ଦଣ୍ଡର ସଂଜ୍ଞା କ'ଣ, ସ୍ୱରୂପ କ'ଣ ? କ୍ଷମା ଦେବାର ଅଧିକାରୀ କିଏ ? ପାର୍ଲାମେଣ୍ଟ, ରାଷ୍ଟ୍ରପତି, ସମାଜ ନା ଈଶ୍ୱର ? ଦଣ୍ଡ ଏକ ପ୍ରତିଷେଧ ନା ପ୍ରତିକାର ?

ଭାରତୀୟ ପାର୍ଲାମେଣ୍ଟ ଉପରେ ଆକ୍ରମଣ ଓ ସୁରକ୍ଷା କର୍ମୀଙ୍କ ହତ୍ୟା ଅପରାଧରେ ମହମ୍ମଦ ଆଫଜଲ୍ ଗୁରୁଙ୍କୁ ସୁପ୍ରିମ୍‌କୋର୍ଟ ମୃତ୍ୟୁଦଣ୍ଡ ଆଦେଶ ଦେବା ପରେ ସାରା ଦେଶରେ ଏହାର ସପକ୍ଷ ଓ ବିପକ୍ଷରେ ତର୍କ ଆରମ୍ଭ ହୋଇଛି । କାଶ୍ମୀର ମୁଖ୍ୟମନ୍ତ୍ରୀ ଗୁଲାମ ନବୀ ଆଜାଦ୍ ଆଫଜଲ୍ ଗୁରୁଙ୍କୁ ଫାଶୀ ନ ଦେଇ ଆଜୀବନ କାରାଦଣ୍ଡ ସପକ୍ଷରେ ଯୁକ୍ତି କରି କହନ୍ତି ଯେ ଏହା ମୃତ୍ୟୁଦଣ୍ଡଠାରୁ ଅଧିକ କଠୋର । ବିପକ୍ଷ କହନ୍ତି, ମୃତ୍ୟୁଦଣ୍ଡ ଆଜୀବନ କାରାବାସଠାରୁ କଠୋର । ଏହା ପୂର୍ବରୁ ଦିଲ୍ଲୀ ହାଇକୋର୍ଟ, ପ୍ରିୟଦର୍ଶିନୀ ମଟ୍ଟୁଙ୍କୁ ବଳାତ୍କାର ପରେ ବର୍ବରୋଚିତ ଭାବରେ ହତ୍ୟା କରିବା ଅପରାଧରେ ଜଣେ ବରିଷ୍ଠ ପୁଲିସ୍ ଅଧିକାରୀଙ୍କ ପୁତ୍ର ସନ୍ତୋଷ ସିଂଙ୍କୁ ମୃତ୍ୟୁଦଣ୍ଡ ଆଦେଶ ଦେଇଛନ୍ତି । ସେହିପରି ଜେସିକା ଲାଲ୍‌ଙ୍କୁ ରାତି ଅଧରେ ମଦ ନ ଦେବାରୁ ଗୁଳି କରି ହତ୍ୟା ଅପରାଧରେ ଜଣେ ମନ୍ତ୍ରୀଙ୍କ ପୁଅ ମନୁ ଶର୍ମାଙ୍କୁ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରାଯାଇଛି । ଲଣ୍ଡନ ଟ୍ୟୁବ ରେଲ୍‌ରେ ବୋମା ବିସ୍ଫୋରଣ ଅପରାଧରେ ଏବେ ସେଠାର କୋର୍ଟ ଅପରାଧୀଙ୍କୁ ୪୦ ବର୍ଷ ପର୍ଯ୍ୟନ୍ତ କାରାଦଣ୍ଡ ଦେଇଛନ୍ତି । ଭାରତୀୟ ପିଙ୍ଗଳ କୋଡ୍‌ରେ ହତ୍ୟାକାରୀଙ୍କୁ ମୃତ୍ୟୁଦଣ୍ଡ ଦେବା ଅଧିକାର କୋର୍ଟଙ୍କୁ ଦିଆଯାଇଛି । ଏବେ ପ୍ରଶ୍ନ କରାଗଲାଣି ଯେ ସରକାରୀ ଅବହେଳା ଓ ନୀତି ବିଭ୍ରାଟଯୋଗୁଁ ଶହ ଶହ ସଂଖ୍ୟାରେ ଯେଉଁ କୃଷକମାନେ ପ୍ରତିବର୍ଷ ଆତ୍ମହତ୍ୟା କରୁଛନ୍ତି ସେଥିପାଇଁ ଯେଉଁମାନେ ଦାୟୀ ତାଙ୍କ ପାଇଁ ଦଣ୍ଡ କ'ଣ ? ଓଡ଼ିଶାରେ ଏବେ ଜଣେ କପାଚାଷୀ ଆତ୍ମହତ୍ୟା କରିଛନ୍ତି । ସେହିପରି ସାମ୍ପ୍ରଦାୟିକ ହିଂସାରେ ପ୍ରାଣ ହରାଇଥିବା ବ୍ୟକ୍ତିଙ୍କର ଅପରାଧୀ କିଏ, କେତେଜଣ ଫାଶୀଦଣ୍ଡ ପାଇଲେଣି ? ଏହିପରି ଅନେକ ପ୍ରଶ୍ନର ଉତ୍ତର ମିଳୁନାହିଁ । ଆଜି ସୁଦ୍ଧା ପ୍ରାୟ ୪୦୦ ରୁ ଅଧିକ ବ୍ୟକ୍ତି ଫାଶୀ ଖୁଣ୍ଟରେ ଝୁଲିବାପାଇଁ ଜେଲ୍‌ମାନଙ୍କରେ ବସି ରହିଛନ୍ତି ।

ଅନ୍ୟ ପକ୍ଷରେ ଏପର୍ଯ୍ୟନ୍ତ ପୃଥିବୀର ୧୨୯ଟି ଦେଶ, ଫାଶୀଦଣ୍ଡ ବ୍ୟବସ୍ଥାକୁ ଉଚ୍ଛେଦ କରି ସାରିଲେଣି । ବାକି ଯେଉଁ ୬୮ଟି ଦେଶରେ ଏଇ ଦଣ୍ଡ ଏବେ ବି କାଏମ୍ ରହିଛି ତାଙ୍କ ମଧ୍ୟରେ ଅଛନ୍ତି ଯୁକ୍ତରାଷ୍ଟ୍ର ଆମେରିକା, ଜାପାନ୍, କ୍ୟୁବା, ଇଜିପ୍ଟ, ସାଉଦି ଆରବ, ଭାରତ, ପାକିସ୍ଥାନ ଓ ଚୀନ୍ ଇତ୍ୟାଦି । ଏପରିକି ଯୁକ୍ତରାଷ୍ଟ୍ର ଆମେରିକାର ୫୦ଟି ପ୍ରଦେଶ ମଧ୍ୟରୁ ୧୨ ଟି ପ୍ରଦେଶ ଏହାକୁ ଉଚ୍ଛେଦ କରିସାରିଲେଣି । ଅନ୍ୟ ୩୮ଟି ପ୍ରଦେଶରେ, ଫାଶୀଖୁଣ୍ଟରେ ନ ଝୁଲାଇ ମାରାତ୍ମକ ଇଞ୍ଜେକ୍‌ସନ୍‌ଦ୍ୱାରା ମୃତ୍ୟୁଦଣ୍ଡକୁ କାର୍ଯ୍ୟକାରୀ କରାଯାଉଛି । ଏହାଛଡ଼ା ଆମେରିକାରେ ଆଜୀବନ କାରାଦଣ୍ଡ ପ୍ରକୃତରେ ସାରା ଜୀବନପାଇଁ ଓ ମୃତ୍ୟୁ ପର୍ଯ୍ୟନ୍ତ । ଭାରତରେ ଏହା କେବଳ ୧୪ ବର୍ଷପାଇଁ । ମୁସଲିମ୍ ଦେଶମାନଙ୍କ ମଧ୍ୟରେ ତୁର୍କୀ ଓ ତୁର୍କମେନିସ୍ଥାନରେ ଫାଶୀଦଣ୍ଡ ଉଚ୍ଛେଦ ହୋଇଛି । ମରକ୍କୋ, ବାହାରିନ୍, ଆଲ୍‌ଜେରିଆ ଓ ବ୍ରୁନେଇରେ ଗତ ଦଶ ବର୍ଷ ହେଲା କାହାକୁ ଫାଶୀ ଦିଆଯାଇ ନାହିଁ । ଏସିଆରେ ନେପାଳ ଓ ଭୁଟାନରେ ଫାଶୀଦଣ୍ଡ ନାହିଁ । ଶ୍ରୀଲଙ୍କା ଓ ମାଲଦ୍ୱୀପରେ ଫାଶୀଦଣ୍ଡ ଥିଲେ ବି କାର୍ଯ୍ୟକାରୀ ହୁଏ ନାହିଁ । ଫାଶୀଦଣ୍ଡ ଉଚ୍ଛେଦ କରିଥିବା ଦେଶଙ୍କ ମଧ୍ୟରେ ପର୍ତ୍ତୁଗାଲ ପ୍ରଥମ (୧୯୭୩ ମସିହାରୁ) ଏବଂ ଫିଲିପାଇନ୍ ସର୍ବକନିଷ୍ଠ (୨୦୦୬) ।

୧୯୭୩ ମସିହାରେ ଫାଶୀଦଣ୍ଡ ଉଠାଇ ଦେବା ଉଦ୍ଦେଶ୍ୟରେ ଭାରତ ନେଇଥିଲା ପ୍ରଥମ ପଦକ୍ଷେପ । ପିଙ୍ଗଲ କୋଡ୍ ଧାରା ୩୫୪(୩) ସଂଶୋଧନ କରି କେବଳ ହତ୍ୟା ଓ ଦେଶଦ୍ରୋହ ଅପରାଧପାଇଁ ସୀମିତ ଭାବରେ ମୃତ୍ୟୁଦଣ୍ଡର ବ୍ୟବସ୍ଥା ରଖାଗଲା । ବିଚାରପତିମାନେ ମୃତ୍ୟୁଦଣ୍ଡ ରାୟ ଦେଲାବେଳେ ଏହାର ଯଥାର୍ଥତାପାଇଁ ଉପଯୁକ୍ତ କାରଣ ଦର୍ଶାଇବାକୁ ପଡ଼ିବ ବୋଲି ଉଲ୍ଲେଖ କରାଯାଇଛି । ଏହି ନିର୍ଦ୍ଦେଶକୁ ଅନୁସରଣ କରି ସୁପ୍ରିମ୍‌କୋର୍ଟ କେବଳ ଅତି ଅସାଧାରଣ କେଶ୍‌ରେ ମୃତ୍ୟୁଦଣ୍ଡ ଆଦେଶ ଦେଇଆସୁଛନ୍ତି । ଏ ସମ୍ପର୍କରେ ବିଚାରପତିମାନଙ୍କ ମଧ୍ୟରେ ମତଭେଦ ରହିଛି । କିନ୍ତୁ ମୃତ୍ୟୁଦଣ୍ଡକୁ ସମ୍ପୂର୍ଣ୍ଣ ଭାବରେ ଉଠାଇଦେବା ସପକ୍ଷରେ ଭାରତରେ ଜନମତ ଏବେ ବି ଦୁର୍ବଳ । ବୁଦ୍ଧିଜୀବୀ ଓ ସ୍ୱେଚ୍ଛାସେବୀ ସଂସ୍ଥାମାନେ ଏ ବିଷୟକୁ ପ୍ରାଧାନ୍ୟ ଦେଉ ନାହାନ୍ତି । କ୍ରମାଗତ ଆତଙ୍କବାଦ ଲାଗି ରହଥିବାରୁ ଲୋକପ୍ରିୟ ସରକାର ଓ ରାଜନୈତିକ ଦଳମାନେ ଏହା ସପକ୍ଷରେ ଜନମତ ସୃଷ୍ଟି କରିବାକୁ ପଛଘୁଞ୍ଚା ଦେଉଛନ୍ତି । ଏକଥା ବି ସତ ଯେ ସମଗ୍ର ଭାରତରେ ଯେତେ ଲୋକଙ୍କୁ ମୃତ୍ୟୁଦଣ୍ଡ ଦିଆଯାଏ, କେବଳ ଆମେରିକାର ଟେକ୍‌ସାସ୍ ରାଜ୍ୟରେ ତା'ଠାରୁ ଅଧିକ ଲୋକ ମୃତ୍ୟୁଦଣ୍ଡ  ପାଇଥାନ୍ତି । ତା'ଛଡ଼ା ଭାରତରେ ତଳ କୋର୍ଟଙ୍କ ଫାଶୀଦଣ୍ଡ ସୁପ୍ରିମ୍‌କୋର୍ଟ ପର୍ଯ୍ୟନ୍ତ ଅପିଲ କରାଯାଇ ପାରିବ ଏବଂ ଏହାପରେ ରାଷ୍ଟ୍ରପତିଙ୍କୁ କ୍ଷମା ଅଧିକାର

ସନ୍ନିଧାନ ଦେଇଛି । ଆମ ଦେଶ ତୁଳନାରେ ଚୀନ୍‌ରେ ପରିସ୍ଥିତି ଆହୁରି ଚିନ୍ତାଜନକ । ସେଠାରେ ରାଜନୈତିକ ବିରୋଧୀମାନଙ୍କୁ ତଳ କୋର୍ଟମାନେ ଉପଯୁକ୍ତ ଶୁଣାଣି ନ କରି ମୃତ୍ୟୁଦଣ୍ଡ ଦେଇଥାନ୍ତି । ଏବେ ଚୀନ୍ ସରକାର ତଳକୋର୍ଟ ହାତରୁ ସେ କ୍ଷମତା କାଢ଼ି ନେଇଛନ୍ତି । ଚୀନ୍‌ରେ ପ୍ରତିବର୍ଷ ପ୍ରାୟ ୧୦ ହଜାରରୁ ଅଧିକ ଲୋକ ଫାଶୀଦଣ୍ଡ ପାଇଥାନ୍ତି ।

ଭାରତରେ ଯେଉଁମାନଙ୍କୁ ଫାଶୀଦଣ୍ଡରେ ଦଣ୍ଡିତ କରାଯାଏ, ସେମାନଙ୍କ ମଧ୍ୟରୁ ଅନେକ ଉପର କୋର୍ଟରେ ଅପିଲ୍ କରନ୍ତି । କେତେକାଂଶରେ ଉପର କୋର୍ଟ ପୁନର୍ବିଚାର କରି ଏହାକୁ ଆଜୀବନ କାରାଦଣ୍ଡରେ ବଦଳାଇ ଦିଅନ୍ତି । କିଛି ଲୋକ ନିର୍ଦ୍ଦୋଷରେ ଖଲାସ ହୋଇଯାନ୍ତି । ଧନବାନ, ବାହୁବଳୀ ଓ ପ୍ରଭାବଶାଳୀ ନେତାମାନେ ନିଜର ଅପରାଧୀ ସନ୍ତାନମାନଙ୍କୁ ବଡ଼ ବଡ଼ କ୍ରିମିନାଲ ଲୟରଙ୍କୁ ଲଗାଇ ଆଇନ୍ ହାତରୁ ଖସାଇ ଦିଅନ୍ତି । କିନ୍ତୁ କେତେକ କ୍ଷେତ୍ରରେ ଅପରାଧୀ ସ୍ୱୟଂ ନିଜ ଅପରାଧ ସ୍ୱୀକାର କରିଥାନ୍ତି । ଏ ସମ୍ପର୍କରେ ନିକଟ ଅତୀତରେ ଘଟି ଯାଇଥିବା ଏକ ଘଟଣା ଏଠାରେ ଉଲ୍ଲେଖନୀୟ । ଗୁରୁଗାଁଓର ବୋଡ଼ାକଲାନ୍ ଗାଁର ୯ ଜଣ ଲୋକ ୨୦୦୫ ମସିହାରେ ୨୮ ଜଣ ନିର୍ଦ୍ଦୋଷ ଲୋକଙ୍କୁ ହତ୍ୟା କରିବା ପରେ ଏବେ ନିଜ ଦୋଷ ସ୍ୱୀକାର କରିଛନ୍ତି । କେବଳ ସେତିକି ନୁହେଁ - ଏହି ଗ୍ୟାଙ୍ଗର ୫ ଜଣ ଅପରାଧୀ ଏବେ କହୁଛନ୍ତି "ଆମକୁ ଫାଶୀ ଦିଆଯାଉ - ଆମର ବଞ୍ଚିବାର ଅଧିକାର ନାହିଁ ।" ଏମାନଙ୍କ ମଧ୍ୟରୁ ଜଣେ ଅପରାଧୀ ମୁକେଶଙ୍କ ପିତା ଓଙ୍କାରନାଥ କହନ୍ତି, ପୁଅକୁ ମୁକୁଳାଇବାପାଇଁ କୋର୍ଟରେ ଓକିଲ ଲଗାଇ ଲଢ଼େଇ କରିବା ତ ଦୂରର କଥା, ମୁଁ ଏପରି ସନ୍ତାନର ପିତା ହୋଇଥିବାରୁ ଲଜ୍ଜିତ ଓ ତା'ର ମୁହଁ ବି ଦେଖିବାକୁ ଚାହେଁ ନାହିଁ ।

ମୃତ୍ୟୁଦଣ୍ଡ ଠିକ୍ ନା ଭୁଲ୍ - ଏ ସମ୍ପର୍କରେ ଆଦର୍ଶ ଓ ଆବେଗର ଉପରକୁ ଉଠି ବିଚାର କରିବାକୁ ହେବ । ପୃଥିବୀର ବିଭିନ୍ନ ଅଞ୍ଚଳରେ ଏହି ବିଷୟରେ ଚାଲିଥିବା ଗବେଷଣାରୁ ଜଣାପଡ଼େ ଯେ ମୃତ୍ୟୁଦଣ୍ଡଦ୍ୱାରା ହିଂସା କମେ ନାହିଁ । ଉଦାହରଣ ସ୍ୱରୂପ ଆମେରିକା ସରକାର ୧୯୬୦ ରୁ ୧୯୭୦ ଦଶବର୍ଷ କାଳ ମୃତ୍ୟୁଦଣ୍ଡ ବ୍ୟବସ୍ଥାକୁ ନିଷ୍କ୍ରିୟ ରଖିବା ପରେ ପୁଣି ୧୯୭୦ରେ ଏହା ଲାଗୁ କରିଥିଲେ । କିନ୍ତୁ ଦେଖାଗଲାଣି କି ୧୯୬୦ ଦଶକରେ ଯେତିକି ହତ୍ୟା ହୋଇଥିଲା, ଦଣ୍ଡ ଲାଗୁ ହେଲା ପରେ ତା'ର ଅନୁପାତ ବଢ଼ିବାରେ ଲାଗିଛି । ଟେକ୍‌ସାସ୍‌ରେ ସବୁଠାରୁ ଅଧିକ ଲୋକଙ୍କୁ ଫାଶୀ ଦିଆଯାଏ, କିନ୍ତୁ ଏହି ପ୍ରଦେଶରେ ହତ୍ୟା କମିବା ପରିବର୍ତ୍ତେ ବଢ଼ିବାରେ ଲାଗିଛି । ଅନ୍ୟ ପକ୍ଷରେ ପୃଥିବୀର ଯେଉଁ ଦଶଟି ଦେଶରେ (ଅଷ୍ଟ୍ରିଆ, ସ୍ଲୋଭାନିଆ, ସୁଇଡ଼େନ୍,

ସୁଇଜରଲାଣ୍ଡ, ଇସ୍ରାଏଲ, ହଂକଂ, ନରୱେ, ଆୟରଲାଣ୍ଡ, ଫିନ୍‌ଲାଣ୍ଡ ଏବଂ ସିଙ୍ଗାପୁର) ସବୁଠାରୁ କମ୍ ମର୍ଡର ହୁଏ, ସେଥିରୁ ସାତଟି ଦେଶରେ ମୃତ୍ୟୁଦଣ୍ଡ ବ୍ୟବସ୍ଥା ନାହିଁ । ଅପରାଧ ଯେତେ ଜଘନ୍ୟ ବା ବର୍ବର ହେଲେ ବି ମୃତ୍ୟୁଦଣ୍ଡ ତାହାର ଏକମାତ୍ର ଉତ୍ତର ବା ସମାଧାନ ନୁହେଁ । ଦଣ୍ଡ, ପ୍ରତିହିଂସା, ପ୍ରତିଶୋଧ ଓ ବିଚାର ମଧ୍ୟରେ ପାର୍ଥକ୍ୟ ରହିଛି । ତାକୁ ଚିହ୍ନିବା, ଜାଣିବା ଓ ସେହି ଅନୁସାରେ ବିଚାର ଓ ଶାସନ ବ୍ୟବସ୍ଥାକୁ ସଜାଡ଼ିବା, ଏବକାର ସଭ୍ୟ ସମାଜର ଲକ୍ଷ୍ୟ ହେବା ଉଚିତ୍ ।

*୨୮ ଡିସେମ୍ବର, ୨୦୦୬*



# ମାନବସମାଜ ବୟସ୍କ ହେଉଛି

ଦୁଇ ହଜାର ଛ' ମସିହା ଅଗଷ୍ଟ ୧୬ ତାରିଖ ଦିନ ବିଶ୍ୱର ବୟୋଜ୍ୟେଷ୍ଠା ମହିଳା ମାରିଆ ଇସ୍ଥର ଡି କାପୋଭିଲ୍ଲାଙ୍କ ମରଶରୀରକୁ ସମାଧି ଦିଆଗଲା । ଇକ୍ୱେଡରରେ ୧୮୮୯ ମସିହା ସେପ୍ଟେମ୍ବର ୧୪ ତାରିଖରେ ଜନ୍ମିତ ମାରିଆଙ୍କୁ ମୃତ୍ୟୁ ବେଳକୁ ୧୧୬ ବର୍ଷ ବୟସ ହୋଇଥିଲା । ୧୯୧୭ ମସିହାରେ ବିବାହିତା ଓ ୧୯୪୯ ମସିହାରେ ବୈଧବ୍ୟ ଭୋଗ କରିଥିବା ମାରିଆଙ୍କର ପାଞ୍ଚଟି ସନ୍ତାନ ମଧ୍ୟରୁ ଏବେ ୩ ଜଣ ଜୀବିତ । ସେମାନଙ୍କ ମଧ୍ୟରୁ ହିଲଡାଙ୍କ ବୟସ ୮୧, ଇର୍ମାଙ୍କ ବୟସ ୭୯ ଓ ପୁଅ ଅନିବାଲଙ୍କ ବୟସ ୬୮ । ମାରିଆଙ୍କ ପରେ ମେମ୍ଫିସ୍ ସହରର ଏଲିଜାବେଥ୍ ବୋଲଡେନ୍ ଏବେ ବିଶ୍ୱର ବୟୋଜ୍ୟେଷ୍ଠା ମହିଳା ହେବେ । ସେ ମାରିଆଙ୍କଠାରୁ ୧୧ ମାସ ସାନ । ବିଶ୍ୱ ରେକର୍ଡ଼ ରଖୁଥିବା ଗିନି ପୁସ୍ତକ ଅନୁସାରେ ୧୮୭୫ ମସିହାରେ ପରଲୋକ ଗମନ କରିଥିବା ଫ୍ରାନ୍ସ ଦେଶର ମହିଳା ଜିନ୍ ଲୁଇ ଥିଲେ ପୃଥିବୀର ସର୍ବଜ୍ୟେଷ୍ଠା ମହିଳା । ମୃତ୍ୟୁ ବେଳକୁ ତାଙ୍କୁ ହୋଇଥିଲା ୧୨୨ ବର୍ଷ ୫ ମାସ ୧୨ ଦିନ । କିନ୍ତୁ ଟାଇମ୍ସ ଓ ନ୍ୟୁୟର୍କ ଟାଇମ୍ସ ପତ୍ରିକାରେ ୧୯୩୩ ମସିହାରେ ପ୍ରକାଶିତ ଦୁଇଟି ଶୋକ ସମ୍ବାଦ ଅନୁଯାୟୀ ଚୀନ୍ ଦେଶୀୟ ନାଗରିକ ଲି ଚିଙ୍ଗ୍ ୟୁନ୍ ୨୫୬ ବର୍ଷ ବୟସରେ ପ୍ରାଣତ୍ୟାଗ କରିଥିଲେ । ଅନ୍ୟ ଏକ ସମ୍ବାଦ ଅନୁଯାୟୀ ସେ ବଞ୍ଚିଥିଲେ ୧୯୭ ବର୍ଷ । ତାଙ୍କ ଜୀବନ କାଳରେ ସେ ନିଜର ୨୩ ଜଣ ପତ୍ନୀଙ୍କୁ କବର ଦେଇଥିଲେ ଓ ୧୮୦ ଜଣ ଉତ୍ତରାଧିକାରୀ ଛାଡି ଯାଇଥିଲେ । ତେବେ ତାଙ୍କ ପ୍ରକୃତ ବୟସ ଏବେ ବି ପ୍ରଶ୍ନବାଚୀ ହୋଇ ରହିଛି । ଆମ ଦେଶରେ ୧୨୦ ରୁ ଅଧିକ ବୟସ୍କଙ୍କ ସଂଖ୍ୟା ଦେଢଶହ । ସେମାନଙ୍କ ମଧ୍ୟରୁ ଅଧିକାଂଶ ମହିଳା । ଏହି ସବୁ ଘଟଣା ପୁଣି ଥରେ ପ୍ରମାଣିତ କରୁଛି ଯେ ପୁରୁଷଙ୍କଠାରୁ ମହିଳାଙ୍କର ବଞ୍ଚି ରହିବାର ଶକ୍ତି ଅଧିକ ।

ରୁଷିଆ, ପେରୁ, ସୁରିନାମ୍ ଓ ଚୀନ୍ ଦେଶରେ ୧୧୭ ବର୍ଷରୁ ଅଧିକ ବୟସର ଲୋକେ ବଞ୍ଚିଛନ୍ତି ବୋଲି ଦାବି କରାଯାଉଛି । ଏପରି କି ଜାର୍‌ଙ୍କ ରାଜତ୍ୱ ଆରମ୍ଭରେ ସାଇବେରିଆରେ ଜାତ ଜଣେ ମହିଳା ଏବେ ବି ବଞ୍ଚିଛନ୍ତି ବୋଲି କୁହାଯାଉଛି । ତେବେ କେଉଁ ଦେଶରେ କେତେ ବୟସାଧିକ ଲୋକ ୧୧୭ ବର୍ଷରୁ ଅଧିକ ସମୟ ବଞ୍ଚି ରହିଛନ୍ତି, ତାହା ଜାଣିବା ଯେତିକି ଆବଶ୍ୟକତା, ତା'ଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଯେ ପୃଥିବୀ ପୃଷ୍ଠରେ ଏବେ ବୟସ୍କଙ୍କ ସଂଖ୍ୟା କ୍ରମାଗତ ଭାବରେ ବଢ଼ିବାରେ ଲାଗିଛି । ବିକାଶଧାରାରେ ଏହା ଏକ ଶୁଭ ଲକ୍ଷଣ । କାରଣ ବିକାଶର ଯେଉଁ ୩ଟି ମାପକାଠି ନିର୍ଦ୍ଧାରଣ କରାଯାଇଛି - ତା'ମଧ୍ୟରୁ ପ୍ରଥମ ମାପକାଠିଟି ହେଲା ଦୀର୍ଘ ଓ ସୁସ୍ଥ ଜୀବନ । ଅନ୍ୟ ଦୁଇଟି ହେଲା ଶିକ୍ଷା ଓ ଜୀବନଧାରଣର ମାନ । ଅତଏବ ଯେଉଁ ଦେଶରେ ଯେତେ ଅଧିକ ଲୋକ ଦୀର୍ଘଜୀବୀ, ସେ ଦେଶ ସେତିକି ବିକାଶଶୀଳ ଓ ଉନ୍ନତ । କିନ୍ତୁ ତା'ସାଙ୍ଗକୁ ଯୁବବର୍ଗଙ୍କ ଆନୁପାତିକ ସଂଖ୍ୟା ହ୍ରାସ ପାଇଲେ ଅଧିକ ସମସ୍ୟା ସୃଷ୍ଟି ହେବ । କାରଣ ପରିବାରରେ ପିଲା ଓ ବୁଢ଼ାଙ୍କ ଦାୟିତ୍ୱ ପ୍ରାପ୍ତବୟସ୍କ ମାନେ ତୁଲାଇଥାନ୍ତି ।

ଏହି ମାପକାଠି ଅନୁସାରେ ଓଡ଼ିଶାରେ ମଧ୍ୟ ବରିଷ୍ଠମାନଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି । ୨୦୦୧ ମସିହାରେ ୬୦ ବର୍ଷରୁ ଅଧିକ ବ୍ୟକ୍ତିଙ୍କ ସଂଖ୍ୟା ୨୭ ଲକ୍ଷ ଥିବା ବେଳେ, ୨୫ ବର୍ଷ ପରେ ୨୦୨୬ ମସିହାରେ ଏହି ସଂଖ୍ୟା ବଢ଼ି ୬୨ ଲକ୍ଷରେ ପହଞ୍ଚିବ । ଅର୍ଥାତ୍ ବୟସ୍କ ବ୍ୟକ୍ତିଙ୍କ ହାର ମୋଟ୍ ଜନସଂଖ୍ୟାର ୮ ପ୍ରତିଶତରୁ ବଢ଼ି ୧୪ ପ୍ରତିଶତ ହେବ । ଏବେ ଓଡ଼ିଶାରେ ୮୦ ବର୍ଷରୁ ଅଧିକ ବୟସ୍କ ଲୋକଙ୍କ ସଂଖ୍ୟା ପ୍ରାୟ ଦେଢ଼ ଲକ୍ଷ ଥିବା ବେଳେ ୨୦୨୬ ବେଳକୁ ଏହା ୭ ଲକ୍ଷ ୨୨ ହଜାରକୁ ଟପିଯିବ । ଏହି ସମୟ ମଧ୍ୟରେ ପୁରୁଷମାନଙ୍କର ଆୟୁଷ ୬୦ ରୁ ବଢ଼ି ୬୭ ଓ ମହିଳାମାନଙ୍କ ଆୟୁଷ ୬୨ ରୁ ବଢ଼ି ୭୧ ହେବ । ଭାରତରେ ୬୦ ବର୍ଷରୁ ଅଧିକ ବୟସର ବ୍ୟକ୍ତିଙ୍କ ସଂଖ୍ୟା ଏବେ ପ୍ରାୟ ୮ କୋଟି । ୧୯୫୦ ମସିହାରେ ଏହି ସଂଖ୍ୟା ଥିଲା ୨ କୋଟି । ହିସାବ କରାଯାଇଛି ଯେ ୨୦୫୦ ମସିହା ବେଳକୁ ପୃଥିବୀର ସବୁଠୁ ଅଧିକ ବୃଦ୍ଧ ଲୋକ ଥିବେ ଭାରତରେ ଏବଂ ସେତେବେଳକୁ ପୃଥିବୀରେ ୮୦ ବର୍ଷରୁ ଅଧିକ ବୟସର ଲୋକସଂଖ୍ୟା ପ୍ରାୟ ୩୭ କୋଟି ହୋଇଯାଇଥିବ । କେବଳ ଶତାୟୁଙ୍କ ସଂଖ୍ୟା ୨୨ ଲକ୍ଷ ଟପି ଯାଇଥିବ ।

ବିକଶିତ ଦେଶମାନଙ୍କରେ ବୁଢ଼ାବୁଢ଼ୀମାନଙ୍କ ସଂଖ୍ୟା ଅନ୍ୟ ଦେଶମାନଙ୍କ ଅପେକ୍ଷା ଶୀଘ୍ର ବଢ଼ିବାରେ ଲାଗିଛି । ଉଦାହରଣ ସ୍ୱରୂପ ଜାପାନ୍‌ରେ ଏବେ ପ୍ରତି ୫ ଜଣରେ

ଜଣକର ବୟସ ୬୫ ବର୍ଷରୁ ଅଧିକ ଏବଂ ପ୍ରାୟ ୨୫ ହଜାରରୁ ଅଧିକ ନାଗରିକ ଶତାୟୁ । ୨୦୦୦ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାରେ ୫୦,୪୫୪ ଜଣ ଥିଲେ ଶତାୟୁ । ଗତ ୨୦ ବର୍ଷ ହେଲା ଜାପାନୀ ମହିଳାମାନେ ପୃଥିବୀର ବୟୋଜ୍ୟେଷ୍ଠା ଭାବରେ ଶୀର୍ଷ ସ୍ଥାନରେ ରହି ଆସିଛନ୍ତି ଏବଂ ଆସନ୍ତା ୪୦ ବର୍ଷ ମଧ୍ୟରେ ପ୍ରତି ୧୦ ଜଣ ଜାପାନୀଙ୍କ ମଧ୍ୟରୁ ୩ ଜଣଙ୍କର ବୟସ ହେବ ୬୫ ବର୍ଷରୁ ଅଧିକ । ବିକଶିତ ଦେଶମାନଙ୍କରେ କ୍ରମାଗତ ଜନ୍ମ ଏବଂ ମୃତ୍ୟୁହାର ହ୍ରାସ ଏହାର ଏକ ମୁଖ୍ୟ କାରଣ । ଜୀବନ ରକ୍ଷକ ଔଷଧ, ସ୍ୱାସ୍ଥ୍ୟସେବାର ପ୍ରସାର ଓ ପୁଷ୍ଟିକର ଖାଦ୍ୟ ବଞ୍ଚିବାର ବୟସ ବୃଦ୍ଧି କରାଇବାରେ ସହାୟକ ହେଉଛି ।

ଗତ ୬୦ ବର୍ଷ ମଧ୍ୟରେ ଭାରତୀୟମାନଙ୍କର ହାରାହାରି ବଞ୍ଚିବା ବୟସ ୨୭ ବର୍ଷରୁ ବଢ଼ି ୬୪ ବର୍ଷ ହେଲାଣି । ୧୯୦୧ ମସିହାରେ ୬୫ ବର୍ଷିଆଙ୍କ ମଧ୍ୟରୁ ୧୩ ପ୍ରତିଶତ ବ୍ୟକ୍ତି ୮୫ ବର୍ଷ ପର୍ଯ୍ୟନ୍ତ ବଞ୍ଚୁଥିଲେ । ଏବେ ପୃଥିବୀର ଅଧେ ୬୫ ବର୍ଷୀୟାନ୍ ୮୬ ବର୍ଷ ପର୍ଯ୍ୟନ୍ତ ବଞ୍ଚିବାପାଇଁ ଆଶା କରୁଛନ୍ତି । ଯେଉଁ ଲୋକମାନେ ବାଲ୍ୟାବସ୍ଥାରେ ରୋଗ ପ୍ରତିଷେଧକ ଭାକ୍‌ସିନ୍ ବା ଟିକା ନେଇଛନ୍ତି, ସେମାନଙ୍କ ମଧ୍ୟରୁ ଶତକଡ଼ା ୮୦ ଭାଗ ଲୋକ ୮୫ ବର୍ଷ ଟପିବାର ଶକ୍ତି ଅର୍ଜନ କରିଛନ୍ତି । ସନ୍ତୁଳିତ ଖାଦ୍ୟ, ପ୍ରଦୂଷଣରହିତ ପରିବେଶ ଏବଂ ଉପଯୁକ୍ତ ଶାରୀରିକ ଶ୍ରମଦ୍ୱାରା ବଞ୍ଚିବାର ବୟସ ଆହୁରି ବଢ଼ିଯିବାର ଆଶା ରହିଛି । ସ୍ୱାସ୍ଥ୍ୟ ଗବେଷକମାନେ କହୁଛନ୍ତି ଯେ ଶହେ ବର୍ଷ ପୂର୍ବେ ଯେଉଁ ବେମାରି ୪୦ ବର୍ଷ ବୟସ୍କ ଲୋକଙ୍କୁ ଆକ୍ରମଣ କରୁଥିଲା ଏବେ ସେ ବେମାରି ୬୦ ରୁ ଅଧିକ ବର୍ଷ ବୟସ୍କ ଲୋକଙ୍କୁ ଆକ୍ରମଣ କରୁଛି । ଚତୁର୍ଥ ବୟସରେ ଯେଁଉ ରୋଗମାନେ ବୃଦ୍ଧ ଶରୀରରେ ସହଜରେ ପ୍ରବେଶ କରିପାରୁଥିଲେ ଏବେ ତାହା କଷ୍ଟକର ହେଲାଣି ।

ବୟସ୍କ ଲୋକଙ୍କ ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ବହୁ ଦେଶରେ ୨୦ ରୁ ୫୯ ବର୍ଷ ମଧ୍ୟରେ ଥିବା ଉତ୍ପାଦନକ୍ଷମ ଲୋକଙ୍କ ସଂଖ୍ୟା କମିବାରେ ଲାଗିଛି । ଓଡ଼ିଶାରେ ୩୫ ବର୍ଷ ପରେ ଓ ଭାରତରେ ୩୦ ବର୍ଷ ପରେ ଏପରି ଅବସ୍ଥା ସୃଷ୍ଟି ହେବାର ଆଶଙ୍କା ରହିଛି । ବିବାହ ବୟସ ବୃଦ୍ଧି ଏବଂ ଛୋଟ ପରିବାରର ସଂଖ୍ୟା ବଢ଼ିବା ଫଳରେ ଜନସଂଖ୍ୟାରେ ଯୁବକ ଯୁବତୀଙ୍କ ତୁଳନାରେ ବୁଢ଼ାବୁଢ଼ୀଙ୍କ ସଂଖ୍ୟା ବଢ଼ିବ । ୨୦୨୬ ମସିହାରେ ଓଡ଼ିଶାରେ ଯେଉଁ ୬୨ ଲକ୍ଷ ବୟସ୍କ ଲୋକ ଥିବେ ସେମାନଙ୍କପାଇଁ ଆଜିଠାରୁ ଯୋଜନା ପ୍ରଣୟନ ହେବା ଆବଶ୍ୟକ । କେବଳ କେତୋଟି ବୃଦ୍ଧାଶ୍ରମ ତୋଳିଦେଲେ ଏ ସମସ୍ୟାର ସମାଧାନ ହେବ ନାହିଁ ।

ଭାରତରେ 'ହେଲ୍‌ପ ଏଜ୍' ଓ 'ଏଜ୍ କେୟାର' ଭଳି ସଂସ୍ଥାମାନେ ଏ ସମ୍ପର୍କରେ ଚିନ୍ତା ଆରମ୍ଭ କଲେଣି । କୌମାର, ଯୌବନ, ଜରା ସୃଷ୍ଟିର ପ୍ରାକୃତିକ ନିୟମ । ଜୀବନ ଚକ୍ରର ଏହି ତିନୋଟି ଅବସ୍ଥାରୁ, କୌମାର ଓ ଯୌବନ ସମୟ ସରିଲେ, ଶରୀର ଛାଡ଼ି ଚାଲିଯାଆନ୍ତି, କିନ୍ତୁ ଜରା ଶେଷ ପର୍ଯ୍ୟନ୍ତ ଶରୀର ସହ ରହେ । ବିଭିନ୍ନ ଦେଶରେ ଜରାର ବିଭିନ୍ନ ନାମକରଣ । ପାଶ୍ଚାତ୍ୟ ଦେଶମାନଙ୍କରେ ଜରାବସ୍ଥାକୁ ଏବେ 'ସୁବର୍ଣ୍ଣ କାଳ' ବୋଲି କୁହାଯାଉଛି । ଭାରତରେ ସେମାନେ ହେଲେ ବରିଷ୍ଠ ନାଗରିକ - ସିନିଅର ସିଟିଜେନ୍ । ପ୍ରତିବର୍ଷ ବଜେଟ୍ ଉପସ୍ଥାପନ ବେଳେ ସରକାର ବରିଷ୍ଠ ନାଗରିକମାନଙ୍କର ଅଭିଜ୍ଞତା, ଜ୍ଞାନ ଓ ଜୀବନ କୌଶଳକୁ କାମରେ ଲଗାଇ ଦେଶକୁ ଅଧିକ ସମୃଦ୍ଧ କରିବାପାଇଁ ଆଗଭର ହେଲେଣି ଏବଂ 'ସୁବର୍ଣ୍ଣ କାଳ'କୁ ଏକ ଗୁରୁତ୍ୱପୂର୍ଣ୍ଣ ମାନବ ସମ୍ବଳ ଭାବରେ ସ୍ୱୀକୃତି ଦେଲେଣି । ଜାପାନୀ ବିଶେଷଜ୍ଞ ଆକିହିକୋ ତାଙ୍କ ପୁସ୍ତକ "ସ୍ରିଙ୍କିଙ୍ଗ୍ ପପୁଲେସନ୍ ଇକନମିକ୍ସ"ରେ ବିଶ୍ୱବାସୀଙ୍କୁ ଆହ୍ୱାନ କରି ଲେଖିଛନ୍ତି ଯେ , ସ୍ତ୍ରୀମାନଙ୍କୁ ଅଧିକ ସନ୍ତାନ ପ୍ରସବପାଇଁ ନ କହି ବୟସ୍କ ଲୋକଙ୍କ ଶକ୍ତିକୁ ଅଧିକ ଉପଯୋଗ କରାଯାଉ ।

ରାଜକୁମାର ସିଦ୍ଧାର୍ଥ ଯେଉଁ ଚାରିଟି ଦୃଶ୍ୟ ଓ ଅବସ୍ଥା ଦେଖି ସାରିଲା ପରେ ସନ୍ନ୍ୟାସ ନେବାପାଇଁ ସ୍ଥିର କରିଥିଲେ ସେ ମଧ୍ୟରେ ଥିଲା 'ଜରା' ଅବସ୍ଥା । ୧୯୯୦ ମସିହା ଡିସେମ୍ବର ମାସରେ ମିଳିତ ରାଷ୍ଟ୍ରସଂଘ ସାଧାରଣ ଅଧିବେଶନ (୪୫/୧୦)ରେ ସର୍ବସମ୍ମତି କ୍ରମେ ଅକ୍ଟୋବର ଏକ ତାରିଖକୁ ଆନ୍ତର୍ଜାତିକ ଜରା ଦିବସ ଭାବରେ ପାଳନ କରିବାକୁ ନିଷ୍ପତ୍ତି ନିଆଗଲା । ଏହାପରେ ଭାରତ ସରକାର ରାଷ୍ଟ୍ରୀୟ ବୟସ୍କ ନୀତି ପ୍ରଣୟନ କରିଛନ୍ତି । ଏହି ରାଷ୍ଟ୍ରୀୟ ନୀତିରେ ପରିବାରକୁ ସୁଦୃଢ କରି ବୟସ୍କଙ୍କୁ ସୁରକ୍ଷା ଦେବା ପ୍ରସ୍ତାବ ରହିଛି । ପିଲାମାନେ ଯେପରି ନିଜ ମାତା ପିତାଙ୍କ ଦାୟିତ୍ୱ ଆନନ୍ଦରେ ବହନ କରିବେ, ସେଥିଲାଗି ଶିକ୍ଷାନୁଷ୍ଠାନରେ ତତ୍ ସମ୍ପର୍କୀୟ ମୂଲ୍ୟବୋଧ ଶିକ୍ଷା ଦେବା ଲାଗି ସୁପାରିଶ ଅଛି । ବୟସ୍କଙ୍କ ସ୍ୱାସ୍ଥ୍ୟ ରକ୍ଷାପାଇଁ ବିଶେଷ ବ୍ୟବସ୍ଥା କରିବାକୁ ସରକାର ପ୍ରତିଶ୍ରୁତି ଦେଇଛନ୍ତି । ବୟସ୍କଙ୍କ ସମସ୍ୟା ପ୍ରତି ସମାଜ ଓ ସରକାରଙ୍କ ଧ୍ୟାନ ଆକର୍ଷଣପାଇଁ ୨୦୦୦ ମସିହାକୁ ରାଷ୍ଟ୍ରୀୟ ବରିଷ୍ଠ ନାଗରିକ ବର୍ଷ ଭାବରେ ପାଳନ କରାଯାଇଥିଲା । ବୟସ୍କଙ୍କୁ ସମ୍ମାନ ଓ ସେମାନଙ୍କ ପ୍ରତି ନିଜ ନିଜର କର୍ତ୍ତବ୍ୟ ପାଳନ କରୁଥିବା ସମାଜ ହିଁ ପ୍ରକୃତରେ ସଭ୍ୟ ସମାଜ ।

*୨୧ ଡିସେମ୍ବର, ୨୦୦୨*



# ବିଶ୍ୱଗ୍ରାମର ନୂଆ ବାସିନ୍ଦା

ପ୍ରାୟ ବାର ହଜାର କିଲୋମିଟର ଗୋଲେଇର ପୃଥିବୀକୁ ଏବେ ଏକ ଛୋଟ ଗାଁ ସଙ୍ଗେ ତୁଳନା କରାଯାଉଛି । ଜଗତୀରଣ ବା ଗ୍ଲୋବାଲାଇଜେସନ୍‌କୁ ବିଶେଷଜ୍ଞମାନେ ଭିନ୍ନ ଭିନ୍ନ ସଂଜ୍ଞା ଦେଲେଣି । ସୂଚନା ଓ ଟେଲିକମ୍ୟୁନିକେସନ୍ ବିପ୍ଲବ ଫଳରେ ଦୂର ଦୂରାନ୍ତର ଲୋକେ ମୁହୂର୍ତ୍ତକେ ପରସ୍ପର ସହିତ କଥା ହୋଇ ପାରୁଛନ୍ତି, ପରସ୍ପରକୁ ଦେଖି ପାରୁଛନ୍ତି । ଡାକ ଯୋଗେ ଚିଠି ପଠାଇବା ପ୍ରକ୍ରିୟା ଅନେକ ଦେଶରେ ବନ୍ଦ ହୋଇଗଲାଣି । ଭାରତୀୟ ଡାକ ତାର ବିଭାଗ ଏବେ କ୍ଷତିରେ ଚାଲୁଛି । ବହି ଛପା ନ ହୋଇ ଡିଜିଟାଲ ଲାଇବ୍ରେରୀ ହେଲାଣି । ଇଣ୍ଟରନେଟ୍ ଓ ଉପଗ୍ରହ ମାଧ୍ୟମରେ ଲୋକେ ପରସ୍ପରର ଏତେ ନିକଟତର ହେଲେଣି ଯେ ବିଭିନ୍ନ ଦେଶମାନଙ୍କ ମଧ୍ୟରେ ଥିବା ସୀମାରେଖା ନିରର୍ଥକ ହେଲାଣି । ହଜାର ହଜାର କୋଟି ଟଙ୍କା ଏକ ସେକେଣ୍ଡରେ ଏ ଦେଶରୁ ସେ ଦେଶକୁ ଉଡି ଯାଉଛି । ଅନେକ ଲୋକ ପକେଟ୍‌ରେ ପଇସା ନେଇ ବଜାରକୁ ଯିବା ପରିବର୍ତ୍ତେ କ୍ରେଡିଟ୍ କାର୍ଡକୁ ପକେଟରେ ରଖୁଛନ୍ତି । ଏହାର ନୂଆ ନାଁ ହେଲା 'ପ୍ଲାଷ୍ଟିକ ମନି' ।

ଗାଁରେ ଯେମିତି ଜଣକ କରେଇରେ ସୋରିଷ ଫୁଟିଲେ ଅନ୍ୟ ଜଣକୁ ଶୁଭେ, ସେହିପରି ପୃଥିବୀର ବିଭିନ୍ନ ଅଞ୍ଚଳରେ ଘଟୁଥିବା ଘଟଣା ଆମେ ଘରେ ବସି ଜାଣି ପାରୁଛେ । ପଡିଶା ଘରେ ପହଞ୍ଚିବାକୁ ପାଞ୍ଚ ମିନିଟ୍ ଲାଗିଲେ ଆମେରିକା, ଲଣ୍ଡନ ଜାପାନ, ଅଷ୍ଟ୍ରେଲିଆ ଆଦି ଦୂର ଦେଶରେ ଥିବା ବନ୍ଧୁଙ୍କ ସହ ସମ୍ପର୍କ ରଖିବାକୁ ପାଞ୍ଚ ସେକେଣ୍ଡ ବି ଲାଗୁନାହିଁ । ଓଡିଶାର ମହାବାତ୍ୟା ଖବର କ୍ଷଣକେ ଦୂର ଦେଶମାନଙ୍କରେ ପହଞ୍ଚି ଯିବା ଫଳରେ ବହୁ ଦେଶ ବିପଦରେ ଆମ ପଛରେ ଠିଆ ହୋଇଗଲେ । ସାହାଯ୍ୟ ସହାନୁଭୂତିର ସୁଅ ଛୁଟିଲା । ସୁନାମି ବିପଦଗ୍ରସ୍ତ ଅଞ୍ଚଳକୁ ସାହାଯ୍ୟପାଇଁ ସାରା ବିଶ୍ୱ ଏକାଠି ହୋଇଗଲା । ସତେ ଯେପରି ପୃଥିବୀ ଗୋଟିଏ ଗାଁ ।

ସେଇ ଗାଁଟି କେତେ ବଡ ବା କେତେ ଛୋଟ ? ମିଳିତ ଜାତିସଂଘର ସଭ୍ୟ ସଂଖ୍ୟା ଏବେ ୧୯୧ । ଯଦି ସେଇ ବିଶ୍ୱ ଗ୍ରାମଟିର ଲୋକସଂଖ୍ୟା ବା ପରିବାର ୧୯୧ ହୁଏ ତେବେ ସେ ଗାଁରେ କେତେ ଲୋକ ଧନୀ,କେତେ ମଧ୍ୟବିତ୍ତ, କେତେ ଗରିବ ? ହ୍ୟୁମାନ୍ ଡେଭଲପ୍‌ମେଣ୍ଟ ରିପୋର୍ଟ୍ ଅନୁସାରେ ଯଦି ଏହି ନୂଆ ଗାଁଟିକୁ ଅର୍ଥନୈତିକ ଦୃଷ୍ଟିରୁ ବାଣ୍ଟିବା, ତେବେ ସେଠାରେ ୫୬ଟି ପରିବାର ଧନୀ, ୭୦ଟି ପରିବାର ମଧ୍ୟବିତ୍ତ ଓ. ବାକି ସବୁ ଗରିବ ବର୍ଗ । ପୁଣି ସେଥିରୁ ୧୧ଟି ପରିବାର ଏସିଆ ମହାଦେଶର । ମଧ୍ୟବିତ୍ତ ପରିବାର ମଧ୍ୟରୁ ୨୬ଟି ପରିବାର ଏସିଆ ଅଧିବାସୀ । ଭାରତ ମଧ୍ୟବିତ୍ତ ପରିବାରରେ ଗଣାଯିବ । ପାକିସ୍ତାନ ରହିବ, ଗରିବ ପରିବାରଙ୍କ ସହ, ନେପାଳ, ଭୁଟାନ୍, ଆଫଗାନିସ୍ତାନ ସାଙ୍ଗରେ ।

ଦକ୍ଷିଣ ଏସିଆ ଅଧିବାସୀ ଶ୍ରୀଲଙ୍କା, ମାଳଦ୍ୱୀପ ଓ ବାଂଲାଦେଶ ଭାରତ ସହ ରହିବେ । ଗାଁର ସବୁଠାରୁ ଦରିଦ୍ର ପରିବାର ହେବ ନାଇଜର । ଏସିଆର ଦଶଟି ଦେଶ ନାଇଜରଠାରୁ ସାମାନ୍ୟ ଉଚ୍ଚ ଅବସ୍ଥାରେ ରହିବେ । ୧୯୧ଟି ପରିବାର ମଧ୍ୟରୁ ୫୬ଟି ପରିବାର ହାତରେ ଗାଁର ତିନି ଭାଗ ସମ୍ପତ୍ତି ରହିବ । ଗତ କୋଡିଏ ବର୍ଷର ଅର୍ଥନୈତିକ ଓ ମାନବୀୟ ପ୍ରଗତିର ଧାରା ଅନୁଧ୍ୟାନ କରି ବିଶେଷଜ୍ଞମାନେ କହନ୍ତି ଯେ ଧନୀ ଓ ଉନ୍ନତ ଦେଶମାନଙ୍କ ସ୍ତରରେ ପହଞ୍ଚିବାପାଇଁ ମଧ୍ୟବିତ୍ତ ଦେଶମାନଙ୍କୁ ପ୍ରାୟ ୧୭ ବର୍ଷ ଲାଗିବ । ଅନୁନ୍ନତ ଗରିବ ଦେଶମାନେ ଦେଢଶହରୁ ଦୁଇଶହ ବର୍ଷ ମଧ୍ୟରେ ସେହି ସ୍ତରକୁ ଉଠିପାରିବେ । ବିଶ୍ୱ ଗ୍ରାମର ଲୋକେ ସମୂହ ଚେଷ୍ଟାଦ୍ୱାରା ସମସ୍ତ ପରିବାରଙ୍କୁ ଏକ ସ୍ତରକୁ ଉଠାଇ ନ ପାରିଲେ, ଆସନ୍ତା ୨୦୦ ବର୍ଷ ଧରି ସେ ଗ୍ରାମରେ ଶୋଷଣ, କଳହ, ବାଦବିବାଦ ଓ ଅଶାନ୍ତି ଲାଗି ରହିବ ।

ଏହାଛଡ଼ା ବିଶ୍ୱ ଗ୍ରାମରେ ବିଭିନ୍ନ ଭାଷାଭାଷୀ, ବିଭିନ୍ନ ଧର୍ମାବଲମ୍ବୀ ଓ ଭିନ୍ନ ଭିନ୍ନ ସମ୍ପ୍ରଦାୟ ଓ ଗୋଷ୍ଠୀର ଲୋକେ ବସବାସ କରିବେ । ସେମାନଙ୍କର ଚାଲିଚଳଣି, ବେଶଭୂଷା, ପୂଜାପାଠ ଅଲଗା ଅଲଗା ହେବ । ନିଉ ହାମ୍ପସାୟାର କଲେଜର ଡୋନେଲା ମିଡ୍ସ ତାଙ୍କ 'ଷ୍ଟେଟ୍ ଅଫ୍ ଭିଲେଜ୍ ରିପୋର୍ଟ୍'ରେ ଏହି ନୂଆ ବିଶ୍ୱ ଗ୍ରାମର ଏକ ସରଳ ରୂପରେଖ ଦେଇଛନ୍ତି । ଏହି ନୂଆ ଗାଁର ଚିତ୍ର ଏହିପରି ହେବ - ହଜାରେ ଗ୍ରାମବାସୀଙ୍କ ମଧ୍ୟରୁ ୫୮୪ଜଣ ହେବେ ଏସିଆନ୍, ୧୨୩ ଜଣ ଆଫ୍ରିକାନ୍, ୯୫ ଜଣ ୟୁରୋପୀୟ, ୮୪ ଜଣ ଲାଟିନ୍ ଆମେରିକା, ୫୨ ଜଣ ଉତ୍ତର ଆମେରିକୀୟ, ୫୫ ଜଣ ରୁଷିଆ ଓ ପୂର୍ବତନ ସୋଭିଏଟ୍ ୟୁନିଅନ୍ ବାସିନ୍ଦା, ଅଷ୍ଟ୍ରେଲିଆନ୍ ୬ ଜଣ । ବିଶ୍ୱଗ୍ରାମର ବାସିନ୍ଦାମାନେ ପରସ୍ପର ସହ କଥାଭାଷା ହେବା

ମୁସ୍କିଲ୍ ହେବ - ଗୋଟିଏ ଗାଁରେ ରହି କରି ମଧ୍ୟ । କାରଣ ସେ ଗାଁର ହଜାରେରୁ କେବଳ ୮୬ ଜଣ ଇଂରାଜୀରେ କଥା ହୋଇପାରିବେ । ୧୬୫ ଜଣଙ୍କର ଭାଷା ହେବ ମାଣ୍ଡାରିନ୍, ୮୩ ଜଣ ହିନ୍ଦୀ ଓ ଉର୍ଦ୍ଦୁ ଭାଷୀ, ୬୪ ଜଣ ସ୍ପାନିସ୍ ଭାଷୀ, ୫୮ ଜଣ ରୁଷ୍‌ଭାଷୀ ଓ ୩୭ ଜଣ ଆରବୀ ଭାଷାରେ ହିଁ କଥାବାର୍ତ୍ତା ହୋଇପାରିବେ । ବାକିତକ ଗ୍ରାମବାସୀ ବଙ୍ଗଳା, ବାହାସା, ପର୍ତ୍ତୁଗୀଜ୍, ଜାପାନୀ, ଫ୍ରେଞ୍ଚ୍ ଓ ଅନ୍ୟ ୨୦୦ ପ୍ରକାର ଭାଷାଭାଷୀ ହେବେ । ଓଡ଼ିଆ କହୁଥିବା ଲୋକ ଥିବେ ମାତ୍ର ୩ ଜଣ । ତେଣୁ ଏପରି ବହୁଭାଷୀ ବିଶ୍ୱଗ୍ରାମରେ ତ୍ରିଭାଷୀ ପରିବର୍ତ୍ତେ ବହୁଭାଷୀ ଫର୍ମୁଲା ଆବଶ୍ୟକ ହେବ ।

ଏହି ବିଶ୍ୱଗ୍ରାମର ଧର୍ମ ଓ ସାମ୍ପ୍ରଦାୟିକ ଚିତ୍ର କିପରି ହେବ ? ଡୋନେଲାଙ୍କ ହିସାବ ଅନୁସାରେ ସେ ଗାଁରେ ଖ୍ରୀଷ୍ଟିୟାନ୍ ଧର୍ମାବଲମ୍ବୀଙ୍କ ସଂଖ୍ୟା ହେବ ୩୦୦ ଏବଂ ସେଥିରୁ ୧୮୩ ଜଣ କାଥଲିକ୍, ୮୪ ଜଣ ପ୍ରୋଟେଷ୍ଟାଣ୍ଟ ଓ ୩୩ ଜଣ ଅର୍ଥୋଡ଼କ୍ସ । ସୁନ୍ନି ଓ ସିଆଙ୍କୁ ମିଶାଇ ୧୭୫ ମୁସଲମାନ, ୧୨୮ ହିନ୍ଦୁ, ୫୫ ଜଣ ବୌଦ୍ଧ, ୪୭ ଜଣ ଆନିମିଷ୍ଟ ଓ ବାକି ୨୧୦ ଜଣ ଅନ୍ୟ ଧର୍ମାବଲମ୍ବୀ । ନାସ୍ତିକମାନେ ବି ଏହି ଛୋଟ ଛୋଟ ଗୋଷ୍ଠୀର ଅଂଶ । ଏହି ବିଭିନ୍ନ ଧର୍ମାଲମ୍ବୀ ଓ ହେତୁବାଦୀମାନେ କେମିତି ଏକାଠି ରହିବେ ଓ ଚଳିବେ ସେଥିପାଇଁ ନୂଆ ନୂଆ ବାଟ ଖୋଜିବାକୁ ପଡିବ ।

ଏହି ଗାଁର ମାନବୀୟ ସମସ୍ୟା ସବୁ କଣ ? ଗାଁରେ ଶିଶୁଙ୍କ ସଂଖ୍ୟା ହେବ ୩୩୦, କିନ୍ତୁ ଏଥିରୁ ଅଧେ ପିଲା ରୋଗ ପ୍ରତିଷେଧକ ଟିକା ନେଇନଥିବେ । ୧୦୦୦ ଗ୍ରାମବାସୀଙ୍କ ମଧ୍ୟରୁ ୬୦ ଜଣଙ୍କ ବୟସ ୬୫ ବର୍ଷରୁ ଉର୍ଦ୍ଧ୍ୱ ହେବ । ଦଶରୁ ଅଧିକ ଶତାୟୁ ରହିବେ । ପ୍ରତିବର୍ଷ ଦଶ ଜଣଙ୍କର ମୃତ୍ୟୁ ହେବ । ବିବାହିତ ମହିଳାଙ୍କ ମଧ୍ୟରୁ ଅଧେ ଆଧୁନିକ ଜନ୍ମ ନିରୋଧ ଉପାୟ ସମ୍ପର୍କରେ ଅଜ୍ଞ ଥିବେ ବା ଆଦୌ ବ୍ୟବହାର କରୁନଥିବେ । ଆଉ ୫୦ ଜଣ ବାହା ନ ହୋଇ ରହୁଥିବେ । ପ୍ରତିବର୍ଷ ତିନି ଜଣ ଅନାହାର ମୃତ୍ୟୁବରଣ କରିବେ । ସେହିପରି କ୍ୟାନସର୍‌ଯୋଗୁଁ ଜଣକର ମୃତ୍ୟୁ ହେବ ଏବଂ ଏକବର୍ଷରୁ କମ୍ ବୟସର ଦୁଇଟି ପିଲାଙ୍କର ମୃତ୍ୟୁ ହେବ । ଜଣେ ବ୍ୟକ୍ତି ଏଚ୍‌ଆଇଭିଦ୍ୱାରା ଆକ୍ରାନ୍ତ ହେବେ । ବର୍ଷ ଶେଷରେ ବିଶ୍ୱ ଗ୍ରାମର ଜନସଂଖ୍ୟା ୧୦୦୦ରୁ ୧୦୧୮ହେବ ।

ଗାଁର ଅର୍ଥନୈତିକ ଚିତ୍ର କିପରି ହେବ ? ଗ୍ରାମର ସମସ୍ତ ଆୟରୁ ତିନିଭାଗ କେବଳ ଏକ ପଞ୍ଚମାଂଶ ବା ୨୦୦ ବ୍ୟକ୍ତିଙ୍କ ହାତରେ ରହିବ । ବାକି ଏକ ଭାଗ ୮୦୦ ଲୋକ ପାଇବେ । ତା' ମଧ୍ୟରୁ ୨୦୦ ଲୋକ ମାତ୍ର ଦୁଇ ପ୍ରତିଶତ

ପାଇବେ । ଗାଁର ୭୦ ଜଣଙ୍କ ପାଖରେ ଗାଡ଼ି ବା ମଟର ସାଇକେଲ ଥିବ । ଜନସଂଖ୍ୟାର ଏକ ତୃତୀୟାଂଶ ଅପରିଷ୍କାର, ଅସୁରକ୍ଷିତ ପାଣି ବ୍ୟବହାର କରିବେ । ଅଧେ ଲୋକ ଥିବେ ନିରକ୍ଷର । ଗାଁର ଛ ହଜାର ଏକର ଭୂମିରୁ ୭୦୦ଏକର ଥିବ ଫସଲଯୋଗ୍ୟ, ୧୪୦୦ ଏକର ପଡ଼ିଆ, ୧୯୦୦ ଏକର ଜଙ୍ଗଲ, ୨୦୦୦ ଏକର ମରୁଭୂମି, ରାସ୍ତାଘାଟ, ଅନାବାଦୀ ଓ ବରଫାବୃତ ଅଞ୍ଚଳ ।

ଗାଁର ଜଙ୍ଗଲ ଦ୍ରୁତଗତିରେ ହ୍ରାସ ପାଉଥିବ । ଅଧିକ ରାସାୟନିକ ସାର ଓ ପୋକମରା ଔଷଧ ବ୍ୟବହାର ଫଳରେ ଗାଁର ଜଳସମ୍ପଦ ଦୂଷିତ ଅବସ୍ଥାରେ ରହିବ । ଏହାଫଳରେ ଉତ୍ପାଦନ କମିଯିବ ଓ ଲୋକେ ଖାଦ୍ୟପାଇଁ ଅନ୍ୟ ଉପରେ ନିର୍ଭର କରିବେ । ଗାଁର କେବଳ ୨୭୦ ଜଣ ଲୋକ ପୁଷ୍ଟିକର ଖାଦ୍ୟ ଖାଇ ରହିବେ । ୧୪୦ ଜଣଙ୍କୁ ରୋଜଗାର ମିଳିବ ନାହିଁ । ଅନାହାର, ଅଧାହାରରେ ରହିବେ ଦୁଇଜଣ ।

ଏକ ସହସ୍ର ଜନସଂଖ୍ୟାର ଏହି ବିଶ୍ୱ ଗ୍ରାମରେ ପାଞ୍ଚ ଜଣ ସୈନିକ, ସାତ ଜଣ ଶିକ୍ଷକ ଓ ଜଣେ ଡାକ୍ତର ଥିବେ । ଗାଁର ବାର୍ଷିକ ବ୍ୟୟ ତେର କୋଟି ପଚାଶ ଲକ୍ଷ ଟଙ୍କାରୁ ୮୫ ଲକ୍ଷ ଟଙ୍କା ଅସ୍ତ୍ରଶସ୍ତ୍ର କିଣା ଓ ଯୁଦ୍ଧ ବାବଦରେ ଖର୍ଚ୍ଚ ହେବ । ଶିକ୍ଷାପାଇଁ ୭୦ ଲକ୍ଷ ଓ ସ୍ୱାସ୍ଥ୍ୟ ସେବାରେ ୬୦ ଲକ୍ଷ ଖର୍ଚ୍ଚ ହେବ । କେବଳ ୧୦୦ ଜଣ ଲୋକଙ୍କ ହାତରେ ମାରଣାସ୍ତ୍ର ଓ ଆଣବିକ ବୋମା ରହିବ ଏବଂ ବାକି ନଅଶହ ଲୋକ ଆତଙ୍କ ଓ ଉଦ୍‌ବେଗ ସହ ଏହି ଶହେ ଲୋକଙ୍କ ଆଡ଼କୁ ଚାହିଁ ରହିବେ । କାରଣ ବିଶ୍ୱ ଜନସଂଖ୍ୟାର ଏହି ଦଶ ଭାଗ ଲୋକ କେବେ ବି ଏକାଠି ହୋଇ ବା ଭୁଲ୍ ଭଟକା ବଶତଃ ସମଗ୍ର ବିଶ୍ୱ ଗ୍ରାମକୁ ଧ୍ୱଂସ କରିଦେବେ । ତେଣୁ ବିଶ୍ୱ ଗ୍ରାମର ଏଇ ନ'ଶହ ଲୋକ ଏବେ ଏକଜୁଟ ହୋଇ ସମାଜ ଓ ସଭ୍ୟତାକୁ ରକ୍ଷା କରିବାପାଇଁ ଆଗେଇ ଆସିବାର ବେଳ ଆସିଯାଇଛି ।

*୧୪ ଡିସେମ୍ବର, ୨୦୦୬*



# ସ୍ମୃତି, ମୂର୍ତ୍ତି ଓ ମାୟା

ମୂର୍ତ୍ତି, ପ୍ରତିମୂର୍ତ୍ତି ଓ ସ୍ମାରକୀ ଜରିଆରେ ମଣିଷକୁ ମହାପୁରୁଷ ଓ ଈଶ୍ୱର କରିବା ଉଦ୍ୟମ ଜାରି ରହିଛି । ଏବେ ରାଜ୍ୟର ବିକାଶପାଇଁ ଉଦ୍ଦିଷ୍ଟ ଅର୍ଥକୁ ନିଜ ପ୍ରତିମୂର୍ତ୍ତି ସ୍ଥାପନରେ ବିନିର୍ବ୍ୟୟ କରିଥିବା ଅଭିଯୋଗ ପାଇ ଦେଶର ଉଚ୍ଚତମ ନ୍ୟାୟାଳୟ ଉତ୍ତରପ୍ରଦେଶ ମୁଖ୍ୟମନ୍ତ୍ରୀ ମାୟାବତୀଙ୍କ ନିକଟକୁ ନୋଟିସ୍ ପଠାଇଛନ୍ତି । ନିଜର ଓ ନିଜ ଦଳର ନେତାଙ୍କର ୪୦ଟି ପ୍ରତିମୂର୍ତ୍ତି, ନିର୍ବାଚନ ଚିହ୍ନ ଓ ସ୍ମାରକୀ ନିର୍ମାଣପାଇଁ ରାଜକୋଷରୁ ଦୁଇହଜାର କୋଟି ଟଙ୍କା ବରବାଦ କରାଯାଇଛି ବୋଲି ଅଭିଯୋଗ ହୋଇଛି । ଏହା ଭାରତୀୟ ରାଜନୀତି କ୍ଷେତ୍ରରେ ଏକ ଅତ୍ୟନ୍ତ ଲଜ୍ଜାଜନକ ଓ କଳଙ୍କିତ ଘଟଣା ବୋଲି କୁହାଯାଉଛି । ମାୟାବତୀଙ୍କ ଉଦାହରଣରେ ଉତ୍ସାହିତ ହୋଇ ଉତ୍ତରପ୍ରଦେଶ ଭାଦୋହି ସହରନିବାସୀ ପୂର୍ବତନ ଦୁର୍ଦ୍ଧାନ୍ତ ଡକାୟତ ଜଗନ୍ନାଥ ବିନ୍ଦ ମଧ୍ୟ ଏବେ ନିଜ ଘର ସାମନା ରାସ୍ତା ଉପରେ ନିଜର ପ୍ରତିମୂର୍ତ୍ତି ସ୍ଥାପନପାଇଁ ଲାଗି ପଡିଛନ୍ତି । ୫୯ ବର୍ଷ ବୟସ୍କ ଜଗନ୍ନାଥଙ୍କ ବିରୁଦ୍ଧରେ ୩୨ଟି ହତ୍ୟା, ଲୁଣ୍ଠନ କେଶ୍‌ର ଇତିହାସ ରହିଛି । ଆଗେ ମୃତ୍ୟୁ ପରେ ବିଶିଷ୍ଟ ବ୍ୟକ୍ତିଙ୍କ ସ୍ମୃତିରେ ପ୍ରତିମୂର୍ତ୍ତି ସ୍ଥାପନ କରାଯାଉଥିଲା, ଏବେ ଜୀଇଁ ଥାଉ ଥାଉ ନେତାମାନେ ନିଜ ମୂର୍ତ୍ତି ନିଜେ ଗଢାଇ ସରକାରୀ ପଇସାରେ ସ୍ମାରକୀ ତୋଳି ବସାଇ ଦେଉଛନ୍ତି । ବିଭିନ୍ନ ଅନୁଷ୍ଠାନକୁ ନିଜ ନାଁରେ ନାମିତ କରି ଉଦ୍‌ଘାଟନ ଉତ୍ସବରେ ନିଜେ ମୁଖ୍ୟଅତିଥି ହୋଇଯାଉଛନ୍ତି ।

ଓଡ଼ିଶାରେ କେତେକ ଜାଗାରେ ନେତାମାନେ ସରକାରୀ ପଇସାରେ ନିଜ ନାଁରେ ସ୍କୁଲ, ଷ୍ଟାଡିଅମ ଇତ୍ୟାଦି ନାମିତ କରୁଛନ୍ତି । ସଦ୍ଦାମ ହୁସେନ୍ ଇରାକ୍‌ର ରାଷ୍ଟ୍ରପତି ଥିବା ବେଳେ ନିଜର ବଡ଼ ବଡ଼ ପ୍ରତିମୂର୍ତ୍ତିମାନ ଗଢାଇ କେନ୍ଦ୍ର ସ୍ଥଳମାନଙ୍କରେ ପ୍ରତିଷ୍ଠା କରି ଦେଇଥିଲେ । ତାଙ୍କ ରାଜତ୍ୱର ଅବସାନ ପରେ ଇରାକୀମାନେ ପ୍ରତିମୂର୍ତ୍ତିକୁ ଭାଙ୍ଗି ଧୂଳିସାତ୍ କରିଦେଲେ । ସେହିପରି ରୁଷିଆ ଓ ଚୀନ୍‌ରେ ଲେନିନ୍ ଓ ମାଓଙ୍କ ଭଳି

ପ୍ରତିଷ୍ଠିତ ନେତାଙ୍କ ପ୍ରତିମୂର୍ତ୍ତି ପୂର୍ବସମ୍ମାନ ହରାଇଥିଲେ । ରାଜଘାଟ ସମାଧିସ୍ଥଳ ମଧ୍ୟରେ ରାଷ୍ଟ୍ରପିତା ମହାତ୍ମାଗାନ୍ଧୀଙ୍କର ପ୍ରତିମୂର୍ତ୍ତି ନ ରଖିବା ଏହି ଦୃଷ୍ଟିରୁ ଏକ ବିଜ୍ଞ ନିଷ୍ପତ୍ତି ଥିଲା । ତେଣୁ ଆଜି ବିଦେଶରେ ଲୋକେ ତାଙ୍କ ସ୍ମୃତିରେ ପ୍ରତିମୂର୍ତ୍ତି ସ୍ଥାପନ କରୁଛନ୍ତି ଓ ଏବେ ମିଳିତ ରାଷ୍ଟ୍ରସଂଘ ଗାନ୍ଧୀ ଜୟନ୍ତୀ ଦିବସକୁ ପ୍ରତିବର୍ଷ ଆନ୍ତର୍ଜାତିକ ଅହିଂସା ଦିବସ ଭାବେ ପାଳନ କରୁଛନ୍ତି । ଶାନ୍ତିବନ, ଶକ୍ତିସ୍ଥଳ ଓ ବିଜୟ ଘାଟରେ ନେହେରୁ, ଇନ୍ଦିରା ଓ ଲାଲବାହାଦୂରଙ୍କର ମଧ୍ୟ କୌଣସି ପ୍ରତିମୂର୍ତ୍ତି ନାହିଁ ।

ମୂର୍ତ୍ତି, ପ୍ରତିମୂର୍ତ୍ତି, ସ୍ମୃତି-ସ୍ମାରକୀ ନେଇ ପୃଥିବୀର ବିଭିନ୍ନ ଅଞ୍ଚଳରେ ବାଦ ବିବାଦ ଲାଗି ରହିଛି । ଏହା ସହିତ ସାମାଜିକ, ଧାର୍ମିକ, ସାଂସ୍କୃତିକ ବିଚାରଧାରା ଜଡିତ ଥିବାରୁ ପ୍ରତିମୂର୍ତ୍ତି ରାଜନୀତି ଆହୁରି ଜଟିଳ ହେଲାଣି । ଓଡ଼ିଶାରେ ଗତ ଦଶ ବର୍ଷ ଭିତରେ ରାସ୍ତାଘାଟରେ ପ୍ରତିମୂର୍ତ୍ତିଙ୍କ ସଂଖ୍ୟା ଦଶ ଗୁଣ ବଢ଼ିଗଲାଣି । ଆନ୍ଧ୍ରପ୍ରଦେଶ ଓ ତାମିଲନାଡୁରେ ପ୍ରତିମୂର୍ତ୍ତି ସ୍ଥାପନପାଇଁ ନେତାଙ୍କ ପ୍ରତିଯୋଗିତା ଆହୁରି ପ୍ରବଳ । ମହାରାଷ୍ଟ୍ରରେ ଶିବାଜୀ ଓ ଆମ୍ବେଦକରଙ୍କ ପ୍ରତିମୂର୍ତ୍ତି ସ୍ଥାପନପାଇଁ ଦୁଇ ଗୋଷ୍ଠୀ ମଧ୍ୟରେ କଳହର ହିଂସ୍ର ରୂପ ଦେଖି ପ୍ରତିମୂର୍ତ୍ତିମାନେ ନିଜେ ଥରହର ହେଉଥିବେ । ଝାଡଖଣ୍ଡରେ ଅଗ୍ରୱାଲ ସମାଜ ଉଗ୍ରସେନଙ୍କ ପ୍ରତିମୂର୍ତ୍ତି ଲାଲପୁର ଛକରେ ସ୍ଥାପନ କରିବାକୁ ଚାହୁଁଥିବା ବେଳେ ପୂର୍ବତନ ରାଜ୍ୟସଭା ସଦସ୍ୟ ଜ୍ଞାନରଞ୍ଜନଙ୍କ ପ୍ରତିମୂର୍ତ୍ତି ସେହି ସ୍ଥାନରେ ପ୍ରତିଷ୍ଠା ପାଇଁ ତାଙ୍କ ଅନୁଗାମୀମାନେ ଦାବି କରି ଧାରଣା, ହରତାଳ ଡାକରା ଦେଇଛନ୍ତି । ସେହିପରି ସନ୍ଥ କବି ତିରୁବଲ୍ଲୁଭର ତାମିଲ ହୋଇଥିବାରୁ କର୍ଣ୍ଣାଟକରେ ତାଙ୍କ ପ୍ରତିମୂର୍ତ୍ତି ସ୍ଥାପନକୁ ବିରୋଧ କରାଯାଉଛି । ଏବେ ଦୁଇ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କ ସହମତରେ କର୍ଣ୍ଣାଟକରେ ତିରୁବଲ୍ଲୁଭଙ୍କ ପ୍ରତିମୂର୍ତ୍ତି ସ୍ଥାପନା ବଦଳରେ ତାମିଲନାଡୁରେ କନ୍ନଡ ସନ୍ଥ କବି ସର୍ବଜ୍ଞଙ୍କ ପ୍ରତିମୂର୍ତ୍ତି ସ୍ଥାପନ କରାଯାଇଛି । ଅଯୋଧାରେ ଦୁଇ ସମ୍ପ୍ରଦାୟଙ୍କ କଳହ ଫଳରେ ଶ୍ରୀରାମଙ୍କ ବିଗ୍ରହକୁ ତମ୍ବୁରେ ରଖାଯାଇଛି । ଏବେ ଜଣେ ଭାରତୀୟ କଳାକାରଙ୍କଦ୍ୱାରା ନିର୍ମିତ ହାସ୍ୟ ଅଭିନେତା ଚାର୍ଲିଚାପଲିନଙ୍କ ପ୍ରତିମୂର୍ତ୍ତିକୁ କର୍ଣ୍ଣାଟକର ଏକ ସାମ୍ପ୍ରଦାୟିକ ସଂସ୍ଥାର ସଭ୍ୟମାନେ ଆକ୍ରମଣ କରିଛନ୍ତି । ଆଫଗାନିସ୍ତାନର ବାମିୟାନ ବୁଦ୍ଧ ପ୍ରତିମୂର୍ତ୍ତିକୁ ତାଲିବାନ ଧ୍ୱଂସ କରି ଦେଇଥିବା ଘଟଣା ସମସ୍ତଙ୍କୁ ଜଣା ।

ମୁମ୍ବାଇ ନିକଟସ୍ଥ ଆରବ ସାଗରରେ ଛତ୍ରପତି ଶିବାଜୀଙ୍କର ଏକ ବିଶାଳ ପ୍ରତିମୂର୍ତ୍ତି ୩୦୦ କୋଟି ଟଙ୍କା ଖର୍ଚ୍ଚ କରି ସ୍ଥାପନ କରାଯିବ ବୋଲି ମହାରାଷ୍ଟ୍ର ସରକାରଙ୍କ ଘୋଷଣା, ଏବେ ବିବାଦର ଘେରରେ ଫସି ଯାଇଛି । କାରଣ ଏହି ସ୍ମାରକୀ କମିଟିର ଚେୟାରମ୍ୟାନ୍ ବାବାସାହେବ ପୁରନ୍ଦର ଜାତିରେ ବ୍ରାହ୍ମଣ । ମରାଠୀମାନେ ଏହାର ବିରୋଧ କରୁଛନ୍ତି । ସେମାନେ ଶିବାଜୀଙ୍କୁ ଜାତୀୟ ନେତା ନୁହେଁ, ମରାଠୀ ନେତା

ଭାବରେ ଦେଖିବାକୁ ଚାହାନ୍ତି ଏବଂ ସେହି କାରଣରୁ ଜଣେ ମରାଠୀ ସ୍ମାରକୀ କମିଟିର ନେତୃତ୍ୱ ନେଉ ବୋଲି ଚାହାନ୍ତି । ରାଷ୍ଟ୍ରପିତା ଗାନ୍ଧୀଙ୍କୁ ବଣିଆଙ୍କ ନେତା କହିବା ଯେମିତି ହାସ୍ୟାସ୍ପଦ, ଏହା ସେହିପରି । ସେମିତି ରାଷ୍ଟ୍ରନେତା ଭୀମରାଓ ଆମ୍ବେଦକରଙ୍କୁ ଦଳିତଙ୍କ ନେତା ସ୍ତରକୁ ଓହ୍ଲାଇ ଦିଆଯାଇଛି । ଏବେ ୱାସିଂଟନ୍ ନଗରୀରେ ମାର୍ଟିନ୍ ଲୁଥର କିଙ୍ଗ୍‌ଙ୍କର ଏକ ପ୍ରତିମୂର୍ତ୍ତିକୁ ଗିଲ୍‌ବର୍ଟ ୟଙ୍ଗ୍ ନାମକ ଜଣେ ଚାଇନିଜ୍ ସ୍ଥାପତ୍ୟ ଶିଳ୍ପୀ ନିର୍ମାଣ କରୁଥିବାରୁ ଆଫ୍ରିକୀୟମାନେ ବିରୋଧ କରିଛନ୍ତି ।

୨୦୦୬ ମସିହାରେ ମୂର୍ତ୍ତି-ପ୍ରତିମୂର୍ତ୍ତି ବିବାଦ ନେଇ ତାମିଲନାଡୁ ରାଜ୍ୟରେ ଆଉ ଏକ ଦୁଃଖଦ ଓ ହାସ୍ୟାସ୍ପଦ ଘଟଣା ଘଟିଥିଲା । ଏଠି ଇଭି ରାମସ୍ୱାମୀ ନାଇକର ଥିଲେ ଦ୍ରାବିଡ ସ୍ୱାଭିମାନ ଓ ହେତୁବାଦୀ ଆନ୍ଦୋଳନର ସର୍ବୋଚ୍ଚ ନେତା । ତାଙ୍କ ସମ୍ମାନରେ ମାରିନା ବିଚ୍‌ରେ ଅଛି ଏକ ବିରାଟ ସ୍ମାରକୀ ଓ ପ୍ରତିମୂର୍ତ୍ତି । ରାଜନୈତିକ କାରଣରୁ ତାଙ୍କ ପ୍ରତିମୂର୍ତ୍ତି ଉପରେ କେହି ବ୍ୟକ୍ତି ନିଶାର୍ଦ୍ଧରେ ଆକ୍ରମଣ କରି ଖଣ୍ଡିଆ କରି ଦେଇଥିଲା । ଏହି ଖବର ପାଇ ନାଇକରଙ୍କ ସମର୍ଥକମାନେ ହିନ୍ଦୁ ମନ୍ଦିରମାନଙ୍କରେ ପଶି ଦେବଦେବୀଙ୍କ ପ୍ରତିମାକୁ ଖଣ୍ଡ ବିଖଣ୍ଡ କରିଦେଲେ । ଏହା ଏକ ହାସ୍ୟାସ୍ପଦ ଘଟଣା । ଯେଉଁ ରାମସ୍ୱାମୀ ନାଇକର ତାମିଲନାଡୁରେ ହେତୁବାଦୀ ଆନ୍ଦୋଳନର ପ୍ରବର୍ତ୍ତକ ଓ ଧର୍ମ ତଥା ମୂର୍ତ୍ତି ପୂଜାର ବିରୋଧୀ, ତାଙ୍କ ମୂର୍ତ୍ତି ତିଆରି କରି, ଫୁଲମାଳ ଦେଇ, ସ୍ମାରକୀ ମନ୍ଦିରରେ ବସାଇ ନିରୀଶ୍ୱରବାଦୀ ନାଇକରଙ୍କୁ ଈଶ୍ୱର ଭଳି ପୂଜା କରିବା ହେଉଛି ତାଙ୍କ ସ୍ମୃତି ଓ ଦର୍ଶନ ପ୍ରତି ଏକ ପରିହାସ । ମହାତ୍ମା ବୁଦ୍ଧ ମୂର୍ତ୍ତି ପୂଜାରେ ବିଶ୍ୱାସ କରୁନଥିଲେ ଏବଂ ପରବର୍ତ୍ତୀ କାଳରେ ତାଙ୍କରି ଅନୁଗାମୀମାନେ ବୁଦ୍ଧଙ୍କର ବିଶାଳ ମୂର୍ତ୍ତିମାନ ନିର୍ମାଣ କରି ମନ୍ଦିରରେ ବସାଇ ପୂଜାର୍ଚ୍ଚନା ଆରମ୍ଭ କଲେ । ସେହି ବୁଦ୍ଧଙ୍କ ଧର୍ମ ଓ ପନ୍ଥା ଗ୍ରହଣ କରିଥିବା ବାବାସାହେବ ଆମ୍ବେଦକରଙ୍କ ପ୍ରତିମୂର୍ତ୍ତିର ସଂଖ୍ୟା ଏବେ ବୁଦ୍ଧ ପ୍ରତିମୂର୍ତ୍ତି ସଂଖ୍ୟାଠାରୁ ଅଧିକ ହେଲାଣି ।

ମହାତ୍ମା ବୁଦ୍ଧଙ୍କ ପରେ ମୂର୍ତ୍ତି ପୂଜା ବିରୋଧରେ ପ୍ରଥମ ସ୍ୱର ଉତ୍ତୋଳନ କରିଥିଲେ ପ୍ରଫେଟ୍ ହଜରତ୍ ମୋହମ୍ମଦ । ତେଣୁ ଇସ୍‌ଲାମ ଧର୍ମରେ ମହମ୍ମଦ, ଆଲ୍ଲା ବା ଈଶ୍ୱରଙ୍କ ଚିତ୍ର କରିବା ଶକ୍ତ ମନା । ନିକଟରେ ୟୁରୋପରେ ମହମ୍ମଦଙ୍କ କାର୍ଟୁନ ଓ ଫଟୋଚିତ୍ର ବିରୋଧରେ ମୁସଲିମ୍ ସମ୍ପ୍ରଦାୟ ପ୍ରବଳ ପ୍ରତିବାଦ କରିଥିଲେ । ସନାତନ ହିନ୍ଦୁ ଧର୍ମରେ ଓ ବିଶେଷ କରି ବେଦମାନଙ୍କରେ ମୂର୍ତ୍ତି ପୂଜା ପରମ୍ପରା ନଥିଲା । ଋଗ୍‌ବେଦରେ ପ୍ରାକୃତିକ ଦେବଦେବୀମାନେ ଥିଲେ ଇନ୍ଦ୍ର, ମରୁତ, ବରୁଣ, ଅଗ୍ନି ଓ ପୃଥ୍ୱୀ ଭଳି ପଞ୍ଚ ମହାଭୂତ । ଈଶ୍ୱରଙ୍କର ମୂର୍ତ୍ତି ନଥିଲା - ଯେହେତୁ ସେ ଅରୂପ, ନିରାକାର, ନିର୍ଗୁଣ, ସର୍ବବ୍ୟାପୀ, ଅନାଦି, ଅନନ୍ତ, ସଚ୍ଚିଦାନନ୍ଦ ପରଂବ୍ରହ୍ମ । କେବଳ

ଧ୍ୟାନସ୍ଥ ଯୋଗୀମାନେ ତଦ୍‌ଗତ ଅବସ୍ଥାରେ କ୍ୱଚିତ୍ ତାଙ୍କର ମାନସ ଦର୍ଶନ କରୁଥିଲେ - ଚାକ୍ଷୁଷ ନୁହେଁ । ଯେଉଁମାନେ ନିରାକାରଙ୍କୁ ଅନୁଭବ କରିପାରନ୍ତି ନାହିଁ, ସେମାନଙ୍କ ପାଇଁ ଆକାର, ମୂର୍ତ୍ତିର କଳ୍ପନା । ସେଇମାନେ ମୂର୍ତ୍ତି ଗଢନ୍ତି, ଜଡ ମୂର୍ତ୍ତିରେ ପ୍ରାଣ ପ୍ରତିଷ୍ଠା କରାନ୍ତି ଓ ତାପରେ ସେଇ ମୂର୍ତ୍ତିକୁ ପୂଜା, ପ୍ରାର୍ଥନା କରନ୍ତି । ତେଣୁ ଦାର୍ଶନିକ ଦୃଷ୍ଟିରୁ ହିନ୍ଦୁ-ଇସଲାମ ମଧ୍ୟରେ ତାତ୍ତ୍ୱିକ ପ୍ରଭେଦ ନାହିଁ । ଯେଉଁ ତତ୍ତ୍ୱ ହିନ୍ଦୁମାନେ ଭୁଲି ଯାଇଥିଲେ, ଇସଲାମ୍ ସେହି ଦର୍ଶନକୁ ସାରା ବିଶ୍ୱରେ ପ୍ରଚାର, ପ୍ରସାର କଲା ।

ଦେଶ ବିଦେଶରେ ମୂର୍ତ୍ତି, ପ୍ରତିମୂର୍ତ୍ତି ବିଭିନ୍ନ ବିଶ୍ୱାସର ପ୍ରତୀକ ଓ କଳା, ସ୍ଥାପତ୍ୟର ଅପୂର୍ବ ପରିପ୍ରକାଶ । କୋଣାର୍କ, ଖଜୁରାହୋର କାରୁକାର୍ଯ୍ୟପୂର୍ଣ୍ଣ ମୂର୍ତ୍ତି ବିଶ୍ୱବିଖ୍ୟାତ । ଗ୍ରୀସ୍‌ର ଅଲିମ୍ପିଆଠାରେ ଜିଅସ୍‌ଙ୍କ ବିଶାଳ ମୂର୍ତ୍ତି ପୃଥିବୀର ସପ୍ତାଶ୍ଚର୍ଯ୍ୟ ମଧ୍ୟରେ ଗଣାଯାଏ । ଏହା ପ୍ରାୟ ତିନି ହଜାର ବର୍ଷର ପୁରୁଣା । ଗ୍ରୀକ୍‌ମାନେ ବିଶ୍ୱାସ କରୁଥିଲେ ଜିଅସ୍ ଦେବତାମାନଙ୍କ ରାଜା ଓ ସଙ୍କଟମୋଚକ । ସେହିପରି ଦକ୍ଷିଣ ପୂର୍ବ ଏସିଆରେ 'ମାଜୁ'ଙ୍କ ପ୍ରତିମୂର୍ତ୍ତିକୁ ପୂଜା କରାଯାଏ । ଦଶମ ଶତାବ୍ଦୀରେ ଜନ୍ମିତ ମାଜୁ ଧୀବର ଓ ସୌଦାଗରମାନଙ୍କୁ ସାମୁଦ୍ରିକ ଝଡରୁ ରକ୍ଷା କରୁଥିଲେ । ମାତ୍ର ୨୮ ବର୍ଷରେ ତାଙ୍କର ଦେହାନ୍ତ ହୋଇଗଲା । ଏବେ ସେ ମା' ଓ ଦେବୀ ଭାବରେ ପୂଜା ପାଉଛନ୍ତି । ତାଙ୍କ ଅନୁଗାମୀମାନେ ମାଜୁଙ୍କର ବିଶାଳ ମୂର୍ତ୍ତି ନିର୍ମାଣ କରିବା ଯୋଜନା ନେଇ ମାଲେସିଆରେ ବିବାଦ ସୃଷ୍ଟି ହୋଇଛି । କାନାଡାରେ 'ମେତି' ସମ୍ପ୍ରଦାୟ ଲୋକଙ୍କ ଦ୍ୱାରା ସେମାନଙ୍କ ନେତା ଲୁଇରିଲ୍‌ଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା ଉଦ୍ୟମକୁ ଅନ୍ୟ ସମ୍ପ୍ରଦାୟର ଲୋକମାନେ ବିରୋଧ କରୁଛନ୍ତି । ସେହିପରି ସେଠାରେ ଏକ କୁଖ୍ୟାତ ଜଳଦସ୍ୟୁଙ୍କ ପ୍ରତିମୂର୍ତ୍ତି ସ୍ଥାପନ ଉଦ୍ୟମକୁ କାଥଲିକ୍ ଧର୍ମଗୁରୁମାନେ ବିରୋଧ କରୁଛନ୍ତି । ଏବେ ଜଣେ ସ୍ଥପତି ଗାୟିକା, ଅଭିନେତ୍ରୀ ଓ ମଡେଲ୍ ବ୍ରିଟ୍‌ନି ସ୍ପିଅର୍ସଙ୍କ ପ୍ରସବାବସ୍ଥାର ଷ୍ଟାଚ୍ୟୁ ନିର୍ମାଣ କରି ବିବାଦୀୟ ହୋଇ ପଡିଛନ୍ତି । ସେହିପରି ଡାଏନାଙ୍କ ପୁତ୍ର ରାଜକୁମାର ହ୍ୟାରିଙ୍କୁ ଇରାକ୍ ଯୁଦ୍ଧରେ ଯୋଗ ଦେବାକୁ ମନା କରିବାରୁ ଜଣେ ସ୍ଥପତି ତାଙ୍କ ହାତରେ ଅଫୁଟା ବନ୍ଧୁକ ଧରାଇ 'ମୃତ ହ୍ୟାରି' ନାମରେ ଏକ ପ୍ରତିମୂର୍ତ୍ତି ନିର୍ମାଣ ପରେ ଇଂଲଣ୍ଡରେ ଚହଳ ପଡିଗଲାଣି । ଆମ ଓଡ଼ିଶାର ସୁଦର୍ଶନ ପଟ୍ଟନାୟକ ବିଭିନ୍ନ ଘଟଣାର ଦୃଶ୍ୟର ବାଲୁକା ପ୍ରତିମୂର୍ତ୍ତି ନିର୍ମାଣ କରି ବାଲୁକା କଳାର ପ୍ରଚାର, ପ୍ରସାର ଓ ଲୋକପ୍ରିୟତା ବଢାଇ ବିଶ୍ୱପ୍ରସିଦ୍ଧ ହେଲେଣି । ଜର୍ମାନୀରେ ଅନୁଷ୍ଠିତ ଏକ ଆନ୍ତର୍ଜାତିକ ପ୍ରତିଯୋଗିତାରେ ସେ ପ୍ରଥମ ସ୍ଥାନ ଅଧିକାର କରିଛନ୍ତି । କିନ୍ତୁ ବର୍ମୁଡାରେ ଦାସ ପ୍ରଥା ବିରୋଧରେ ଲଢି ସହିଦ ହୋଇଥିବା କୃଷ୍ଣକାୟ ଶାଲିଙ୍କ ପ୍ରତିମୂର୍ତ୍ତି ଗୋରାଙ୍କ ବିରୋଧ ଯୋଗୁଁ ପ୍ରତିଷ୍ଠା କରାଯାଇ ପାରୁନାହିଁ । ତୁର୍କିମେନିସ୍ତାନର ସାପରମୁରତ ଆତାୟେଭିଚ୍

ନିୟାଜୋଭ୍ ନିଜକୁ ଦେଶର ଆଜୀବନ ରାଷ୍ଟ୍ରପତି ଓ ସବୁ ତୁର୍କମେନିସ୍ତାନୀଙ୍କର ଅମର ନେତା ଘୋଷଣା କରି ଷ୍ଟାଲିନ୍, ଲେନିନ୍ ଓ ମାର୍କ୍ସଙ୍କର ପ୍ରତିମୂର୍ତ୍ତି ଭାଙ୍ଗି ନିଜ ମୂର୍ତ୍ତି ସ୍ଥାପନ କରିଛନ୍ତି । ଦେଶର ସ୍କୁଲ, କଲେଜ, ଏୟାରପୋର୍ଟ ଓ ବିଭିନ୍ନ ସହରକୁ ନିଜ ନାମରେ ନାମିତ କରିଛନ୍ତି । 'ଚୀନ୍‌ର ଅଭନ୍ତଗାର୍ଡ ସ୍ଥପତି ଗାଓ ଝେନ୍ ଓ ଗାଓ କିଆଙ୍ଗ୍ - ଦୁଇଭାଇ ମାଓଙ୍କ ମୁଣ୍ଡ ଓ ଗଣ୍ଡି ଦୁଇ ଭାଗ କରି ଗଢ଼ିଛନ୍ତି ଏକ ବିଭକ୍ତ ମୂର୍ତ୍ତି ଏବଂ ନାମ ରଖିଛନ୍ତି 'ମାଓଙ୍କ ଅପରାଧ' । ଚୀନ୍‌ରେ ସାଂସ୍କୃତିକ ବିପ୍ଲବ ସମୟରେ ଏମାନଙ୍କ ପିତାଙ୍କୁ ଶ୍ରେଣୀ ଶତ୍ରୁକହି ମାରି ଦିଆଯାଇଥିଲା । ମୂର୍ତ୍ତିଟିରେ ମାଓ ନିଜ ଦୋଷପାଇଁ ନିଜ କଟା ମୁଣ୍ଡଟି ଧରି କ୍ଷମା ମାଗୁଥିବା ଦର୍ଶାଯାଇଛି । ଚୀନ୍ ସରକାର ଏହାକୁ ନିଷିଦ୍ଧ କରିଛନ୍ତି ଏବଂ ହୁନାନ୍‌ର ଚାଙ୍ଗସା ସହରରେ ମାଓଙ୍କର ୧୦୫ ଫୁଟ ଉଚ୍ଚ ମୂର୍ତ୍ତି ଗଢ଼ିଛନ୍ତି ।

ଏବେ କିନ୍ତୁ ପ୍ରତିମୂର୍ତ୍ତିର ବିଶ୍ୱକର୍ମା ହେଉଛନ୍ତି ମାଡାମ୍ ତୁଷାଡ୍ । ଜୀବିତ ଓ ମୃତ ସେଲିବ୍ରିଟିଙ୍କ ମୂର୍ତ୍ତି ନିଖୁଣ ଭାବରେ ତିଆରି କରି ସେ ଆଜି ବିଶ୍ୱ ପ୍ରସିଦ୍ଧ । ଲଣ୍ଡନ, ବର୍ଲିନ୍ ଓ ପୃଥିବୀର ବଡ଼ ବଡ଼ ନଗରୀରେ ତାଙ୍କ ନିର୍ମିତ ମହମ ପ୍ରତିମୂର୍ତ୍ତି ମ୍ୟୁଜିୟମ୍ ଦେଖିବାକୁ ସଦାବେଳେ ଟୁରିଷ୍ଟଙ୍କ ଭିଡ । ପ୍ରତିମୂର୍ତ୍ତିପାଇଁ ମଣିଷର ଦୁର୍ବଳତାର କାରଣ ହେଲା ଆତ୍ମ-ପ୍ରେମ-ପ୍ରବଣତା ବା ନିଜ ପ୍ରତି ଅସାଧରଣ ଅନୁରାଗ । ଗ୍ରୀସୀୟ କିମ୍ବଦନ୍ତୀର ଚରିତ୍ର ନାର୍ସିସସ୍ ଜଳରେ ନିଜ ପ୍ରତିଛବି ଦେଖି ଆତ୍ମବିଭୋର ହୋଇ ପଡୁଥିଲେ । ସେହି ମାୟାରେ ଏବେ ଆମର ଅନେକ ନେତା ନେତ୍ରୀ ବିଭୋର । କାଳେ ମୃତ୍ୟୁ ପରେ ଲୋକେ ତାଙ୍କୁ ଭୁଲିଯିବେ, ତେଣୁ ଜୀଇଁ ଥାଉ ଥାଉ ନିଜ ସ୍ମୃତି ପାଇଁ ପ୍ରତିମୂର୍ତ୍ତି ପୁଣି ସରକାରୀ ଖର୍ଚ୍ଚରେ । ନିଜକୁ ପ୍ରତିମୂର୍ତ୍ତି ମାଧ୍ୟମରେ ଅମର କରି ରଖିବାର ନିଷ୍ଫଳ, ନିର୍ଲଜ ଉଦ୍ୟମ । ଯେଉଁ ଗତିରେ ମୂର୍ତ୍ତି-ପ୍ରତିମୂର୍ତ୍ତି ସଂଖ୍ୟା ବଢ଼ିବାରେ ଲାଗିଛି, କିଛିଦିନ ପରେ ରାସ୍ତା, ଘାଟ, ଗଳି, ଛକ, ପାର୍କଗୁଡ଼ିକରେ ପ୍ରତିମା ପ୍ରତିଷ୍ଠା ପାଇଁ ପ୍ରବଳ ପ୍ରତିଯୋଗିତା ଆରମ୍ଭ ହୋଇଯିବ । ତେଣୁ ଏଭଳି ଅପ୍ରୀତିକର ପରିସ୍ଥିତି ଉପୁଜିବା ପୂର୍ବରୁ ପାର୍ଲିଆମେଣ୍ଟରେ ପ୍ରତିମୂର୍ତ୍ତି ପ୍ରତିଷ୍ଠା ବିଷୟରେ ନୂଆ ନୀତି ଓ ଆଇନ୍ ତିଆରି ହେବା ଦରକାର । ଏହାର ଉଦାହରଣ ଅନ୍ୟ ଦେଶମାନଙ୍କରେ ଅଛି । ନ ହେଲେ ପ୍ରତିମୂର୍ତ୍ତିଙ୍କ ସଂଖ୍ୟା ଏତେ ବଢ଼ିଯିବ ଯେ ଶେଷରେ ଏଗୁଡ଼ିକୁ ହଟିବାପାଇଁ ବୁଲଡୋଜରର ଆବଶ୍ୟକତା ପଡ଼ିବ ।

*୧୬ ଜୁଲାଇ, ୨୦୦୯*



# ସ୍ୱତନ୍ତ୍ର ପାହ୍ୟା ରାଜ୍ୟ କ'ଣ ଓ କାହିଁକି ?

ଓଡ଼ିଶାକୁ 'ସ୍ୱତନ୍ତ୍ର ରାଜ୍ୟ'ର ଦର୍ଜା ଦେବାକୁ ତୃତୀୟ ଥରପାଇଁ ନିର୍ବାଚିତ ମୁଖ୍ୟମନ୍ତ୍ରୀ ଦାବି କରିଛନ୍ତି । ଏହା ଏକ ପୁରୁଣା ଦାବି ଓ ଏହାକୁ କେବଳ ବାରମ୍ବାର ଦୋହରାଇଲେ ରାଜ୍ୟକୁ ସ୍ୱତନ୍ତ୍ର ପାହ୍ୟା ମିଳିବ ନାହିଁ । ଏଥିପାଇଁ ରାଜ୍ୟ ଯୋଜନା ବୋର୍ଡ ଓ ନାମକରା ଅର୍ଥନୀତିଜ୍ଞମାନଙ୍କୁ ସଭାସମିତି ନୁହେଁ - କଠିନ ମେହେନତ କରିବାକୁ ପଡିବ । ବିହାର ରାଜ୍ୟର ଇଞ୍ଜିନିୟର ମୁଖ୍ୟମନ୍ତ୍ରୀ ନୀତୀଶ କୁମାର ଏ ବିଷୟରେ ସମସ୍ତଙ୍କଠାରୁ ଆଗୁଆ ଅଛନ୍ତି । ସେ ନିଜେ ବହୁ ପରିଶ୍ରମ କରି ଏ ସମ୍ପର୍କରେ ଯେଉଁ ତଥ୍ୟପୂର୍ଣ୍ଣ ବହି ଲେଖିଛନ୍ତି ତା'ର ନାଁ ହେଲା - 'ସ୍ପେସିଆଲ କାଟେଗୋରି ଷ୍ଟାଟସ୍ : ଏ କେସ୍ ଫର୍ ବିହାର' । ମେ ମାସ ୧୫ ତାରିଖ ଦିନ (୨୦୦୯), ଯେତେବେଳେ ସାରା ଦେଶ ନିର୍ବାଚନ ଫଳାଫଳ ଜାଣିବାପାଇଁ ଉତ୍କଣ୍ଠିତ ଥିଲା, ବିହାର ରାଜଧାନୀ ପାଟନାଠାରେ ନୀତୀଶଙ୍କ ଲିଖିତ ଦସ୍ତାବିଜ୍‌କୁ ଉନ୍ମୋଚନ କରିଥିଲେ ଖ୍ୟାତନାମା ଅର୍ଥଶାସ୍ତ୍ରୀ ଲର୍ଡ ମେଘନାଦ ଦେଶାଇ । ତା'ପରେ ସାମ୍ବାଦିକ ସମ୍ମିଳନୀକୁ ସମ୍ବୋଧିତ କରି ନୀତୀଶ କହିଥିଲେ ଯେ କେନ୍ଦ୍ରରେ ଯେଉଁ ଗଠବନ୍ଧନ ବିହାରକୁ ସ୍ୱତନ୍ତ୍ର ରାଜ୍ୟର ପାହ୍ୟା ଦେବ, ତାଙ୍କ ଦଳ ସେଇ ଗଠବନ୍ଧନକୁ ସରକାର ଗଢିବାପାଇଁ ସମର୍ଥନ ଦେବ । ବିହାରର ବାଣିଜ୍ୟ-ବ୍ୟବସାୟୀ ସଂଗଠନମାନେ ମଧ୍ୟ ଏ ବିଷୟରେ ମୁଖ୍ୟମନ୍ତ୍ରୀଙ୍କୁ ପୂର୍ଣ୍ଣ ସମର୍ଥନ ଜଣାଇଛନ୍ତି । ନୀତୀଶ ଦଳର ସ୍ୱାର୍ଥ ଉପରକୁ ଉଠି ରାଜ୍ୟର ସ୍ୱାର୍ଥକୁ ଅଧିକ ଗୁରୁତ୍ୱ ଦେଇଛନ୍ତି ।

ସ୍ୱତନ୍ତ୍ର ରାଜ୍ୟ ପାହ୍ୟାପାଇଁ ଦାବିଦାର ଅନେକ । ଗୋଆ, ପଣ୍ଡିଚେରୀ, ରାଜସ୍ଥାନ, ଝାଡଖଣ୍ଡ, ଛତିଶଗଡ଼ ଓ ମଧ୍ୟପ୍ରଦେଶ ବହୁଦିନରୁ ଏପରି ଦାବି କରି ଆସୁଛନ୍ତି । ଏବେ

ଓଡ଼ିଶାର ଦାବିକୁ 'ଉଚ୍ଚ ସ୍ୱରରେ' ଉପସ୍ଥାପିତ କରାଯିବ ବୋଲି ଆମ ମୁଖ୍ୟମନ୍ତ୍ରୀ ଘୋଷଣା କରିଛନ୍ତି । କେବଳ ଉଚ୍ଚ ସ୍ୱରଦ୍ୱାରା କିଛି ମିଳିବ ନାହିଁ - ଏହାର ସମର୍ଥନରେ ତଥ୍ୟପୂର୍ଣ୍ଣ ଦସ୍ତାବିଜ ତିଆରି କରିବାକୁ ପଡିବ । ଭାରତ ସରକାରଙ୍କ ଅର୍ଥନୈତିକ ସର୍ବେକ୍ଷଣ ଅନୁସାରେ ଓଡ଼ିଶାର ପ୍ରାୟ ଅଧେ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ, ଚାଳିଶ ଭାଗ ଲୋକ ତଫସିଲଭୁକ୍ତ ଜାତି ଓ ଜନଜାତି, ମୁଣ୍ଡପିଛା ଆୟ ସବୁଠୁ କମ୍, ଦୁଇ ତୃତୀୟାଂଶ ଅଞ୍ଚଳ ପାହାଡିଆ ଓ ଦୁର୍ଗମ, ଶତକଡା ୩୬ ନିରକ୍ଷର, ମାତୃ ଓ ଶିଶୁ ମୃତ୍ୟୁହାର ସର୍ବାଧିକ, ଅଧାରୁ ଅଧିକ ଅଞ୍ଚଳ ବନ୍ୟା, ବାତ୍ୟା ପ୍ରବଣ ଏବଂ ପ୍ରତିବର୍ଷ ପ୍ରାୟ ୨୦ ଲକ୍ଷ ଲୋକ ପେଟ ବିକଳରେ ଭିଟାମାଟି ଛାଡିଥାନ୍ତି । ତେଣୁ ଯେଉଁ ରାଜ୍ୟଗୁଡିକୁ ସ୍ୱତନ୍ତ୍ର ପାହ୍ୟା ମିଳିଛି ସେମାନଙ୍କଠାରୁ ଓଡ଼ିଶାର ଅବସ୍ଥା ଅଧିକ ଉଦ୍‌ବେଗଜନକ । ଦେଶର ଜନସଂଖ୍ୟାର ପ୍ରାୟ ୪% ଓଡ଼ିଶାରେ, କେନ୍ଦ୍ରୀୟ ଅନୁଦାନରେ ଓଡ଼ିଶାର ଭାଗ ମାତ୍ର ୦.୭୩ ପ୍ରତିଶତ ।

ଏପର୍ଯ୍ୟନ୍ତ ଭାରତ ସରକାର ୧୧ଟି ରାଜ୍ୟକୁ ସ୍ୱତନ୍ତ୍ର ପାହ୍ୟା ଦେଇଛନ୍ତି । ସେମାନେ ହେଲେ ଉତ୍ତର-ପୂର୍ବ ଭାରତର ଆସାମ, ମଣିପୁର, ମେଘାଳୟ, ନାଗାଲାଣ୍ଡ, ମିଜୋରାମ, ଅରୁଣାଚଳ ପ୍ରଦେଶ, ସିକିମ୍ ଓ ତ୍ରିପୁରା । ଅନ୍ୟ ତିନିଟି ରାଜ୍ୟ ହେଲେ ଜାମ୍ମୁ-କାଶ୍ମୀର, ହିମାଚଳ ପ୍ରଦେଶ ଓ ଉତ୍ତରାଞ୍ଚଳ । ଏ ସବୁ ରାଜ୍ୟ ଲୋକଙ୍କ ମୁଣ୍ଡପିଛା ଆୟ ଓଡ଼ିଆଙ୍କ ମୁଣ୍ଡପିଛା ଆୟଠାରୁ ଯଥେଷ୍ଟ ଅଧିକ ।

ସ୍ୱତନ୍ତ୍ର ପାହ୍ୟା ରାଜ୍ୟ ଦାବି ପଛରେ ଆକର୍ଷଣୀୟ ଅର୍ଥନୀତି ରହିଛି । କାରଣ ପ୍ରତିବର୍ଷ କେନ୍ଦ୍ର ସରକାର ନିଜ ଆୟର ୪୫ ଭାଗ ରାଜ୍ୟମାନଙ୍କ ବଜେଟ୍‌ପାଇଁ ଦେଇଥାନ୍ତି ଏବଂ ଏହି ୪୫ ପ୍ରତିଶତରୁ ୩୦ ପ୍ରତିଶତ ନେଇଯାନ୍ତି ସ୍ୱତନ୍ତ୍ର ପାହ୍ୟା ରାଜ୍ୟମାନେ । ଅର୍ଥାତ୍ ୩୫ଟି ରାଜ୍ୟମାନଙ୍କପାଇଁ ରଖାଯାଇଥିବା ପ୍ରତି ୪୫ ଟଙ୍କାରୁ ୩୦ ଟଙ୍କା ଚାଲିଯାଏ ସ୍ୱତନ୍ତ୍ର ପାହ୍ୟା ୧୧ ଟି ରାଜ୍ୟକୁ । ଏଇ ୪୫ ଭାଗର ପରିମାଣ ହେଲା ବାର୍ଷିକ ତିନିଲକ୍ଷ କୋଟି ଟଙ୍କା ଓ ଏଥିରୁ ପ୍ରାୟ ଏକ ଲକ୍ଷ ନବେ ହଜାର କୋଟି ପାଆନ୍ତି ସ୍ୱତନ୍ତ୍ର ପାହ୍ୟାରେ ଥିବା ରାଜ୍ୟମାନେ । ଏହାଛଡା ବିଭିନ୍ନ ନୂଆ ନୂଆ ଯୋଜନାପାଇଁ କେନ୍ଦ୍ରରୁ ଯେଉଁ ଅନୁଦାନ ଆସେ, ସେଥିରେ ପ୍ରତି ଶହେ ଟଙ୍କାରେ ରାଜ୍ୟର ମ୍ୟାଚିଂ ସେଆର୍ ୩୦ ରୁ ୪୦ ଟଙ୍କା ପର୍ଯ୍ୟନ୍ତ ଥାଏ । ଅର୍ଥାତ୍ ଶହେ ଟଙ୍କାରୁ କେନ୍ଦ୍ର ଦିଏ ୬୦ ଟଙ୍କା ଓ ରାଜ୍ୟ ଦିଏ ୪୦ ଟଙ୍କା । କିନ୍ତୁ ସ୍ୱତନ୍ତ୍ର ପାହ୍ୟା ରାଜ୍ୟମାନଙ୍କ କ୍ଷେତ୍ରରେ ଏହାର ହାର ହେଲା ୯୦:୧୦ । କେନ୍ଦ୍ର ୯୦ ଟଙ୍କା ଦେଉଥିବା ସ୍ଥଳେ ରାଜ୍ୟ ମାତ୍ର ୧୦ଟଙ୍କା ଦିଏ । ଅନେକ ଯୋଜନାରେ କେନ୍ଦ୍ର

ଶତକଡା ଶହେ ଭାଗ ଅନୁଦାନ ଦେଇଥାଏ । ଏହାଛଡା ଏହି ସବୁ ରାଜ୍ୟରେ ଶିଳ୍ପ, ବାଣିଜ୍ୟ, ଉଦ୍ୟୋଗପାଇଁ ଶତକଡା ଶହେ ଭାଗ ଟିକସ ରିହାତି ମିଳିଥାଏ ।

ସେହିପରି ଏ ରାଜ୍ୟମାନଙ୍କର ଚାଷୀମାନେ ଅଧିକ ସବ୍‌ସିଡି ପାଇଥାନ୍ତି । ଋଣ ପାଇଁ କମ୍ ସୁଧ ଦିଅନ୍ତି । ଖାଉଟି ସାମଗ୍ରୀ କମ୍ ମୂଲ୍ୟରେ କିଣନ୍ତି । ଏ ରାଜ୍ୟମାନଙ୍କରେ ଥିବା ଛାତ୍ର, ଛାତ୍ରୀ, ବରିଷ୍ଠ ନାଗରିକ, ଗରିବ ମହିଳା ଓ ଭିନ୍ନକ୍ଷମମାନେ କେନ୍ଦ୍ରରୁ ସ୍ୱତନ୍ତ୍ର ଅନୁଦାନ ପାଇଥାନ୍ତି । ଯୁବ ଉଦ୍ୟୋଗୀମାନେ ସହଜରେ ଓ ନାମମାତ୍ର ସୁଧରେ ଋଣ ପାଇଥାନ୍ତି । ଉଦାହରଣ ସ୍ୱରୂପ ୩୫୦୦ ଟଙ୍କା ମୂଲ୍ୟର ଏକ ସୋଲାର (ସୌର) ଲଣ୍ଠନପାଇଁ ୭୦ ଭାଗ ସବ୍‌ସିଡି ମିଳୁଥିବା ବେଳେ ଅନ୍ୟ ରାଜ୍ୟପାଇଁ ସବ୍‌ସିଡି ପରିମାଣ ୭୦୦ ଟଙ୍କା । ସ୍ୱତନ୍ତ୍ର ପାହ୍ୟା ରାଜ୍ୟରେ ଯେଉଁମାନେ ଦାରିଦ୍ର୍ୟ ସୀମାରେଖା ତଳେ ଅଛନ୍ତି ଓ ବିଶେଷ କରି ଝିଅମାନଙ୍କୁ ଏହି ଲଣ୍ଠନ ମାଗଣା ମିଳେ । ଏହିପରି ଅନେକ ସୁବିଧା ମିଳିଥାଏ । ଏବଂ ଏହି କାରଣରୁ ପଛୁଆ ଓ ଆଗୁଆ ଉଭୟ ପ୍ରକାରର ରାଜ୍ୟ ଏବେ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ଦାବି କରୁଛନ୍ତି । ଏହି ଦାବିଦାରଙ୍କ ମଧ୍ୟରେ ଥିବା ଗୋଆ ରାଜ୍ୟ ଗତବର୍ଷ ଦେଶର ସବୁ ରାଜ୍ୟଙ୍କଠାରୁ ପ୍ରଗତିରେ ଆଗୁଆ ଥାଇ ମଧ୍ୟ ସ୍ୱତନ୍ତ୍ର ପାହ୍ୟା ମାଗୁଛି ।

କେନ୍ଦ୍ର ସରକାରଙ୍କ ଗୃହ ମନ୍ତ୍ରାଳୟ ସ୍ୱତନ୍ତ୍ର ରାଜ୍ୟ ପାହ୍ୟାପାଇଁ ଏକ ମାପଦଣ୍ଡ ତିଆରି କରିଛନ୍ତି । ଏହି ମାପଦଣ୍ଡର ପରିମାପକ ଗୁଡିକ ହେଲା - ଭୌଗୋଳିକ ବିଚ୍ଛିନ୍ନତା ବା ଜିଓଗ୍ରାଫିକାଲ୍ ଆଇସୋଲେସନ୍, ଅଗମ୍ୟ ଓ ପ୍ରାକୃତିକ ବୈଶିଷ୍ଟ୍ୟ ଥିବା ଭୂଭାଗ, ଦୁର୍ବଳ ସାମୂହିକ ସମ୍ପଦ ଏବଂ ସଙ୍କୁଚିତ ଓ ଅବିକଶିତ ଭିତ୍ତିଭୂମି । ଏହାଛଡା କେତେକ ସର୍ଶକାତର ସୀମାନ୍ତ ଅଞ୍ଚଳକୁ ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ କରାଯାଇଛି ।

ତେଣୁ ଓଡ଼ିଶାକୁ ସ୍ୱତନ୍ତ୍ର ପାହ୍ୟା ରାଜ୍ୟ ଦାବିପାଇଁ ଉପରୋକ୍ତ ନିର୍ଣ୍ଣାୟକ ନୀତି ବା ମାନଦଣ୍ଡରୁ ଅନେକ ଲାଗୁ ହେବ ନାହିଁ । ଆମେ ଅନେକ ସମୟରେ ଯୁକ୍ତିକରୁ ଯେ ଆମର ୪୮୦ କିମି ସମୁଦ୍ର ଉପକୂଳ, ସମଗ୍ର ଦେଶର ଖଣିଜ ସମ୍ପଦରୁ ୨୧ ଭାଗ ଆମର, ଜଳସମ୍ପଦ ଶତକଡା ୧୨ ଭାଗ, ସାମୁଦ୍ରିକ ସମ୍ପଦ ଶତକଡା ୮ ଭାଗ, ଶ୍ରମିକ ଶକ୍ତି ୧୮ ଭାଗ, ଲୋକସଂଖ୍ୟା ତୁଳନାରେ ଜମି ପରିମାଣ ବେଶି ଏବଂ ଏହି ଜମି ତଳେ ଭରପୂର ପ୍ରାକୃତିକ ସମ୍ପଦ ଇତ୍ୟାଦି । ଆମେ ଆଜି କାହିଁକି ଦରିଦ୍ରତମ ରାଜ୍ୟ - ଏ ବିଷୟରେ ଆତ୍ମ ସମୀକ୍ଷାପାଇଁ ଉକ୍ତ ତଥ୍ୟ ଓ ସର୍ବସ୍ୱୀକୃତ ସତ୍ୟ ଜାଣିବା ଆବଶ୍ୟକ । କିନ୍ତୁ ସ୍ୱତନ୍ତ୍ର ପାହ୍ୟା ରାଜ୍ୟର ସ୍ୱୀକୃତିପାଇଁ ଏହି ତଥ୍ୟ ଆମକୁ ଆଦୌ ସାହାଯ୍ୟ କରିବ ନାହିଁ ବରଂ ଆମ ଯୁକ୍ତିକୁ ଦୁର୍ବଳ କରିଦେବ ।

ତେଣୁ ନୀତୀଶ କୁମାର ତାଙ୍କ ଦସ୍ତାବିଜ୍‌ରେ ରାଜ୍ୟର ଦୁର୍ବଳ ଅର୍ଥନୈତିକ ଅବସ୍ଥା, ମୁଣ୍ଡପିଛା ଆୟ ଓ ବ୍ୟୟ ଏବଂ ଜଣପିଛା ସମ୍ବଳ ବିନିଯୋଗର ପରିମାଣ ଓ ହାରକୁ ମହତ୍ତ୍ୱ ଓ ପ୍ରାଥମିକତା ଦେଇଛନ୍ତି । ବିହାରରେ ମୁଣ୍ଡପିଛା ସମ୍ବଳ ବିନିଯୋଗ ବାର୍ଷିକ ୨୭୮୬ ଟଙ୍କା ଏବଂ ଜାତୀୟ ସ୍ତରରେ ଏହା ୪୮୩୪ ଟଙ୍କା । ତେଣୁ ନୀତୀଶଙ୍କ ହିସାବ ଅନୁସାରେ ଆଜିର ଜାତୀୟ ହାରରେ ପହଞ୍ଚିବାକୁ ବିହାରକୁ ଲାଗିବ ୩୦ ବର୍ଷ ଏବଂ ଓଡ଼ିଶାକୁ ଲାଗିବ ୪୦ ବର୍ଷ । ବିକାଶପାଇଁ ଉର୍ଜାର ଆବଶ୍ୟକତା ସବୁଠୁ ବେଶୀ । ବିହାର ଓ ଓଡିଶାରେ ମୁଣ୍ଡପିଛା ବିଜୁଳି ଖର୍ଚ୍ଚ ୬୦ରୁ ୮୦ ୟୁନିଟ୍ ଥିଲା ବେଳେ ବିକଶିତ ରାଜ୍ୟମାନଙ୍କରେ ଏହା ୬୭୦ ୟୁନିଟ୍ । ଓଡ଼ିଶାରେ ଜଣେ ଲୋକର ଖର୍ଚ୍ଚ କରିବା ଶକ୍ତି ଦିନକୁ ୧୨ ରୁ ୧୫ ଟଙ୍କା । ସ୍ୱତନ୍ତ ପାହ୍ୟା ପାଉଥିବା ରାଜ୍ୟମାନଙ୍କରେ ଏହା ୫ ଗୁଣ ଅଧିକ । ଏପରିକି ପଡୋଶୀ ପଶ୍ଚିମବଙ୍ଗ ଆମଠୁ ୪୦ ଗୁଣ ଅଧିକ ଅନୁଦାନ ପାଏ ।

ଏବେ ଯୋଜନା ଆୟୋଗ ମଧ୍ୟ ବିଶେଷ ରାଜ୍ୟ ଦର୍ଜାପାଇଁ ଏକ ନୂଆ ମାନଦଣ୍ଡ ତିଆରି କରିଛନ୍ତି । ଅର୍ଥନୈତିକ ଓ ଶିଳ୍ପ ଦୃଷ୍ଟିରୁ ଯେଉଁ ରାଜ୍ୟମାନେ ପଛୁଆ ସେମାନଙ୍କୁ ସାହାଯ୍ୟ କରିବାପାଇଁ ନୀତି ନିର୍ଦ୍ଧାରଣ ହୋଇଛି । ଗୃହ ମନ୍ତ୍ରାଳୟପାଇଁ ପାର୍ଲାମେଣ୍ଟାରି ଷ୍ଟାଣ୍ଡିଂ କମିଟିରେ ଏ ବିଷୟରେ ଆଲୋଚନା ବି ହେଲାଣି । ଦ୍ୱାଦଶ ଓ ତ୍ରୟୋଦଶ ଫାଇନାନ୍‌ସ କମିଶନ ଆଗରେ ଏ ପ୍ରସଙ୍ଗ ଉଠିଛି । ଶିଳ୍ପ ଅନୁନ୍ନତ ରାଜ୍ୟମାନେ ଏକାଠି ହୋଇ ଥରେ ଅଧେ ଏକଥା ଉଠାଇଲେଣି । କିନ୍ତୁ ଏ ପଦ୍ଧତିରେ କାମ ହେବ ନାହିଁ । ଗୃହ ମନ୍ତ୍ରାଳୟ ଉପରେ ପ୍ରଥମେ ମାନଦଣ୍ଡ ପରିବର୍ତ୍ତନପାଇଁ ଚାପ ପ୍ରୟୋଗ ଆବଶ୍ୟକ । ସବୁ ରାଜନୈତିକ ଦଳ ଏକାଠି ହୋଇ ରାଜ୍ୟର ସ୍ୱାର୍ଥପାଇଁ କାମ କରିବା ଦରକାର । କେନ୍ଦ୍ରରେ ଓଡ଼ିଶାରୁ ଜଣେ ହେଲେ କ୍ୟାବିନେଟ୍ ମନ୍ତ୍ରୀ ନାହାନ୍ତି । ତାମିଲନାଡୁର ଅଛନ୍ତି ଦଶ ଜଣ ମନ୍ତ୍ରୀ । ସ୍ୱାଧୀନତା ପରଠାରୁ ଏପର୍ଯ୍ୟନ୍ତ, ଓଡ଼ିଶାର ଜଣେ ହେଲେ ସାଂସଦ କେନ୍ଦ୍ର କ୍ୟାବିନେଟ୍‌ର କୌଣସି ଗୋଟିଏ ହେଲେ ଗୁରୁତ୍ୱପୂର୍ଣ୍ଣ ବିଭାଗରେ କ୍ୟାବିନେଟ୍ ପାହ୍ୟା ପାଇନାହାନ୍ତି । ଓଡ଼ିଶାପାଇଁ ତାତ୍ପର୍ଯ୍ୟପୂର୍ଣ୍ଣ ଏହି ବିଭାଗ ବା ମନ୍ତ୍ରାଳୟ ଗୁଡିକ ହେଲା, ରେଳବାଇ, ସର୍ଫେସ୍ ଟ୍ରାନ୍‌ସପୋର୍ଟ, ପର୍ଯ୍ୟଟନ, ଶିକ୍ଷା, ସ୍ୱାସ୍ଥ୍ୟ, ସଂସ୍କୃତି, ରୁରାଲ୍ ଡେଭେଲପ୍‌ମେଣ୍ଟ ଓ ପଞ୍ଚାୟତିରାଜ, ଆଇଟି, ଶିଳ୍ପ, କୃଷି, ବାଣିଜ୍ୟ ଇତ୍ୟାଦି । ତେଣୁ ଆମକୁ ସବୁ କଥାରେ ହାରି, ହୁରି, ଗୁହାରି କରିବାକୁ ପଡୁଛି । ଇଂରାଜୀରେ ଏପରି ସ୍ୱଭାବକୁ କୁହାଯାଏ କ୍ରାଏ ବେବି ସିଣ୍ଡ୍ରମ୍ । ଛୋଟ ପିଲାଏ ଯେମିତି କାନ୍ଦଣାକୁ ଅସ୍ତ୍ର କରି ବାପ ମା'ଙ୍କ ଦୃଷ୍ଟି ଆକର୍ଷଣ କରିଥାନ୍ତି । ବାଳାନାଂ ରୋଦନଂ ବଳମ୍ । କିନ୍ତୁ ଅତ୍ୟଧିକ କ୍ରନ୍ଦନରେ ଶ୍ୱାସରୁଦ୍ଧ ହୋଇ

ଜୀବନ ପ୍ରତି ବିପଦ ସୃଷ୍ଟି ହୁଏ । ଚାରି କୋଟି ଲୋକ ଆତ୍ମବିଶ୍ୱାସ ସହ ଏକାଠି ବସି ଚିନ୍ତା, ବିଚାର ଓ କାର୍ଯ୍ୟ କଲେ ସ୍ୱତନ୍ତ୍ର ପାହ୍ୟା ରାଜ୍ୟର ଆବଶ୍ୟକତା ରହିବ ନାହିଁ ।

ଏବେ ଜଣେ ଅଭିଜ୍ଞ ପୂର୍ବତନ ମନ୍ତ୍ରୀ, ରାଜ୍ୟ ଯୋଜନା ବୋର୍ଡର ଅଧ୍ୟକ୍ଷ ହୋଇଛନ୍ତି । ସେ ଅନ୍ୟ ସଭ୍ୟ ଓ ବିଶେଷଜ୍ଞଙ୍କ ସହଯୋଗରେ ଏ ବିଷୟ ଅଧ୍ୟୟନ କରି ପ୍ରଥମେ ଏକ ତଥ୍ୟଭିତ୍ତିକ ଦସ୍ତାବିଜ ତିଆରି କରନ୍ତୁ । ଖାଲି ଦାବି କଲେ କେହି ଦେବେ ନାହିଁ । ଏଥିପାଇଁ ଏକତା, ଆତ୍ମ ପରୀକ୍ଷା, ଦୃଢ ନେତୃତ୍ୱ ଓ ମଜଭୁତ ରଚନାତ୍ମକ ଜନ ଆନ୍ଦୋଳନ ଆବଶ୍ୟକ । ଏଥିପାଇଁ ସବୁ ଦଳ ଓ ନାଗରିକ ସମାଜ ଏକଜୁଟ ହୋଇ କାର୍ଯ୍ୟ ଆରମ୍ଭ କରନ୍ତୁ ।

*୪ ଜୁନ୍, ୨୦୦୯*

■ ■ ■

# ଅନ୍ଧଗଳିରେ ବନ୍ଦ କଏଦୀମାନେ

ଓଡ଼ିଶା ରାଜ୍ୟ ସଚିବାଳୟରୁ ଆରମ୍ଭ କରି ଗାଁ ପୁଲିସ୍ ଥାନା ପର୍ଯ୍ୟନ୍ତ ଅଫିସ୍ ଭିତରେ ବିଭିନ୍ନ ହୋମ, ଯଜ୍ଞ, ମୂର୍ତ୍ତି ପୂଜା, ଆଳତି, ଖଞ୍ଜଣି ମାଡ଼, ଗୁଣିଆ, ଜ୍ୟୋତିଷଙ୍କ ଗହଳି ଓ ଧାର୍ମିକ କୋଳାହଳ ଦେଖିଲେ ଆମେ ଏକ ଧର୍ମନିରପେକ୍ଷ ଦେଶରେ ଅଛେ ବୋଲି ବିଶ୍ୱାସ ହୁଏ ନାହିଁ । କାଳ୍ପନିକ ଭୂତପ୍ରେତ ଡାହାଣୀ, ଚିରୁଗୁଣି, ପିଶାଚିନୀ, ରକ୍ତଖିଆ, ଖଣ୍ଡିଆ ମାଦଳଙ୍କ କୁପ୍ରଭାବରୁ ରକ୍ଷା ପାଇବାପାଇଁ ଝୁଣା, ପଣା ଓ ଏପରିକି ବଳିର ଖବର ଶୁଣିଲେ ମନେ ହୁଏ, ଆମେ ଯେପରି ଏକବିଂଶ ଶତାବ୍ଦୀରେ ବି ମଧ୍ୟଯୁଗୀୟ ଅନ୍ଧବିଶ୍ୱାସର ବନ୍ଦ ଗଳି ଭିତରେ ବାନ୍ଧି ହୋଇ ରହିଛେ । ନେତା, ଅଭିନେତା, ହାକିମ, ଅଧ୍ୟାପକ, ବୈଜ୍ଞାନିକ, ଅମଲା, ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରିଧାରୀଙ୍କ ମଧ୍ୟରୁ ଅନେକ ଏ ଜାଲରୁ ମୁକୁଳି ପାରୁନାହାନ୍ତି । ସାଧାରଣ, ନିରକ୍ଷରଙ୍କୁ କିଏ ବୁଝାଇବ ?

ନିର୍ବାଚନ ଫଳ ପ୍ରକାଶର ପୂର୍ବ ମୁହୂର୍ତ୍ତରେ ମୁଖ୍ୟମନ୍ତ୍ରୀ ନବୀନଙ୍କ ମୁଣ୍ଡରେ ଝିଟିପିଟି ପଡିବା ଶୁଣି ତାଙ୍କର ପରାଜୟ ସୁନିଶ୍ଚିତ ବୋଲି କୁହାଗଲା । କିନ୍ତୁ ତଥାକଥିତ ଅଶୁଭ ପଲ୍ଲୀପତନ ପରେ ସେ ହାଟ୍ରିକ୍ କଲେ । ଆଉ ଜଣେ ପ୍ରାର୍ଥୀଙ୍କ ବାଟ ବିରାଡି କାଟିଲା ସାତ ଥର, ଅଥଚ ସେ ୭୦ ହଜାରରୁ ଅଧିକ ଭୋଟ୍‌ରେ ଜିଣିଲେ । ଲାଲକୃଷ୍ଣ ଆଡଭାନୀଙ୍କ ଜ୍ୟୋତିଷ, ଏଥର ତାଙ୍କର ରାଜଯୋଗ ହାତମୁଠାରେ କହିଲା ପରେ ତାଙ୍କର ପ୍ରଧାନମନ୍ତ୍ରୀ ହେବା ସ୍ୱପ୍ନ ଚୂରମାର ହୋଇଗଲା । ଏବେ ଓଡ଼ିଶା ବିଧାନସଭାର ବାଚସ୍ପତି ପଦକୁ ମଙ୍ଗଳ ଦୋଷ ଲାଗିଛି ବୋଲି ଚର୍ଚ୍ଚା ଚାଲିଛି । ଏହା ପୂର୍ବରୁ ବିଶ୍ୱସୁନ୍ଦରୀ ଐଶ୍ୱର୍ଯ୍ୟା ରାୟଙ୍କୁ 'ମଙ୍ଗନୀ' କହି ସେ ବାହା ହୋଇ ପାରିବେନି ବୋଲି କୁହାଯାଉଥିଲା । ସେହିପରି ଅତୀତରେ କେତେକ ଅନ୍ଧବିଶ୍ୱାସୀ ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଭାବେ ପୂର୍ବ ନିର୍ଦ୍ଧାରିତ ଶପଥ ଗ୍ରହଣ ଉତ୍ସବର ସମୟ ବଦଳାଇ

ଦେଇଥିବାର ଉଦାହରଣ ରହିଛି । କିନ୍ତୁ ପରବର୍ତ୍ତୀ କାଳରେ ଏସବୁ ବିଶ୍ୱାସ ଓ ଉଦ୍ୟମ ନିଷ୍ଫଳ ଓ ନିରାଧାର ପ୍ରମାଣିତ ହୋଇଛି ।

ଏବେ ଆଡ଼ପଥର ଗାଁର ରାଜେଶ ହେମ୍ବ୍ରମ୍ ନାମକ ବ୍ୟକ୍ତି ଜଣେ ଗୁଣିଆଙ୍କ କଥାରେ ବିଶ୍ୱାସ କରି ନିଜର ନଅ ବର୍ଷର ନାତୁଣୀର ଗଳା କାଟି ସେ ରକ୍ତରେ ବିହନକୁ ଗୋଳାଇ ଅଧିକ ଫସଲ ପାଇବା ବିଶ୍ୱାସର ଶିକାର ହୋଇଛି । କୋରାପୁଟ ବନ୍ଧୁଗାଁ ବ୍ଲକ୍‌ର ଜଣେ ଆଦିବାସୀ ମହିଳାଙ୍କୁ ଡାହାଣୀ ସନ୍ଦେହ କରି ମାରି ଦିଆଯାଇଛି । ବାରଙ୍ଗ ଅଞ୍ଚଳର ଅଶୀ-ବର୍ଷୀୟ ବୃଦ୍ଧ ବାଇଧର ସିଂଙ୍କୁ ଗୁଣିଗାରେଡି କରୁଥିବା ଅଭିଯୋଗରେ ଗଳାକାଟି ହତ୍ୟା କରାଯାଇଥିବା ଖବର ପ୍ରକାଶ ପାଇଛି । ସେହିପରି ଝାରସୁଗୁଡା ଅଞ୍ଚଳର ପତି ପରିତ୍ୟକ୍ତା ସୁମିତ୍ରାଙ୍କୁ ଡାହାଣୀ କହି ଭୂତ ଛଡାଇବାପାଇଁ ଜଣେ ଗୁଣିଆଙ୍କ ପ୍ରରୋଚନାରେ ପିଟି ପିଟି ମାରି ଦିଆ ଯାଇଛି । (ସମ୍ବାଦ ୧୯/୦୩/ ୨୦୦୯) ସେ ଅସୁସ୍ଥ ରହୁଥିବାରୁ ତାଙ୍କ ଶରୀରରେ ଭୂତ, ପ୍ରେତ ପ୍ରବେଶ କରିଛି ବୋଲି ଗୁଣିଆ କହୁଥିଲା । ତେଣୁ ତାଙ୍କୁ ନିସ୍ତୁକ ପିଟିଲେ ଯାଇ ପ୍ରେତ ଦେହ ଛାଡି ପଳାଇବ ବୋଲି ପ୍ରଚାର କରାଯାଇଥିଲା । ପ୍ରାୟ ପ୍ରତ୍ୟେକ ଦିନ ଗଣମାଧ୍ୟମରେ ଏପରି ଖବର ବାହାରୁଛି ।

ଏବେ ଅନୁଗୁଳ ମୁଖ୍ୟ ଚିକିତ୍ସାଳୟରେ ସର୍ପ ଦଂଶନରେ ମୃତ ଜଣେ ଶିକ୍ଷକଙ୍କୁ ମନ୍ତ୍ର ଫୁଙ୍କି ବଞ୍ଚାଇ ଦେବେ ବୋଲି କହି ଜଣେ ତାନ୍ତ୍ରିକଙ୍କ ନାଟକବାଜି ବାରମ୍ବାର ବ୍ୟର୍ଥ ହେବା ପରେ ତାନ୍ତ୍ରିକ ମହାଶୟ ସ୍ଥାନ ତ୍ୟାଗ କରିଛନ୍ତି । ବସନ୍ତ, ହାଡଫୁଟି, ମିଳିମିଳା, ହଇଜାରୁ ବଞ୍ଚିବାପାଇଁ ଠାକୁରାଣୀଙ୍କ ନିକଟରେ ପଣା ଯାଚିବାର ବ୍ୟବସ୍ଥାକୁ ଚିକିତ୍ସା ବିଜ୍ଞାନ ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ହଟାଇ ପାରି ନାହିଁ । ନାଗନାଡି, ରାହୁକେତୁ, ଶନିଦୃଷ୍ଟି, ନରରାକ୍ଷସ, ଷଡ଼ାଷ୍ଟକ ଓ ମଙ୍ଗଳ ଦୋଷଯୋଗୁଁ ପୁଅ ଝିଅଙ୍କ ବାହାଘର ହୋଇ ପାରୁନାହିଁ, ବୟସ ବଢି ଯିବାରୁ ସେମାନଙ୍କୁ ଯୋଗ୍ୟ ପାତ୍ର ପାତ୍ରୀ ମିଳୁ ନାହାନ୍ତି । ଅପର ପକ୍ଷରେ ରାଜଯୋଟକ ଓ ଦଶମେଳକ ଶୁଝାଇ ବାହା ହୋଇଥିବା ସ୍ୱାମୀ, ସ୍ତ୍ରୀ ଭିତରେ ଝଗଡାଝାଟି ମାରପିଟ ଓ ଛାଡପତ୍ର ସଂଖ୍ୟା ବଢିବାରେ ଲାଗିଛି । ଏବେ ଭଞ୍ଜନଗର ଅଞ୍ଚଳରେ ଜଣେ ଭଣ୍ଡ ବାବାଜୀ ମନ୍ତ୍ରଦ୍ୱାରା ବନ୍ଧ୍ୟା ଦୋଷ ଦୂର କରିବା ନାମରେ ସମ୍ପୃକ୍ତ ମହିଳାଙ୍କୁ ଧର୍ଷଣ ଚେଷ୍ଟାରେ ଧରା ପଡି ଗିରଫ ହୋଇଛନ୍ତି (ସମ୍ବାଦ- ୧୪.୦୬.୦୯) । ଅତୀତରେ ନାମକରା ବୈଜ୍ଞାନିକମାନେ ବିଶ୍ୱାସ ଓ ବାସ୍ତବତା ମଧ୍ୟରେ ଫରକ ଦର୍ଶାଇବାକୁ ଯାଇ ମୃତ୍ୟୁ ମୁଖରେ ପଡିଛନ୍ତି ।

କିଛିବର୍ଷ ପୂର୍ବେ ନେଲସନ୍ ମାଣ୍ଡେଲାଙ୍କ ଦେଶ ଦକ୍ଷିଣ ଆଫ୍ରିକା ଯାଇଥିଲି । ରାସ୍ତାରେ ଯାଉ ଯାଉ ଏକ ଅସ୍ୱାଭାବିକ ଶବ୍ଦ କାନରେ ବାଜିଲା । କୌତୂହଳବଶତଃ ଏହି ଶବ୍ଦ ଅନ୍ୱେଷଣରେ କିଛି ବାଟ ଗଲା ପରେ ଦେଖିଲି ଜ୍ୱର ପୀଡିତ ଜଣେ ମହିଳାଙ୍କ ଚାରିପଟେ ଚାରିଜଣ ଗୁଣିଆ ବେଢିଯାଇ ଜୁଲୁ ଭାଷାରେ କ'ଣ ସବୁ ମନ୍ତ୍ର ପଢି ଜ୍ୱର ଛଡାଇବାପାଇଁ ତାଙ୍କ ଉପରକୁ ଟେକା ପଥର ପକାଉଛନ୍ତି । ଗାଇଡ୍‌ଙ୍କୁ ପଚାରିବାରୁ କହିଲେ, ଏ ମହିଳାଙ୍କ ଦେହରେ ଭୂତ ପ୍ରବେଶ କରିବାରୁ ଜ୍ୱର ଛାଡୁନାହିଁ । ପୃଥିବୀରେ ଅନେକ ଦେଶରେ ପୁରୁଷଙ୍କ ଅପେକ୍ଷା ନାରୀମାନେ ଏହି କାରଣରୁ ନିର୍ଯ୍ୟାତିତ ହେଉଛନ୍ତି । ଭାରତରେ ଗତ ୨୦ ବର୍ଷ ଭିତରେ ପ୍ରାୟ ୩୦୦୦ ମହିଳାଙ୍କୁ ଡାହାଣୀ କହି ମାରି ଦିଆଯାଇଛି ।

ତାନ୍ତ୍ରିକଙ୍କ ଅତ୍ୟାଚାର ଓ ମିଥ୍ୟାଚାର ସବୁଠୁ ଅଧିକ । ଦୁର୍ବଳମନା ବ୍ୟକ୍ତି, ଦୁଃଖୀ ଓ କ୍ଷମତାଲୋଭୀମାନେ ଏହାର ଶିକାର ହୋଇଥାନ୍ତି । ଏମାନଙ୍କ ମନରେ ପ୍ରଥମେ କାଳ୍ପନିକ ଶତ୍ରୁ ସୃଷ୍ଟି କରାଯାଏ ଓ ତାପରେ ସେହି ଶତ୍ରୁଙ୍କ ମୁଣ୍ଡ ବାଳ, ଶାଢି ଧଡି ଇତ୍ୟାଦି କାଟି ଆଣି ଯଜ୍ଞ ଓ ପୂଜାପାଠ କରାଇ ତାଙ୍କୁ ବିନାଶ କରିବାକୁ କୁହାଯାଏ । ଏହିପରି ଅଲୌକିକ ଭାବେ ଶକ୍ତିମାନ ବ୍ୟକ୍ତିଙ୍କୁ ଧରି ଆମ ସୀମାନ୍ତରେ ଥିବା ଶତ୍ରୁ ନାଶ କାମରେ ଲଗାଇଲେ ଭଲ ହୁଅନ୍ତା ! ପନ୍ଦର ଲକ୍ଷ ସେନା, ଅସ୍ତ୍ରଶସ୍ତ୍ର ଦରକାର ପଡନ୍ତା ନାହିଁ କିମ୍ୱା ଆତଙ୍କବାଦୀ ଅଧ୍ୟୁଷିତ ଅଞ୍ଚଳକୁ ପଠାଇ ଦେଲେ ଏମାନେ ତନ୍ତ୍ର ମନ୍ତ୍ର, ଗୁଣି ଗାରେଡିଦ୍ୱାରା ସେମାନଙ୍କୁ ବଶ କରି ଦିଅନ୍ତେ ! ଖ୍ୟାତନାମା ଅଭିନେତ୍ରୀ ଶାବନା ଆଜମୀ ଥରେ ଜୁମା ମସ୍‌ଜିଦ୍‌ର ଶାହୀ ଇମାମ୍‌ଙ୍କୁ ଆଫଗାନିସ୍ତାନରେ ତାଲିବାନ୍‌ମାନଙ୍କୁ ବଶ କରିବାକୁ ସେଠାକୁ ପଠାଯାଉ ବୋଲି କହି ବିବାଦୀୟ ହୋଇ ପଡିଥିଲେ । ଆମ ଦେଶରେ ସତ କହିବାପାଇଁ ସାହସ ଥିବା ଲୋକଙ୍କ ସଂଖ୍ୟା କମ୍ ।

ଏକଥା ବାରମ୍ୱାର ପ୍ରମାଣିତ ହୋଇ ସାରିଲାଣି ଯେ ଅନ୍ଧବିଶ୍ୱାସ ଏକ ମାନସିକ ବିକାର । ଅଲୌକିକ ଶକ୍ତି ଦାବି କରୁଥିବା ବ୍ୟକ୍ତିମାନେ ସ୍ୱୟଂ ମାନସିକ ବିକୃତି ସମ୍ପନ୍ନ । ଏ ଦାବି ସହ ଆଧ୍ୟାତ୍ମିକତାର କୌଣସି ସମ୍ପର୍କ ନାହିଁ । ଆମର ଜ୍ଞାନ ଅଭାବରୁ କୁହୁକ ବିଦ୍ୟା, ଯାଦୁବିଦ୍ୟା, ଭୋଜବାଜୀ ଦେଖି ଆଶ୍ଚର୍ଯ୍ୟ ଲାଗେ । ପ୍ରାଚ୍ୟ-ପାଶ୍ଚାତ୍ୟ ନିର୍ବିଶେଷରେ ଏହା ବିଜ୍ଞ ଓ ଅଜ୍ଞ ଉଭୟଙ୍କୁ ପ୍ରଭାବିତ କରିଥାଏ । ତାରଣ, ମାରଣ, ମୋହନ, ସ୍ତଂଭନ, ଉଚ୍ଚାଟନ, ବଶୀକରଣ ଆଦି କାର୍ଯ୍ୟ ପ୍ରଥମେ ପ୍ରାଚୀନ ପାରସ୍ୟ ଓ ବେବିଲୋନର ଏକ ଗୋଷ୍ଠୀରେ ସୀମିତ ଥିଲା । ପରେ ଏହା ବିଭିନ୍ନ ଧର୍ମରେ ପ୍ରବେଶ କଲା ଏବଂ ପ୍ରାଚୀନ ଚିକିତ୍ସା ଶାସ୍ତ୍ରର ଅଙ୍ଗ ହୋଇଗଲା ।

ଭାରତରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀ, ରାଜା ରାମମୋହନ ରାୟ, ବିବେକାନନ୍ଦ, ରାମସ୍ୱାମୀ ନାଇକରଙ୍କ ଭଳି ବିଦ୍ୱାନ୍‌ମାନେ ଏପରି ଅଜ୍ଞତା ଆଧାରିତ ବିଶ୍ୱାସ ବିରୋଧରେ ସ୍ୱର ଉତ୍ତୋଳନ କଲେ । ଏହା ପୂର୍ବରୁ ସପ୍ତଦଶ ଶତାବ୍ଦୀରେ ଇହୁଦୀ ଦାର୍ଶନିକ ବେନେଡିକ୍ଟ ସ୍ପିନାଜୋ ବିଭିନ୍ନ ଧର୍ମରେ ଅନୁପ୍ରବେଶ କରିଥିବା ଅନ୍ଧବିଶ୍ୱାସଗୁଡ଼ିକର ବୈଜ୍ଞାନିକ ସମାଲୋଚନାର ପରମ୍ପରା ଆରମ୍ଭ କଲାରୁ ତାଙ୍କୁ ସମାଜରୁ ବାସନ୍ଦ ଓ ବିତାଡ଼ିତ କରାଯାଇଥିଲା । କିନ୍ତୁ ସ୍ପିନୋଜାଙ୍କ ଦର୍ଶନ ସପକ୍ଷରେ ହେତୁବାଦୀ ଆନ୍ଦୋଳନ ପୃଥିବୀର ବିଭିନ୍ନ ଅଞ୍ଚଳରେ ବ୍ୟାପିବାକୁ ଲାଗିଲା । ବହୁବର୍ଷ ପରେ ଭାରତୀୟ ଉପମହାଦେଶରେ ଉଦ୍ଭିଦ ବିଜ୍ଞାନୀ ଟି ଆବ୍ରାହମ୍ କୋଭୁର୍ ୨୦୦ରୁ ଅଧିକ ଅଲୌକିକ ଗୁଣି, ଗାରେଡ଼ି, ତନ୍ତ୍ର, ମନ୍ତ୍ର ପ୍ରଭାବିତ ଘଟଣାର ବୈଜ୍ଞାନିକ ଅନୁସନ୍ଧାନ ଓ ବିଶ୍ଳେଷଣ କରିବାରୁ ଜଣା ପଡ଼ିଲା ଯେ ସେ ମଧ୍ୟରୁ କେତେକ ଧୋକାବାଜି ଓ ଅନ୍ୟଗୁଡ଼ିକ ସାଧାରଣ ଜ୍ଞାନ ଓ ବିଜ୍ଞାନସମ୍ମତ ଘଟଣା - ଅଲୌକିକ ନୁହେଁ । ଆମେରିକାର ଜଣେ ଖ୍ୟାତନାମା ସାମ୍ବାଦିକ ଜେମ୍‌ସ୍ ହଟ୍ ତାଙ୍କର ଏକ ବହୁ ଚର୍ଚ୍ଚିତ ପୁସ୍ତକ "ଦୁଇ ହଜାର ବର୍ଷର ଅନ୍ଧବିଶ୍ୱାସ"ରେ ଅନ୍ଧବିଶ୍ୱାସ ବିରୁଦ୍ଧରେ ସଂଗ୍ରାମ କରିଥିବା ବହୁ ବିଶିଷ୍ଟ କବି, କଳାକାର, ଦାର୍ଶନିକ ଓ ଚିନ୍ତା ନାୟକଙ୍କ ଜୀବନ କାହାଣୀ ବର୍ଣ୍ଣନା କରିଛନ୍ତି । ସେମାନଙ୍କ ଭିତରେ ଅଛନ୍ତି ଭୋଲଟାୟାର୍, ଟଲଷ୍ଟୟ, ସିଗ୍‌ମଣ୍ଡ ଫ୍ରଏଡ୍, ଆବ୍ରାହାମ୍ ଲିଙ୍କନ୍, ସ୍ପିନୋଜା, ଡାରଓ୍ୱିନ୍, ଗାଲିଲିଓ, ବାର୍ଣ୍ଣାଡ୍ ଶ' ଇତ୍ୟାଦି ।

ମନସ୍ତତ୍ତ୍ୱବିତ୍‌ମାନେ ଅନ୍ଧବିଶ୍ୱାସ ଓ ଧୋକାବାଜିକୁ ଚାରି ଭାଗରେ ବିଭକ୍ତ କରିଥାନ୍ତି । ସେଗୁଡ଼ିକ ହେଲା :- (୧) ଶାରୀରିକ କୌଶଳ (୨) ରାସାୟନିକ କୌଶଳ (୩) ଯାନ୍ତ୍ରିକ କୌଶଳ ଓ (୪) ମନସ୍ତାତ୍ତ୍ୱିକ କୌଶଳ । ସେହିପରି ଭୂତ, ପ୍ରେତ, ଡାହାଣୀ ଚିରୁଗୁଣୀଙ୍କର ମା' ହେଲେ ଅନ୍ଧାର ଓ ଭୟ । ଭୂତ, ପ୍ରେତାବିଷ୍ଟ ବୋଲି କୁହାଯାଉଥିବା ବ୍ୟକ୍ତି ପ୍ରକୃତରେ ଅପସ୍ମାର ବାତ, ଥାଇରଏଡ୍ କିମ୍ବା ପାରାଥାଇରଡ ଗ୍ରନ୍ଥିର ଅନିୟମିତତା, ପିଟୁଇଟାରି ଗ୍ରନ୍ଥିର ବୈଦ୍ୟୁତିକ ତରଙ୍ଗ, ମାନସିକ ଅଶାନ୍ତି, ନିଶାଦ୍ରବ୍ୟର ପ୍ରଭାବ, ଅନୁକରଣ ପ୍ରଭାବ ଏବଂ କ୍ଷେତ୍ର ବିଶେଷରେ କୃମି ଦୋଷରୁ ଏପରି ଆଚରଣ ଦେଖାଇଥାନ୍ତି । ସେମାନେ ବାରମ୍ବାର ମୂର୍ଚ୍ଛା ଯାଆନ୍ତି । ଗୋଟିଏ ଶରୀରରେ ଗୋଟିଏ ଆତ୍ମା ଥିବା ଯଦି ସତ୍ୟ, ତେବେ ସେ ଶରୀରରେ ଆଉ ଗୋଟିଏ ମୃତାତ୍ମା ବା ପ୍ରେତାତ୍ମା ପ୍ରବେଶ ଏକ ଉଦ୍ଭଟ କଳ୍ପନା ।

ଅନେକ ସମୟରେ ଚତୁର କାମାସକ୍ତ ଗୁଣିଆମାନେ ଡାହାଣୀ ଲାଗିଥିବା ନାରୀଙ୍କ ଦେହରୁ ଭୂତ ଛଡ଼ାଇବା ନାଁରେ ଅନ୍ଧାର ରାତିରେ ନିର୍ଜନ ସ୍ଥାନକୁ ଡାକି ନେଇ ଯୌନ

ଶୋଷଣ କରନ୍ତି । ଯେଉଁ ଭୂତ ପ୍ରେତର ଅବସ୍ଥିତି ନାହିଁ, ସେଇ କାଳ୍ପନିକ ଚରିତ୍ରମାନ ଆମ ଦେଶର ପିଲାଙ୍କୁ କୁହାଯାଇ ସେମାନଙ୍କୁ ସାରା ଜୀବନ ଡରୁଆ କରି ଦିଆଯାଏ । ଲୋକଙ୍କୁ କୁହାଯାଏ ଠାକୁରାଣୀ ଲାଗିଚି । ଦୁର୍ବଳମନା ଭକ୍ତଙ୍କୁ ଏହି ଠାକୁରାଣୀଙ୍କ ଅଭିଶାପ କାମ କଲା ଭଳି ଲାଗେ । ସେହିପରି ଗାଁ ମଶାଣିଠାରେ ରାତିରେ ବାଦୁଡି ଫଡ ଫଡ ବା ଛାଇ ଆଲୁଅ, ବିଶ୍ୱାସୀଙ୍କପାଇଁ ଭୂତ, ପିଶାଚ, ଚିରୁଗୁଣୀ ଭାବେ ଉଭା ହୁଅନ୍ତି । ଯେଉଁ ଦୃଢମନା ଏଥିରେ ବିଶ୍ୱାସ କରନ୍ତିନି ତାଙ୍କପାଇଁ ବାଦୁଡି । ସତ୍ୟର ଉଜ୍ଜ୍ୱଳ ଆଲୋକରେ ଭୂତ ପ୍ରେତ ଦିଶନ୍ତି ନାହିଁ, କେବଳ ରାତ୍ରିର ଅନ୍ଧାରୀ ବିଶ୍ୱାସରେ ଏମାନେ ଉଭା ହୁଅନ୍ତି ।

ବୈଜ୍ଞାନିକ ଦୃଷ୍ଟିକୋଣର ପ୍ରଚାର ଓ ପ୍ରସାର ଭାରତୀୟ ସମ୍ବିଧାନର ନିର୍ଦ୍ଦେଶ । ଏହାକୁ ପାଠ୍ୟକ୍ରମରେ ସାମିଲ କଲେ ପିଲାମାନଙ୍କ ଭୟ ଛାଡିଯିବ, ମନ ସୁସ୍ଥ ରହିବ । ଧାର୍ମିକ ବିଶ୍ୱାସରୁ ଅନ୍ଧବିଶ୍ୱାସ ହଟାଇ ଦେଲେ ଧର୍ମ ବି ଅଧିକ ସଫା ସୁତରା ଦେଖାଯିବ । ପ୍ରତ୍ୟେକ ଧର୍ମର ଅନୁଗାମୀମାନେ ନିଜ ନିଜ ଧର୍ମ ବଳୟ ମଧ୍ୟରେ ଏ ସମ୍ପର୍କରେ ମୁକ୍ତ, ଚର୍ଚ୍ଚା, ଆଲୋଚନା ଆରମ୍ଭ କରନ୍ତୁ । ଅନ୍ଧଗଳିରେ ବନ୍ଦ ଏ କଏଦୀମାନଙ୍କୁ ଉଦ୍ଧାର କରନ୍ତୁ ।

*୧୮ ଜୁନ୍, ୨୦୦୯*



# 'ବିଶ୍ୱାସ'ର ବଜାରୀକରଣ

୨୦୦୮, ନଭେମ୍ବର ୨୬ ଦିନ ତିନି ଶହ ନିର୍ଦ୍ଦୋଷ ଲୋକଙ୍କୁ ହତ୍ୟା କରିଥିବା ଅଜମଲ କସାବ ଓ ତାଙ୍କର ୯ ଜଣ ସହଯୋଗୀ ବିଶ୍ୱାସ କରୁଥିଲେ ଯେ ଏହି ' 'ପୁଣ୍ୟ'କାର୍ଯ୍ୟଦ୍ୱାରା ସେମାନେ ସୁନ୍ଦରୀ ଅପସରାଙ୍କ ଗହଣରେ ସ୍ୱର୍ଣ୍ଣ ରଥରେ ବସି ସ୍ୱର୍ଗକୁ ଯିବେ ଓ ଅଖଣ୍ଡ ସୁଖରେ କାଳାତିପାତ କରିବେ । ପୃଥିବୀର ଧର୍ମ ବଜାରରେ ଧର୍ମାନ୍ଧ ବ୍ୟକ୍ତିମାନେ ଯୁଗ ଯୁଗ ଧରି ଏପରି ବିଷାକ୍ତ 'ବିଶ୍ୱାସ'କୁ ଧର୍ମ ନାମ ଦେଇ ବିକି ଆସୁଛନ୍ତି । ଶିକାର ହେଉଛନ୍ତି ସରଳ ଅଳ୍ପ ବୟସ୍କ କିଶୋର ଓ ଯୁବପିଢ଼ି, ଅଜମଲ ଏ କଥା ବୁଝି ପାରି ଏବେ ଅନୁତପ୍ତ, କିନ୍ତୁ ତାଙ୍କର ଅନ୍ୟ ୯ ଜଣ ସାଥୀ ବୁଝିବା ଆଗରୁ ବିଶ୍ୱାସ ବଜାରରେ ବଳି ପଡିଛନ୍ତି । ଆମ ଦେଶରେ ଓ ରାଜ୍ୟରେ ଅନ୍ଧବିଶ୍ୱାସ ଏବେ ଶିକ୍ଷିତ ସମାଜରେ ବ୍ୟାପିଲାଣି ।

ଆଜକୁ ପ୍ରାୟ ୧୨ ହଜାର ବର୍ଷ ପୂର୍ବ ପର୍ଯ୍ୟନ୍ତ ପଶୁ ପକ୍ଷୀ ଶିକାର ଓ ଫଳମୂଳ ସଂଗ୍ରହ କରି ବଞ୍ଚୁଥିଲା ବାରବୁଲା ମଣିଷ ! ରାତିର ଅନ୍ଧାର ଭୟରୁ ସୃଷ୍ଟି ହେଲେ ଅଂଶୁମାନ, ଦିବାକର ସୂର୍ଯ୍ୟଦେବ ଓ ହିଂସ୍ର ପଶୁଙ୍କଠାରୁ ରକ୍ଷା ପାଇ ଆସିଲେ ପଶୁପତି ନାଥ । ଅନ୍ନ, ଜଳ, ବାୟୁ ହେଲେ ଅନ୍ନପୂର୍ଣ୍ଣା, ବରୁଣ, ଇନ୍ଦ୍ର, ମରୁତ ଦେବତା ଓ ପ୍ରକୃତି ମାତା । କ୍ରମେ ମଣିଷ ଜାଣିଗଲା କୃଷିଦ୍ୱାରା ଖାଦ୍ୟ ଉତ୍ପାଦନ ଓ ପଶୁପାଳନର କୌଶଳ । କୃଷିରୁ ସୃଷ୍ଟି ହେଲା ସମ୍ପତ୍ତି, ପରିବାର, ଗ୍ରାମ, ନଗର, ରାଜା, ରାଜ୍ୟାଧିକାର, କଳହ, ହିଂସା, ହତ୍ୟା ଓ ଯୁଦ୍ଧ । ସ୍ୱାର୍ଥପାଇଁ ମଣିଷଙ୍କଠାରୁ ମଣିଷ ଅଲଗା ହୋଇଯାଉଥିବାରୁ ସେମାନଙ୍କୁ ଶୃଙ୍ଖଳିତ ଓ ଏକାଠି କରିବାପାଇଁ, ମଣିଷ ସୃଷ୍ଟି କଲା ଧର୍ମବିଶ୍ୱାସ । କ୍ରମେ ପୃଥିବୀର ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ବିଶ୍ୱାସ ଜନ୍ମ ନେଲା ଓ ଭିନ୍ନ ଭିନ୍ନ ଦେବଦେବୀ ସୃଷ୍ଟି ହେଲେ । ପ୍ରଫେଟ୍‌ମାନେ ବିଶ୍ୱାସକୁ ରଙ୍ଗ ରୂପ ଦେଇ ପାଣ୍ଡିତ୍ୟପୂର୍ଣ୍ଣ ପ୍ରଚାର କଲେ ଓ ଶିଷ୍ୟ ବା ଅନୁଗାମୀଙ୍କ ସଂଖ୍ୟା ବଢାଇବା

ପାଇଁ ବଳ ପ୍ରୟୋଗ ବି କରାଗଲା । ପରେ ଏହି ଦେବଦେବୀ ଈଶ୍ୱରଙ୍କୁ କେନ୍ଦ୍ର କରି ଆରମ୍ଭ ହେଲା ଧର୍ମଯୁଦ୍ଧ ଓ ବିଶ୍ୱାସ କନ୍ଦଳ । ଧର୍ମ ଯୁଗରେ ପ୍ରାଚୀନ ପାର୍ସୀ ଧର୍ମ ଓ ନୂତନ ଇସଲାମ ଧର୍ମ ଭିତରେ ସଂଘର୍ଷ ଆରମ୍ଭ ହୋଇଗଲା । ନିଜ ନିଜ ଧର୍ମର ପ୍ରାଧାନ୍ୟ ପ୍ରତିଷ୍ଠାପାଇଁ ଖ୍ରୀଷ୍ଟୟାନ୍, ଇହୁଦୀ ଓ ମୁସଲମାନମାନେ ଯୁଦ୍ଧ କଲେ ଶହେ ବର୍ଷ ଧରି । ମଲେ ଷାଠିଏ ଲକ୍ଷ ନିରୀହ ଲୋକ । ଏହାପରେ ଆରମ୍ଭ ହେଲା ହିନ୍ଦୁ, ମୁସଲମାନ, ଶିଖ୍‌ଙ୍କ ମଧ୍ୟରେ ଦେଢଶହ ବର୍ଷ ଧରି ସଂଘର୍ଷ । କାଥଲିକ୍-ପ୍ରୋଟେଷ୍ଟାଣ୍ଟ, ଶ୍ରମଣ-ବୌଦ୍ଧ, ତାଓ, କନ୍‌ଫୁସିଅସ୍‌ବାଦୀ, ଅକାଳୀ, ଆଦି ନିରଙ୍କାରୀ, ମୁସଲିମ୍, ଅହମଦିଆ, ସିଆ-ସୁନ୍ନୀଙ୍କ ପରସ୍ପର ସଂଘର୍ଷ ପ୍ରାୟ ସମସ୍ତଙ୍କୁ ଜଣା ।

ଧର୍ମ ଓ ବିଶ୍ୱାସ ସଂଘର୍ଷରୁ ନୂଆ ନୂଆ ବିଶ୍ୱାସ ସୃଷ୍ଟି ହେଲା । ଏବେ ଏହି 'ଫେଥ୍' ବା ବିଶ୍ୱାସର ସଂଖ୍ୟା ବଢି ବଢି ହେଲାଣି ଚାରିହଜାର ତିନିଶହ । ବଡ ପାଞ୍ଚଟି ହେଲେ ହିନ୍ଦୁ, ଖ୍ରୀଷ୍ଟିୟାନ୍, ମୁସଲମାନ, ଇହୁଦୀ ଓ ବୌଦ୍ଧ । ଏବଂ ସବୁଠାରୁ ବେଶି ସଂଖ୍ୟକ ଲୋକ ହେଲେ ଖ୍ରୀଷ୍ଟିୟାନ୍ - ପ୍ରାୟ ୨୧୨ କୋଟି । ମୁସଲିମ୍‌ଙ୍କ ସଂଖ୍ୟା ପ୍ରାୟ ଦେଢ ଶହ କୋଟି । ହିନ୍ଦୁ ନବେ କୋଟି ଓ ବୌଦ୍ଧ ୩୮ କୋଟି । ଚୀନ୍ ଦେଶର ପାରମ୍ପରିକ ଧର୍ମାବଲମ୍ବୀ ୪୦ କୋଟି । ଆଫ୍ରିକୀୟ ପାରମ୍ପରିକ ଧର୍ମାବଲମ୍ବୀ ଦଶ କୋଟି । ଶିଖ୍ ଦୁଇ କୋଟି ଚାଳିଶ ଲକ୍ଷ, ବାହାଇ ୭୦ ଲକ୍ଷ, ଜୈନ ୪୨ ଲକ୍ଷ, ଇହୁଦୀ ୧୪୦ ଲକ୍ଷ, ପ୍ରକୃତିବାଦୀ ପ୍ରାୟ ୩୦ କୋଟି, ଜୋରୋଆଷ୍ଟ୍ରିଆନ୍ ୨୬ ଲକ୍ଷ, ଜାପାନ୍‌ର ଶିଣ୍ଟୋ ଧର୍ମାବଲମ୍ବୀ ୫ ଲକ୍ଷ, ରାସ୍ତଫାରିଆ ୬ ଲକ୍ଷ । ଏହାଛଡା ମାୟାନ, ଥିଓସଫିଷ୍ଟ, ଆଜଟେକ୍, ମୁକ୍ତଚିନ୍ତକ, ଏଥେଇଷ୍ଟ ବା ନାସ୍ତିକବାଦୀଙ୍କ ସଂଖ୍ୟା ଶହେ କୋଟିରୁ ଅଧିକ ଏବଂ ପ୍ରାୟ ତିନି ହଜାରରୁ ଅଧିକ ଧର୍ମବିଶ୍ୱାସ ଛୋଟ ଛୋଟ ଅଞ୍ଚଳରେ ବ୍ୟାପି ରହିଛନ୍ତି ଓ ନିଜ ନିଜ ଭକ୍ତ ଓ ଅନୁଗାମୀଙ୍କ ସଂଖ୍ୟା ବୃଦ୍ଧିରେ ଲାଗିଛନ୍ତି । ଏହାଛଡା ସହସ୍ରାଧିକ ସାଧୁ, ବାବା, ମହନ୍ତ, ମୁଲ୍ଲା, ଗୁରୁ, ଗୁରୁ ମା'ଙ୍କର ଛୋଟ ଛୋଟ ସମ୍ପ୍ରଦାୟ ଓ ଅନୁଗାମୀ ଅଛନ୍ତି । ବିଭିନ୍ନ ରଙ୍ଗ ବେରଙ୍ଗର ଧର୍ମଧ୍ୱଜା ଉଡୁଛନ୍ତି ସାରା ପୃଥିବୀରେ ।

ଚାରି ହଜାର ତିନି ଶହରୁ ଅଧିକ ବିଶ୍ୱାସର ଲମ୍ବା ତାଲିକା ମଧ୍ୟରୁ ସବୁଠାରୁ ସଂଗଠିତ 'ବିଶ୍ୱାସ' ହେଉଛି ବା'ହାଇ ଏବଂ ସବୁଠାରୁ ଅସଂଗଠିତ 'ବିଶ୍ୱାସ' ହେଉଛି 'ହିନ୍ଦୁ' । ବା'ହାଇ ପଛକୁ ଅଛି ଇସ୍‌ଲାମ, ଖ୍ରୀଷ୍ଟିୟାନ୍, ଇହୁଦୀ ଓ ଶିଖ୍ ଧର୍ମବିଶ୍ୱାସ । ପୁଣି ଗୋଟିଏ ଗୋଟିଏ ଧର୍ମ ବହୁଧା ବିଶ୍ୱାସରେ ବିଭକ୍ତ । ଉଦାହରଣ ସ୍ୱରୂପ କେବଳ ଖ୍ରୀଷ୍ଟ ଧର୍ମରେ ରୋମାନ୍ କାଥଲିକ୍, ପ୍ରୋଟେଷ୍ଟାଣ୍ଟ, ଇଷ୍ଟର୍ଣ୍ଣ ଅର୍ଥୋଡକ୍ସ, ପେଣ୍ଟା

କୋଷ୍ଟାଲ ମେଥଡିଷ୍ଟ, ସଦର୍ଣ୍ଣ ବାପ୍‌ଟିଷ୍ଟ, ସିରିଆନ୍ କାଥଲିକ୍, ଲୁଥେରାନ ଇତ୍ୟାଦି ଷାଠିଏଟି ସମ୍ପ୍ରଦାୟ ରହିଛନ୍ତି । କନ୍ଧମାଳର ଜି. ଉଦୟଗିରିର ଏକ ଗାଁରେ ଏଗାରଟି ବିଭିନ୍ନ ଖ୍ରୀଷ୍ଟିୟାନ୍ ସମ୍ପ୍ରଦାୟ ନିଜ ନିଜ ବିଭକ୍ତ ବିଶ୍ୱାସ ପ୍ରଚାରପାଇଁ ଏଗାରଟି ଗୀର୍ଜାଘର ତୋଳି ଡେରା ପକାଇ ଧର୍ମ ପ୍ରଚାରକୁ ପ୍ରଚାର ଧର୍ମରେ ପରିଣତ କରିଦେଲେଣି । ଇସ୍‌ଲାମ ଧର୍ମ ୭୩ଟି ବିଭିନ୍ନ ବିଶ୍ୱାସ ଧାରାରେ ବିଭକ୍ତ - ସିଆ, ସୁନ୍ନୀ, ୱାହାବୀ, ସୁଫି, ଇସ୍‌ମାଇଲ, ବୋରା (ମୁନ୍‌ସୀ ମେହେବୁନ୍ ଆଲୀମ୍) ଇତ୍ୟାଦି । ସେଇଭଳି ହିନ୍ଦୁ ଧର୍ମରେ ଶୈବ, ଶାକ୍ତ, ବୈଷ୍ଣବ, ସ୍ମାର୍ତ୍ତ, ଗାଣପତ୍ୟ, ଦେବସମାଜ, ଆର୍ଯ୍ୟସମାଜ, ବ୍ରାହ୍ମସମାଜ, ବୌଦ୍ଧ ଧର୍ମରେ ମହାଯାନ, ହୀନଯାନ, ଜୈନମାନଙ୍କ ମଧ୍ୟରେ ଶ୍ୱେତାମ୍ବର, ଦିଗମ୍ବର ଇତ୍ୟାଦି ସମ୍ପ୍ରଦାୟ ରହିଛନ୍ତି । ତା ସାଙ୍ଗକୁ ଆମ ଦେଶର ବିଶ୍ୱାସ ବଜାରରେ ନୂଆ ବଣିକ ହେଲେଣି । ଏମାନଙ୍କ ମଧ୍ୟରୁ କେତେକଙ୍କୁ ଈଶ୍ୱରଙ୍କ ଅବତାର ଏବଂ ସ୍ଥଳ ବିଶେଷରେ ସ୍ୱୟଂ ଈଶ୍ୱର ଭାବରେ ପୂଜା କରାଯାଉଛି । ଅସଲି ସନ୍ଥ ଓ ମହାତ୍ମା ନକଲିଙ୍କ କୋଳାହଳରେ ନୀରବ ହୋଇଯାଉଛନ୍ତି ।

ତେଣୁ ଜଗତୀକରଣ ପଛକୁ ବିଶ୍ୱାସର ବଜାରୀକରଣ ଆରମ୍ଭ ହୋଇଗଲାଣି । ଧର୍ମ ଦୋକାନ ଖୋଲି ମାଳି, ତାବିଜ, ତେଉଁରିଆ, ରୁଦ୍ରାକ୍ଷ, କ୍ରୁସ୍, ଜଡିବୁଟି, ଅଡିଓ ଭିଡିଓ, ମୁଦି, ମାଠିଆ, କଳସ, କ୍ୟାସେଟ୍ ଇତ୍ୟାଦି ବିକ୍ରି ଆଉ ଏକ ଲାଭଜନକ ଧର୍ମ ବ୍ୟବସାୟ । ଓଡ଼ିଶାରେ ଯାନି-ଯାତ୍ରା, ବୋଲବମ୍ ଋତୁରେ ଏହାର ନମୁନା ଦେଖିବାକୁ ମିଳେ । ଏଠି ଗଣେଶ ଚତୁର୍ଥୀ, ସରସ୍ୱତୀ ପୂଜା, ଦୁର୍ଗା ପୂଜା, ଗଜଲକ୍ଷ୍ମୀ ପୂଜା, ବିଶ୍ୱକର୍ମା ପୂଜା ମଣ୍ଡପ ଓ ପ୍ରୋସେସନ୍‌ରେ ଅଶ୍ଳୀଳ ସଙ୍ଗୀତ, ନୃତ୍ୟ ଓ ଅସଭ୍ୟ ଆଚରଣ ବେଶୀ । ଥାଇଲାଣ୍ଡରେ ଧର୍ମ ବଜାରରେ 'ନିର୍ବାଣ' ନାମରେ ଦୋକାନ ଖୋଲିଲାଣି । ବ୍ୟାଙ୍କକ୍‌ଠାରୁ ପ୍ରାୟ ଶହେ କିଲୋମିଟର ଦୂରସ୍ଥ 'ୱାତ୍ ପ୍ରମ୍ପାନୀ' ମନ୍ଦିରରେ ୧୮୦ ବାହାତ୍ (ଥାଇଲାଣ୍ଡ ମୁଦ୍ରା) ଦେଇ ଲୋକେ କଫିନ୍‌ରେ ଶୋଇ ମୃତ୍ୟୁ ଓ ତାପରେ ଉଠି ପୁନର୍ଜନ୍ମର ଅନୁଭୂତି କିଣୁଛନ୍ତି ଦେଢ ମିନିଟ୍‌ରେ । ତିନି ମିନିଟ୍‌ର ମୂଲ୍ୟ ଦଶ ଡଲାର । ନିର୍ବାଣ ଅନୁଭୂତିପାଇଁ ମୂଲ୍ୟ ଅଧିକ । ୨୦୦୧ ମସିହା ଜନଗଣନା ଅନୁସାରେ ଭାରତରେ ମନ୍ଦିର ମସଜିଦ୍, ଚର୍ଚ୍ଚ, ଗୁରୁଦ୍ୱାରାଙ୍କ ସଂଖ୍ୟା ୨୪ ଲକ୍ଷ ଥିବା ବେଳେ ବିଦ୍ୟାଳୟ ସଂଖ୍ୟା ୨୧ ଲକ୍ଷ । ଏଗୁଡିକ ମଧ୍ୟରୁ ଅଧିକାଂଶ ଧାର୍ମିକ ସ୍ଥାନ ବେଆଇନ୍ ଓ ଜବରଦଖଲ । କେବଳ ରାଜଧାନୀ ଦିଲ୍ଲୀରେ ଏମାନଙ୍କ ସଂଖ୍ୟା ୬୦ ହଜାର ଏବଂ ଅନେକ ରାସ୍ତା ଉପରେ ।

ଏସବୁ ଦେଖି କେତେ ଲୋକ କହିଲେଣି ବିଭିନ୍ନ ଧର୍ମ ବିଶ୍ୱାସକୁ ଫ୍ରି ମାର୍କେଟ୍ ବା ଖୋଲା ବଜାରକୁ ଛଡାଯାଉ ଓ ଷ୍ଟକ୍ ଏକ୍ସଚେଞ୍ଜ୍ ଏବଂ ସେଆର୍ ବଜାରରେ ଲଗାଯାଉ । ଧନୀ ଧର୍ମଗୁଡିକ ଅଳ୍ପ ଦାମ୍‌ରେ ଏହାକୁ ଗରିବ ଧର୍ମଙ୍କୁ ବିକି ପାରିବେ ବା ଗରିବମାନେ ତାଙ୍କ ଧର୍ମ ଓ ବିଶ୍ୱାସକୁ ବେଶି ପଇସାରେ ଧନୀଙ୍କୁ ବିକି ପାରିବେ । ସ୍ୱର୍ଗ, ନର୍କ, ନିର୍ବାଣ, ପୁନର୍ଜନ୍ମକୁ ଆଳୁ ବାଇଗଣ ଭଳି ଦୋକାନରୁ କିଣାଯାଇପାରିବ । ଜଣେ ବ୍ୟକ୍ତି ପନ୍ଦର ଦିନପାଇଁ ଖ୍ରୀଷ୍ଟିୟାନ୍ ଅନୁଭୂତି କିଣି, ଆଉ ପନ୍ଦର ଦିନପାଇଁ ହିନ୍ଦୁ ବା ଅନ୍ୟ ଧାର୍ମିକ ଅନୁଭୂତି ବଜାରରୁ କିଣିପାରିବେ । ୱେଷ୍ଟ ଇଣ୍ଡିଜ୍‌ରେ ଏବେ ବଜାରରୁ ଗୁଣିଆ, ଡାଆଣୀ ଏବଂ ଜ୍ୟୋତିଷ କିଣାଯାଇ ପାରୁଛି । ଭାରତୀୟ ସହରମାନଙ୍କରେ ରାସ୍ତା କଡରେ ବସିଥିବା ଜ୍ୟୋତିଷ ଓ ଶୁଆ ଶାରୀମାନଙ୍କଠାରେ ପଇସା ଦେଇ ସୁଖ ଦୁଃଖ, ଭବିଷ୍ୟବାଣୀ କିଣାଯାଏ, ତେଲ ଢାଳି ଶନିଙ୍କୁ ଓ ଅଟାଗୁଣ୍ଡ ଦେଇ ଜନ୍ଦା ପିମ୍ପୁଡି, ପୋକ, ଜୋକଙ୍କୁ ଶାନ୍ତ କରାଯାଏ । ବିଶ୍ୱାସର ସହସ୍ର ରୂପ । ମୋ ଘର ପାଖରେ ଧର୍ମପତ୍ନୀ ଦୁଇଟି ବର ଓ ଓସ୍ତ ଗଛ ଲଗାଇଥିଲେ । ଅତିଭକ୍ତିଆ ମାନେ ତା'ଚାରିପଟେ ଏତେ ପରିମାଣ ଅନ୍ଧବିଶ୍ୱାସର ବଳିତା ଜାଳିଲେ ଯେ ଦିନେ ନିଆଁ ଲାଗି ଦୁଇଟି ଯାକ ବୃକ୍ଷଙ୍କର ଦେହାନ୍ତ ହୋଇଗଲା ।

ଆଦାମ୍ ସ୍ମିଥ୍ ତାଙ୍କ ପ୍ରସିଦ୍ଧ ପୁସ୍ତକ 'ୱେଲଥ ଅଫ୍ ନେସନ୍‌ସ'ରେ ଲେଖିଛନ୍ତି ଧାର୍ମିକ ନେତାଙ୍କ ଧର୍ମ ପ୍ରଚାରପାଇଁ ଅତ୍ୟଧିକ ଉତ୍ସାହ ମାନବ ସମାଜ ପ୍ରତି ଅତ୍ୟନ୍ତ ବିପଜ୍ଜନକ । ଏଥିରୁ ରକ୍ଷା ପାଇବାପାଇଁ ଧର୍ମର ସଂଖ୍ୟା ବେଶିରୁ ବେଶି ଓ ଏହାର ଅନୁଗାମୀଙ୍କ ସଂଖ୍ୟା କମ୍‌ରୁ କମ୍ ହେଲେ ସେମାନଙ୍କର ପରସ୍ପର ବିରୋଧରେ ଲଢିବା ସଂଖ୍ୟା ଓ ଶକ୍ତି ହ୍ରାସ ପାଇବ । ଧାର୍ମିକ ହିଂସା ଓ ହତ୍ୟା ସଂଖ୍ୟା କମିଯିବ । ଅସହିଷ୍ଣୁତା ଦୁର୍ବଳ ହୋଇଯିବ । ସେହି ହିସାବରେ ଏବେକାର ୪ ହଜାର ବିଶ୍ୱାସ ବଢି ୪୦ ହଜାର ହେଲେ ଆହୁରି ଭଲ ।

ମହାତ୍ମାଗାନ୍ଧୀ କହୁଥିଲେ ମୁଁ ଈଶ୍ୱର ବିଶ୍ୱାସୀ, କିନ୍ତୁ ଏ ପର୍ଯ୍ୟନ୍ତ ତାଙ୍କୁ ପାଇ ନାହିଁ ଏବଂ ପୁଣି କହୁଥିଲେ ଯେଉଁ ଧର୍ମ ସଂକୀର୍ଣ୍ଣତା ଉପରେ ଆଧାରିତ ତା'ର ଭବିଷ୍ୟତ ଅନ୍ଧକାର । ୧୯୨୮ ଜାନୁଆରୀ ୧୯ ତାରିଖରେ 'ୟଙ୍ଗ୍ ଇଣ୍ଡିଆ'ରେ ଗାନ୍ଧୀ ଲେଖିଥିଲେ 'ସମ୍ମାନର ସହ ପୃଥିବୀର ବିଭିନ୍ନ ଧର୍ମ ଶାସ୍ତ୍ର ଅଧ୍ୟୟନ କଲା ପରେ ମୋର ହୃଦ୍‌ବୋଧ ହୋଇଛି ଯେ କୌଣସି ଧର୍ମାବଲମ୍ବୀଙ୍କୁ ନିଜ ଧର୍ମ ପରିବର୍ତ୍ତନପାଇଁ କହିବା ଅଯୌକ୍ତିକ ।' ୧୯୫୪ ମସିହା ଜାନୁଆରି ୩ ତାରିଖରେ ଦାର୍ଶନିକ ଏରିକ୍ ଗୁଟ୍‌କିଣ୍ଡଙ୍କୁ ଏକ ପତ୍ର ଲେଖି ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ବଡ ବଡ

ଧର୍ମନେତାଙ୍କ ଆଚରଣକୁ ପିଲାଳିଆମି ଓ ଅନ୍ଧବିଶ୍ୱାସ ଉପରେ ଆଧାରିତ ବୋଲି ଉଲ୍ଲେଖ କରିଥିଲେ । ସେ ନିଜେ ଇହୁଦୀ କିନ୍ତୁ ଇସ୍ରାଏଲର ନାଗରିକତ୍ୱ ଓ ରାଷ୍ଟ୍ରପତି ପଦ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । କାରଣ ସେ ଧର୍ମ, ସମ୍ପ୍ରଦାୟ ଓ ବର୍ଣ୍ଣ, ଜାତି ଭିତ୍ତିକ ରାଷ୍ଟ୍ର ଗଠନର ବିରୋଧୀ ଥିଲେ । ସ୍ୱାମୀ ବିବେକାନନ୍ଦ ଧର୍ମକୁ 'ଚେତନା ବିଜ୍ଞାନ' ବୋଲି କହୁଥିଲେ ଓ ଏହାକୁ ଆନୁଷ୍ଠାନିକ ବିଧି ବିଧାନ, କର୍ମକାଣ୍ଡ ଓ ପ୍ରଥାରେ ବାନ୍ଧି ଦେଇଥିବା ପଣ୍ଡିତମାନଙ୍କର ଘୋର ବିରୋଧ କରୁଥିଲେ । ହିନ୍ଦୁ ଧର୍ମରେ ଅଦ୍ୱୈତ, ଏକେଶ୍ୱରବାଦକୁ ପୁନଃ ପ୍ରତିଷ୍ଠା କରିଥିବା ଆଦି ଶଙ୍କରାଚାର୍ଯ୍ୟ କହୁଥିଲେ ଧର୍ମର ପ୍ରକୃତ ଅର୍ଥ ହେଉଛି ଆତ୍ମ ଦର୍ଶନ । ସ୍ୱାମୀ ଦୟାନନ୍ଦ ହିନ୍ଦୁ ଧର୍ମରେ ପଶିଥିବା କୁସଂସ୍କାର ଓ ଅନ୍ଧବିଶ୍ୱାସ ବିରୋଧରେ ସାରା ଜୀବନ ଲଢିଥିଲେ । ପରିବର୍ତ୍ତନର ଏହି ଧାରା ଏବେ ଦୁର୍ବଳ ହୋଇଗଲାଣି । ଆତ୍ମଦର୍ଶନ ପରିବର୍ତ୍ତେ ଧର୍ମ ଧ୍ୱଜା ଦର୍ଶନ ବେଶୀ ହେଉଛି ।

ଆଜିକାର ଧର୍ମ ଓ ବିଶ୍ୱାସ ବଜାରର ଲୋଭୀ ବଣିକଙ୍କୁ ଏକଥା କିଏ କହିବ ? କିଏ ବୁଝାଇବ ? ଭାରତର ପୂର୍ବତନ ଦାର୍ଶନିକ ରାଷ୍ଟ୍ରପତି ରାଧାକୃଷ୍ଣନ୍ ଥରେ କହିଥିଲେ, ଯେଉଁମାନେ ଈଶ୍ୱରଙ୍କୁ ଅନୁଭବ କରିନାହାନ୍ତି ଓ ନିଜେ ଧର୍ମାନ୍ଧ, ସେମାନଙ୍କ ଧର୍ମବଜାର ଓ ଧର୍ମ ପ୍ରଚାର, ଜଣେ ଅନ୍ଧ ଆଉ ଜଣେ ଅନ୍ଧକୁ ବାଟ ଦେଖାଇବା ସଦୃଶ । ଗୌତମ ବୁଦ୍ଧଙ୍କ ଅଷ୍ଟାଙ୍ଗ ମାର୍ଗର ପ୍ରଥମ ମାର୍ଗ ଥିଲା 'ବିଶ୍ୱାସ' । ସିଦ୍ଧାର୍ଥଙ୍କୁ ବୋଧେ ଜଣା ନଥିଲା କି ଦିନେ 'ବିଶ୍ୱାସ' ଖୋଲା ବଜାରରେ ବିକ୍ରି ହେବ; ବନ୍ଧୁକ, ବନ୍ଧକ ଓ ଧର୍ମ ବେପାରୀ, ବିଶ୍ୱାସର ସଂଜ୍ଞା ନିରୂପଣ କରିବେ । ଧର୍ମ ରାଜନୀତିର ଅଙ୍କୁଶ ନ ହୋଇ ଘୋଡା ହୋଇଯିବ ।

*୨୧ ମେ, ୨୦୦୯*



# ଜୈଦି ଓ ଜର୍ନେଲ୍‌ଙ୍କ ଜୋତା

ଏପ୍ରିଲ୍ ୭ ତାରିଖ, ୨୦୦୯, ଭାରତୀୟ ସାମ୍ବାଦିକତା ଇତିହାସରେ ଏକ ଦୁଃଖର ଦିନ । ସେଦିନ ନୂଆଦିଲ୍ଲୀସ୍ଥିତ କଂଗ୍ରେସ ମୁଖ୍ୟ କାର୍ଯ୍ୟାଳୟରେ ସ୍ୱରାଷ୍ଟ୍ର ମନ୍ତ୍ରୀ ପି. ଚିଦାମ୍ବରମ୍ ଏକ ସାମ୍ବାଦିକ ସମ୍ମିଳନୀକୁ ସମ୍ବୋଧିତ କରୁଥିବା ବେଳେ ବହୁଳ ପ୍ରସାରିତ ହିନ୍ଦୀ ସମ୍ବାଦପତ୍ର 'ଦୈନିକ ଜାଗରଣ'ର ଜନୈକ ସାମ୍ବାଦିକ ଜର୍ନେଲ୍ ସିଂ ସାମ୍ବାଦିକତାର ସୁସ୍ଥ ପରମ୍ପରାକୁ ଲଂଘନ କରି ତାଙ୍କ ଉପରକୁ ନିଜ ଜୋତା ଫୋପାଡିଥିଲେ । ୧୯୮୪ ସାମ୍ପ୍ରଦାୟିକ ଦଙ୍ଗାର ସିବିଆଇ ତଦନ୍ତର ଫଳାଫଳ ନେଇ ଚିଦାମ୍ବରମ୍‌ଙ୍କ ଉତ୍ତରରେ ଜର୍ନେଲ୍ ଅସନ୍ତୁଷ୍ଟ ଥିଲେ । ଏପରି ବ୍ୟବହାରରେ ବିସ୍ମିତ ସ୍ୱରାଷ୍ଟ୍ର ମନ୍ତ୍ରୀ ଅଳ୍ପ ହସି ଜର୍ନେଲ୍‌ଙ୍କୁ 'ଧୀରେ ଧୀରେ' ସେଠାରୁ ନେଇଯିବାକୁ କହିଥିଲେ ଓ ତାଙ୍କ ବିରୋଧରେ କୌଣସି ମାମଲା ଦାଏର କରିବାରୁ କ୍ଷାନ୍ତ ରହିଥିଲେ ।

ଏହି ଘଟଣାର କିଛି ମାସ ପୂର୍ବରୁ ସାମ୍ୟବାଦୀ ଚୀନ୍‌ର ସର୍ବୋଚ୍ଚ ନେତା ଜିଆ ବାଓ ଏପରି ବ୍ୟବହାରର ସମ୍ମୁଖୀନ ହୋଇଥିଲେ ଏବଂ ଆମେରିକାର ତତ୍କାଳୀନ ରାଷ୍ଟ୍ରପତି ଜର୍ଜ ବୁଶ୍‌ଙ୍କୁ "ଡଗ୍" ବୋଲି କହି ତାଙ୍କ ଉପରକୁ ଦଶ ନମ୍ବରୀ ଜୋତା ଫୋପାଡିଥିଲେ ଇରାକୀ ସମ୍ବାଦିକ ମୁନାଜର ଜୈଦି । ଏଇ ଘଟଣାର ସ୍ମୃତିରେ ଏବେ ବୁଶ୍ ବିରୋଧୀ ଇରାକୀମାନେ ଏକାଠି ହୋଇ ସେଇ ସ୍ଥାନରେ ଦଶ ଫୁଟ ଉଚ୍ଚର ଏକ ଦଶନମ୍ବରୀ ଜୋତାର ଷ୍ଟାଚ୍ୟୁ ତିଆରି କରିଛନ୍ତି । ଅନୁତପ୍ତ ଜର୍ନେଲ୍ ସିଂଙ୍କ ଅସଭ୍ୟତା ପାଇଁ ତାଙ୍କରି ଭଳି ଲୋକେ ତାଙ୍କପାଇଁ ପୁରସ୍କାର ଘୋଷଣା କରିଛନ୍ତି । ଏସବୁ ଦେଖି କେତେକ ଶିକ୍ଷକ ବି ଜୋତାକୁ ଅସ୍ତ୍ର କଲେଣି ହରିଆନାରେ । ତେବେ ଏଇ ଭିତରେ ଭାରତର ପ୍ରଧାନମନ୍ତ୍ରୀ ଏବଂ ବିରୋଧୀ ଦଳର ନେତାଙ୍କ ଆଡକୁ ବି ଜୋତା ଫିଙ୍ଗା ଯାଇ ସାରିଲାଣି ।

ଅନୁସନ୍ଧାନ, ପ୍ରଶ୍ନୋତ୍ତର ମାଧ୍ୟମରେ ମତ, ତଥ୍ୟ ଓ ସତ୍ୟକୁ ଜାଣିବା ଶୁଣିବା ଓ ଠିକ୍ ଭାବରେ ଲୋକଙ୍କୁ ଜଣାଇବା ସାମ୍ବାଦିକତାର ପ୍ରଥମ ଧର୍ମ । ତେଣୁ କଲମ ଛାଡି

ଜୋତାର ଆଶ୍ରୟ ନେବା ପୂର୍ବରୁ ସାମ୍ବାଦିକତା ଛାଡି ଦେବା ଜର୍ନେଲ୍‌ଙ୍କ ପକ୍ଷରେ ଶ୍ରେୟସ୍କର ହୋଇଥାନ୍ତା । ଏପରି ଆଚରଣ ଫଳରେ ଭବିଷ୍ୟତରେ ଅନ୍ୟ ସାମ୍ବାଦିକମାନେ ଅସୁବିଧାର ସମ୍ମୁଖୀନ ହେବେ । ଜୋତାର ସାମୟିକ ପଦୋନ୍ନତି ହୋଇପାରେ, କିନ୍ତୁ କଲମର ନିଶ୍ଚିତ ରୂପେ ସମ୍ମାନ ହାନି ହେବ ।

ସମାଜର ବିଭିନ୍ନ ସ୍ତରରେ ଜୋତାମାନେ ଅନୁପ୍ରବେଶ କରିସାରିଲେଣି । ଫୁଲମାଳ ବଦଳରେ କେତେକ କ୍ଷେତ୍ରରେ ଜୋତା ମାଳ ଦିଆଗଲାଣି । ଯୌନ ନିର୍ଯ୍ୟାତନା ବିରୋଧରେ ମହିଳାମାନେ ଚପଲକୁ ଅସ୍ତ୍ର ଭାବରେ ବ୍ୟବହାର କଲେଣି । ଦାମ୍ପତ୍ୟ କଳହରେ ମଧ୍ୟ ଏବେ ଜୋତା, ଚପଲ, ସାଣ୍ଡାଲ୍‌ର ବହୁଳ ବ୍ୟବହାର ହେଉଛି । ଅନ୍ୟକୁ ନୀଚା ଦେଖାଇବାକୁ ହିନ୍ଦୀଭାଷୀ ଅଞ୍ଚଳରେ କହନ୍ତି 'ତୁ ମେରି ପୈରକୀ ଜୁତୀ' । ବହିଷ୍କୃତ ଲୋକଙ୍କୁ ଇଂରାଜୀରେ କହନ୍ତି 'ବୁଟେଡ୍ ଆଉଟ୍' । ରାଜନୀତିରେ ଜୋତାର ପ୍ରଭାବ ବେଶୀ । ଲୋକସଭା, ବିଧାନସଭାରେ ପାଟିତୁଣ୍ଡ ବେଳେ ଜୋତାମାନେ ପାଦ ତଳୁ ହାତକୁ ଆସିଯାନ୍ତି । ତାମିଲନାଡୁର ଜୟଲଳିତା ଓ ଫିଲିପାଇନ୍‌ସର ଇମେଲ୍‌ଡା ମାର୍କସଙ୍କ ଜୋତା ପ୍ରୀତି ବହୁ ବର୍ଷ ଧରି ଚର୍ଚ୍ଚାରେ ଥିଲା । ମୁମ୍ବାଇରେ ଜୋତାଘର ପର୍ଯ୍ୟଟକଙ୍କପାଇଁ ଏକ ବିଶେଷ ଆକର୍ଷଣ । ପଣ୍ଡିତ ମଦନମୋହନ ମାଳବ୍ୟ ହିନ୍ଦୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାପାଇଁ ମୁଷ୍ଟି ଭିକ୍ଷା ଓ ଦାନ ସଂଗ୍ରହ କରୁଥିଲା ବେଳେ ହାଇଦ୍ରାବାଦ ନିଜାମଙ୍କ ପାଖରେ ପହଞ୍ଚିଥିଲେ । ନିଜାମ ଦାନ ବଦଳରେ ମାଳବ୍ୟଙ୍କ ଆଡ଼କୁ ଲକ୍ଷ୍ୟ କରି ନିଜ ଗୋଡରୁ ପଟେ ଜୋତା କାଢ଼ି ଫିଙ୍ଗିଥିଲେ । ମାଳବ୍ୟ ଏହାକୁ ସମ୍ମାନ ସହ ଗାମୁଛାରେ ରଖି ବଜାରରେ ନିଲାମ ଡାକି ବିପୁଳ ଅର୍ଥ ସଂଗ୍ରହ କରିଥିଲେ ।

ଜୋତାକୁ ମାନବ ଇତିହାସରେ କେବଳ ଗୋଟିଏ ଥର ପ୍ରକୃତ ସମ୍ମାନ ମିଳିଥିଲା । ଭ୍ରାତୃପ୍ରେମୀ ଭରତ ଅଗ୍ରଜ ଶ୍ରୀରାମଙ୍କ ପାଦୁକାକୁ ମୁଣ୍ଡରେ ବୋହି ଆଣି ଅଯୋଧ୍ୟା ରାଜସିଂହାସନରେ ଚଉଦବର୍ଷ ବସାଇ ରାଜାର ସମ୍ମାନ ଦେଇଥିଲେ । ରଘୁପତି ରାଘବ ରାଜା ରାମଙ୍କ ଅନୁଗାମୀ ଗାନ୍ଧୀଙ୍କ ୭୦ ବର୍ଷର ପୁରୁଣା ଚପଲ ଏବେ ବଜାରରେ ନିଲାମ ହେଲା । ତାକୁ କିଣିଲେ ଜଣେ ମଦ ବେପାରୀ ।

ପାଦ ଓ ପ୍ରତିବାଦପାଇଁ ପେଟେଣ୍ଟ ମେଡିସିନ୍ ଭାବରେ ବ୍ୟବହୃତ ପାଦୁକା ବା ଜୋତାର ଜନ୍ମ ତାରିଖ ଜଣା ନାହିଁ । ପ୍ରାକ୍ ଐତିହାସିକ ଯୁଗରେ ମଣିଷ ବରଫାବୃତ ଅଞ୍ଚଳ, ଉତପ୍ତ ମରୁଭୂମି ଓ ଜଙ୍ଗଲର କଣ୍ଟାଝଟାରୁ ପାଦକୁ ରକ୍ଷା କରିବାପାଇଁ ପ୍ରଥମେ ତାଳ ପତର ଓ ପରେ ହାଡ, ଚମଡା, ଛେଲି ଇତ୍ୟାଦିକୁ ପାଦରେ ବାନ୍ଧି ଚାଲୁଥିଲା

ବୋଲି କୁହାଯାଏ । ପ୍ରାୟ ଦଶ ହଜାର ବର୍ଷ ପୂର୍ବର ପର୍ବତ ଗୁହାରେ ଅଙ୍କିତ ଚିତ୍ରରେ ଏପରି ଦୃଶ୍ୟ ବର୍ଣ୍ଣନା କରାଯାଇଛି । ସେତେବେଳର ମଣିଷ ଦିନକୁ ୧୬ ଘଣ୍ଟା ଖାଦ୍ୟ ଅନ୍ୱେଷଣ ଓ ସଂଗ୍ରହରେ କାଟୁଥିଲା । ଇଜିପ୍ଟର ନୀଳ ନଦୀ ଓ ମରୁଭୂମି ଅଞ୍ଚଳରେ ରହୁଥିବା ଉଭୟ ପୁରୁଷ ଓ ସ୍ତ୍ରୀ ପାଦକୁ ମୁଣିରେ ବାନ୍ଧି କାମକୁ ଯାଉଥିଲେ । ଖଜୁରି, ଭୂର୍ଜପତ୍ର, ତାଳପତ୍ରରୁ ଏ ମୁଣି ତିଆରି ହେଉଥିଲା । ଜୋତାମାନେ ବି ଜାତିବାଦ ମୁକ୍ତ ନଥିଲେ । ରାଜା ଓ ପାରିଷଦ ଚମଡା, କାଠ ନିର୍ମିତ ସାଣ୍ଡାଲ ପିନ୍ଧୁଥିଲେ । ରାଜାଙ୍କ ସାଣ୍ଡାଲରେ ସୁନା, ରୁପା, ମୋତି ଲାଗୁଥିଲା । ପାରିଷଦଙ୍କ ପାଦୁକାରେ ହାଲୁକା ସୂକ୍ଷ୍ମ ରଙ୍ଗ ଲାଗୁଥିଲା । ମଧ୍ୟବିତ୍ତ ଲୋକେ ନାଲି ଓ ହଳଦିଆ ରଙ୍ଗର ସାଣ୍ଡାଲ୍ ପିନ୍ଧୁଥିଲେ । ଏହା ତଳକୁ ଥିବା ସାଧାରଣ ଲୋକଙ୍କୁ ପାଦୁକା ପିନ୍ଧିବା ମନା ଥିଲା । ଏହି ସମୟରେ ଭାରତରେ କଠଉ ବ୍ୟବହାର ହେଉଥିଲା ।

ପ୍ରାକ୍ତନ ଗ୍ରୀକ୍ ଓ ରୋମାନ୍ ସଭ୍ୟତାରେ ମଧ୍ୟ ସମାଜର ବିଭିନ୍ନ ସ୍ତରର ଲୋକଙ୍କ ପାଇଁ ଭିନ୍ନ ଭିନ୍ନ ପାଦୁକା ବ୍ୟବହୃତ ହେଉଥିଲା ପ୍ରାୟ ୩୦୦୦ ବର୍ଷ ତଳେ । ସମ୍ରାଟଙ୍କ ଜୋତା ଥିଲା ରକ୍ତ ରଙ୍ଗର, ସିନେଟରମାନେ କଳା ଓ ଧଳା ରଙ୍ଗର ଜୋତା ପିନ୍ଧୁଥିଲେ । ଧନପତି, ବଣିକମାନେ ଧୂସର ରଙ୍ଗର, ସାଧାରଣ ଲୋକେ ସାଦା ଚପଲ ଓ କ୍ରୀତଦାସମାନେ ଖାଲିପାଦରେ ଚାଲୁଥିଲେ । ରୋମାନ୍ ଲୋକେ ଘର ବାହାର ଓ ଭିତରପାଇଁ ଅଲଗା ଅଲଗା ପାଦୁକା ବ୍ୟବହାର କରୁଥିଲେ । ଘର ଭିତରେ ପାଦୁକା ନାଁ ଥିଲା 'ସୋଲି' ଓ ଏହାକୁ କ୍ରୀତଦାସମାନେ ମାଲିକଙ୍କୁ ପିନ୍ଧାଇ ଦେଉଥିଲେ । ଅଭିନେତା, ଧର୍ମଯାଜକ ଓ ବରକନ୍ୟାଙ୍କପାଇଁ ଅଲଗା ଅଲଗା ପ୍ରକାର ଜୋତା ନିର୍ଦ୍ଧାରିତ ଥିଲା ।

ମଧ୍ୟଯୁଗରେ ସାମନ୍ତ ଓ ସମ୍ଭ୍ରାନ୍ତ ଶ୍ରେଣୀର ଉଭୟ ପୁରୁଷ ଓ ସ୍ତ୍ରୀମାନେ ଜୋତାରେ ପ୍ରଥମେ ଭେଲଭେଟ୍ ଓ ରେଶମ ଲଗାଇଲେ । ରାଜାଙ୍କ ଜୋତାର ଅଗ୍ରଭାଗ ଲମ୍ୱା ଓ ମୁନିଆ ବା ପଏଣ୍ଟେଡ୍ ରହୁଥିଲା । ମୁନିଆ ଅଂଶ ଯେତେ ଲମ୍ୱି ଓଲଟୁଥିଲା ସେ ରାଜା ସେତିକି ଶକ୍ତିଶାଳୀ ଓ ସମ୍ଭ୍ରାନ୍ତ ବୋଲି ଗଣା ହେଉଥିଲେ । ସେତେବେଳେ ଏସିଆ, ଆଫ୍ରିକା ଓ ୟୁରୋପ୍‌ରେ ଜମିଦାରମାନେ ବିଭିନ୍ନ ରଙ୍ଗ, ଢଙ୍ଗର ଜୋତା ପିନ୍ଧି ନିଜର ଗାରିମା ପ୍ରକାଶ କରୁଥିଲେ । ସ୍ତ୍ରୀମାନେ ପୁରୁଷଙ୍କ ଉଚ୍ଚତାର ସମକକ୍ଷ ହେବାପାଇଁ ଲମ୍ୱା ଓ ଡେଙ୍ଗା ପାଦୁକା ବ୍ୟବହାର କରୁଥିଲେ ଏବଂ ସେଥିରେ ଝୁମୁକା ବାନ୍ଧୁଥିଲେ । ଏପରି ଫେସନଯୋଗୁଁ ସେମାନଙ୍କୁ ଚାଲିବାରେ କଷ୍ଟ ହେଉଥିଲା - ପଡି ଆଣ୍ଠୁ ଗଣ୍ଠି ଭାଙ୍ଗୁଥିଲା । ଏ ଦୃଶ୍ୟ ଦେଖି ଚର୍ଚ୍ଚର ପାଦ୍ରୀମାନେ ଖୁସି ହେଉଥିଲେ - କାରଣ ମଧ୍ୟଯୁଗରେ ରକ୍ଷଣଶୀଳ ଧର୍ମଗୁଡିକ ସ୍ତ୍ରୀମାନଙ୍କର ଫେସନ୍ ପ୍ରେମକୁ ପସନ୍ଦ କରୁ ନଥିଲେ ।

ଏହି ସମୟରେ ଚାଇନାରେ ଛୋଟ ପାଦର ଝିଅପିଲାଙ୍କୁ ଅଧିକ ସୁନ୍ଦରୀ ବୋଲି ବିଚାର କରାଯାଉଥିଲା । ତେଣୁ ସେମାନଙ୍କ ପାଦକୁ ପିଲାଦିନୁ ବାନ୍ଧି ଦିଆଯାଉଥିଲା । ଏଥିପାଇଁ ସ୍ୱତନ୍ତ୍ର ପାଦୁକାମାନ ବଜାରରେ ମିଳୁଥିଲା । ଷୋଡଶ ଓ ସପ୍ତଦଶ ଶତାବ୍ଦୀ ଥିଲା ଆବିଷ୍କାରର ଶତାବ୍ଦୀ । ଏହି ସମୟରେ ଆରମ୍ଭ ହେଲା ପାଦରୁ ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବା ବୁଟ୍ ଜୋତା । ଇଂଲଣ୍ଡର ରାଜା ଚାର୍ଲସଙ୍କର ଦୁଇଟି ଗୋଡ ରିକେଟ୍ ରୋଗ ଦ୍ୱାରା ପୀଡିତ ହୋଇ ଦୁର୍ବଳ ଥିବାରୁ ସେ ସଦାବେଳେ ଲମ୍ବା ବୁଟ୍ ପିନ୍ଧୁଥିଲେ । ତେଣୁ ତାଙ୍କୁ ଦେଖି ଅନ୍ୟମାନେ ସାଧାରଣ ଅବସ୍ଥାରେ ବି ବୁଟ୍ ପିନ୍ଧା ଆରମ୍ଭ କରିବାରୁ ଏହା ଏକ ଫେସନ ହୋଇଗଲା । ବିଂଶ ଶତାବ୍ଦୀରେ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଲମ୍ବା ବାଳ ରଖିବା ଓ ବଡ ବଡ ଜୋତା ପିନ୍ଧିବା ଫେସନ ଥିଲା । ଖେଳ କୁଦର ଲୋକପ୍ରିୟତା ଓ ପ୍ରତିଯୋଗିତା ବଢିବାରୁ ନୂଆ ନୂଆ ଜୋତା ବଜାରକୁ ଆସିଲା । ମହିଳାମାନେ ବିଭିନ୍ନ ରଙ୍ଗ ଢଙ୍ଗର ପାଦୁକା ବ୍ୟବହାର କଲେ । ସାଧାରଣ ଲୋକେ ଜୋତା ପିନ୍ଧିବା ଆରମ୍ଭ କଲେ । ତା'ପରେ ଜୋତା ସ୍କୁଲ ୟୁନିଫର୍ମର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇଗଲା ।

ଜୋତାଙ୍କ ଦୀର୍ଘ ଯାତ୍ରାରେ ଭାରତ ପୃଥିବୀର ଏକ ଆଗୁଆ ଦେଶ । ଜୋତା ଓ ଚମଡ଼ା ଶିଳ୍ପରେ ଆମର ପୃଥିବୀରେ ଦ୍ୱିତୀୟ ସ୍ଥାନ । ଆମ ଦେଶରେ ବର୍ଷକୁ ଏକ କୋଟି ନବେ ଲକ୍ଷ ହଳ ଜୋତା ତିଆରି ହୁଏ ଓ ରପ୍ତାନି ହୁଏ । ଏଥିରେ ନିବେଶିତ ଅର୍ଥ ପରିମାଣ ପାଞ୍ଚହଜାର କୋଟିରୁ ଅଧିକ ଓ ପ୍ରାୟ ୧୫ ଲକ୍ଷ ପରିବାରର ଜୀବନ ଓ ଜୀବିକା ଜୋତା ଉପରେ ନିର୍ଭରଶୀଳ । ତେଣୁ ଜୈଦି ଓ ଜର୍ନେଲଙ୍କ ଭଳି ଜୋତା ବ୍ୟବହାର ହେଲେ ଜୋତାର ସଂଜ୍ଞା ଓ ସ୍ୱରୂପ ବଦଳାଇବାକୁ ହେବ । ଜୋତାକୁ ଡିଜାଇନରମାନେ 'ମିସାଇଲ' ଆକାର ଦେବେ, ସାମ୍ବାଦିକ ସମ୍ମିଳନୀରେ ବ୍ୟବହାର ପାଇଁ ନୂଆ ଡିଜାଇନର ଖୋଜା ହେବେ, ମନ୍ତ୍ରୀମାନେ ହେଲ୍‌ମେଟ୍ ପିନ୍ଧି ସମ୍ମିଳନୀକୁ ଆସିବେ ବା କକ୍ଷରେ ପ୍ରବେଶ ପୂର୍ବରୁ ସାମ୍ବାଦିକଙ୍କ ପାଦୁକା କାଢି ନିଆଯିବ । ପାଦ ବ୍ୟଥା ଦୂର କରୁଥିବା ଜୋତା ମୁଣ୍ଡ ବ୍ୟଥାର କାରଣ ହେବ । ଜୋତା ଦେଖି ଲୋକେ ଡରିବେ । ଏହା ହେବ ଜୋତା ଜୀବନର ଏକ ଦୁଃଖଦାୟକ ନୂଆ ଅଧ୍ୟାୟ ।

*୩୦ ଏପ୍ରିଲ, ୨୦୦୯*



# ଆମ ଶିକ୍ଷା ଅବସ୍ଥା ଓ ବ୍ୟବସ୍ଥା

ବିଶ୍ୱବିଖ୍ୟାତ ଶିକ୍ଷାବିତ୍ ଇଭାନ୍ ଇଲିଚ୍‌ଙ୍କ ଦୁଇଟି ପୁସ୍ତକ 'ଡିସ୍କୁଲିଙ୍ଗ୍ ସୋସାଇଟି ଓ 'ସ୍କୁଲ ଇଜ୍ ଡେଡ୍' ଥିଲା ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଉପରେ ପ୍ରଥମ ବିଦ୍ରୋହର ସ୍ୱର । ଏବେ ବିକ୍ଷୋଭ ଅଧିକ, ବିଦ୍ରୋହ କମ୍ । ଶିକ୍ଷା ଗୁରୁମାନେ ବିଦ୍ୟାଳୟ ଛାଡି ରାଜରାସ୍ତାରେ ଧାରଣା, ଧର୍ମଘଟ କରିବା ଏକ ଅସୁସ୍ଥ ଶିକ୍ଷା ବ୍ୟବସ୍ଥାର ଲକ୍ଷଣ । ଏବେ ଶିକ୍ଷା ଅଧିକାର ଆଇନ ପାର୍ଲାମେଣ୍ଟରେ ପାରିତ ହେଲାପରେ ଶିକ୍ଷକ ଓ ସମାଜର ଦାୟିତ୍ୱ ସଂପର୍କରେ ଆଉଥରେ ବିଚାର ସମୟ ଆସିଅଛି ।

ନିକଟରେ ଭାରତର ସର୍ବୋଚ୍ଚ ଶିକ୍ଷା ତାଲିମ ଓ ଗବେଷଣା ଅନୁଷ୍ଠାନ 'ନ୍ୟାସନାଲ ୟୁନିଭରସିଟି ଅଫ୍ ଏଡୁକେସନାଲ ପ୍ଲାନିଂ' ଆଣ୍ଡ ଆଡ୍‌ମିନିଷ୍ଟ୍ରେସନ୍ (ନୁପା) ଓଡ଼ିଶା ସମେତ ଦେଶର ୩୫ଟି ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳରେ ଶିକ୍ଷାର ଅବସ୍ଥା ଜାଣିବା ପାଇଁ ଏକ 'ଇଣ୍ଡେକ୍ସ' ବା ମାନକ ତିଆରି କରିଛନ୍ତି । ଇଂରାଜୀରେ ଏହାକୁ କୁହାଯାଉଛି 'ଏଡୁକେସନ୍ ଡେଭଲପ୍‌ମେଣ୍ଟ ଇଣ୍ଡେକ୍ସ' । ଏଥିରେ ୪ଟି ପାରାମିଟର ବା ପରିମାପକ ଓ ୨୨ଟି 'ଭାରିଏବଲ୍' ରହିଛି । ପ୍ରଥମଟି ହେଲା 'ଆକ୍‌ସେସ୍' - ଅର୍ଥାତ୍ ଶିକ୍ଷାବ୍ୟବସ୍ଥା ଓ ସୁବିଧା କେତେ ଜାଗାରେ ପହଞ୍ଚି ପାରିଛି ଓ କେତେ ଲୋକ ଏହାର ସୁଯୋଗ ନେଇ ପାରୁଛନ୍ତି । ଦ୍ୱିତୀୟଟି ହେଲା 'ଇନ୍‌ଫ୍ରାଷ୍ଟ୍ରକଚର୍' ବା ଶିକ୍ଷାର ଭିତ୍ତିଭୂମି - ସ୍କୁଲ ଘର, ଶିକ୍ଷା ଉପକରଣ ଇତ୍ୟାଦି । ତୃତୀୟଟି ହେଲା କ୍ୱାଲିଟି ବା ଗୁଣବତ୍ତା । ଶିକ୍ଷକ-ଶିକ୍ଷୟିତ୍ରୀ, ଛାତ୍ର-ଛାତ୍ରୀ ଅନୁପାତ, ତାଲିମପ୍ରାପ୍ତ କି ନୁହଁ, ଏକ-ଶିକ୍ଷକ ବିଦ୍ୟାଳୟ ସଂଖ୍ୟା, ତିନିରୁ କମ୍ ଶିକ୍ଷକ ଥିବା ସ୍କୁଲ ସଂଖ୍ୟା ଇତ୍ୟାଦି । ଚତୁର୍ଥ ପାରାମିଟରଟି ହେଲା ଏନ୍‌ରୋଲ୍‌ମେଣ୍ଟ - ଦଳିତ, ଆଦିବାସୀ, ମହିଳା, ଅନୁନ୍ନତ ବର୍ଗ ମଧ୍ୟରୁ କେତେ ପିଲା ନାଁ ଲେଖାନ୍ତି, କେତେ ପିଲା ପଞ୍ଚମ ଶ୍ରେଣୀ ପହଞ୍ଚିବା ପୂର୍ବରୁ

ସ୍କୁଲ ଛାଡି ଚାଲିଯାଆନ୍ତି, କେତେ ପିଲା ପାସ୍ କରନ୍ତି ଓ ସେ ମଧ୍ୟରୁ କେତେ ୬୦ ପ୍ରତିଶତରୁ ଊର୍ଦ୍ଧ୍ୱ ମାର୍କ ପାଆନ୍ତି ।

ଏହି ମାପକାଠିରେ ୩୫ଟି ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳ ମଧ୍ୟରେ ଓଡ଼ିଶାର ସ୍ଥାନ ୨୯ - ଅଠେଇଶିଟି ରାଜ୍ୟ ତଳେ । ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଶାରେ ଅଭୂତପୂର୍ବ ଶିକ୍ଷାର ପ୍ରସାର ଘଟିଥିବା ସତ୍ତ୍ୱେ ଏଇ ଅବସ୍ଥା । ୧୯୪୭ରେ ଓଡ଼ିଶାରେ ୬ ହଜାରରୁ ଊର୍ଦ୍ଧ୍ୱ ଶିକ୍ଷାନୁଷ୍ଠାନ ଏବେ ବଢି ୪୨ ହଜାର ହେଲାଣି । ୧୦୬ଟି ହାଇସ୍କୁଲ ବଢି ପ୍ରାୟ ୭ ହଜାର ହେଲାଣି । ୫ ଟି କଲେଜ ବଢି ଏବେ ହେଲାଣି ୨୦୯୫ ଓ ଶୂନ ବିଶ୍ୱବିଦ୍ୟାଳୟ ସଂଖ୍ୟା ଏବେ ହେଲାଣି ଏଗାର । କିନ୍ତୁ ଏବେ ବି ରାଜ୍ୟର ୭୩,୧୪୮ ଗାଁ ଓ ପଡା ମଧ୍ୟରୁ ୧୮ ପ୍ରତିଶତ ଅର୍ଥାତ୍ ୧୨୮୦୦ ଗାଁରେ ପ୍ରାଇମେରୀ ସ୍କୁଲ ନାହିଁ । କୋରାପୁଟ ଜିଲ୍ଲାର ପ୍ରାୟ ୧୧୦୦ ପଡା ଓ ଗାଁରେ ପ୍ରାଥମିକ ଶିକ୍ଷା ସୁବିଧା ନାହିଁ । ତା'ପଛକୁ ଅଛି ରାୟଗଡା ଓ ସୋନପୁର ।

ଶିକ୍ଷାନୀତି ଅନୁସାରେ ପ୍ରତି ଏକ ବର୍ଗ କିଲୋମିଟର ମଧ୍ୟରେ ରହୁଥିବା ୨୦୦ ରୁ ୩୦୦ ଲୋକଙ୍କପାଇଁ ଗୋଟିଏ ଲେଖାଏଁ ପ୍ରାଥମିକ ବିଦ୍ୟାଳୟ ରହିବା କଥା । ଓଡ଼ିଶାରେ ପ୍ରାୟ ୧୬ ଭାଗ ଅନୁସୂଚିତ ଜାତି ଓ ୨୭ ଭାଗ ଜନଜାତି ରହୁଥିବା ଅଞ୍ଚଳରେ ଏ ସୁବିଧା ନାହିଁ । ତେଣୁ ଏବେ ପାର୍ଲାମେଣ୍ଟରେ 'ରାଇଟ୍ ଟୁ ଏଜୁକେସନ୍' ବା ଶିକ୍ଷାଧିକାର ବିଲ୍ ପାସ୍ ହେଲା ପରେ ଓଡ଼ିଶାରେ ଏହାକୁ କାର୍ଯ୍ୟକାରୀ କରିବାକୁ ଆଉ ବାର ହଜାର ପ୍ରାଥମିକ ବିଦ୍ୟାଳୟ ଖୋଲିବାକୁ ପଡ଼ିବ । ସେହିପରି ପ୍ରତି ପାଞ୍ଚ କିଲୋମିଟରରେ ଗୋଟିଏ ଲେଖାଏଁ ହାଇସ୍କୁଲ ଖୋଲିବାକୁ ପଡ଼ିବ, ଆସନ୍ତା ୩୦ ବର୍ଷ ପାଇଁ ।

ରାଷ୍ଟ୍ରୀୟ ଶିକ୍ଷାନୀତି ଅନୁସାରେ ପ୍ରତି ଦୁଇଟି ପ୍ରାଥମିକ ବା ପ୍ରାଇମେରି ସ୍କୁଲପାଇଁ ଗୋଟିଏ ଲେଖାଏଁ ଉଚ୍ଚ ପ୍ରାଥମିକ ବା ଅପର ପ୍ରାଇମେରି ଖୋଲିବା କଥା । ସେଇ ଅନୁସାରେ ଓଡ଼ିଶାରେ ଅତି କମ୍‌ରେ ୨୧ ହଜାର ଅପର ପ୍ରାଇମେରି ରହିବା କଥା, କିନ୍ତୁ ଅଛି ଏଗାର ହଜାର । ଶିକ୍ଷାର ଦ୍ୱିତୀୟ ପରିମାପକ ହେଲା ଭିତ୍ତିଭୂମି । କିନ୍ତୁ ଷଷ୍ଠ 'ଅଲ୍ ଇଣ୍ଡିଆ ଏଜୁକେସନ୍ ସର୍ଭେ ରିପୋର୍ଟ' ଅନୁସାରେ ଶତକଡା ୪୦ ଭାଗ ପ୍ରାଇମେରି ସ୍କୁଲଘର ପକ୍କା ନୁହେଁ । ସାତଶହଟି ସ୍କୁଲ ବିନା ଘରେ ଖୋଲା ପଡିଆରେ ଚାଲିଛି । ଅନେକ ସ୍କୁଲରେ ପିଇବା ପାଣି ଓ ଟଏଲେଟ୍ ବା ପାଇଖାନା ନାହିଁ । ବାଳିକା ବିଦ୍ୟାଳୟ ବନ୍ଦ କରି ଦିଆଯାଉଛି ।

ଶିକ୍ଷକ, ଶିକ୍ଷୟିତ୍ରୀ ହେଲେ ଶିକ୍ଷା ବ୍ୟବସ୍ଥାର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ପରିମାପକ । କିନ୍ତୁ ସର୍ବଭାରତୀୟ ସ୍ତରରେ ଶିକ୍ଷକ ତାଲିମ ଓ ନିଯୁକ୍ତି ବଢୁଥିବା ବେଳେ ଓଡ଼ିଶାରେ ଏହା କମିବାରେ ଲାଗିଛି । ଏଠାରେ ଶିକ୍ଷା କର୍ମୀ, ସହାୟକ, ସେବକ ଦିନ ମଜୁରିଆ ଠାରୁ କମ୍ ଦରମାରେ ଶିକ୍ଷାର ଭିତ୍ତିଭୂମି ବୋଲି କୁହାଯାଉଥିବା ପ୍ରାଇମେରି ଶିକ୍ଷାକୁ ଚଳାଉଛନ୍ତି । ଚାଳିଶ ହଜାରରୁ ଉର୍ଦ୍ଧ୍ୱ ଶିକ୍ଷକ ପଦବୀ ଖାଲି ପଡିଛି । ପ୍ରତି ଷାଠିଏ ଜଣ ଛାତ୍ରଙ୍କପାଇଁ ଅତି କମ୍‌ରେ ଜଣେ ଶିକ୍ଷକ ରହିବା କଥା ।

ଉଚ୍ଚ ଶିକ୍ଷା ଅବସ୍ଥା ଏହାଠାରୁ ଖରାପ । ଏଠାରେ ମାର୍କେଟ୍‌ରୁ ମାଷ୍ଟରଙ୍କୁ ଭଡାରେ ଅଣାଯାଇ କାମ ଚଳା ଯାଉଛି । ଅଧିକାଂଶ ଶିକ୍ଷାନୁଷ୍ଠାନରେ ଦୂରରୁ ଆସୁଥିବା ପିଲାଙ୍କ ପାଇଁ ହଷ୍ଟେଲ ନାହିଁ । ଆଦିବାସୀ ଅଞ୍ଚଳର ପିଲାଏ ନିଜ ଭାଷାରେ ପ୍ରାଥମିକ ଶିକ୍ଷାରୁ ବଞ୍ଚିତ । ତେଣୁ ସେ ଅଞ୍ଚଳରେ ସାକ୍ଷରତା ହାର ସବୁଠୁ କମ୍ । କୋଚିଂ ସେଣ୍ଟର ନାଁରେ ରାଜ୍ୟରେ ଏକ ସମାନ୍ତରାଳ ଶିକ୍ଷା ବ୍ୟବସ୍ଥା ଚାଲୁ ରହିଛି ।

ଶିକ୍ଷାର ଚତୁର୍ଥ ପରିମାପକ ହେଲା 'ଇମ୍ପାକ୍ଟ' ବା ଆମର ସମସ୍ତ ଶିକ୍ଷା ଉଦ୍ୟମର ଫଳାଫଳ କ'ଣ ? ଏବେ ବି ଆମ ରାଜ୍ୟର ୩୭ ଭାଗ ଲୋକ ନିରକ୍ଷର ଓ ଆଦିବାସୀମାନଙ୍କ ଭିତରେ ଏହାର ପରିମାଣ ଶତକଡା ୬୨ ଭାଗ । ପ୍ରତି ଛାତ୍ର ପିଛା ଶିକ୍ଷା ବ୍ୟୟରେ ଆମେ ବହୁ ରାଜ୍ୟଠାରୁ ପଛରେ ଅଛେ । ୬ ରୁ ୧୪ ବର୍ଷ ବୟସର ପ୍ରାୟ ୨୦ଭାଗ ପିଲା ସ୍କୁଲ ବାହାରେ ଅଛନ୍ତି । ଶିକ୍ଷା ବ୍ୟୟ ୧୯୯୪ ମସିହାର ସମୁଦାୟ ବଜେଟ୍‌ର ୧୭.୪୧% ଥିଲା ବେଳେ ଏବେ ତାହା କମି କମି ୨୦୦୭ରେ ହେଲାଣି ୭.୪୯% । ଅପର ପକ୍ଷରେ ଏକାଦଶ ପଞ୍ଚବାର୍ଷିକ ଯୋଜନା କାଳରେ କେନ୍ଦ୍ରର ଶିକ୍ଷା ବ୍ୟୟ ବଜେଟ୍‌ର ୧୯ ଭାଗ; ଦଶମ ପଞ୍ଚବାର୍ଷିକ ଯୋଜନାରେ ଥିବା ଶିକ୍ଷା ବଜେଟ୍‌ଠାରୁ ୫ ଗୁଣ ଅଧିକ । ତେଣୁ ଏବେ ଏକାଦଶ ପଞ୍ଚବାର୍ଷିକ ଯୋଜନାକୁ କୁହାଯାଉଛି 'ଏକାଦଶ ଶିକ୍ଷା ଯୋଜନା' ।

କିନ୍ତୁ ଏହି ଯୋଜନାର ସୁଫଳ ଓଡ଼ିଶାକୁ ମିଳିବ ନାହିଁ, କାରଣ ଆମର ସେଥିପାଇଁ ପ୍ରସ୍ତୁତି ନାହିଁ । ଶିକ୍ଷା ବିକାଶପାଇଁ ୨୦୧୨ ସୁଦ୍ଧା ଯେଉଁ ପାଞ୍ଚ ଲକ୍ଷ କୋଟି ଟଙ୍କା ବ୍ୟବସ୍ଥା ହୋଇଛି ସେଥିରୁ ଆମ ରାଜ୍ୟକୁ ଯାହା ମିଳିବ ତାକୁ ଖର୍ଚ୍ଚ କରିବାର ଶକ୍ତି ଆମର ନାହିଁ । ଆମ ରାଜ୍ୟ ଶିକ୍ଷା ବିଭାଗ ଛତିଶ ହଜାର ମାଲିମକଦ୍ଦମାରେ ଛନ୍ଦି ହୋଇ ଯାଇଛନ୍ତି, ଶିକ୍ଷାପାଇଁ ଚିନ୍ତା କରିବାକୁ କାହା ପାଖରେ ସମୟ ନାହିଁ । ଗ୍ରାମ୍ୟ ସ୍ତରରେ ପଞ୍ଚାୟତ ଓ ଶିକ୍ଷାବିଭାଗର ଦ୍ୱୈତ ଶାସନ ଚାଲିଛି ।

ସ୍କୁଲରେ ଉପସ୍ଥାନ ବଢାଇବାପାଇଁ କେନ୍ଦ୍ର ସରକାର ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମକୁ ୮୦ ପ୍ରତିଶତ ଅନୁଦାନ ଦିଅନ୍ତି । ସ୍କୁଲ ବାହାରେ ଥିବା ପିଲାଙ୍କୁ ସ୍କୁଲ ଆଣିବାକୁ ଚାଲିଛି ସର୍ବଶିକ୍ଷା ଅଭିଯାନ । କେବଳ ମଧ୍ୟାହ୍ନ ଭୋଜନପାଇଁ ଓଡ଼ିଶାକୁ କେନ୍ଦ୍ର ଅନୁଦାନ ବାର୍ଷିକ ପ୍ରାୟ ହଜାରେ କୋଟି ଟଙ୍କା । ଏହା ଓଡ଼ିଶା ବଜେଟ୍‌ର ଛଅ ଭାଗରୁ ଭାଗେ । ଏହା ଶିକ୍ଷାର ଗୁଣାତ୍ମକ ବିକାଶପାଇଁ କେତେ ଦୂର ସାହାଯ୍ୟ କରୁଛି ସେ ସମ୍ପର୍କରେ ଶିକ୍ଷାବିତ୍‌ମାନଙ୍କ ମଧ୍ୟରେ ବିଭିନ୍ନ ମତ ରହିଛି । ନିକଟରେ ଏକ ସର୍ବେକ୍ଷଣରୁ ଜଣାଯାଏ (ଏସ୍‌ର) ଯେ ଓଡ଼ିଶାରେ ପଞ୍ଚମ ଶ୍ରେଣୀରେ ପଢୁଥିବା ୪୪ ଭାଗ ପିଲା ଦ୍ୱିତୀୟ ଶ୍ରେଣୀପାଇଁ ଉଦ୍ଦିଷ୍ଟ ପଢା ବହି ପଢି ପାରନ୍ତି ନାହିଁ, କେବଳ ୩୨ ଭାଗ ମିଶାଣ, ଫେଡାଣ କରିପାରନ୍ତି, କେବଳ ୬୬ ଭାଗ ଘଣ୍ଟା ଦେଖି ଟାଇମ୍ କହିପାରନ୍ତି, ୬ ରୁ ୧୪ ବର୍ଷର ଶତକଡା ୭ ଭାଗରୁ ଅଧିକ ପିଲା ସ୍କୁଲ ଦୁଆର ଦେଖି ନାହାନ୍ତି । ଶିକ୍ଷକଙ୍କର ଲମ୍ବା ଜବ୍ ଚାର୍ଟ । ୭ ପିରିଅଡ୍ ପାଠ ପଢାଇବେ, ମଧ୍ୟାହ୍ନ ଭୋଜନ ତଦାରଖ କରିବେ, ନିର୍ବାଚନ, ଜନଗଣନା କାମ କରିବେ, ମିଟିଂ ଓ ଟ୍ରେନିଂ ଯିବେ, ଯାହା ପଢାଇବେ ତା'ର ପ୍ଲାନ୍ ତିଆରି କରିବେ ଇତ୍ୟାଦି । ଗୁଣାତ୍ମକ ଶିକ୍ଷାର ପ୍ରକୃତ ମାପ ଦଣ୍ଡ ହେଉଛି, କେତେ ଶିକ୍ଷକଙ୍କର ପିଲାଏ ସେଇ ସ୍କୁଲରେ ପଢୁଛନ୍ତି ଓ କେତେ ସରକାରୀ କର୍ମଚାରୀଙ୍କର ପିଲାଏ ସରକାରୀ ସ୍କୁଲରେ ପଢୁଛନ୍ତି ।

ସେହିପରି ଡ୍ରପ୍-ଆଉଟ୍ କାରଣ ସମ୍ପର୍କରେ ଅନ୍ୟ ଏକ ଅଧ୍ୟୟନରୁ ଜଣାଯାଏ ଯେ ଶିକ୍ଷାଦାନ ପ୍ରଣାଳୀରେ ଆଗ୍ରହ ଅଭାବରୁ ଶହେରୁ ୩୭ ପିଲା ସ୍କୁଲ ଛାଡି ଚାଲିଯାନ୍ତି । ଅଭିଭାବକଙ୍କ ଆଗ୍ରହ ଅଭାବରୁ ୧୨ ପ୍ରତିଶତ ସ୍କୁଲ ଛାଡନ୍ତି ଏବଂ ସ୍କୁଲରେ ଶିକ୍ଷା ସମ୍ପର୍କୀୟ ଚାପଯୋଗୁଁ ୧୬ଭାଗରୁ ଅଧିକ ପିଲା ପାଠ ଛାଡି ଦିଅନ୍ତି । କେବଳ ୧୧ ଭାଗ ପିଲା ଆର୍ଥିକ କାରଣରୁ ସ୍କୁଲ ଛାଡନ୍ତି । ତେଣୁ ପ୍ରଧାନ କାରଣ ହେଲା ଶିକ୍ଷାର ଗୁଣାତ୍ମକ ବିକାଶର ଅଭାବ, ଅଭିଭାବକଙ୍କ ଅର୍ଥାଭାବ ନୁହେଁ । ଏହି କାରଣରୁ ପ୍ରାଥମିକ ସ୍ତରରେ ମଧ୍ୟ ଆର୍ଥିକ ଅଭାବଗ୍ରସ୍ତ ଅଭିଭାବକମାନେ ଏବେ ପିଲାଙ୍କୁ ପ୍ରାଇଭେଟ୍ ସ୍କୁଲକୁ ପଠାଉଛନ୍ତି । ଓଡ଼ିଶାରେ ସରକାରୀ-ବେସରକାରୀ ସ୍କୁଲ ଅନୁପାତ ଏବେ ବି ୯୪:୬, କିନ୍ତୁ କେରଳରେ ପ୍ରତି ଶହେ ସ୍କୁଲରୁ ୪୨ ଟି ସରକାରୀ ଓ ୫୮ଟି ବେସରକାରୀ ।

କେରଳରେ ବଡ ବଡ କଳକାରଖାନା ନାହିଁ, କିନ୍ତୁ ବ୍ୟାପକ ଓ ସଫଳ ଶିକ୍ଷା ବ୍ୟବସ୍ଥାଯୋଗୁଁ ଏହି ରାଜ୍ୟକୁ ସିଙ୍ଗାପୁର ସହ ତୁଳନା କରାଯାଉଛି । ଆମ ଦେଶରେ ଶିକ୍ଷାରେ ଆଗୁଆ ରାଜ୍ୟମାନେ ହେଲେ କେରଳ, ଦିଲ୍ଲୀ, ତାମିଲନାଡୁ, ପଣ୍ଡିଚେରୀ, ଚଣ୍ଡୀଗଡ, କର୍ଣ୍ଣାଟକ, ହିମାଚଳ, ଆନ୍ଧ୍ର ଓ ମିଜୋରାମ । କିନ୍ତୁ ଶିକ୍ଷା ଦୃଷ୍ଟିରୁ

ବିଶ୍ୱସ୍ତରରେ ଭାରତର ସ୍ଥାନ ୧୦୨, ଚାଇନା ୩୦ ଓ କୋରିଆ ୬, ବାଂଲାଦେଶ ୧୦୭ ଓ ନେପାଳ ୧୧୨ଟି ଦେଶ ତଳେ । ଭାରତରେ ଯେଉଁ ଆଠଟି ରାଜ୍ୟ ସବା ତଳେ ଅଛନ୍ତି ସେମାନେ ହେଲେ ଓଡ଼ିଶା, ମଧ୍ୟ ପ୍ରଦେଶ, ଆସାମ, ଉତ୍ତର ପ୍ରଦେଶ, ପଶ୍ଚିମବଙ୍ଗ, ଅରୁଣାଚଳ ପ୍ରଦେଶ, ଝାଡଖଣ୍ଡ ଓ ବିହାର । କିନ୍ତୁ ସାକ୍ଷରତା ଦୃଷ୍ଟିରୁ ଓଡ଼ିଶା ସର୍ବଭାରତୀୟ ସ୍ତର ଓ ହାରର ପାଖାପାଖି ।

ଓଡ଼ିଶାର ଶିକ୍ଷା ବ୍ୟବସ୍ଥା ଓ ଅବସ୍ଥା ଉପରେ ଛୋଟ ବଡ ୨୭ଟି ଅଧ୍ୟୟନ ଓ ସର୍ବେକ୍ଷଣ ହୋଇ ସାରିଲାଣି । ବରିଷ୍ଠ ପ୍ରଶାସକ ଓ କେନ୍ଦ୍ର ଶିକ୍ଷା ନୀତି ପ୍ରଣୟନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିବା ଅଭିଜ୍ଞ ଶ୍ରୀ ପ୍ରସନ୍ନ କୁମାର ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଗଠିତ କମିଟି ଓଡ଼ିଶା ଶିକ୍ଷା ସଂସ୍କାର ସମ୍ପର୍କରେ ବିସ୍ତୃତ ରିପୋର୍ଟ ଦେଇଛନ୍ତି । ତେଣୁ ଆଉ ଅଧିକ ଚର୍ଚ୍ଚା ନ ହୋଇ କାମ ଆରମ୍ଭ ହେବା ଆବଶ୍ୟକ । କେନ୍ଦ୍ର ଓ ଅନେକ ରାଜ୍ୟରେ ବିଶିଷ୍ଟ ଶିକ୍ଷାବିତ୍‌ଙ୍କୁ ନେଇ ପରାମର୍ଶଦାତା ବୋର୍ଡ ଗଠିତ ହୋଇଛି । ଓଡ଼ିଶାରେ ଏପରି ବୋର୍ଡ ନାହିଁ । ଓଡ଼ିଶାରେ ବେକାରୀ ସୃଷ୍ଟି କରୁଥିବା ଶିକ୍ଷା ବ୍ୟବସ୍ଥାକୁ ଟିକିନିଖି ପରୀକ୍ଷା ଓ ମରାମତି କରି ନୂଆ ରୂପ ଦେବାର ଆବଶ୍ୟକତା ରହିଛି । ଆଜିଠାରୁ ଦ୍ୱାଦଶ ଓ ତ୍ରୟୋଦଶ ପଞ୍ଚବାର୍ଷିକ ଶିକ୍ଷା ଯୋଜନାପାଇଁ ଆଗୁଆ ପ୍ରସ୍ତୁତି ଦରକାର । ଗ୍ରାମାଞ୍ଚଳ ଶିକ୍ଷାନୁଷ୍ଠାନଗୁଡିକର ମୂଲ୍ୟବୋଧ ଶିକ୍ଷା ସହ ତୁରନ୍ତ ବୈଷୟିକୀକରଣ ଆବଶ୍ୟକ । ନୂଆ ସରକାର, ନୂଆ ଶିକ୍ଷା ମନ୍ତ୍ରୀ ଓ ନୂଆ ଚିନ୍ତାଧାରାର ଲୋକେ ବିଦ୍ୟାର୍ଥୀ, ଅଭିଭାବକ ଓ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ସାଙ୍ଗରେ ବସି ନୂଆ ଉଦ୍ୟମ ଆରମ୍ଭ କରନ୍ତୁ । ଶିକ୍ଷାଳୟ, ଚିକିତ୍ସାଳୟ ଓ ପଞ୍ଚାୟତର ବିକାଶ ଏବଂ ଦୃଢୀକରଣ ହେଲେ ଅଚିରେ ଓଡ଼ିଶାରୁ ଦାରିଦ୍ର୍ୟ ଲୋପ ହେବ । ଏବେଠୁ କାମ ଆରମ୍ଭ ହେଉ ।

*୭ ଏପ୍ରିଲ, ୨୦୦୯*



# ଆସ ଶୁଣିବା ଗାନ୍ଧୀ କଥା

ସମ୍ବାଦରେ 'ଆସ ଶୁଣିବା ଗାନ୍ଧୀ କଥା' ହେଡ଼୍‌ଲାଇନ୍ ପଢ଼ି ଜଣେ ବନ୍ଧୁ ଟେଲିଫୋନ୍‌ରେ ପଚାରିଲେ ସତରେ ଆସୁଛନ୍ତି ନାରାୟଣ ଦେଶାଇ ? କେତେଦିନ ପାଇଁ । କେଉଁଠି ? କେତେବେଳେ ? ଉତ୍ତର ଦେଇ କହିଲି, ମାର୍ଚ୍ଚ ମାସ ୫ ତାରିଖ ଗୁରୁବାରଠୁ ୯ ତାରିଖ ସୋମବାର ପର୍ଯ୍ୟନ୍ତ ପ୍ରତ୍ୟହ ସନ୍ଧ୍ୟା ୫.୩୦ରେ ଗାନ୍ଧୀ କଥା କହିବେ ନାରାୟଣ ଭାଇ । ଭଜନ, କୀର୍ତ୍ତନ, କାହାଣୀ ମାଧ୍ୟମରେ ବାପୁଙ୍କ ଜୀବନ, ଦର୍ଶନ, ଆଦର୍ଶ ଓ ସଂଘର୍ଷ ପରିବେଷଣ କରିବେ ଗାନ୍ଧୀବାଦର ଏହି ମହାନ୍ ପ୍ରବକ୍ତା । ସଚିବାଳୟ ମାର୍ଗରେ ରେଡକ୍ରସ୍ ଭବନ ପାଖ ସ୍ୱାଧୀନତା ସଂଗ୍ରାମୀ ପ୍ରାଙ୍ଗଣରେ ସଂଗ୍ରାମର ମହାନାୟକଙ୍କୁ ଆମ ପାଖରେ ପୁଣି ପହଞ୍ଚାଇବେ ନାରାୟଣ ଭାଇ । ଶୁଣି କହିଲେ 'ଭୁବନେଶ୍ୱରରେ ଗାନ୍ଧୀ କଥା ? ଇଏତ ଲଙ୍କାରେ ହରି ଶବ୍ଦ ଭଳି ଲାଗୁଛି । କହିଲି - ଆପଣ ଆଗ ଆସନ୍ତୁ ଓ ଶୁଣନ୍ତୁ ଏବଂ ଶୁଣି ସାରିଲା ପରେ ଅନୁଭବ କରିବେ ଆପଣ ଲଙ୍କାରେ ନୁହେଁ, ଅଯୋଧ୍ୟା, ବୃନ୍ଦାବନ ବା ସାବରମତୀରେ ଅଛନ୍ତି । ଦେଶ ବିଦେଶର ୭୦ଟି ଜାଗାରେ ଲକ୍ଷାଧିକ ଲୋକଙ୍କୁ ଗାନ୍ଧୀ କଥା ଶୁଣାଇଲେଣି ନାରାୟଣ ଭାଇ । ଏବେ ଓଡ଼ିଶା ପାଳି । ଗାନ୍ଧୀଙ୍କ ପଟ୍ଟଶିଷ୍ୟ ମହାଦେବ ଦେଶାଇଙ୍କ ସୁପୁତ୍ର ନାରାୟଣ ଭାଇଙ୍କର ଓଡ଼ିଶା ସହ ସମ୍ପର୍କ ସ୍ୱତନ୍ତ୍ର । ଆମ ରାଜ୍ୟର ସର୍ବ ସମ୍ମାନିତ ସ୍ୱର୍ଗତ ମୁଖ୍ୟମନ୍ତ୍ରୀ ଓ ସର୍ବୋଦୟ ନେତା ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ସେ ଜାମାତା । ବାଲ୍ୟ ଜୀବନ କଟାଇଥିଲେ ସାବରମତୀ ଆଶ୍ରମରେ, ଯେଉଁଠି ସୋସିଆଲ ଇଞ୍ଜିନିୟରିଂର ପରୀକ୍ଷା ନିରୀକ୍ଷା ଚାଲିଥିଲା । ଗାନ୍ଧୀଙ୍କୁ ଅତି ନିକଟରୁ ଦେଖିଥିଲେ ଓ ଜାଣିଥିଲେ । ସେଇ ଅନୁଭୂତି ଓ କଥା କହିବେ । ଓଡ଼ିଶା ପ୍ରତି ଗାନ୍ଧୀଙ୍କର ଥିଲା ସ୍ୱତନ୍ତ୍ର ଦରଦ । ୧୯୨୧ ରୁ ୧୯୪୬ ମଧ୍ୟରେ ସେ ୮ ଥର ଓଡ଼ିଶା ଗସ୍ତରେ ଆସିଥିଲେ ଓ ଲୋକଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲେ । ୧୯୪୬ ମସିହା ଜାନୁଆରି

୨୦ ତାରିଖ ଥିଲା ଗାନ୍ଧୀଙ୍କର ଶେଷ ଓଡ଼ିଶା ଗସ୍ତ । ତାଙ୍କ ଚିତାଭସ୍ମ ଥିବା କଳସଟି ଅନେକଙ୍କ ଅଜାଣତରେ ୧୯୯୭ ମସିହା ପର୍ଯ୍ୟନ୍ତ ପୁରୀରୁ ଯାଇ କଟକ ଇମ୍ପେରିଆଲ୍ ବ୍ୟାଙ୍କ୍‌ରେ ଥିଲା । ଏହା ଜାଣିବା ପରେ ତାଙ୍କ ଅଣନାତି ତୁଷାର ଗାନ୍ଧୀ ଏହାକୁ ଗ୍ରହଣ କରି ଗଙ୍ଗାରେ ବିସର୍ଜନ କରିଥିଲେ ।

କୃଷ୍ଣକାୟ ବାରାକ୍ ହୁସେନ୍ ଓବାମା ଆମେରିକା ରାଷ୍ଟ୍ରପତି ହେବା ପରେ ଆଉ ଥରେ ସାରା ବିଶ୍ୱରେ ଗାନ୍ଧୀବାଦ ଓ ବିଚାରଧାରା ଉପରେ ଆଲୋଚନା ଆରମ୍ଭ ହେଲାଣି । ବର୍ଣ୍ଣବୈଷମ୍ୟ ବିରୋଧରେ ପ୍ରଥମ ସ୍ୱର ଉତ୍ତୋଳନ କରିଥିଲେ ଗାନ୍ଧୀ ଓ ଦକ୍ଷିଣ ଆଫ୍ରିକାରେ ପ୍ରଥମ ଥରପାଇଁ ବ୍ରିଟିଶ ସାମ୍ରାଜ୍ୟକୁ ସାମ୍ନା କରିଥିଲେ । ଆଫ୍ରିକା ଓ ଆମେରିକାରେ ଯେଉଁ ଦୁଇ ମହାନ୍ ନେତା ଗାନ୍ଧୀଙ୍କଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ ସେମାନେ ହେଲେ ମାର୍ଟିନ୍ ଲୁଥର କିଙ୍ଗ୍ ଓ ନେଲ୍‌ସନ୍ ମାଣ୍ଡେଲା । ଉଭୟେ ଅହିଂସା, ଅସହଯୋଗ ଓ ସତ୍ୟାଗ୍ରହ ପନ୍ଥା ଅନୁସରଣ କରି ସଂଗ୍ରାମ ଚଳାଇଥିଲେ । ଫଳସ୍ୱରୂପ ଆଫ୍ରିକାରେ ବ୍ରିଟିଶ ସାମ୍ରାଜ୍ୟର ଶେଷ ଦୁର୍ଗ ଭୁଶୁଡି ପଡିଲା ଓ ଆମେରିକାରେ କୃଷ୍ଣକାୟମାନଙ୍କ ମାନବ ଅଧିକାର ସ୍ୱୀକୃତ ହେଲା । ଓବାମାଙ୍କ ବିଜୟ ଏଇ ପ୍ରକ୍ରିୟାର ସଦ୍ୟ ଫଳ । ଏହା ଗାନ୍ଧୀ ଦର୍ଶନର ବିଜୟ, ମାନବତାର ବିଜୟ । ଅସ୍ପୃଶ୍ୟତା ଓ ଜାତିବାଦର ଘୋର ବିରୋଧୀ ଥିଲେ ବାପୁ । ଏବଂ ଅସବର୍ଣ୍ଣ ବିବାହର ଦୃଢ଼ ସମର୍ଥକ । କହୁଥିଲେ ଅଜାତିରେ ବାହା ହେଲେ ଆଶୀର୍ବାଦ କରିବି କିନ୍ତୁ ଅସବର୍ଣ୍ଣ ବିବାହ ହେଲେ ନିଜେ ଉପସ୍ଥିତ ରହିବି । ତାଙ୍କର ସବୁ ପିଲାଏ ଅଜାତି ଓ ଅସବର୍ଣ୍ଣ ବିବାହ କରିଥିଲେ । ପ୍ରକୃତରେ ଯେ ସଂକଳ୍ପରେ ଦୃଢ଼ ଓ ଯାହାଙ୍କର ବିଚାର ଶୁଦ୍ଧ ତଥା କଥା ଓ କାମରେ ଯାହାର ଫରକ ନାହିଁ, ସେ ଗାନ୍ଧୀ - ସେଇମାନଙ୍କ ସଂଖ୍ୟା ବଢାଇବାପାଇଁ ବାହାରିଛନ୍ତି ନାରାୟଣ ଭାଇ । ସାଙ୍ଗରେ ଆଉ ଅନେକ ଭାଇ ଭଉଣୀ । ଗାନ୍ଧୀଙ୍କ ବାର୍ତ୍ତା ପ୍ରଚାର, ପ୍ରସାରପାଇଁ ଦେଶ ବିଦେଶରେ ବୁଲୁଛନ୍ତି ।

ଆଜିକୁ ୨୭ ବର୍ଷ ତଳେ ୧୯୮୨ ମସିହାରେ ସାରା ବିଶ୍ୱରେ ଚହଳ ସୃଷ୍ଟି କରିଥିଲା ରିଚାର୍ଡ ଆଟେନ୍‌ବରୋଙ୍କ ନିର୍ଦ୍ଦେଶିତ ଓସ୍କାର ବିଜୟୀ ଚଳଚ୍ଚିତ୍ର 'ଗାନ୍ଧୀ' । ଜଣେ ବ୍ୟକ୍ତିଙ୍କ ଜୀବନ କାଳ୍ପନିକ କାହାଣୀଗୁଡିକଠାରୁ ଏପରି ଅଧିକ ଚିତ୍ତାକର୍ଷକ ହୋଇପାରେ - ଏକଥା ପ୍ରମାଣ କରିଦେଲା 'ଗାନ୍ଧୀ' ଚଳଚ୍ଚିତ୍ର । ସେତେବେଳର ନାମକରା ସେକ୍‌ସି ହିରୋ ରିଚାର୍ଡ୍ ବର୍ଟନ୍‌ଙ୍କୁ ଚଳଚ୍ଚିତ୍ରର ନାୟକ ଭାବରେ ନେବାକୁ ଆଟେନ୍‌ବରୋଙ୍କ ଉପରେ ପ୍ରବଳ ଚାପ ପକାଯାଇଥିଲା । ପ୍ରଡ୍ୟୁସରମାନେ କହିଲେ

ଗାନ୍ଧୀଙ୍କ ଯୌନ ଜୀବନକୁ ଅତିରଞ୍ଜିତ କରି ଦେଖାଇଲେ ଆମେ ଏ ଚିତ୍ରରେ ପଇସା ଖଟାଇବୁ । ଏଲିଜାବେଥ୍ ଟେଲରଙ୍କୁ କସ୍ତୁରବା ରୋଲ୍‌ରେ ନେବାପାଇଁ ପରାମର୍ଶ ଆସିଥିଲା । କିନ୍ତୁ ସେ ଏହାକୁ ଏଡାଇ ଦେଇଥିଲେ । ଗାନ୍ଧୀଙ୍କ ବିଷୟରେ ୨୦ ବର୍ଷ ଧରି ଗବେଷଣା କରିଥିଲେ ସେ । ୧୯୩୧ ମସିହାରେ ତାଙ୍କୁ ଯେତେବେଳେ ଆଠ ବର୍ଷ, ପ୍ରଥମ ଥରପାଇଁ ଗାନ୍ଧୀଙ୍କୁ ଲଣ୍ଡନରେ ଦେଖି ପ୍ରଭାବିତ ହୋଇଥିଲେ ଆଟେନ୍‌ବରୋ । ଆମେରିକା ଓ ୟୁରୋପ୍‌ର ଅନେକ ସିନେମା ହଲ୍‌ରେ ତାଙ୍କ ନିର୍ମିତ ଗାନ୍ଧୀ ଚଳଚ୍ଚିତ୍ରଟି ଦେଖିସାରିଲା ପରେ ବି ଦର୍ଶକମାନେ ନିଜ ନିଜ ସିଟ୍‌ରେ ଭାବ ବିଭୋର ଅବସ୍ଥାରେ ବସି ରହୁଥିଲେ । ଏହାକୁ ଦେଖି ସାରିଲା ପରେ ପାଲେଷ୍ଟାଇନ୍ ଆନ୍ଦୋଳନର ବିପ୍ଳବୀ ନେତା ୟାସେର୍ ଆରାଫାତ୍ ଆନ୍ଦୋଳନର ମୋଡ ବଦଳାଇ ଦେଇଥିଲେ । ମଧ୍ୟପ୍ରାଚ୍ୟ ଓ ଆରବ ଦେଶମାନଙ୍କରେ ଗାନ୍ଧୀ ବିଚାରଧାରା ବିଶେଷ ଆଦୃତ ହୋଇଥିଲା । ପୃଥିବୀର ବଡ ବଡ ବହି ଦୋକାନରୁ ଗାନ୍ଧୀଙ୍କ ଆତ୍ମ ଜୀବନୀ ସରି ଯାଇଥିଲା । ଆତଙ୍କବାଦ ଓ ହିଂସା ମାଧ୍ୟମରେ ବିପ୍ଳବପାଇଁ ଲାଗିଥିବା ଲୋକଙ୍କ ମନରେ ନିଜ ସଂଗ୍ରାମ ପଦ୍ଧତି ସମ୍ପର୍କରେ ସଂଶୟ ସୃଷ୍ଟି ହୋଇଥିଲା । ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନ ଦୁର୍ବଳ ହୋଇଯାଇଥିଲା । ଗାନ୍ଧୀ ବିଚାରର ଉଜ୍ଜ୍ୱଳ ଆଲୋକରେ ମାର୍କ୍ସ, ଲେନିନ୍‌ଙ୍କ ବିଚାର ନିଷ୍ପ୍ରଭ ହୋଇଯାଇଥିଲା ।

ଗାନ୍ଧୀଙ୍କର ଅନେକ ସମାଲୋଚକ ଓ ନିନ୍ଦୁକ ମଧ୍ୟ ଥିଲେ । ସେମାନଙ୍କ ମଧ୍ୟରେ ପ୍ରଥମ ସ୍ଥାନରେ ଥିଲେ ତତ୍କାଳୀନ ଇଂଲଣ୍ଡ ପ୍ରଧାନମନ୍ତ୍ରୀ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ । ଗାନ୍ଧୀଙ୍କ କଥା ପଡିଲେ ପ୍ରତିକ୍ରିୟାରେ କହୁଥିଲେ "ଓ ସେଇ ଅଧା ଲଙ୍ଗଳା ଫକୀରଟା ତ ?" ଏହି ଅଧା ଲଙ୍ଗଳା ଫକୀର ଯେତେବେଳେ ବ୍ରିଟିଶ୍ ସାମ୍ରାଜ୍ୟର ସମ୍ରାଟଙ୍କୁ ବକିଙ୍ଗ୍‌ହାମ୍ ଉଆସରେ ଭେଟି ଫେରୁଥିଲେ, ସାମ୍ବାଦିକମାନେ ପଚାରିଲେ ଆପଣ ଅଧା ପୋଷାକରେ କେମିତି ଆମ ରାଜାଙ୍କୁ ଭେଟିଲେ ? ଅଳ୍ପ ହସି ଗାନ୍ଧୀ କହିଲେ, ଆପଣମାନଙ୍କ ରାଜା ଏତେ ଅଧିକ ପୋଷାକ ପିନ୍ଧିଛନ୍ତି ଯେ ତାହା ଆମ ଦି ଜଣଙ୍କ ପୂରା ପୋଷାକଠୁ ଅଧିକ ହେବ । ନେତାଜୀ ସୁବାସ, ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ ପନ୍ଥାକୁ ପସନ୍ଦ କରୁନଥିଲେ, କିନ୍ତୁ ତାଙ୍କୁ ଗଭୀର ସମ୍ମାନ କରୁଥିଲେ । ତାଙ୍କ ମତକୁ ବିରୋଧ କରୁଥିବା ଜିନ୍ନାଙ୍କୁ ସେ ଭାରତର ପ୍ରଧାନମନ୍ତ୍ରୀ କରି ଦେଶକୁ ବିଭାଜନରୁ ରକ୍ଷା କରିବାକୁ ଚାହୁଁଥିଲେ ।

ଗାନ୍ଧୀଙ୍କଦ୍ୱାରା ସବୁଠୁ ବେଶୀ ପ୍ରଭାବିତ ହୋଇଥିଲେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଲବର୍ଟ ଆଇନ୍‌ଷ୍ଟାଇନ୍ । ୧୯୩୧ ମସିହା ସେପ୍ଟେମ୍ବର ମାସରେ ଗାନ୍ଧୀଙ୍କୁ ଚିଠି

ଲେଖିଥିଲେ : "ସମ୍ମାନନୀୟ ଗାନ୍ଧୀଜୀ ! ଆପଣ ହିଂସାରେ ବିଶ୍ୱାସ କରୁଥିବା ଲୋକଙ୍କୁ ନିଜ କାମଦ୍ୱାରା ଦେଖାଇ ଦେଇଛନ୍ତି ଯେ ଅହିଂସାଦ୍ୱାରା ପୃଥିବୀର ସବୁ ସମସ୍ୟାର ସମାଧାନ ହୋଇ ପାରିବ । ମୁଁ ଆଶା କରୁଛି ଆପଣଙ୍କ ବାର୍ତ୍ତା ଓ ଉଦାହରଣ ଭାରତ ସୀମା ଅତିକ୍ରମ କରି ଦିନେ ସାରା ମାନବ ସମାଜଦ୍ୱାରା ଆଦୃତ ହେବ ଏବଂ ଆପଣଙ୍କ ଦର୍ଶନ ଓ ବିଚାର ଅନୁସରଣରେ ଏକ ବିଶ୍ୱ ସଂସ୍ଥା ଗଠିତ ହେବ ।" ଗାନ୍ଧୀଙ୍କ ହତ୍ୟା ଖବର ପାଇଲା ପରେ ଆଇନ୍‌ଷ୍ଟାଇନ୍ ଦୁଃଖରେ ଭାଙ୍ଗି ପଡିଥିଲେ ଏବଂ କହିଥିଲେ - 'ଆଗାମୀ ପିଢି ବିଶ୍ୱାସ କରି ପାରିବେ ନାହିଁ କି ରକ୍ତ ମାଂସ ଶରୀର ନେଇ ଏଭଳି ଜଣେ ବ୍ୟକ୍ତି ପୃଥିବୀ ପୃଷ୍ଠରେ ଅବତୀର୍ଣ୍ଣ ହୋଇଥିଲେ ।' କିନ୍ତୁ ଆଇନ୍‌ଷ୍ଟାଇନ୍‌ଙ୍କ କଥା ସତ ହେଲା - ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପରେ ଶାନ୍ତିପାଇଁ ଗଠିତ ହେଲା ମିଳିତ ଜାତିସଙ୍ଘ ଏବଂ ଗାନ୍ଧୀଙ୍କ ମହାପ୍ରୟାଣରେ ଜାତିସଙ୍ଘ ଇତିହାସରେ ପ୍ରଥମ ଥରପାଇଁ ସରକାରୀ କ୍ଷମତା ବଳୟର ବାହାରେ ଥିବା ଜଣେ ସମ୍ପୂର୍ଣ୍ଣ ବେସରକାରୀ ବ୍ୟକ୍ତିଙ୍କ ସମ୍ମାନରେ ରାଷ୍ଟ୍ର ସଙ୍ଘ ପତାକା ଅର୍ଦ୍ଧନମିତ ହେଲା । ଏବେ ୨୦୦୭ ମସିହା ଜୁନ୍ ୧୫ ତାରିଖ ଦିନ ମିଳିତ ଜାତିସଙ୍ଘର ଜେନେରାଲ୍ ଆସେମ୍ବ୍ଲିରେ ୧୯୨ଟି ଦେଶର ପ୍ରତିନିଧିମାନେ ଏକାଠି ବସି ଗାନ୍ଧୀଙ୍କ ଜନ୍ମଦିନ ଅକ୍ଟୋବର ୨ ତାରିଖକୁ ପ୍ରତିବର୍ଷ "ଆନ୍ତର୍ଜାତିକ ଅହିଂସା ଦିବସ" ଭାବେ ପାଳନ କରିବାକୁ ଘୋଷଣା କରି ବାପୁଙ୍କୁ ଏକ ମହାନ୍ ବିଶ୍ୱ ମାନବର ସମ୍ମାନ ଦେଇଛନ୍ତି । ଏବଂ ଏହା ପୂର୍ବରୁ ୨୦୦୦ ମସିହାରେ ବିଶ୍ୱର ଦୁଇ ହଜାର ବୁଦ୍ଧିଜୀବୀଙ୍କୁ ପଚରା ଯାଇଥିଲା ବୁଦ୍ଧ ଓ ଯୀଶୁଙ୍କ ପରେ କେଉଁ ବ୍ୟକ୍ତି ଏପର୍ଯ୍ୟନ୍ତ ମାନବ ଇତିହାସକୁ ସବୁଠୁ ବେଶୀ ପ୍ରଭାବିତ କରିଛନ୍ତି ? ଅଧିକାଂଶଙ୍କ ଉତ୍ତର ଥିଲା - ଆଇନ୍‌ଷ୍ଟାଇନ୍ ଓ ଗାନ୍ଧୀ ।

"ଗାନ୍ଧୀ ପରେ ଗାନ୍ଧୀ" ଲେଖାରେ ମନୋବୈଜ୍ଞାନିକ ଆଶିଷ ନନ୍ଦୀ ୪ ପ୍ରକାର ଗାନ୍ଧୀଙ୍କ ବିଷୟରେ ଲେଖିଛନ୍ତି - ୧) ରାଷ୍ଟ୍ରପିତା ଗାନ୍ଧୀ (୨) ଗାନ୍ଧୀବାଦୀଙ୍କ ଗାନ୍ଧୀ (୩) ଜନବିରୋଧୀ ନୀତିର ବିରୋଧୀ ଅକଡ଼ବାଗିଆ ଗାନ୍ଧୀ (୪) ଲୋକେ ଶୁଣିଥିବା କିନ୍ତୁ ଜାଣି ନଥିବା ଗାନ୍ଧୀ । କିନ୍ତୁ ପଞ୍ଚମ ଗାନ୍ଧୀ ହେବେ ଦଲାଇଲାମା, ମାର୍ଟିନ୍ ଲୁଥର କିଙ୍ଗ୍ (ଜୁନିଅର୍), ନେଲ୍‌ସନ୍ ମାଣ୍ଡେଲା, ଓ୍ୱାଲେସା, ଡେସ୍‌ମଣ୍ଡ ଟୁଟୁ, ବେନିଟୋ ଆକ୍ୱିନୋ, ଅଙ୍ଗସାନ୍ ସୁ କି ଓ ଓବାମାଙ୍କ ଗାନ୍ଧୀ । ନେଲ୍‌ସନ୍ ମାଣ୍ଡେଲାଙ୍କୁ ଗାନ୍ଧୀଙ୍କର ଯେଉଁ କଥାଟି ସବୁଠୁ ଭଲ ଲାଗିଥିଲା ସେଇଟି ହେଲା 'ମତେ ଯଦି ଭୀରୁତା ଓ ହିଂସା ମଧ୍ୟରୁ ଗୋଟିଏକୁ ବାଛିବାକୁ କୁହାଯିବ, ମୁଁ ହିଂସା ସପକ୍ଷରେ ରହିବି' । ଆତ୍ମ ମର୍ଯ୍ୟାଦା ହାନିର ମୂକସାକ୍ଷୀ ହେବା ଅପେକ୍ଷା ଆତ୍ମ ସମ୍ମାନ ରକ୍ଷାପାଇଁ ହିଂସା ବରଂ ଶ୍ରେୟସ୍କର ।

ଏହି ବିଶ୍ୱ ମାନବଙ୍କ ଜୀବନ ଗାଥା ହେଉଛି ଗାନ୍ଧୀ କଥା । ସବୁ କାମ ଛାଡି ଲୋକେ ଗାନ୍ଧୀ କଥା ଶୁଣିବାକୁ ଦଉଡି ଆସିବାର ଅନ୍ୟ ଏକ ପ୍ରଧାନ କାରଣ ଗାନ୍ଧୀ ଏଭଳି ଏକ ବିରଳ ବ୍ୟକ୍ତିତ୍ୱ ଯାହାଙ୍କ କଥା ଓ କାମରେ ଫରକ ନଥିଲା ଏବଂ ସେ ଏପରି ଗୋଟିଏ ହେଲେ ରାଜନୈତିକ କାର୍ଯ୍ୟକ୍ରମ ଆରମ୍ଭ କରି ନାହାନ୍ତି, ଯାହା ସହିତ କୌଣସି ସାମାଜିକ ଓ ରଚନାତ୍ମକ କାର୍ଯ୍ୟକ୍ରମ ଯୋଡି ହୋଇ ନାହିଁ । ସ୍ୱଦେଶୀ ଆନ୍ଦୋଳନ ଓ ବିଦେଶୀ ବସ୍ତ୍ର ବର୍ଜନ ସହ ଚରଖା ଓ ଖଦୀ, ଅସ୍ପୃଶ୍ୟତା ନିବାରଣ ସହ ପାଇଖାନା ଓ ଗ୍ରାମ ସଫାଇ ଇତ୍ୟାଦି । ଶିକ୍ଷା, ସ୍ୱାସ୍ଥ୍ୟ, ପରିବେଶ ସୁରକ୍ଷା, ମହିଳା ସଶକ୍ତୀକରଣ, ପଞ୍ଚାୟତିରାଜ, ଗ୍ରାମ ସ୍ୱରାଜ, କୁଟୀର ଶିଳ୍ପ, ଜଳ, ପରିମଳ, କୃଷି, ଧର୍ମ, ସମାଜ ସଂସ୍କାର, ବ୍ୟକ୍ତି ସ୍ୱାଧୀନତା, ବ୍ରହ୍ମଚର୍ଯ୍ୟ, ପ୍ରାକୃତିକ ଚିକିତ୍ସା ଏପରି କୌଣସି ବିଷୟ ନାହିଁ, ଯାହା ଉପରେ ଗାନ୍ଧୀଙ୍କର ନିଜସ୍ୱ ମତ ଓ ବିଚାରଧାରା ନାହିଁ । ଏବଂ ତାଙ୍କ ପ୍ରତିଟି କହିବା କଥା ଏବେ ଆପ୍ତ ବାକ୍ୟ ଭାବରେ ଉଦ୍ଧୃତ ହେଉଛି । ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଗାନ୍ଧୀ ଦର୍ଶନ ଆଜି ଅଧ୍ୟୟନ ଓ ଗବେଷଣାର ବିଷୟବସ୍ତୁ ।

ଏବେ ମ୍ୟାନେଜମେଣ୍ଟ ବିଶାରଦମାନେ କହିଲେଣି, ଗାନ୍ଧୀ ଥିଲେ ପୃଥିବୀର ସର୍ବଶ୍ରେଷ୍ଠ ସଫଳ ମ୍ୟାନେଜର, ସର୍ବଶ୍ରେଷ୍ଠ ପରିବେଶ ବିଜ୍ଞାନୀ, ସର୍ବଶ୍ରେଷ୍ଠ ଶିକ୍ଷା ଓ ସ୍ୱାସ୍ଥ୍ୟ ବିଶେଷଜ୍ଞ, ସର୍ବଶ୍ରେଷ୍ଠ ଯୋଜନା ବିଶାରଦ । ସବୁଠୁ ବଡ ମାନବ ବିଜ୍ଞାନୀ ଇତ୍ୟାଦି । 'ଲଗେ ରହୋ ମୁନା ଭାଇ' ଦେଖିଲା ପରେ ଭାରତୀୟ ଯୁବ ପିଢି ଗାନ୍ଧୀ ଓ ଗାନ୍ଧୀଗିରି ପ୍ରତି ଆକୃଷ୍ଟ ହେଲେଣି । ପୃଥିବୀ ଓ ମାନବ ସମାଜକୁ ରକ୍ଷା କରିବାକୁ ହେଲେ ଗାନ୍ଧୀଙ୍କ ବାଟରେ ଚାଲିବାକୁ ପଡିବ ବୋଲି ବଡ ବଡ ସମାଜ ବିଜ୍ଞାନୀମାନେ କହିଲେଣି । ଏ ବାଟଟି ପ୍ରକୃତରେ କ'ଣ ଅନେକ ଜାଣି ନାହାନ୍ତି, ବୁଝି ନାହାନ୍ତି ବା ବୁଝିବାକୁ ସମୟ ସୁଯୋଗ ପାଇନାହାନ୍ତି । ବେଳେବେଳେ କୁହାଯାଏ ଗାନ୍ଧୀଙ୍କୁ ବୁଝିବାକୁ ହେଲେ ଗାନ୍ଧୀ ହୋଇ ଜନ୍ମ ହେବାକୁ ପଡିବ । ଏହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ନାରାୟଣ ଭାଇଙ୍କ ଭଳି ଲୋକେ ଦେଶ ବିଦେଶ ବୁଲି ଅତି ସରଳ, ସାବଲୀଳ, ସଙ୍ଗୀତମୟ ଭାଷାରେ ଗାନ୍ଧୀ କଥା କହୁଛନ୍ତି; ଗାନ୍ଧୀଙ୍କ ସମ୍ପର୍କରେ ଯାହା ମନରେ ଯୋଉ ପ୍ରଶ୍ନ ଅଛି ତା'ର ଉତ୍ତର୍ ଦେଉଛନ୍ତି । ଗାନ୍ଧୀବାଦ ଏକ ରକେଟ୍ ବିଜ୍ଞାନ ନୁହେଁ ଯାହା ଶୁଣିଲେ ବୁଝି ହେବ ନାହିଁ କିମ୍ବା ବୁଝିଲେ କାମରେ ଲାଗିବ ନାହିଁ । ଏହା ଏକ ଦୈନନ୍ଦିନ ବିଚାର ଓ ଆଚାର ବିଜ୍ଞାନ, ମାନବ କଲ୍ୟାଣକାରୀ ଓ ବିଶ୍ୱଦର୍ଶନ । ତେଣୁ ଯେତେବେଳେ ଆଟେନ୍‌ବରୋ ଗାନ୍ଧୀ ଫିଲ୍ମ ଗବେଷଣାପାଇଁ ପଣ୍ଡିତ ନେହେରୁଙ୍କୁ ଭେଟିଥିଲେ, ନେହେରୁ ତାଙ୍କୁ ପରାମର୍ଶ ଦେଇ କହିଥିଲେ, ବାପୁ ନିଶ୍ଚୟ ଜଣେ ମହାମାନବ, କିନ୍ତୁ ତାଙ୍କୁ କେବେହେଲେ ଦେବତା ଭାବରେ ଚିତ୍ରଣ କରିବ ନାହିଁ ।

ଡାକ ଟିକଟ ଜଗତରେ ମଧ୍ୟ ଗାନ୍ଧୀ ଏକ ପୁରୁଣା ମୁହଁ । ପୃଥିବୀର ୮୦ଟି ଦେଶରେ ୨୫୦ ରୁ ଅଧିକ ସ୍ୱତନ୍ତ୍ର ଡାକଟିକଟ ବାହାରିଛି ଗାନ୍ଧୀଙ୍କ ନାଁରେ । ଏପର୍ଯ୍ୟନ୍ତ ପୃଥିବୀର ଅନ୍ୟ କୌଣସି ନେତାଙ୍କ ନାଁରେ ବା ସ୍ମୃତିରେ ଏତେ ଡାକଟିକଟ ବାହାରି ନାହିଁ । ପ୍ରଥମ ଥରପାଇଁ ୧୯୬୧ ମସିହା ଜାନୁଆରି ୨୬ ତାରିଖ ଦିନ ଯୁକ୍ତରାଷ୍ଟ୍ର ଆମେରିକାରେ ଗାନ୍ଧୀଙ୍କ ସ୍ମୃତିରେ ଏକ ସମୟରେ ଦୁଇଟି ସ୍ୱତନ୍ତ୍ର ଡାକଟିକଟ ବାହାରିଥିଲା । (ଚମ୍ପିଆନ୍ ଅଫ୍ ଲିବର୍ଟି ସିରିଜ୍) । ଦ୍ୱିତୀୟ ଦେଶ ଥିଲା ଆଫ୍ରିକାର କଙ୍ଗୋ (୧୯୬୭ ମସିହା) । ଏମିତି କେତେ ଅସରନ୍ତି କାହାଣୀ ।

*୪ ମାର୍ଚ୍ଚ, ୨୦୦୯*



# 'ବେଦାନ୍ତ' ବିତର୍କରୁ 'ଆନନ୍ଦ ପାଠଶାଳା' ପର୍ଯ୍ୟନ୍ତ

ନିକଟରେ 'ବେଦାନ୍ତ ବିଶ୍ୱବିଦ୍ୟାଳୟର ପ୍ରାସଙ୍ଗିକତା' ଉପରେ ଦୁଇଟି ଆଲୋଚନା ଚକ୍ରରେ ଯୋଗ ଦେବାପାଇଁ ଡାକରା ଆସିଥିଲା । ମୁଖ୍ୟ ଉଦ୍ୟୋକ୍ତା ଥିଲେ 'ପୁରୀ ଭିଜନ୍ ଓ ଓଡ଼ିଶା ଭିଜନ୍ ।' ପ୍ରଥମ ଆଲୋଚନାଟି ଭୁବନେଶ୍ୱର 'ସିଓ୍ୱାଇଏସ୍‌ଡି' ପରିସରରେ ଓ ଦ୍ୱିତୀୟଟି ପୁରୀ ଟାଉନ୍ ହଲ୍‌ରେ ଅନୁଷ୍ଠିତ ହୋଇଥିଲା । ଏଭଳି ବିବାଦୀୟ ଆଲୋଚନାରେ ଯୋଗ ନ ଦେବାକୁ କେତେକ ଯୁବବନ୍ଧୁଙ୍କ ପରାମର୍ଶ ସତ୍ତ୍ୱେ, ଉଦ୍ୟୋକ୍ତାମାନଙ୍କ କଥା ଭାଙ୍ଗି ନ ପାରି ଯୋଗ ଦେଲି । କାରଣ ଏମାନେ ଏକ ଖୋଲାଖୋଲି ଓ ନିଷ୍ପକ୍ଷ ଆଲୋଚନା ଚାହୁଁଥିଲେ ଓ ଏ ସଭାକୁ ବେଦାନ୍ତ ବିରୋଧୀ ତଥା ବିସ୍ଥାପିତମାନଙ୍କୁ ମଧ୍ୟ ଡାକିଥିଲେ । ଭୁବନେଶ୍ୱର ସଭାରେ ବହୁ ବିଜ୍ଞ, ବିଦ୍ୱାନ୍ ଉପସ୍ଥିତ ଥିଲେ । ପୁରୀ ସଭାରେ ମୋ ସହ ଥିଲେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡକ୍ଟର ବିମଳେନ୍ଦୁ ମହାନ୍ତି, ହ୍ୟୁମାନ୍ ଡେଭେଲପ୍‌ମେଣ୍ଟ ଫାଉଣ୍ଡେସନ୍‌ର ଅଧ୍ୟକ୍ଷ ଡକ୍ଟର ଧନଦା ମିଶ୍ର, ପୁରୀ ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ ମହାବିଦ୍ୟାଳୟର ଅଧ୍ୟକ୍ଷ, କବି ପ୍ରଫେସର ଭଗବାନ ଜୟସିଂ ଓ 'ନାସ୍‌ନାଲ ୟୁଥ୍ ପ୍ରୋଜେକ୍ଟ'ର ଶ୍ରୀ ମଧୁସୂଦନ ଓ ଶ୍ରୀ ସୂର୍ଯ୍ୟ ରଥ । ଏହି ଅବସରରେ 'ତପୋଭୂମି' ଟ୍ରଷ୍ଟ ପରିଚାଳିତ 'ଆନନ୍ଦ ପାଠଶାଳା' କାର୍ଯ୍ୟକ୍ରମ ଦେଖିବାର ସୁଯୋଗ ମଧ୍ୟ ମିଳିଥିଲା ।

ପ୍ରଥମ ଆଲୋଚନା ଚକ୍ରରେ 'ବେଦାନ୍ତ' କିପରି ଏକ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ ହେବାକୁ ଯାଉଛି ଓ 'ବିଶ୍ୱସ୍ତରୀୟ' ମାନେ କ'ଣ ସେ ସମ୍ପର୍କରେ ଆରିଜୋନା ୟୁନିଭରସିଟିର ଶ୍ରୀ ଚିତ୍ତ ବରାଳ ବିସ୍ତୃତ ଭାବେ ବୁଝାଇଥିଲେ । ଏଥିପାଇଁ କାହିଁକି

ଅଧିକ ଜାଗା ଦରକାର ଓ ଏହାଦ୍ୱାରା ସ୍ଥାନୀୟ ଶିକ୍ଷା ଓ ଆର୍ଥନୀତିକ ପରିସ୍ଥିତିରେ କି ପରିବର୍ତ୍ତନ ଘଟିବ - ସେ ସମ୍ପର୍କରେ ବେଦାନ୍ତ ସୂଚନା ଅଧିକାରୀ ନିଜ ପକ୍ଷ ରଖିଥିଲେ । ଏହି ବିଶ୍ୱବିଦ୍ୟାଳୟରେ ଯେପରି ସ୍ଥାନୀୟ ଛାତ୍ର-ଛାତ୍ରୀମାନେ ସ୍ଥାନ ପାଇ ପାରିବେ ସେଥିପାଇଁ ସେମାନଙ୍କୁ ଏବେଠାରୁ ପ୍ରସ୍ତୁତ କରାଯାଉଛି ବୋଲି କୁହାଗଲା । ଯେଉଁମାନେ ବେଦାନ୍ତକୁ ଜମି ବିକିଛନ୍ତି, ସେମାନଙ୍କ ପିଲାମାନଙ୍କୁ ତାଲିମ ଦେଇ କର୍ମନିଯୁକ୍ତି ଦେବା ବ୍ୟବସ୍ଥା ମଧ୍ୟ କରାଯାଇଛି ଏବଂ ପରିବେଶ ସୁରକ୍ଷାପାଇଁ ସମସ୍ତ ପଦକ୍ଷେପ ନିଆଯାଇଛି ବୋଲି ମଧ୍ୟ କୁହାଗଲା । ଏବଂ ଅଧିକୃତ ଜାଗାର ୨୦ ଭାଗରୁ ମାତ୍ର ଏକ ଭାଗରେ ନିର୍ମାଣ କାର୍ଯ୍ୟ ହେବ ଓ ସମସ୍ତ ପ୍ରାକୃତିକ ନଈ, ନାଳ, ବନ୍ୟ ସମ୍ପଦ ସୁରକ୍ଷିତ ରଖାଯିବ, ଭୂତଳ ଜଳ ସମ୍ପଦ କମ୍‌ରୁ କମ୍ ବ୍ୟବହୃତ ହେବ । ସୌର ଶକ୍ତି ଓ ବାୟୁ ଶକ୍ତିରୁ ବିଜୁଳି ଆବଶ୍ୟକତା ପୂରଣ କରାଯିବ, ସ୍ଥାନୀୟ ଧାର୍ମିକ ପରମ୍ପରା ଅକ୍ଷୁଣ୍ଣ ରଖାଯିବ, ଟୁରିଜିମ୍, ଟେକ୍‌ନୋଲୋଜି ମାଧ୍ୟମରେ ଯୁବବର୍ଗଙ୍କପାଇଁ ନୂତନ ନିଯୁକ୍ତି ସୁଯୋଗ ସୃଷ୍ଟି କରାଯିବ ଇତ୍ୟାଦି ।

ଉଭୟ ଆଲୋଚନାରେ ଅଂଶଗ୍ରହଣ କରିଥିବା ଅଧିକାଂଶ ବ୍ୟକ୍ତି ଏକ ଉନ୍ନତ ବିଶ୍ୱବିଦ୍ୟାଳୟ ସପକ୍ଷରେ ମତାମତ ଦେଇଥିଲେ ମଧ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଉତ୍‌ଥାପନ କରିଥିଲେ । ଏଥିରେ ଥିଲା ଭୟ ଓ ଉଦ୍‌ବେଗ । ପୁରୀ ସଭାରେ ଉତ୍‌ଥାପିତ ଭୟଗୁଡ଼ିକ ହେଲା ଏପରି :- ଜଗନ୍ନାଥଙ୍କ ସମ୍ପତ୍ତି କାହିଁକି ବେଦାନ୍ତକୁ ବିକ୍ରି ହେଉଛି ? ପାଞ୍ଚଲକ୍ଷ ଲୋକସଂଖ୍ୟାର ଏକ ନୂଆ ସହର, ପୁରୀ ପାଖରେ ହେଲେ ପାଣି ସରିଯିବ, ବିଜୁଳି ମିଳିବ ନାହିଁ, ଖାଦ୍ୟଦ୍ରବ୍ୟ ଅତ୍ୟନ୍ତ ମହଙ୍ଗା ହୋଇଯିବ ବା ମିଳିବ ନାହିଁ, ନୂଆ ନଈ, ସର, ପାଟ ଶୁଖିଯିବ, ସମୁଦ୍ର ପ୍ରଦୂଷିତ ହେବ, ବିଦେଶୀ, ବିଧର୍ମୀ ପୁରୀ ସଂସ୍କୃତିକୁ ନଷ୍ଟ ଭ୍ରଷ୍ଟ କରିବେ, ଶ୍ରୀମନ୍ଦିର ବିପଦଗ୍ରସ୍ତ ହେବ, ବାହାରୁ ପିଲାଏ ଆସି ପଢ଼ିବେ, ଆମ ପିଲାଙ୍କୁ କିଛି ମିଳିବ ନାହିଁ, ରିଅଲ୍ ଇଷ୍ଟେଟ୍ ବ୍ୟବସାୟ ହେବ ଓ ଶେଷରେ ବିଶ୍ୱବିଦ୍ୟାଳୟ ନ କରି କମ୍ପାନି ଜାଗା ବିକି ଚାଲିଯିବ, ଇତ୍ୟାଦି । ଶିକ୍ଷାବିତ୍‌ମାନେ ବେଦାନ୍ତର ଉଚ୍ଚଶିକ୍ଷା ସମ୍ପର୍କରେ କୌଣସି ଅଭିଜ୍ଞତା ନ ଥିବା କଥା ବି କହିଥିଲେ । ଏହି ସଂସ୍ଥାର ଅତୀତ ସମ୍ପର୍କରେ ପ୍ରଶ୍ନ ହୋଇଥିଲା । ଏହାର ନାମ ପରିବର୍ତ୍ତନ କରି ଗୋପବନ୍ଧୁ ବିଶ୍ୱବିଦ୍ୟାଳୟ ରଖାଯିବାକୁ ପ୍ରସ୍ତାବ ଆସିଥିଲା । ପୁରୀରେ ନହୋଇ ଅନୁନ୍ନତ କଳାହାଣ୍ଡିରେ ଏପରି ବିଶ୍ୱବିଦ୍ୟାଳୟ ହେଉ ବୋଲି ମତ ପ୍ରକାଶ ପାଇଥିଲା । ଅପରପକ୍ଷରେ ଯୁବ ଓ ଛାତ୍ର ପ୍ରତିନିଧିମାନେ ପୁରୀରେ ଏକ ବିଶ୍ୱସ୍ତରୀୟ ଉନ୍ନତମାନର ବିଶ୍ୱବିଦ୍ୟାଳୟ ସମର୍ଥନରେ ଯୁକ୍ତି ବାଢ଼ିଥିଲେ ଏବଂ କହିଥିଲେ ଏହା ନ ହେଲେ ପୁରୀରେ ବେକାରି ବଢ଼ିବ ଓ ଏଠାର ପିଲାମାନେ ଦି ପଇସାପାଇଁ ସଦାବେଳେ

ଯାତ୍ରୀଙ୍କ ପଛରେ ଗୋଡାଉଥିବେ । କିନ୍ତୁ ସଭାରେ ଥିବା ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ କେବଳ ଶୁଣାଇବାପାଇଁ ଆସିଥିଲେ, ଶୁଣିବାପାଇଁ ଆଦୌ ପ୍ରସ୍ତୁତ ନ ଥିଲେ । ଉଭୟ ପକ୍ଷ ହସ୍ତାହସ୍ତିପାଇଁ ତିଆର ହୋଇ ଯାଇଥିଲେ । ଆମେ ଦେଶୀ ଗଣତନ୍ତ୍ରର ଆଉ ଏକ ନମୁନା ଦେଖିଲୁ ।

କିନ୍ତୁ ଅପରାହ୍ନର ଅନୁଭୂତି ଥିଲା ସମ୍ପୂର୍ଣ୍ଣ ନିଆରା । ତ୍ରପ୍‌ଆଉଟଙ୍କପାଇଁ ସ୍ୱେଚ୍ଛାସେବୀ ସଂଗଠନ 'ତପୋଭୂମି'ର 'ଆନନ୍ଦ ପାଠଶାଳା'ରେ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟର ବଡ ବଡ ସ୍ୱପ୍ନ ନ ଥିଲା । ଥିଲା ବସ୍ତି ଓ ଗାଁରେ ନୂଆ ଢଙ୍ଗରେ ଲୋକ ଶିକ୍ଷା ପ୍ରସାର ଇଚ୍ଛା । ଲୋକଙ୍କ ସାଙ୍ଗରେ ବସି, ମିଶି କାମ କରିବାର ଆଗ୍ରହ । ଶିକ୍ଷାକୁ ଆନନ୍ଦମୟ କରିବାପାଇଁ ପ୍ରଚେଷ୍ଟା । ଏଠାରେ ଯାହାଙ୍କୁ ଭେଟିଲୁ ସେ ସମସ୍ତେ ଆସିଥିଲେ ଦରିଦ୍ର ଓ ଦଳିତ ପରିବାରରୁ । ଓଡିଶାର ଯେଉଁ ୪୦ ଭାଗ ପିଲା ପଞ୍ଚମ ଶ୍ରେଣୀ ପହଞ୍ଚିବା ଆଗରୁ ପାଠପଢା ଛାଡି ଦେଇଥାନ୍ତି, ସେଇମାନଙ୍କ ସମ୍ପ୍ରଦାୟ । ତଳେ ସିମେଣ୍ଟ ଅଖା ଉପରେ ବସିଥିଲେ ପୁଣି ଥରେ ପାଠ ପଢିବାପାଇଁ, ଛୋଟ ଛୋଟ ସ୍ୱପ୍ନକୁ ନେଇ । ସ୍ୱାଧୀନ ଭାବରେ ଛୋଟ ଛୋଟ ଧନ୍ଦା କରି ଶିକ୍ଷାରୁ ସନ୍ତୋଷ ଓ ଆନନ୍ଦ ନେବାପାଇଁ । ଏମାନଙ୍କୁ ଶିକ୍ଷା ଦେଉଥିବା ସ୍ୱେଚ୍ଛାସେବୀମାନଙ୍କର ଆଗ୍ରହ ଓ ଉତ୍ସାହ ନ ଦେଖିଲେ ବିଶ୍ୱାସ କରିହେବ ନାହିଁ । ସମାଜ ପରିବର୍ତ୍ତନର ସଚ୍ଚା ସୈନିକ । ଓଡ଼ିଶାରେ ଏପରି ବହୁ ଅନୁଷ୍ଠାନଙ୍କର ନିଷ୍ଠାପର ସେବା ସରକାରଙ୍କ ଅଗୋଚରରେ ଚାଲୁ ରହିଚି । ବିଶ୍ୱସ୍ତରୀୟ ଶିକ୍ଷା ନିଶ୍ଚୟ ଆବଶ୍ୟକ, କିନ୍ତୁ ତା'ଠାରୁ ଅଧିକ ଆବଶ୍ୟକ ନିଃସ୍ୱ ସ୍ତରୀୟଙ୍କପାଇଁ ଶିକ୍ଷା ବ୍ୟବସ୍ଥା । ସର୍ବଶିକ୍ଷା ଅଭିଯାନ ଏବେ ବି ଏଇ ସ୍ତରରେ ପହଞ୍ଚି ପାରି ନାହିଁ । ବିଶ୍ୱ ସ୍ତରୀୟ ଅନୁଷ୍ଠାନରୁ ପାସ୍ କରୁଥିବା ପିଲାଏ ଗାଁ ଓ ଦେଶ ଛାଡି ବିଦେଶକୁ ଚାଲିଯାନ୍ତି । ଆନନ୍ଦ ପାଠଶାଳା ଏହାର ବିପରୀତ ପରୀକ୍ଷା । ସମ୍ବଲପୁର ଓ କନ୍ଧମାଳରେ 'ବିଶ୍ୱ' ଓ 'ପ୍ରଥମ' ମଧ୍ୟ ଏପରି ଶିକ୍ଷା ପରୀକ୍ଷା ଚଳାଇଛନ୍ତି ।

ଆମ ଯୋଜନାରେ ଶିକ୍ଷାପାଇଁ ସମ୍ବଳର ଅଭାବ ନାହିଁ । ଏକାଦଶ ପଞ୍ଚବାର୍ଷିକ ଯୋଜନାରେ ଶତକଡା ୧୯ ଭାଗ ଅର୍ଥ ଶିକ୍ଷାପାଇଁ ରଖାଯାଇଛି । କେବଳ ଉଚ୍ଚ ଶିକ୍ଷା ପାଇଁ ପ୍ରାୟ ଲକ୍ଷେ କୋଟି ଟଙ୍କା । ଏହାବାଦ୍ ପୁଣି ଦୁଇ ଲକ୍ଷ ଛସ୍ତରି ହଜାର କୋଟି ଟଙ୍କା ସ୍କୁଲ ଶିକ୍ଷାପାଇଁ । ତେଣୁ ରାଷ୍ଟ୍ରୀୟ ପଞ୍ଚବାର୍ଷିକ ଯୋଜନାକୁ ଏବେ କୁହା ଯାଉଛି 'ରାଷ୍ଟ୍ରୀୟ ଶିକ୍ଷା ଯୋଜନା', କାରଣ ଶିକ୍ଷାପାଇଁ ଦଶମ ପଞ୍ଚବାର୍ଷିକ ଯୋଜନାରେ ଯେଉଁ ଅର୍ଥ ବ୍ୟବସ୍ଥା କରାଯାଇଥିଲା ଏହା ତା'ଠାରୁ ପାଞ୍ଚଗୁଣ ଅଧିକ ।

ଆମ ଦେଶରେ ଏବେ ୪୧୯ଟି ବିଶ୍ୱବିଦ୍ୟାଳୟ ଅଛି । ୟୁଜିସି ଶିକ୍ଷା କମିଟି ଏହି ସଂଖ୍ୟାକୁ ବଢାଇ ୭୩୫ କରିବାକୁ ସୁପାରିଶ କରିଛନ୍ତି । ଶାମ୍ ପିଟ୍ରୋଡାଙ୍କ ଅଧ୍ୟକ୍ଷତାରେ ଗଠିତ 'ନାସ୍‌ନାଲ୍ ନଲେଜ କମିଶନ' (ଏନ୍.କେ.ସି.) ଆସନ୍ତା ଦଶବର୍ଷ ମଧ୍ୟରେ ଦେଶରେ ୧୫୦୦ଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାପାଇଁ କେନ୍ଦ୍ର ସରକାର ଓ ଶିକ୍ଷା ବିଭାଗକୁ ପରାମର୍ଶ ଦେଇଛନ୍ତି । ଏହା କାର୍ଯ୍ୟକାରୀ ହେଲେ ଓଡ଼ିଶାରେ ପ୍ରାୟ ସତୁରିଟି ବିଶ୍ୱ ବିଦ୍ୟାଳୟ ପ୍ରତିଷ୍ଠା କରାଯିବ ଓ ସେଥିପାଇଁ ଅତି କମ୍‌ରେ ୭୦ ହଜାର ଏକର ଜାଗା ଦରକାର ହେବ । ଜନସଂଖ୍ୟା ଭିତ୍ତିରେ କେବଳ ପୁରୀ ଜିଲ୍‌ଲାରେ ଆଉ ଚାରିଟି ବିଶ୍ୱବିଦ୍ୟାଳୟ ଖୋଲିବ । ପ୍ରତ୍ୟେକ ଜିଲ୍ଲାରେ ଅତି କମ୍‌ରେ ଗୋଟିଏରୁ ଦୁଇଟି ବିଶ୍ୱବିଦ୍ୟାଳୟ ରହିବ । ତେଣୁ ଓଡ଼ିଶା ସରକାର ଏବେଠୁ ପ୍ରସ୍ତୁତ ହୁଅନ୍ତୁ । ପ୍ରତି ବିଶ୍ୱବିଦ୍ୟାଳୟପାଇଁ ଅତି କମ୍‌ରେ ୧୦୦୦ ଏକର ଲେଖାଏଁ ଜାଗା ଚିହ୍ନଟ କରି ଆଜିଠୁ ରଖନ୍ତୁ । ଏବେ ଆମର ସମୁଦାୟ ଏଗାରଟି ବିଶ୍ୱବିଦ୍ୟାଳୟର ଜାଗା ଯେତିକି, ଏକା ବେଦାନ୍ତ ମାଗୁଛି ତା'ଠୁ ଅଧିକ । ବିରୋଧ ସ୍ୱାଭାବିକ । ତେଣୁ ଭବିଷ୍ୟତର ଆବଶ୍ୟକତାକୁ ଆଖି ଆଗରେ ରଖି, ଲୋକଙ୍କୁ ପଚାରି ବୁଝି ବିଚାରି ସିଦ୍ଧାନ୍ତ ନିଆଗଲେ ଭଲ । ଶିକ୍ଷାବିତ୍ ଓ ସିଭିଲ୍ ସୋସାଇଟିକୁ ଏହି ପ୍ରକ୍ରିୟାରେ ସାମିଲ କରାଯାଉ । ଅକ୍ସ୍‌ଫୋର୍ଡ ଭଳି ବିଶ୍ୱର ଅନେକ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟର ଆୟତନ ୫୦୦ ଏକରରୁ ଅଧିକ ନୁହେଁ ଏବଂ ଆମ ଦେଶରେ ମୁଣ୍ଡ ପିଛା ଜମିର ପରିମାଣ ଅଧ ଏକରରୁ କମ୍ ।

ଏହାଛଡା ଆସନ୍ତା ଦଶ ବର୍ଷ ଭିତରେ ଦେଶରେ ୧୮୦୦୦ କଲେଜ, ୫୦,୦୦୦ ରୁ ଅଧିକ ସେକେଣ୍ଡାରି ସ୍କୁଲ, ୨୪ଟି ନୂଆ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ, ୧୬୦୦ ଆଇଟିଆଇ ଓ ପଲିଟେକ୍‌ନିକ୍, ୧୦,୦୦୦ ନୂଆ ଭୋକେସନାଲ୍ ସ୍କୁଲ ଓ ୫୦,୦୦୦ ନୂଆ ଜ୍ଞାନ-କୌଶଳ କେନ୍ଦ୍ର ଖୋଲିବାର ପ୍ରସ୍ତାବ ରହିଛି । ଆମ ରାଜ୍ୟର ଶିକ୍ଷା ବିଭାଗ ଏଥିପାଇଁ ଆଜିଠୁ ପ୍ରସ୍ତୁତ ରହନ୍ତୁ । ଉଦାହରଣ ସ୍ୱରୂପ ୨୦୦୭ ସୁଦ୍ଧା ତାମିଲନାଡୁ ରାଜ୍ୟରେ ଥିବା ୧୬୦୦ ଇଞ୍ଜିନିୟରିଂ କଲେଜର ସଂଖ୍ୟା ୨୦୦୮ ସୁଦ୍ଧା, ବର୍ଷକ ଭିତରେ ବଢି ହେଲାଣି ୨୩୦୦ । ବିଶ୍ୱ ଜ୍ଞାନ-କୌଶଳ ମାନଚିତ୍ରରେ ଓଡ଼ିଶା ଅପେକ୍ଷା ଅନ୍ୟ ରାଜ୍ୟମାନେ ଆଗରେ । ଆସନ୍ତା ପାଞ୍ଚବର୍ଷ ଭିତରେ ଜ୍ଞାନ-କୌଶଳ ଉଦ୍ୟୋଗ ଜରିଆରେ ଭାରତରେ ଛଅ କୋଟି କର୍ମନିଯୁକ୍ତି ସୃଷ୍ଟି ହେବ । ଏହାଛଡା ଓଡ଼ିଶା ଚାରିପଟେ ଥିବା ରାଜ୍ୟମାନଙ୍କରେ ୫୦ରୁ ଅଧିକ ସ୍ୱତନ୍ତ୍ର ଅର୍ଥନୈତିକ ଅଞ୍ଚଳ (ଏସ୍‌ଇଜେଡ୍) ପାଇଁ କେନ୍ଦ୍ର ମଞ୍ଜୁରୀ ମିଳିସାରିଲାଣି । ଆମର ବିତର୍କ ଚାଲିଛି, ବିକଳ୍ପ ଖୋଜା ହେଉନାହିଁ । ଶେଷରେ ଆମ ପିଲାଏ ଚାକିରିପାଇଁ ସେଇ ରାଜ୍ୟ ସବୁକୁ

ଦଉଡିବେ ଏବଂ ସେଠାକାର ଲୋକେ ଆମ ପିଲାଙ୍କୁ ଘଉଡେଇବେ । ଆମେ ତାଙ୍କ ବ୍ୟବସାୟ ଶିଳ୍ପପାଇଁ କେବଳ କଞ୍ଚାମାଲ ପଠାଉଥିବା ରାଜ୍ୟ ହୋଇ ରହିଯିବା ।

ଦୁର୍ଭାଗ୍ୟର କଥା ଯେ ଆମ ରାଜ୍ୟରେ କ୍ରିୟା ଅପେକ୍ଷା ପ୍ରତିକ୍ରିୟାରେ ଅଧିକ ସମୟ ନଷ୍ଟ ହୁଏ । ମତ ଅଭିମତ ମନ୍ତବ୍ୟ ପୂର୍ବରୁ ପ୍ରତ୍ୟେକ ବିଷୟରେ ଗଭୀର ଆଲୋଚନା ଓ ଗବେଷଣା ଆବଶ୍ୟକ । ବିନା ବେଦାନ୍ତ ବା ବିଦେଶୀ ସହାୟତାରେ ଆମେ ନିଜ ସମ୍ବଳରେ ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ ନିର୍ମାଣ କରିପାରିବା । ବିରୋଧ ସାଙ୍ଗରେ ବିକଳ୍ପର ରାସ୍ତା ନ ଦେଖାଇଲେ ବିରୋଧ ଅର୍ଥହୀନ ହୋଇଯାଏ । କେବଳ ଜିନ୍ଦାବାଦ, ମୁର୍ଦ୍ଦାବାଦ, ନେତିବାଦ, ପ୍ରତିବାଦର କୋଳାହଳରେ ପ୍ରଗତିବାଦ ପଛକୁ ଠେଲି ହୋଇଯାଏ । ଆଶାବାଦୀ, ଶୁଭଦର୍ଶୀ କର୍ମୀମାନେ ନୀରବ ଓ ନିରୁତ୍ସାହିତ ହୋଇଯାନ୍ତି । ଏପରି ଅଭ୍ୟାସ ନ ଛାଡିଲେ ଆମେ ଅନ୍ୟ ଉନ୍ନତ ରାଜ୍ୟମାନଙ୍କ ସମକକ୍ଷ ହୋଇପାରିବା ନାହିଁ । ଆମ ପିଲାଏ ଶେଷରେ ରାଜ୍ୟ ଓ ଦେଶ ଛାଡି ଚାଲିଯିବେ । ଗାନ୍ଧିଜୀ କୌଣସି ଶକ୍ତି ବିରୁଦ୍ଧରେ ଆନ୍ଦୋଳନ କଲାବେଳେ ତା'ର ବିକଳ୍ପ ଲୋକଙ୍କ ସମ୍ମୁଖରେ ରଖୁଥିଲେ ।

ପଡୋଶୀ ରାଜ୍ୟ ବିହାର ଏହା ଅଙ୍ଗେ ଲିଭାଇଛି । ଏଠି ଉଚ୍ଚଶିକ୍ଷା ବ୍ୟବସ୍ଥା ଭୁଶୁଡି ପଡିବାରୁ ଓ ନିଯୁକ୍ତି ସୁଯୋଗ ସଂକୁଚିତ ହୋଇଯିବାରୁ ପିଲାଏ ରାଜ୍ୟ ବାହାରକୁ ପଢିବାକୁ ଓ କାମପାଇଁ ଚାଲିଗଲେ । ଏ ସମସ୍ୟାର ସମାଧାନ ବେଦାନ୍ତ ବା ବିଦେଶୀଙ୍କ ହାତରେ ନାହିଁ । ଜନମତ ଭିତ୍ତିରେ ସମଗ୍ର ରାଜ୍ୟର ଶିକ୍ଷା ଓ ତାଲିମ ବ୍ୟବସ୍ଥାର ପୁନରୁଦ୍ଧାର, ପୁନର୍ଗଠନ ଓ ସଶକ୍ତୀକରଣ ହିଁ ସମାଧାନର ଏକମାତ୍ର ସୂତ୍ର ।

*୨୯ ଜାନୁଆରୀ, ୨୦୦୯*



# ଓଡ଼ିଶାରେ ଜୀବନ ଓ ଜୀବିକା : ଗତି ଓ ସ୍ଥିତି

ପ୍ରାୟ ଦେଢବର୍ଷ ତଳର ଘଟଣା । କୋରାପୁଟ ଜିଲ୍ଲା ତଳ କଇଁପଦର ଗାଁର ୧୩ ବର୍ଷିଆ ଗର୍ଭବତୀ କିଶୋରୀ 'ଅର୍ଣ ହିକାକା'ଙ୍କର ଯେତେବେଳେ ପ୍ରସବ ଯନ୍ତ୍ରଣା ଆରମ୍ଭ ହେଲା, ତାଙ୍କ ପରିବାର ଲୋକେ ୫୫ ବର୍ଷ ବୟସ୍କା ସିନ୍ଦେ ହିକାକାଙ୍କୁ ଡକାଇ ଡେଲିଭରି କରାଇଲେ । ସିନ୍ଦେ ଡାକ୍ତର କି ନର୍ସ ନୁହଁନ୍ତି, ପାଠ ପଢି ନାହାନ୍ତି, ଯନ୍ତ୍ରପାତି ନାହିଁ, ନିଜ ହାତରେ ସେ ଅଞ୍ଚଳର ପ୍ରାୟ ସବୁ ଗର୍ଭବତୀ ମହିଳାଙ୍କ ଡେଲିଭରି କରାନ୍ତି। ଏଠାରେ କୌଣସି ମହିଳା ଡାକ୍ତରଖାନା ଯା'ନ୍ତି ନାହିଁ । ଅର୍ଣ ହିକାକାଙ୍କ ଘରଠାରୁ ନିକଟସ୍ଥ ସ୍ୱାସ୍ଥ୍ୟ କେନ୍ଦ୍ରର ଦୂରତା ମାତ୍ର ଦୁଇଶହ ଫୁଟ ଏବଂ ଲକ୍ଷ୍ମୀପୁର ସରକାରୀ ଡାକ୍ତରଖାନା ପାଞ୍ଚ କିଲୋମିଟର । ଗାଁ ଧାଇ ସିନ୍ଦେ ଏକ ଅନୁରା ପରିବା କଟା ଛୁରୀ ଓ ଧାରୁଆ ପଥର ସାହାଯ୍ୟରେ ନବଜାତକର ଲାହି କାଟନ୍ତି । ଭୂତାଣୁ ବା କୀଟାଣୁଜନିତ ରୋଗ ସଂକ୍ରମଣ ବିଷୟରେ ସେ ଜାଣନ୍ତି ନାହିଁ ।

ମାତୃ ମୃତ୍ୟୁ ଓ ଶିଶୁ ମୃତ୍ୟୁ ହାର କମାଇବାପାଇଁ ଦେଶରେ ଓ ରାଜ୍ୟରେ ପ୍ରଚାରର ଅଭାବ ନାହିଁ । ଏହା ସତ୍ତ୍ୱେ, ଅନ୍ୟ ରାଜ୍ୟମାନଙ୍କ ତୁଳନାରେ ଆମ ରାଜ୍ୟରେ ମୃତ୍ୟୁ ହାର କମୁନାହିଁ । ଜନନୀ ସୁରକ୍ଷା ଯୋଜନା ଅନୁସାରେ ସ୍ୱୀକୃତିପ୍ରାପ୍ତ ସ୍ୱାସ୍ଥ୍ୟ କେନ୍ଦ୍ର ଓ ହସପିଟାଲରେ ଡେଲିଭରିପାଇଁ ପ୍ରତ୍ୟେକ ଗର୍ଭବତୀ ମହିଳାଙ୍କୁ ଚଉଦ ଶହ ଟଙ୍କା ପ୍ରୋତ୍ସାହନ ବ୍ୟବସ୍ଥା ଅଛି, ମାଗଣା ଲୌହ ଓ କ୍ୟାଲ୍‌ସିଅମ୍ ବଟିକା, ଟିକାକରଣ ବ୍ୟବସ୍ଥା ବି ଅଛି, କିନ୍ତୁ ଅଧିକାଂଶ ମହିଳା ଏ ସୁବିଧା ବିଷୟରେ ଜାଣନ୍ତି ନାହିଁ । ଅଠର ବର୍ଷରୁ କମ୍ ବୟସରେ ବାଳିକା ବିବାହ ବେଆଇନ୍ । କିନ୍ତୁ ଓଡିଶାରେ ପ୍ରତି ଶହେରେ ଅଠତିରିଶ ଜଣ ନାବାଳିକାଙ୍କ ବିବାହ ହୁଏ, ବିଶେଷକରି ଆଦିବାସୀ

ବହୁଳ ଅଞ୍ଚଳରେ । ଅର୍ଣ ହିକାକା ନିଜେ ୧୩ ବର୍ଷ ବୟସରେ ବିବାହ କରିଥିଲେ ।

ଓଡିଶାରେ ମୁଣ୍ଡ ପିଛା ସ୍ୱାସ୍ଥ୍ୟ ସେବା ଖର୍ଚ୍ଚ ସବୁଠୁ କମ୍ । ଭାରତ ସରକାରଙ୍କ ଦ୍ୱାରା ସ୍ଥାପିତ ରାଷ୍ଟ୍ରୀୟ ଅର୍ଥନୀତି ଓ ସ୍ୱାସ୍ଥ୍ୟ କମିଶନଙ୍କ ରିପୋର୍ଟ ଅନୁସାରେ ଓଡିଶା ସରକାରଙ୍କର ଜଣ ପିଛା ସ୍ୱାସ୍ଥ୍ୟ ସେବା ବାବଦରେ ଖର୍ଚ୍ଚ ନ' ଟଙ୍କା ପଞ୍ଚାନବେ ପଇସା । ବିହାର ଖର୍ଚ୍ଚ କରେ ଜଣ ପିଛା ପନ୍ଦର ଟଙ୍କା, ପଶ୍ଚିମବଙ୍ଗ ଖର୍ଚ୍ଚ କରେ ଏଗାର ଟଙ୍କା ଅଠାଅଶି ପଇସା, ମଧ୍ୟପ୍ରଦେଶ ବାର ଟଙ୍କା । ସବୁଠାରୁ ଅଧିକ ଖର୍ଚ୍ଚ କରେ ଅରୁଣାଚଳ ପ୍ରଦେଶ – ତେୟାଳିଶ ଟଙ୍କା ପଞ୍ଚଷଠି ପଇସା । ତେଣୁ ଯେଉଁ ରାଜ୍ୟ ସ୍ୱାସ୍ଥ୍ୟ ସେବାରେ ଅଧିକ ଖର୍ଚ୍ଚ କରେ, ସେ ରାଜ୍ୟର ଶିଶୁ, ମାତୃ ମୃତ୍ୟୁ ହାର କମ୍ ରହେ । ଯେତିକି ଚୂନା ସେତିକି ପିଠା, ଯେତିକି ଗୁଡ ସେତିକି ମିଠା । ରାଜ୍ୟ କମ୍ ଖର୍ଚ୍ଚ କଲେ, ବ୍ୟକ୍ତି ଓ ପରିବାରକୁ ଅଧିକ ଖର୍ଚ୍ଚ କରିବାକୁ ପଡେ । ଜୀବନ ଓ ମୃତ୍ୟୁ ହାର ସେଇ ଅନୁସାରେ ବଢେ ଓ ଛିଡ଼େ । ଗତବର୍ଷ (୨୦୦୬) ପ୍ରକାଶିତ ନାସ୍‌ନାଲ୍ ଫାମିଲି ହେଲ୍‌ଥ ସର୍ବେକ୍ଷଣ ଚାରୋଟି ରାଜ୍ୟ- ଗୁଜୁରାଟ, ପଞ୍ଜାବ, ମହାରାଷ୍ଟ୍ର ଓ ଓଡିଶାର ତୁଳନାତ୍ମକ ବିବରଣୀ ଦେଇ କହିଛନ୍ତି ଯେ ଓଡିଶାରେ ମୃତ୍ୟୁ ହାର ସବୁଠୁ ବେଶୀ ।

ତେବେ ଏଠି 'ଜୀବନ'ର ହାର, ଅବସ୍ଥା ଓ ମୂଲ୍ୟ କେତେ ? ଏଠି ଜଣେ ପୁରୁଷ ହାରାହାରି ଷାଠିଏ ବର୍ଷ ଓ ଜଣେ ମହିଳା ୫୯ ବର୍ଷ ବଞ୍ଚିଥାନ୍ତି । ଏହା ତୁଳନାରେ ପଞ୍ଜାବରେ ପରୁଷ ଓ ସ୍ତ୍ରୀଙ୍କର ହାରାହାରି ଜୀବନ କାଳ ଯଥାକ୍ରମେ ୭୦ ଓ ୭୧ ବର୍ଷ । ଏବଂ ପଞ୍ଜାବରେ ମହିଳାମାନଙ୍କ ଜୀବନ କାଳ ପୁରୁଷଙ୍କଠାରୁ ଦୁଇବର୍ଷ ଅଧିକ ଥିଲାବେଳେ ଓଡିଶାରେ ଏହା ବର୍ଷେ କମ୍ । ପଞ୍ଜାବ,ତାମିଲନାଡୁ, ଆନ୍ଧ୍ରପ୍ରଦେଶ, ମହାରାଷ୍ଟ୍ର, ଗୁଜୁରାଟ ଓ କେରଳ ରାଜ୍ୟମାନଙ୍କର ସ୍ୱାସ୍ଥ୍ୟ ସେବା ବଜେଟ ଓଡିଶାଠାରୁ ଯଥେଷ୍ଟ ଅଧିକ । ତେଣୁ ଏସବୁ ରାଜ୍ୟବାସୀ ଓଡିଆଙ୍କ ଅପେକ୍ଷା ଅଧିକ ବର୍ଷ ବଞ୍ଚନ୍ତି । ଉଦାହରଣ ସ୍ୱରୂପ ଓଡିଶାରେ ଜଣେ ମହିଳାଙ୍କ ହାରାହାରି ଜୀବନ କାଳ ୫୯ ବର୍ଷ ଥିଲା ବେଳେ ଜଣେ କେରଳୀ ମହିଳାଙ୍କ ହାରାହାରି ଜୀବନ କାଳ ୭୫ ବର୍ଷ ।

ସେହିପରି ଓଡିଶାରେ ପ୍ରତି ଶହେ ଶିଶୁଙ୍କ ମଧ୍ୟରୁ ମାତ୍ର ୫୬ ଜଣ ଶିଶୁ (୧୨ ରୁ ୩୬ ମାସ) ଙ୍କୁ ରୋଗ ପ୍ରତିଷେଧକ ଟିକା ଦିଆଯାଇ ପାରୁଥିବା ବେଳେ, କେରଳରେ ଏହା ଶତକଡା ୯୧ । ତାମିଲନାଡୁରେ ଶତକଡା ୯୨, ମହାରାଷ୍ଟ୍ରରେ ଶତକଡା ୮୨ । ଏପରିକି ପଡୋଶୀ ପଶ୍ଚିମବଙ୍ଗରେ ଏହା ଶତକଡା ୭୮ । ନିରାପଦ ପ୍ରସବ ବା ଡେଲିଭରି ବ୍ୟବସ୍ଥାରେ ବି ଓଡିଶା ଅନ୍ୟ ରାଜ୍ୟ ତୁଳନାରେ ବହୁ ପଛରେ । କେରଳରେ ପ୍ରତି ଶହେରୁ ୯୭ ଜଣ ଗର୍ଭବତୀ ମହିଳଙ୍କର ସ୍ୱାସ୍ଥ୍ୟ କେନ୍ଦ୍ର ବା

ହସ୍‌ପିଟାଲ୍‌ରେ ଡେଲିଭରି ହୋଇଥାଏ । ମହାରାଷ୍ଟ୍ରରେ ୬୧ ପ୍ରତିଶତ, ଆନ୍ଧ୍ରପ୍ରଦେଶରେ ୭୦ ପ୍ରତିଶତ ଓ ତାମିଲନାଡୁରେ ୮୦ ପ୍ରତିଶତ। ଏହା ତୁଳନାରେ ଓଡିଶାର ପ୍ରତି ୧୦୦ରୁ ମାତ୍ର ୩୮ ଜଣ ଗର୍ଭବତୀ ମହିଳାଙ୍କର ସ୍ୱାସ୍ଥ୍ୟ କେନ୍ଦ୍ରରେ ପ୍ରସବ ହୋଇଥାଏ । ବାକି ମହିଳାଙ୍କୁ ସିନ୍ଦେ ହିକାକାଙ୍କ ଭଳି ଧାଇଙ୍କ ସାହାଯ୍ୟ ନେବାକୁ ପଡେ ।

ଯେଉଁ ରାଜ୍ୟରେ ଜୀବନର ମାନ ଏପରି, ସେଠି ଜୀବିକାର ସ୍ଥିତି ଓ ଅବସ୍ଥା ସୁଧାରିବା ଏକ କଷ୍ଟକର ଆହ୍ୱାନ । ୨୦୦୧ ଜନଗଣନା ଅନୁସାରେ ଓଡିଶାର ସମୁଦାୟ ଜନସଂଖ୍ୟର ୩୫ ଭାଗରୁ ଅଧିକ ଲୋକ ଶ୍ରମଜୀବୀ । ତା ମଧ୍ୟରୁ ୬୭ ଭାଗ କୃଷି ଉପରେ ନିର୍ଭରଶୀଳ । ଚାଷୀ ୩୫.୮ ଭାଗ ଓ କୃଷି ଶ୍ରମିକ ପ୍ରାୟ ୩୬ ଭାଗ । ମାତ୍ର ଶତକଡା ଚାରିଭାଗ ଲୋକ ଶିଳ୍ପ କ୍ଷେତ୍ରରେ କାମ କରନ୍ତି । ମହିଳାଙ୍କ ମଧ୍ୟରୁ ୨୪.୭ ଭାଗଙ୍କୁ ରୋଜଗାର ମିଳିଥାଏ । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଅବସ୍ଥା ଆହୁରି ଖରାପ । ଏହି ଅବସ୍ଥା ସୁଧୁରିବାକୁ ନିଶ୍ଚିତ କର୍ମ ନିଯୁକ୍ତି ଯୋଜନା ଓଡିଶାରେ ଠିକ୍ ଭାବରେ କାମ କରୁନାହିଁ । ଅଧାରୁ ଅଧିକ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ଅଛନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଦୈନିକ ଆୟ ୧୨ ଟଙ୍କାରୁ କମ୍ । ଗ୍ରାମାଞ୍ଚଳ ଲୋକଙ୍କର ଦୈନିକ ଖାଦ୍ୟ ଆବଶ୍ୟକତା ହେଲା ୨୪୦୦ କାଲୋରି । ୧୨ ଟଙ୍କାରେ ମାତ୍ର ୮୦୦ କାଲୋରି ଖାଦ୍ୟ ମିଳିପାରିବ । ତେଣୁ ଆମ ରାଜ୍ୟରେ ଆନେମିଆ ବା ରକ୍ତହୀନତା ପୀଡିତଙ୍କ ସଂଖ୍ୟା ସବୁଠୁ ବେଶି । ଦୁଇ ଟଙ୍କିଆ ଚାଉଳ ସମାଧାନ ନୁହେଁ, ଉପାର୍ଜନ ଓ କ୍ରୟ କ୍ଷମତା ବଢିବା ଆବଶ୍ୟକ । ଜମିର ଉତ୍ପାଦିକା ଶକ୍ତି ନ ବଢିଲେ ଚାଉଳ ଆସିବ କୋଉଠୁ ? ଉତ୍ପାଦନ କରିବ କିଏ ? କାହିଁକି ? ଏବଂ ଉତ୍ପାଦନ ନ ବଢିଲେ ବଣ୍ଟନ ହେବ କିପରି ?

ଏବେ ଓଡିଶାରେ ଶିଳ୍ପୀକରଣପାଇଁ ସରକାର ୬୦ ରୁ ଅଧିକ ବୁଝାମଣା ପତ୍ର ଦସ୍ତଖତ କରି ସାରିଲେଣି । ସଫଳ ହେଲେ ପାଞ୍ଚଲକ୍ଷ କୋଟି ପୁଞ୍ଜି ବିନିଯୋଗ ହେବ ଖଣିଭିତ୍ତିକ କାରଖାନା ପାଇଁ । ପୋସ୍କୋ, ଆର୍ସେଲର ମିତ୍ତଲ ଓ ବେଦାନ୍ତଙ୍କ କାରଖାନା ହେଲେ ମାତ୍ର ୫୦ ରୁ ୬୦ ହଜାର ଲୋକଙ୍କପାଇଁ ନିଯୁକ୍ତି ସୁଯୋଗ ମିଳିବ । ସବୁଯାକ ବୁଝାମଣା କାର୍ଯ୍ୟକାରୀ ହେଲେ ଯେତିକି ଟେକ୍‌ନିକାଲ୍ ଲୋକ ଆବଶ୍ୟକ ପଡିବ, ଓଡିଶାରେ ମିଳିବେ ନାହିଁ । ଆମ ରାଜ୍ୟର ୨୨ ଟି ସରକାରୀ ଓ ୧୫୨ ଟି ବେସରକାରୀ ଆଇଟିଆଇରୁ ବର୍ଷକୁ ମାତ୍ର ୨୧୫୦୦ ପିଲା ପାସ୍ କରନ୍ତି । ଏହା ଆବଶ୍ୟକତାଠାରୁ ଯଥେଷ୍ଟ କମ୍ । ତେଣୁ  ଆଇଟିଆଇର ସଂଖ୍ୟା ଦ୍ୱିଗୁଣ ନକଲେ ଓଡିଆ

ପିଲାଏ ଶିକ୍ଷାକରଣରେ ସାମିଲ ହୋଇପାରିବେ ନାହିଁ । ଅନୁନ୍ନତ ଗରିବ କଳାହାଣ୍ଡି ପିଲାଏ ନିଜ ଜିଲ୍ଲାରେ ପ୍ରତିଷ୍ଠିତ ଆଲୁମିନା କାରଖାନାରେ ନିଯୁକ୍ତିରୁ ବଞ୍ଚିତ ହେବେ । ଆଦିବାସୀ ଓ ଦଳିତ ବର୍ଗର ପିଲାଏ ଅଧିକ କ୍ଷତିଗ୍ରସ୍ତ ହେବେ। ପରିବେଶ ପ୍ରଦୂଷଣ ହେତୁ ଏମାନଙ୍କର ଜୀବନ ଓ ଜୀବିକା - ଉଭୟ ବିପଦଗ୍ରସ୍ତ ହେବ ।

ଓଡିଶାର ଖଣିଜ ସମ୍ପଦ ଓ ବିଶେଷ କରି ଆଲୁମିନା ଉପରେ ଏବେ ସାରା ଦୁନିଆର ଆଖି ପଡିଚି । ରକେଟ୍, ମିସାଇଲ୍, ରାଇଫଲ୍, ଯୁଦ୍ଧଜାହାଜପାଇଁ ଆଲୁମିନା ଆବଶ୍ୟକ। ତେଣୁ ଓଡିଶାର ଖଣିଜ ସମ୍ପଦ ଆବଶ୍ୟକ । କାରଣ ଲାଭ ହଜାର ଗୁଣରୁ ଅଧିକ। ପୃଥିବୀର କୌଣସି ଦେଶ ଖଣିପଥର ବିକି ଧନୀ ହୋଇ ନାହିଁ । ଖଣିଭିତ୍ତିକ କାରଖାନାମାନଙ୍କରେ ମଧ୍ୟ ନିଯୁକ୍ତି ସୁଯୋଗ କମ୍ । ନୂଆ ନୂଆ ପ୍ରଯୁକ୍ତି ବିଦ୍ୟା ଫଳରେ କାରଖାନାରେ ହଜାରେ ଲୋକ ଯେଉଁ କାମ କରୁଥିଲେ ଏବେ ମେସିନ୍ ସାହାଯ୍ୟରେ ମାତ୍ର ଦଶ ଜଣ ସେହି କାମ କରିପାରୁଛନ୍ତି । ଟାଟା ଇସ୍ପାତ କମ୍ପାନିରେ ୫୦ ବର୍ଷ ପୂର୍ବେ ଯେତିକି ଲୋକ କାମ କରୁଥିଲେ ଏବେ ତା'ର ଏକ ଦଶମାଂଶ ଲୋକ କାମ କରୁଛନ୍ତି । ଓଡିଶାରେ ଆଧାରୁ ଅଧିକ ଅଞ୍ଚଳ ଜଙ୍ଗଲ, ୫୦୦ କିଲୋମିଟର ଲମ୍ବା ଉପକୂଳ । ସରକାରୀ ପ୍ରୋତ୍ସାହନ ଅଭାବରୁ ସମୁଦ୍ର ତଟବର୍ତ୍ତୀ ଗ୍ରାମ ଗୁଡିକର ମତ୍ସ୍ୟଜୀବୀମାନେ ନିଜ କୌଳିକ ବୃତ୍ତି ଛାଡି ଦାଦନ ଖଟିବାକୁ ଗାଁ, ପରିବାର ଛାଡୁଛନ୍ତି । କୃଷି ଅବସ୍ଥା ବି ସେଇପରି । ନିଶ୍ଚିତ କର୍ମ ନିଯୁକ୍ତି ଯୋଜନା କାର୍ଯ୍ୟକାରୀ ହେବା ପରେ ଗାଁରେ କୃଷି ଶ୍ରମିକ ମିଳୁନାହାନ୍ତି । ପ୍ରତିବର୍ଷ ପ୍ରାୟ ୧୮ ରୁ ୨୦ ଲକ୍ଷ ଲୋକ ରାଜ୍ୟ ଛାଡି ଜୀବନ ଓ ଜୀବିକାପାଇଁ ଦୂର ରାଜ୍ୟମାନଙ୍କରେ ଦାଦନ ଶ୍ରମିକ ଭାବରେ ଖଟୁଛନ୍ତି ।

ଓଡିଶାରେ ଦୀର୍ଘ ସମୁଦ୍ର ତଟ, ବନସମ୍ପଦ, ଉଦ୍ୟାନ କୃଷିସୁଯୋଗ ଓ ପର୍ଯ୍ୟଟନ ଶିଳ୍ପର ବିକାଶ ହେଲେ ଅବସ୍ଥା ସୁଧୁରିବ । ରାଜ୍ୟବାସୀଙ୍କ ବାର୍ଷିକ ଚାଉଳ ଆବଶ୍ୟକତା ୬୦ ଲକ୍ଷ ଟନ୍ । କେବଳ ଶ୍ରୀ ପଦ୍ଧତିରେ ଉତ୍ପାଦନକୁ ଅନାୟାସରେ ଦୁଇ କୋଟି ଟନ୍‌କୁ ବଢାଇ ହେବ । ଉତ୍ପାଦନ ବଢିଲେ ଚାଷୀର ଆୟ ବଢିବ । କେବଳ ଔଷଧୀୟ ବୃକ୍ଷ ଚାଷଦ୍ୱାରା ଆଦିବାସୀ ଅଞ୍ଚଳରେ ୨୦ ଲକ୍ଷ କର୍ମ ନିଯୁକ୍ତି ସୁଯୋଗ ମିଳିପାରିବ । ନଦୀ, ପୋଖରୀ, ବନ୍ଧ, ହ୍ରଦ ଓ ସମୁଦ୍ର ଆଉ ପଚାଶ ଲକ୍ଷ ନିଯୁକ୍ତିର ସୁଯୋଗ ଯୋଗାଇ ଦେବେ । ଆମ ପର୍ଯ୍ୟଟନ ଶିଳ୍ପ ଅତି କମ୍‌ରେ ୧୦ ଲକ୍ଷ ଲୋକଙ୍କୁ ନିଯୁକ୍ତି ଦେଇ ପାରିବ । ମାଛ ଓ ନଡ଼ିଆ ଚାଷ ସୃଷ୍ଟି କରିବ ଦଶ ଲକ୍ଷ ଜିବୀକା । ଫିଲିପାଇନ୍ସ ଶହେ ପ୍ରକାର ନଡ଼ିଆ ବାଇପ୍ରଡକ୍ଟ ରପ୍ତାନି କରି ଚଳୁଛି । ଶ୍ରୀଲଙ୍କା ଚା ଓ ରବର ଚାଷ

କରି ଭାରତଠାରୁ ଆଗରେ । ଓଡିଶାର ବସ୍ତ୍ର ଶିଳ୍ପ, ତାରକସି ଶିଳ୍ପ ଓ ଅନ୍ୟାନ୍ୟ କୁଟୀର ଶିଳ୍ପ ଆଉ ଦଶ ଲକ୍ଷ ଲୋକଙ୍କୁ ସହଜରେ ନିଯୁକ୍ତି ବା ରୋଜଗାର ସୁଯୋଗ ଦେଇ ପାରିବେ । ଉଦାରୀକରଣ ଓ ଜଗତୀକରଣର ସୁଯୋଗ ନେଇ ସରକାର ନୂଆ ଭାବରେ ଚିନ୍ତା କରନ୍ତୁ । ନବଗଠିତ ରୋଜଗାର କମିସନ୍‌ରେ ଏ ବିଷୟରେ ଚର୍ଚ୍ଚା ହେଉ । ନୂଆ ବାଟ ଖୋଜା ଯାଉ । ଆମ ରାଜ୍ୟର ଲୋକେ ପରିଶ୍ରମୀ । ପଞ୍ଜାବ, ହରିଆନା, ମହାରାଷ୍ଟ୍ର, ଜମ୍ମୁ, କାଶ୍ମୀରର ଅର୍ଥନୀତିକୁ ସମୃଦ୍ଧ କରୁଛନ୍ତି । ଏଠାରେ ସୁଯୋଗ ସୃଷ୍ଟି ହେଲେ ସେମାନେ କାହିଁକି ଘର ଦ୍ୱାର, ପିଲା, କବିଲା ଛାଡି ବାହାରକୁ ଯିବେ ? ଜୀବନ ଓ ଜୀବିକା ଓତପ୍ରୋତ ଭାବେ ଜଡିତ - ଗୋଟିଏ ନଦୀର ଦୁଇ କୂଳ ଭଳି । କେବଳ ଦୂରଦୃଷ୍ଟିସମ୍ପନ୍ନ ଦକ୍ଷ ନାବିକ ଦରକାର ।

*୪ ଅକ୍ଟୋବର, ୨୦୦୯*



# ସନ୍ଥ ଭାଲେଣ୍ଟାଇନ୍‌ଙ୍କ ଭାରତୀୟ ଚେଲାମାନେ

କିଛିବର୍ଷ ତଳେ ବରିଷ୍ଠ ନାଗରିକମାନଙ୍କ ପାରିବାରିକ ସମସ୍ୟାକୁ ନେଇ ନିର୍ମିତ 'ବାଗ୍‌ବାନ୍' ଚଳଚ୍ଚିତ୍ରରେ ବୟସ୍କ ନାୟକ ଅମିତାଭ ବଚ୍ଚନ ନାୟିକା ହେମାମାଳିନୀଙ୍କୁ ଭାଲେଣ୍ଟାଇନ୍ ଶୁଭେଚ୍ଛା ଦେବାର ଦୃଶ୍ୟ ବେଶ୍ ଉପଭୋଗ୍ୟ ଥିଲା । କିନ୍ତୁ ବିଗତ ବର୍ଷଟି ଭାରତୀୟ ଭାଲେଣ୍ଟାଇନ୍ ଭକ୍ତ ଓ ପ୍ରେମ ପାଗଳମାନଙ୍କପାଇଁ ଥିଲା ଘଟଣା-ଦୁର୍ଘଟଣାର ବର୍ଷ । ଗୁଜୁରାଟ, ମୁମ୍ବାଇ, ମାଙ୍ଗାଲୋର, ଜୟପୁର, ଭୋପାଳ ସମେତ ଅନେକ ଜାଗାରେ ଏମାନେ ଆକ୍ରମଣର ଶିକାର ହୋଇଥିଲେ । ଏହା ପୂର୍ବରୁ ଭୁବନେଶ୍ୱରରେ ଏକ ପାର୍କରୁ ଅବିବାହିତ ପ୍ରେମୀ ଯୁଗଳଙ୍କୁ ଘଉଡାଇବାପାଇଁ ସଦଳବଳେ ଉଭା ହୋଇଥିଲେ ସ୍ୱୟଂ ମହିଳା କମିଶନ ଅଧକ୍ଷା । ଏବେ ରାଜସ୍ଥାନର କଂଗ୍ରେସ ମୁଖ୍ୟମନ୍ତ୍ରୀ ଓ କର୍ଣ୍ଣାଟକର ବିଜେପି ମୁଖ୍ୟମନ୍ତ୍ରୀ ଉଭୟେ ରାସ୍ତାଘାଟରେ ମୁକ୍ତ ପ୍ରେମ ନିବେଦନକୁ ନାପସନ୍ଦ କରି ବିବୃତ୍ତି ଦେଇଛନ୍ତି । ଶିବସେନା, ରାମସେନା ଓ କେତେକ ମହିଳା ସଂଗଠନ ଭାରତରେ 'ଭାଲେଣ୍ଟାଇନ୍' ଅପସଂସ୍କୃତିର ଘୋର ବିରୋଧ କରୁଛନ୍ତି । ଏ ମାସରେ ସୁପ୍ରିମ୍ କୋର୍ଟ କେବଳ ବିବାହିତ ପତି-ପତ୍ନୀଙ୍କୁ ସର୍ବସାଧାରଣ ଜାଗାରେ ଚୁମ୍ବନ କରିବାର ଅଧିକାର ଦେଇଛନ୍ତି । ଅପରପକ୍ଷରେ ଉତ୍ତରପ୍ରଦେଶ ମଦ୍ରାସା ଏଡୁକେସନ୍ ବୋର୍ଡ ପୁଅ-ଝିଅଙ୍କ ସହ ଶିକ୍ଷାକୁ ସାରିଆତ୍ ବିରୋଧୀ ବୋଲି ଘୋଷଣା କରିବା ପରେ ମୁସଲିମ୍ ସମ୍ପ୍ରଦାୟରେ ହଇଚଇ ସୃଷ୍ଟି ହୋଇଛି । ଏବେ ଲଣ୍ଡନବାସୀ ମୁଲ୍ଲା ଅଂଜିମ ଚୌଧୁରୀ 'ଭାଲେଣ୍ଟାଇନ୍‌ସ୍ ଡେ' ପାଳୁଥିବା ଯୁବକ ଯୁବତୀ ନର୍କରେ ପଡିବେ ବୋଲି ଘୋଷଣା କରି କେବଳ ଆଲ୍ଲାଙ୍କୁ ଭଲ ପାଇବାକୁ ଆଦେଶ ଦେଇଛନ୍ତି ।

ଏ ସବୁ ସତ୍ତ୍ୱେ, ଏ ବର୍ଷ ପ୍ରେମିକ-ପ୍ରେମିକାଙ୍କ ପକ୍ଷ ନେବେ ଭାରତର ରେଳମନ୍ତ୍ରୀ, ଲାଲୁ ପ୍ରସାଦ ଯାଦବ । 'ଭାଲେଣ୍ଟାଇନସ୍ ଡେ' ଦିନ ସେ 'ଆଇ ଲଭ୍ ଇୟୁ' କହିବେ ତାଙ୍କ ନ'ସନ୍ତାନର ଜନନୀ ଓ ବିହାରର ପୂର୍ବତନ ମୁଖ୍ୟମନ୍ତ୍ରୀ ରାବଡ଼ି ଦେବୀଙ୍କୁ । ଏହା ଛଡ଼ା ଲାଲୁଙ୍କୁ ୱେବ୍‌ସାଇଟ୍ ବ୍ଲଗ୍ ଜରିଆରେ ନିକାଞ୍ଚନରେ ଭେଟିବା ପାଇଁ ଅନୁରୋଧ କରିଥିବା ଜଣେ ମହିଳା ଫ୍ୟାନ୍‌ଙ୍କୁ ମଧ୍ୟ ଲାଲୁ 'ଆଇ ଲଭ୍ ଇୟୁ' ବା 'ଇଲୁ' କହିବେ ବୋଲି ଗଣମାଧ୍ୟମକୁ ଆଗରୁ ଜଣାଇ ସାରିଛନ୍ତି । ସେ କହନ୍ତି 'ଭାଲେଣ୍ଟାଇନସ୍ ଡେ'ର ଭଲ ପାଇବାକୁ ବ୍ୟାପକ ଅର୍ଥରେ ନିଆଯାଉ । ଅଟଳ ବିହାରୀ ଓ ନବୀନ ପଟ୍ଟନାୟକ, ମାୟାବତୀ, ମମତା, ଜୟଲଳିତା କାହାକୁ 'ଇଲୁ' କହିବେ ? ଏବେ ତ ସମାଜରେ ଏମାନଙ୍କ ସଂଖ୍ୟା ବଢ଼ୁଛି ।

'ଭାଲେଣ୍ଟାଇନସ୍ ଡେ' ବିଷୟରେ ଆମ ଦେଶରେ ବିବାଦ ଲାଗି ରହିଛି, କିନ୍ତୁ ବିତର୍କ ଆରମ୍ଭ ହୋଇନାହିଁ । ଏହା ନିଶ୍ଚିତ ଭାବରେ ଏକ ବିଦେଶୀ ପରମ୍ପରା, ଯେପରି ହାପି ବାର୍ଥ ଡେ, ସଣ୍ଡେ, ଗୁଡ୍ ନାଇଟ୍, ଗୁଡ୍ ମର୍ଣ୍ଣିଂ, ଟାଟା, ବାଏ ବାଏ, ନୂଆବର୍ଷ ଓ ଖ୍ରୀଷ୍ଟମାସ୍ । ନିଜେ ଭାଲେଣ୍ଟାଇନ୍ ଜଣେ ଖ୍ରୀଷ୍ଟିୟାନ୍ ସନ୍ଥ । କାଥଲିକ୍ ଚର୍ଚ୍ଚ ପରମ୍ପରାରେ ତିନି ଜଣ ସନ୍ଥଙ୍କର ଏକ ନାଁ - ଭାଲେଣ୍ଟାଇନ୍ ଏବଂ ତିନିଜଣ ଯାକ· ନିଜ ନିଜ ବିଶ୍ୱାସପାଇଁ ଶହୀଦ ହୋଇଥିଲେ । ଆଉ ଏକ କିମ୍ବଦନ୍ତୀ ଅନୁସାରେ ପ୍ରକୃତ ଭାଲେଣ୍ଟାଇନ୍ ତୃତୀୟ ଶତାବ୍ଦୀରେ ରୋମ୍ ସମ୍ରାଟ୍ କ୍ଲଡିଅସ୍-୨ଙ୍କ ଅମଳର ଲୋକ । ସମ୍ରାଟ କ୍ଲଡିଅସ୍‌ଙ୍କ ଧାରଣା ଥିଲା ଅବିବାହିତ ପୁରୁଷମାନେ ହିଁ 'ଉତ୍ତମ' ଯୋଦ୍ଧା ହୋଇପାରିବେ । ତେଣୁ ସେ ରୋମ୍ ସାମ୍ରାଜ୍ୟରେ ଯୁବକମାନଙ୍କ ବିବାହକୁ ଅବୈଧ ଘୋଷଣା କରିଥିଲେ । ସନ୍ଥ ଭାଲେଣ୍ଟାଇନ୍ ଏହାକୁ ବିରୋଧ କରି ଯୁବକ ଯୁବତୀ ମାନଙ୍କର ଗୁପ୍ତ ବିବାହ ନିଜ ଚର୍ଚ୍ଚରେ କରାଉଥିବାରୁ ପ୍ରାଣଦଣ୍ଡ ପାଇଥିଲେ ।

ଆଉ ଏକ କିମ୍ବଦନ୍ତୀ ଅନୁସାରେ ସନ୍ଥ ଭାଲେଣ୍ଟାଇନ୍ ଜେଲ୍ ଭୋଗୁଥିବା ବେଳେ ଜେଲରଙ୍କ ସୁନ୍ଦରୀ ଝିଅଙ୍କ ପ୍ରେମରେ ପଡି ପ୍ରେମିକାଙ୍କୁ ଯେଉଁ ପ୍ରେମ ପତ୍ର ପଠାଉଥିଲେ ତା ତଳେ ଲେଖୁଥିଲେ 'ତୁମର ପ୍ରିୟ ଭାଲେଣ୍ଟାଇନ୍' । ଶେଷରେ ପ୍ରେମିକାଙ୍କୁ ଧରି ଜେଲ୍‌ରୁ ପଳାୟନ କରିଥିଲେ ସେ । ଆଉ କେତେକଙ୍କ ମତରେ ଖ୍ରୀଷ୍ଟଧର୍ମର ବହୁ ପୂର୍ବରୁ ରୋମାନ୍‌ମାନେ ଫେବ୍ରୁଆରି ମାସକୁ ଋତୁରାଜ ବସନ୍ତଙ୍କ ପୂଜା ଓ ପରସ୍ପର ପ୍ରେମ ନିବେଦନର ସମୟ ଭାବରେ ପାଳନ କରୁଥିଲେ । ଏଇ ଉତ୍ସବର ନାମ ଥିଲା ଲୁପରକାଲିଆ । ଫେବ୍ରୁଆରି ପନ୍ଦର ତାରିଖରେ ପ୍ରାଚୀନ ରୋମ୍‌ରେ କୃଷି ଉତ୍ସବ ପାଳନ କରାଯାଉଥିଲା ଓ ପୃଥିବୀର ଉତ୍ପାଦିକା ଶକ୍ତି ବଢାଇବାପାଇଁ କୃଷି

ଦେବତା 'ଫନ୍‌ସ'ଙ୍କ ପୂଜା, ଅର୍ଚ୍ଚନା ହେଉଥିଲା ଏବଂ ଏହି କାରଣରୁ ସ୍ତ୍ରୀମାନଙ୍କୁ ପ୍ରଜନନ ଶକ୍ତିର ଅଧିକାରିଣୀ ରୂପେ ସମ୍ମାନ କରାଯାଉଥିଲା । ଏବଂ ଉତ୍ସବ ସମୟରେ ପୁଅ ପିଲାମାନେ ଛେଳି ହାଡରେ ଝିଅମାନଙ୍କୁ ସ୍ପର୍ଶ କରୁଥିଲେ । ବିଶ୍ୱାସ କରାଯାଉଥିଲା ଏହାଦ୍ୱାରା ଯୁବତୀମାନେ ସନ୍ତାନ ଉତ୍ପାଦିକା ଶକ୍ତିଯୁକ୍ତା ହେବେ । ଏହା ପରେ କୁମାରମାନେ କୁମାରୀଙ୍କୁ ପ୍ରେମ ନିବେଦନ କରି ବିବାହ କରୁଥିଲେ । ୪୯୮ ମସିହାରେ ପୋପ୍ ଗେଲାସିଅସ୍ ଏହାକୁ ଖ୍ରୀଷ୍ଟିୟାନ୍ ପରମ୍ପରାରେ ଯୋଡି ଫେବୃଆରି ୧୪ ତାରିଖକୁ 'ଭାଲେଣ୍ଟାଇନସ୍ ଡେ' ନାମ ଦେଲେ ।

ଇଂଲଣ୍ଡରେ 'ଭାଲେଣ୍ଟାଇନ୍‌ସ୍ ଡେ' ପହଞ୍ଚିଲା ବାରଶହ ବର୍ଷ ପରେ ୧୭୦୦ ମସିହାରେ । ପ୍ରାୟ ଶହେ ବର୍ଷ ଭିତରେ ବନ୍ଧୁ, ବାନ୍ଧବୀ, ପ୍ରେମ ପ୍ରବଣ ଲୋକେ ଚିଠି, ଫୁଲ ଉପହାର ଜରିଆରେ ନିଜର ଭାବନା ବ୍ୟକ୍ତ କରିବା ଆରମ୍ଭ କରିଦେଲେ । ଫ୍ରାନ୍‌ସ ଓ ଇଂଲଣ୍ଡର ଲୋକେ ସେତେବେଳେ ବିଶ୍ୱାସ କରୁଥିଲେ ଯେ ଫେବୃଆରି ପକ୍ଷୀମାନଙ୍କର ମିଳନ ମାସ ଓ ତେଣୁ ସ୍ତ୍ରୀ-ପୁରୁଷଙ୍କର ବି ଭାଲେଣ୍ଟାଇନ୍ ଋତୁ । ଖ୍ରୀଷ୍ଟମାସ ପରେ 'ଭାଲେଣ୍ଟାଇନ୍‌ସ୍ ଡେ'ରେ ସବୁଠାରୁ ଅଧିକ ଗ୍ରୀଟିଙ୍ଗ୍‌ସ କାର୍ଡ ବିକ୍ରି ହୁଏ - ପ୍ରାୟ ଶହେ କୋଟି କାର୍ଡ ଏବଂ ପାଶ୍ଚାତ୍ୟ ଦେଶମାନଙ୍କରେ ଶତକଡା ୮୫ଭାଗ କାର୍ଡ ଯୁବତୀମାନେ କିଣନ୍ତି । ଏହି କାର୍ଡରେ ପ୍ରେମ ସମ୍ପର୍କରେ ମହାପୁରୁଷଙ୍କ ବାଣୀ ଉଦ୍ଧୃତ ହୋଇଥାଏ । ଆରିଷ୍ଟୋଟଲ୍‌ଙ୍କ ଯେଉଁ ବାକ୍ୟଟି ବାରମ୍ବାର ବ୍ୟବହୃତ ହୁଏ ସେଇଟି ହେଲା-'ଲଭ୍ ଇଜ୍ କମ୍ପୋଜ୍‌ଡ ଅଫ୍ ଏ ସିଙ୍ଗଲ୍ ସୋଲ୍ ଇନ୍‌ହାବିଟିଙ୍ଗ୍ ଇନ୍ ଟୁ ବଡିଜ୍' । ଦୁଇଟି ଶରୀରରେ ରହୁଥିବା ଗୋଟିଏ ଆତ୍ମାର ନାଁ ହେଲା ପ୍ରେମ ।

କିନ୍ତୁ 'ପ୍ରେମ ନିବେଦନ'ର ଖୋଲାଖୋଲି ବ୍ୟବସାୟୀକରଣ ପରେ 'ଭାଲେଣ୍ଟାଇନ୍‌ସ୍ ଡେ' ଅନେକଙ୍କ ମନକୁ ବିକ୍ଷୁବ୍ଧ କରିଥାଏ । ଭାରତରେ ସହରାଞ୍ଚଳର ଅବିବାହିତ କିଶୋରୀମାନେ ଅଯାଚିତ ପ୍ରେମର ପ୍ରେସର୍ ନେଇ ପାରନ୍ତି ନାହିଁ । ଏବେ ଭାଲେଣ୍ଟାଇନ୍ ବିଶାରଦମାନେ ଏ ଦିନକୁ ଭଲ ଭାବରେ ପାଳନ କରାଯିବା ଉପରେ ଗାଇଡ୍ ବହି ଲେଖିଲେଣି । ଚୀନ୍ ସରକାର ଏବେ ଜେବ୍ରା ଛକରେ ଦୁଇଟି ଲାଲ୍ ହୃତ୍‌ପିଣ୍ଡ ଛବି ଉପରେ 'ଆଇ ଲଭ୍ ୟୁ' ଲେଖିବାକୁ ସ୍ଥିର କରିଛନ୍ତି, ଡ୍ରାଇଭରମାନଙ୍କୁ ଏକ ରୋମାଣ୍ଟିକ୍ ଅନୁଭୂତି ଦେଇ ବେଗ କମାଇବାକୁ, ଜୀବନର ମୂଲ୍ୟ ବୁଝାଇବାକୁ । କିନ୍ତୁ ଏବେ 'ଭାଲେଣ୍ଟାଇନ୍‌ସ୍ ଡେ'ର ଅତି ମାତ୍ରାରେ ପ୍ରେମ କୋଳାହଳରୁ ବର୍ତ୍ତିବା ପାଇଁ ବହୁ ଅବିବାହିତ ଏବଂ ଏକଲା ରହୁଥିବା ବ୍ୟକ୍ତି ମିଶି ଫେବୃଆରି ୧୪ ତାରିଖକୁ 'ଆଣ୍ଟି ଭାଲେଣ୍ଟାଇନ୍‌ସ୍ ଡେ' ବା ଭାଲେଣ୍ଟାଇନ୍ ବିରୋଧୀ ଦିବସ ଭାବେ ପାଳନ

କରୁଛନ୍ତି । ଏ ମଧ୍ୟରୁ କେତେକ କବାଟ କିଳି ଘରେ ରହୁଛନ୍ତି । ଅନ୍ୟ ବିରୋଧୀମାନେ ଏଇ ଦିନଟିକୁ 'ସିଙ୍ଗଲ୍ ଆୱେରନେସ୍ ଡେ' ବା 'କୁମାର ଚେତନା ଦିବସ' ରୂପେ ପାଳନ କରୁଛନ୍ତି । ଏ ଦିନ ଅବିବାହିତ ଚିରକୁମାର-କୁମାରୀଙ୍କ ଜୀବନର ସାର୍ଥକତା ଓ ଆବଶ୍ୟକତା ଉପରେ ଚର୍ଚ୍ଚା କରାଯାଉଛି । ଏ ଦିନକୁ 'ଲଭର୍ସ୍ ହଲି ଡେ' ନ କରି 'ସିଙ୍ଗଲସ୍ ହଲି ଡେ' ବୋଲି ଘୋଷଣାପାଇଁ ଏମାନେ ଦାବି କଲେଣି । ଏ ଦିନ ସାରା ବିଶ୍ୱରେ ଯେତିକି ଅପବ୍ୟୟ ହୁଏ ସେତିକି ପଇସାରେ ଆଫ୍ରିକା ମହାଦେଶର ଅଧେ ଦେଶରୁ ନିରକ୍ଷରତା ଓ ପୁଷ୍ଟିହୀନତା ଦୂର କରାଯାଇ ପାରିବ । ଭାରତୀୟ ମହାନଗରୀମାନଙ୍କରେ ଫେବ୍ରୁଆରି ୧୪ ଦିନ ୩୦ ହଜାର ବାହାଘର ହୁଏ । ଡିଜେ, ବ୍ୟାଣ୍ଡ ପାର୍ଟି, ମଣ୍ଡପ, ଗେଷ୍ଟହାଉସ୍, ଉପହାର ଓ ଡିନର୍ ପାଇଁ ଖର୍ଚ୍ଚ ହୁଏ ପ୍ରାୟ ଦଶ ହଜାର କୋଟି ଟଙ୍କା ।

ପୁରୁଷ-ସ୍ତ୍ରୀ ଓ ବିଶେଷ କରି ଯୁବକ-ଯୁବତୀଙ୍କର ପରସ୍ପର ସ୍ନେହ ପ୍ରେମ ଓ ଆନ୍ତରିକ ଭାବନା ପ୍ରଦର୍ଶନ ଏକ ପ୍ରକୃତିଦତ୍ତ ପ୍ରବୃତ୍ତି । ଏହି ପ୍ରବୃତ୍ତିକୁ ଶୃଙ୍ଖଳିତ କରିବା ପାଇଁ ସମାଜ ସୃଷ୍ଟି କରିଥିଲା ବିବାହ ବନ୍ଧନ । ରୋମ୍ ସମ୍ରାଟ୍ ଯୁବ ବର୍ଗଙ୍କ ବିବାହ ବନ୍ଦ ଆଦେଶ ଦେବାରୁ ଜନ୍ମ ନେଲା ଭାଲେଣ୍ଟାଇନ୍‌ଙ୍କ ବିରୋଧ ଓ ଜନପ୍ରିୟତା । ଭାଲେଣ୍ଟାଇନ୍ ବିରୋଧୀ ଲଣ୍ଡନବାସୀ ମୁଲ୍ଲା ଅଂଜିମ୍ ନିଜେ ତାଙ୍କ ଯୁବାବସ୍ଥାରେ ସୁରା ଓ ସାକୀର ରସିକ ଥିଲେ । ପୃଥିବୀ ପ୍ରସିଦ୍ଧ ସବୁ ମହାକାବ୍ୟ ପୁରୁଷ-ସ୍ତ୍ରୀ ପ୍ରେମ କାହାଣୀ ଉପରେ ଆଧାରିତ । ବିଶ୍ୱାମିତ୍ର, ପରାଶରଙ୍କ ଭଳି ମୁନିଋଷିମାନେ ବି ଏଥିରୁ ବର୍ତ୍ତି ନାହାନ୍ତି । କିନ୍ତୁ ଏହାର ପରିପ୍ରକାଶ ଶୈଳୀକୁ ନେଇ ବିରୋଧ ହେଉଛି । ଅତ୍ୟନ୍ତ ବ୍ୟକ୍ତିଗତ ଭାବନା ଓ ସମ୍ପର୍କକୁ ରାସ୍ତାଘାଟ ବଜାରରେ ନଗ୍ନ ପ୍ରଦର୍ଶନ କରିବାର କୌଣସି ଆବଶ୍ୟକତା ନାହିଁ । ଏହା ଯୌନ ବିକାରଗ୍ରସ୍ତ ବା ପ୍ରେମପାଗଳଙ୍କ ଦିନ ନୁହେଁ । ଭାଲେଣ୍ଟାଇନ୍ ନିଜେ ଲଙ୍ଗଳା ସଂସ୍କୃତିର ବିରୋଧୀ ଥିଲେ ଓ ପ୍ରେମମୟ ବୈବାହିକ ଜୀବନ ସମର୍ଥନରେ ବିଦ୍ରୋହ କରିଥିଲେ । ବାର୍‌ରେ ମଦ ପିଇ ହାତରେ ଗୋଲାପ ଫୁଲ ଧରି ମାତାଲ୍ ହୋଇ ଝିଅ ପୁଅଙ୍କ ପଛରେ ନ ଗୋଡାଇ ଯୁବ ବର୍ଗ ଆଜିର ଦିବସକୁ ଭାରତର ଓ ପୃଥିବୀର ମହାନ୍ ପ୍ରେମିକମାନଙ୍କ ସ୍ମୃତିରେ ପାଳନ କରନ୍ତୁ । ଭାରତ ଇତିହାସ ଭଲ ପାଇବାର ଉଚ୍ଚତମ ଆଦର୍ଶରେ ପରିପୂର୍ଣ୍ଣ । ଭାଲେଣ୍ଟାଇନ୍ ନାଁପାଇଁ ଆପତ୍ତି ଥିଲେ କୃଷ୍ଣ, ରାଧା, ବାତ୍ସାୟନ, କେଦାର ଗୌରୀ ବା ପ୍ରଜାପତିଙ୍କ ନାମ ରଖାଯାଇପାରିବ ।

ସେହିପରି ଭାଲେଣ୍ଟାଇନ୍ ବିରୋଧୀମାନେ ମନେ ରଖନ୍ତୁ ଯେ ହିଂସା ଓ ଘୃଣା ପ୍ରେମର ବିକଳ୍ପ ନୁହେଁ । ଅପସଂସ୍କୃତି ବିରୋଧରେ ପ୍ରଚାର ସଭ୍ୟ, ମାର୍ଜିତ ଓ ଅଧିକ

ସଂସ୍କୃତି ସମ୍ପନ୍ନ ହେଉ । ଭାରତରେ ଏହାକୁ ଶାଶ୍ୱତ ପ୍ରେମ ଓ ବିବାହ ଦିବସ ଭାବରେ ପାଳନ କରାଯାଇ ପାରିବ । ଏ ବିଷୟରେ ଅଧିକ ବିତର୍କ ଓ ଚର୍ଚ୍ଚାର ଆବଶ୍ୟକତା ରହିଛି । ଦେଶରେ ଏଥିପାଇଁ ଯେତିକି ଉତ୍ସାହ, ଉନ୍ମାଦନା ସେତିକି ଉଦ୍‌ବେଗ ଓ ଉତ୍ତେଜନା ଅଛି ।

ଶେଷରେ ଭାଲେଣ୍ଟାଇନ୍‌କୁ ନେଇ ଏକ ବ୍ୟଙ୍ଗ : ଗୋଟିଏ କୋଣରେ ଲାଖିଥିବା ରଙ୍ଗବେରଙ୍ଗୀ 'ଡାକଟିକଟ' ଭାଲେଣ୍ଟାଇନ୍ ଲଫାପାକୁ ଚାପା ଗଳାରେ କହିଲେ ତମ ସାଙ୍ଗରେ ଏମିତି ସାରାଜୀବନ ବିତାଇବାକୁ ଚାହେଁ । ଉତ୍ତରରେ ଲଫାପା କହିଲେ 'ଚୁପ୍ କର, ମୋ ହୃଦୟ ଭିତରେ ପ୍ରିୟତମା 'ଚିଠି'ଙ୍କ ଛଡା ଆଉ କାହା ପାଇଁ ଜାଗା ଖାଲି ନାହିଁ, ତମେ ଯୋଉ କୋଣରେ ଅଛ ସେଇଠି ଥାଅ' ।

*୧୨ ଫେବୃଆରୀ, ୨୦୦୯*

■ ■ ■

# ନାଁ, ସାଙ୍ଗିଆ ଓ ମୁନ୍ନାଭାଇ

ନେତା ହେବାପାଇଁ ଅଣ୍ଟା ଭିଡିଥିବା ଅଭିନେତା 'ମୁନ୍ନାଭାଇ' ସଞ୍ଜୟ ଦତ୍ତଙ୍କର ଏକ ଉକ୍ତିକୁ ନେଇ ଅନେକ ନାରୀ ନେତ୍ରୀ ଓ ଅଭିନେତ୍ରୀ କ୍ଷୁବ୍ଧ ହୋଇଛନ୍ତି । ସଞ୍ଜୟ କହନ୍ତି କି ବିବାହ ପରେ ଝିଅମାନେ ବାପାଙ୍କ ସାଙ୍ଗିଆ ବା 'ସରନେମ୍' ଛାଡି ନିଜ ନାଁରେ ପତିଙ୍କ ସାଙ୍ଗିଆ ଯୋଡିବା ଉଚିତ୍ । ଭଉଣୀ ପ୍ରିୟାଦତ୍ତ ଏବେ ଲୋକସଭା ସଦସ୍ୟା ଏବଂ ଏହା ଜନପ୍ରିୟ ଅଭିନେତା ସ୍ୱର୍ଗତ ପିତା ଓ ନର୍ଗିସ୍‌ଙ୍କ ପତି ସୁନୀଲ ଦତ୍ତଙ୍କ ସାଙ୍ଗିଆ ସାହାରାରେ ସମ୍ଭବ ହେଲା ବୋଲି ସଞ୍ଜୟଙ୍କ ବିଶ୍ୱାସ । ତାଙ୍କ ମା' ଓ ପ୍ରସିଦ୍ଧ ଅଭିନେତ୍ରୀ 'ନର୍ଗିସ୍' ଭାରତୀୟ ପରମ୍ପରାକୁ ସମ୍ମାନ ଦେଇ ବିବାହ ପରେ ନିଜ ନାମ ସହ ସ୍ୱାମୀଙ୍କ ସାଙ୍ଗିଆ ଯୋଡି ହୋଇଥିଲେ 'ନର୍ଗିସ୍ ଦତ୍ତ' ବୋଲି ସଞ୍ଜୟ ଗର୍ବର ସହ କହନ୍ତି । କିନ୍ତୁ ବଲିଉଡ୍‌ର ବହୁ ନାମକରା କଳାକାର ଏ ପରମ୍ପରା ଭାଙ୍ଗି ନିଜ ପିତୃଦତ୍ତ ନାମ ଓ ସରନେମ୍ ଯୋଡି ରଖିଛନ୍ତି ।

ମନ୍ଦିରା ବେଦୀ, ମହିମା ଚୌଧୁରୀ, କବିତା କ୍ରିଷ୍ଣମୂର୍ତ୍ତି, ମେଘନା ଗୁଲଜାର, ଫାରା ଖାନ୍ ଓ ମାଧୁରୀ ଦୀକ୍ଷିତଙ୍କ ଭଳି ଅନେକ ମହିଳା ବିବାହ ପରେ ସାଙ୍ଗିଆ ପରିବର୍ତ୍ତନ କରିନାହାନ୍ତି । ଐଶ୍ୱର୍ଯ୍ୟା ରାୟ ବାପାଙ୍କ ସାଙ୍ଗିଆ ସହ ପତିଙ୍କ ସାଙ୍ଗିଆ ଯୋଡି ହୋଇଛନ୍ତି ଐଶ୍ୱର୍ଯ୍ୟା ରାୟ ବଚ୍ଚନ । ସେହିପରି ମଲାଇକା ଆରୋରାଖାନ୍ ଓ ଆହୁରି ଅନେକ । କିନ୍ତୁ ଐଶ୍ୱର୍ଯ୍ୟାଙ୍କ ଶାଶୁ ଜୟା ଭାଦୁରି ବିବାହ ପରେ 'ଭାଦୁରି' ତ୍ୟାଗ କରି ହୋଇଛନ୍ତି ଜୟା ବଚ୍ଚନ । ଟିନା ମୁନିମ୍ ଏବେ ଟିନା ଅମ୍ବାନୀ । ବଲିଉଡ୍ ଭଳି ଓଲିଉଡ୍‌ରେ ଉଭୟ ପରମ୍ପରା ଚାଲୁ ରହିଛି । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପିତା ଓ ପତି ଉଭୟଙ୍କ ସାଙ୍ଗିଆ ରଖି ଦସ୍ତଖତ କରୁଥିଲେ ଇନ୍ଦିରା ପ୍ରିୟଦର୍ଶିନୀ ନେହରୁ ଗାନ୍ଧୀ ।

୧୯୮୧ ମସିହାରେ କେତେକ ସମଭାବାପନ୍ନ ବ୍ୟକ୍ତି ଏକାଠି ହୋଇ ଆରମ୍ଭ କରିଥିଲେ 'ଜାତିସୂଚକ ସଂଜ୍ଞା ହଟାଅ' ଆନ୍ଦୋଳନ । ବହୁ ଯୁବ ବନ୍ଧୁ ଯୋଗ

ଦେଇଥିଲେ ଓ ନିଜ ନିଜ ନାମରୁ ସଂଜ୍ଞା କାଟି ଦେଇଥିଲେ । ସେତେବେଳର ମୁଖ୍ୟମନ୍ତ୍ରୀଙ୍କୁ ଭେଟି ନିବେଦନ କରିଥିଲେ, ନିଜ ସଂଜ୍ଞା ପ୍ରଥମେ ହଟାନ୍ତୁ ଓ ପ୍ରାଇମେରି ସ୍କୁଲରେ ପ୍ରଥମ ଆଡ୍‌ମିସନ୍ ବେଳେ ପ୍ରତ୍ୟେକ ପିଲାଙ୍କ ନାମରୁ ଜାତିସୂଚକ ସଂଜ୍ଞା କାଟି ଦେବାପାଇଁ ଶିକ୍ଷା ବିଭାଗ ତରଫରୁ ସର୍କୁଲାର ଜାରି କରିବାପାଇଁ ନିର୍ଦ୍ଦେଶ ଦିଅନ୍ତୁ । ତା'ହେଲେ ପିଲାମାନେ ଶିକ୍ଷା ଜୀବନ ଆରମ୍ଭରୁ ପରସ୍ପରକୁ ସମଦୃଷ୍ଟିରେ ଦେଖିବେ । ଶିକ୍ଷକ, ଶିକ୍ଷୟିତ୍ରୀଙ୍କ ମନରୁ ଜାତିଗତ ଭାବନା କ୍ରମେ ଦୂର ହେବ ଓ ଶେଷରେ ଏହା ଏକ ଜାତିମୁକ୍ତ ସମାଜ ସୃଷ୍ଟିରେ ସାହାଯ୍ୟ କରିବ ।

ବିହାରର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜଗନ୍ନାଥ ମିଶ୍ରଙ୍କୁ ମଧ୍ୟ ଏକ ନିବେଦନ ପତ୍ର ପଠାଇଥିଲେ । ସେ ମହାଶୟ ଅଳ୍ପ ସମୟପାଇଁ 'ମିଶ୍ର' ସାଙ୍ଗିଆ ହଟାଇ ଦେଇଥିଲେ । ସେତେବେଳେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ରାଷ୍ଟ୍ରୀୟ ସେବା ଯୋଜନା ଦାୟିତ୍ୱରେ ଥାଏ । ସେତେବେଳର କୁଳପତି ଡକ୍ଟର ମହେନ୍ଦ୍ର ରାଉତ ଏହି ଉଦ୍ୟମକୁ ସମର୍ଥନ ଦେବାରୁ ଆମେ ଓଡିଶାର ବିଭିନ୍ନ କଲେଜ ଅଧ୍ୟକ୍ଷଙ୍କୁ ଚିଠି ଲେଖି ଏନ୍‌ଏସ୍‌ଏସ୍ ଜରିଆରେ ଏହାର ପ୍ରଚାର, ପ୍ରସାରପାଇଁ ଅନୁରୋଧ କରିଥିଲୁ । ତା'ପୂର୍ବରୁ ମୁଁ ଭୁବନେଶ୍ୱର କୋର୍ଟରେ ଆଫିଡେଭିଟ୍ କରି ପ୍ରଥମେ ନିଜ ନାମରୁ ଜାତିସୂଚକ ସାଙ୍ଗିଆ ହଟାଇ ଦେଇଥିଲି । କିନ୍ତୁ ଅଫିସ୍ ରେକର୍ଡରୁ ସରନେମ୍ ସାଫ୍ କରିବାକୁ ମତେ ଲାଗିଥିଲା ଦୀର୍ଘ ଦଶ ବର୍ଷ । ଆଫିଡେଭିଟ୍‌ରେ ଦସ୍ତଖତ ପୂର୍ବରୁ ବିଚାରପତି ପଚାରିଥିଲେ କାହିଁକି ଏପରି କରୁଛ । କହିଲି, କାରଣଟି ଆଫିଡେଭିଟ୍‌ରେ ଲେଖିଛି । ତାଙ୍କ ସାଙ୍ଗିଆ ଓ ମୋ ସାଙ୍ଗିଆ ଏକା ଥିଲା । ହସି କହିଲେ ଆମ ସଂଖ୍ୟା କମିଯିବ । ମୁଁ ଉତ୍ତର ଦେଇ କହିଥିଲି 'ଦେଶପାଇଁ ଏହା ଶୁଭ ଖବର ହେବ । ଆପଣ ବି ସାଙ୍ଗିଆ କାଟନ୍ତୁ । କିନ୍ତୁ କେବଳ ସାଙ୍ଗିଆ କାଟିଲେ ଜାତି ହଟିବ ନାହିଁ - ଏହା ଏକ ଆରମ୍ଭ ଓ ଏଥିପାଇଁ ସଂଗଠିତ ଆନ୍ଦୋଳନ ଆବଶ୍ୟକ ।

ସାଙ୍ଗିଆ କେବଳ ବଂଶଗତ ଉପାଧି, କୁଳ ନାମ ବା ପିତା, ପତିଙ୍କ ନାମର ଅଂଶ ନୁହେଁ । ଏହା ଏକ ସାମାଜିକ ସମସ୍ୟା । ଦଶ ହଜାର ବର୍ଷ ପୁରୁଣା ମାନବ ସଭ୍ୟତା ଓ ସଂସ୍କୃତିରେ ସାଙ୍ଗିଆର ବୟସ ଦୁଇ ହଜାର ବର୍ଷରୁ କମ୍ । ୟୁରୋପରେ ଦ୍ୱାଦଶ ଶତାବ୍ଦୀରେ ସାଙ୍ଗିଆ ବ୍ୟବହାର ଆରମ୍ଭ ହୋଇଥିଲା ଏବଂ ପରବର୍ତ୍ତୀ କାଳରେ ଏକ ନାମଧାରୀ ବ୍ୟକ୍ତିଙ୍କ ମଧ୍ୟରେ ଫରକ ଦର୍ଶାଇବାକୁ ସରନେମ୍ ବ୍ୟବହାର ବଢିଲା । ତ୍ରୟୋଦଶ ଶତାବ୍ଦୀରେ ଅଧିକାଂଶ ଲୋକଙ୍କ ନାଁ ଥିଲା ଉଇଲିୟମ୍, ରିଚାର୍ଡ, ଜନ୍, ଆଣ୍ଡ୍ରୁ, ରବିନ୍ ଓ ଥୋମାସ୍ । ନାଁ ଅଭାବରୁ ଉଇଲିୟମ୍‌ଙ୍କ ପୁଅ ନାଁ ହେଲା ଉଇଲିୟମସନ୍, ରିଚାର୍ଡଙ୍କ ପୁଅ ନାଁ ରିଚାର୍ଡସନ୍, ଆଣ୍ଡ୍ରୁଙ୍କ ପୁତ୍ର ହେଲେ ଆଣ୍ଡରସନ୍, ଜନ୍‌ଙ୍କ ପୁଅ ଜନ୍‌ସନ୍, ଥୋମସ୍‌ଙ୍କ ପୁଅ

ଥମସନ୍ ଓ ରବିନ୍‌ଙ୍କ ପୁତ୍ର ରବିନ୍‌ସନ୍ । ଏହାପରେ ପେଷାଗତ ସରନେମ୍ ବ୍ୟବହୃତ ହେଲା - ଗୋଲ୍‌ଡସ୍ମିଥ୍, କ୍ୟାପଟେନ୍ କୁକ୍, ଜନ୍ ବାର୍ବର, ଶାର୍ଲିନ୍ ଗାର୍ଡନର୍ । ପାହାଡିଆ ଅଞ୍ଚଳ ଲୋକଙ୍କ ନାଁ ସାଙ୍ଗରେ ଲାଗିଲା ହିଲ୍, ଉଡ୍, ଫୋର୍ଡ ଇତ୍ୟାଦି ।

ଭାରତରେ ପାର୍ସୀମାନେ ପେଷା ସରନେମ୍ ଲଗାଇଲେ ପ୍ରାୟ ଏହି ସମୟରେ - ଲକଡିଓ୍ଵାଲା, ଦାରୁଓ୍ଵାଲା ଇତ୍ୟାଦି । ବେଙ୍ଗଲରେ ଚଟ୍ଟୋପାଧ୍ୟାୟ, ମୁଖୋପାଧ୍ୟାୟ, ବନ୍ଦୋପାଧ୍ୟାୟ ଇତ୍ୟାଦି ଲମ୍ବା ସରନେମ୍‌କୁ ବ୍ରିଟିଶ୍ ଶାସକମାନେ ଉଚ୍ଚାରଣରେ ଅସୁବିଧା ଯୋଗୁଁ କାଟି ଛୋଟ କରି ଦେଇ ଡାକିଲେ ଚାଟାର୍ଜୀ, ମୁଖାର୍ଜୀ, ବାନାର୍ଜୀ ଇତ୍ୟାଦି । ଆସାମରେ ଶହେ ସୈନ୍ୟଙ୍କ ନେତାକୁ ସାଇକିଆ ଓ ହଜାରେ ସୈନିକଙ୍କ ସେନାପତିଙ୍କୁ ହଜାରିକା ଉପାଧି ଦିଆଯାଇଥିଲା । କ୍ରମେ ଏଇ ବ୍ୟକ୍ତିଗତ ଉପାଧିଗୁଡିକ ବଂଶଗତ ଉପାଧି ହୋଇଗଲା । ଓଡ଼ିଶାରେ ସାମନ୍ତରାୟ, ବଳିଆର ସିଂହ, ପାଲଟାସିଂ, ପାଟଶାଣୀ, ପାଇକରା, ଗଡନାୟକ, ପଟ୍ଟନାୟକ, ରାଜଗୁରୁ, ମହାପାତ୍ର, ଆଚାର୍ଯ୍ୟ । ଏ ଉପାଧି କ୍ରମେ ସାଙ୍ଗିଆ ହୋଇଗଲା । ଜଣେ ଡାକ୍ତରଙ୍କ ଅଣ-ଡାକ୍ତର ପୁଅ ବା ଝିଅ ନାଁରେ ଡାକ୍ତର ଯୋଡିବା ଯେମିତି ଅଯୌକ୍ତିକ ଓ ହାସ୍ୟାସ୍ପଦ ଏହା ଠିକ୍ ସେହିପରି ଅସଂଗତ ।

ଦାକ୍ଷିଣାତ୍ୟ ରାଜ୍ୟମାନଙ୍କରେ ପ୍ରଥମେ କେବଳ ଗୋଟିଏ ଯୋଡିଏ ଶବ୍ଦରେ ନାଁ ଦିଆଯାଉଥିଲା - ଲକ୍ଷ୍ମଣନ୍, ପ୍ରଭାକରନ୍, ଗୋବିନ୍ଦନ୍ ଇତ୍ୟାଦି । ତା'ପରେ ପରିବାର ଓ ଗାଁ ନା ଯୋଡାଗଲା - ଯେପରି ଫ୍ୟାମିଲି ନା ପୁଲିଥେବର ଓ ଗାଁ ନାଁ ହଥଙ୍ଗଡି ଓ ଏହାକୁ ନେଇ ବ୍ୟକ୍ତିଙ୍କ ନାଁ ହେଲା 'ପୁଲିଥେବର ହଥଙ୍ଗଡି' । ଏହାପରେ କେତେକ ଅଞ୍ଚଳରେ ଗାଁ, ଜାତି ଓ ନାଁକୁ ଏକାଠି ଯୋଡି ବ୍ୟକ୍ତିଙ୍କ ପରିଚୟକୁ ଆହୁରି ପରିଷ୍କାର କରିବା ଚେଷ୍ଟା ଆରମ୍ଭ ହେଲା - ଯେପରିକି 'ମଦୁରାଇମଣି ଆୟର୍' । ପୁଣି ପିତାଙ୍କ ନାମକୁ ପୂର୍ବପଦ ଭାବରେ ପୁତ୍ରଙ୍କ ନାଁରେ ଯୋଡାଗଲା - ଯେପରିକି ଏସ୍. ଜାନକୀ, ଅର୍ଥାତ୍ ଶ୍ରୀଧରଙ୍କ ପୁତ୍ରୀ ଜାନକୀ, ଜି. ରମଣ ବା ଗୋପାଳଙ୍କ ପୁତ୍ର ରମଣ । ୧୯୩୦ ମସିହାରେ ନୋବେଲ୍ ପୁରସ୍କାର ବିଜେତା ରମଣଙ୍କ ପିତାଙ୍କ ନାଁ ଥିଲା ଚନ୍ଦ୍ରଶେଖର ଓ ପୁତ୍ରଙ୍କ ନାଁର ପୂର୍ବପଦ ବା ପ୍ରିଫିକ୍ସ ହୋଇ ନାଁ ହେଲା 'ଚନ୍ଦ୍ରଶେଖର ଭେଙ୍କଟରମଣ' । ଏବକାର ଗୃହମନ୍ତ୍ରୀ ପି. ଚିଦାମ୍ବରମ୍‌ଙ୍କ ନାଁ ଆଗରୁ ତାଙ୍କ ପିତା ପାଲ୍ଲିଆପ୍ପାନଙ୍କ ନାଁ ଲାଗିଛି । ଭାରତରେ ସବୁଜ ବିପ୍ଳବର ପିତା ସ୍ରଷ୍ଟା ଏମ୍. ଏସ୍. ସ୍ୱାମୀନାଥନ୍ ପୂରା ନାଁ ହେଲା 'ମଙ୍କମ୍‌ଶାମ୍ବଶିବନ୍ ସ୍ୱାମୀନାଥନ୍' । ମଙ୍କମ ହେଲା ତାଙ୍କ ଗାଁର ନାମ ଓ ଶାମ୍ବଶିବନ୍ ତାଙ୍କ ପିତାଙ୍କ ନାମ । ଗୁଜୁରାଟ ଓ ମହାରାଷ୍ଟ୍ରରେ ଓଲଟା । ଯେପରିକି ସୁନୀଲ ମନୋହର ଗାଭାସ୍କର । ମହାରାଷ୍ଟ୍ର ବ୍ରାହ୍ମଣମାନେ ନାଁ ସାଙ୍ଗେ ଯୋଡନ୍ତି ଜାତିସୂଚକ 'ରାଓ' । ଗୁଜୁରାଟୀମାନେ ନାଁ ସାଙ୍ଗରେ ଭାଇ ଓ ବେନ୍ ଯୋଡନ୍ତି । ନରେନ୍ଦ୍ର

ଭାଇ, ସୁମିତ୍ରା ବେନ୍ ଓ ତାପରେ ପରିବାର ନାଁ ପଟେଲ, ମେହେତା, ଯୋଶୀ, ଦେଶମୁଖ, ଶାହା ଲଗାନ୍ତି । ମହାରାଷ୍ଟ୍ରରେ ଲଗାନ୍ତି 'କର୍' - ତେଣ୍ଡୁଲକର୍, ସାଭରକର୍, ଚନ୍ଦ୍ରବରକର୍, ଗାଭାସ୍କର ଇତ୍ୟାଦି । ପୁଣି କେତେକ ଲୋକ ନିଜ ନାମ ସହ ନୂଆ ସାଙ୍ଗିଆ ଯୋଡନ୍ତି । ଯେପରିକି ରାଜେଶ ପାଇଲଟ୍, ଅସଗରା ଅଲ୍ଲୀ ଇଞ୍ଜିନିୟର୍ । ଶିଖ୍ ସଂପ୍ରଦାୟରେ ପୁରୁଷ ଓ ସ୍ତ୍ରୀ ପ୍ରାୟ ସମସ୍ତେ ସିଂ ଓ କୌର ସାଙ୍ଗିଆ ଲଗାନ୍ତି ।

ଉତ୍ତର ଭାରତରେ ବେଦୀ, ଦ୍ୱିବେଦୀ, ଚତୁର୍ବେଦୀ ସାଙ୍ଗିଆ ସବୁ ପ୍ରଥମେ ଉପାଧି ଥିଲା । ଯେ ଚାରିବେଦରେ ପାରଙ୍ଗମ ତାଙ୍କୁ ଚତୁର୍ବେଦୀ ଉପାଧି ମିଳୁଥିଲା, ଗୋଟିଏ ବେଦ ପାଇଁ ବେଦୀ, ଦୁଇଟି ବେଦ ପାଇଁ ଦ୍ୱିବେଦୀ । କାଳକ୍ରମେ ଦ୍ୱିବେଦୀଙ୍କ ପୁତ୍ର ମଧ୍ୟ ଲେଖିଲେ ଅମୁକ ଦ୍ୱିବେଦୀ । ବୈଦିକ ପୌରାଣିକ, ପ୍ରାଚୀନ ଭାରତୀୟ ସମାଜରେ ସାଙ୍ଗିଆ ବା ସରନେମ୍ ପ୍ରଚଳନ ନଥିଲା । ତେଣୁ ରାମ, କୃଷ୍ଣ, ନାରଦ, ଯୁଧିଷ୍ଠିର, ଦୁର୍ଯ୍ୟୋଧନ, ରାବଣ, ଇନ୍ଦ୍ରଜିତ, କୁମ୍ଭକର୍ଣ୍ଣ, ଦେବକୀ, ବାସୁଦେବ, ସୀତା, ଲକ୍ଷ୍ମୀ, ପାର୍ବତୀ, ଦୁର୍ଗା, ସରସ୍ୱତୀ, ବ୍ରହ୍ମା, ବିଷ୍ଣୁ, ଜଗନ୍ନାଥ, ବଳଭଦ୍ର, ମହେଶ୍ୱର, ଜନକ, ଦଶରଥ, ଭରତ, ଗୌତମ, ବିଶ୍ୱାମିତ୍ର, ବଶିଷ୍ଠ - କାହାର ନା ପଛକୁ ସାଙ୍ଗିଆ ନଥିଲା । ବରଂ ସ୍ୱାମୀଙ୍କ ପରିଚୟ ମା ଓ ସ୍ତ୍ରୀଙ୍କ ନାଁରୁ ମିଳୁଥିଲା । ଯେପରିକି 'ଜାନକୀବଲ୍ଲଭ', ଅର୍ଥାତ୍ ଜାନକୀଙ୍କ ସ୍ୱାମୀ, କମଳାପତି, ଉମାପତି, ରମାକାନ୍ତ, ରାଧାକାନ୍ତ, ଲକ୍ଷ୍ମୀକାନ୍ତ, ଦେବକୀନନ୍ଦନ, ଯଶୋଦାନନ୍ଦନ, ଇତ୍ୟାଦି । ତେଣୁ ଜାତିସୂଚକ ସାଙ୍ଗିଆ ଅପେକ୍ଷା ମା' ଓ ପତ୍ନୀଙ୍କ ନାମରେ ପୁରୁଷର ପରିଚୟ ଓ ନାମକରଣ ଥିଲା ପ୍ରାଚୀନ ଭାରତୀୟ ପରମ୍ପରା । ପତି ପତ୍ନୀଙ୍କ ନାମ ବା ପତ୍ନୀ ପତିଙ୍କ ନାମ ଧରି ନ ଡାକି ପରସ୍ପରକୁ ସମ୍ବୋଧନ କରୁଥିଲେ 'ଭଦ୍ରେ' ଓ 'ଆର୍ଯ୍ୟେ' । କୌଣସି ଦେବଦେବୀ, କୌଣସି ଋଷି, ସାଧୁସନ୍ଥ, କୌଣସି ରାଜା ବା ପ୍ରଜା ସାଙ୍ଗିଆ ଧାରଣ କରୁନଥିଲେ ।

ତେଣୁ ସଞ୍ଜୟ ତାଙ୍କ ଭଉଣୀ ପ୍ରିୟା ବା ସ୍ତ୍ରୀ ମାନ୍ୟତା 'ଦତ୍ତ' ସାଙ୍ଗିଆ ରଖିବେ କି ନାହିଁ ଏପରି ବିବାଦ ନଥିଲା । ଭାରତରେ ଏବେ ଜାତି, କୁଳ, ଉପାଧିକୁ ବଂଶାନୁକ୍ରମିକ ସାଙ୍ଗିଆ ରୂପରେ ବ୍ୟବହାର ବନ୍ଦ ହେବା ଦରକାର । ପ୍ରଗତିବାଦୀ ଓ ଦେଶପ୍ରେମୀ ଯୁବ ବନ୍ଧୁମାନେ ନିଜ ନାଁରୁ ସାଙ୍ଗିଆ କାଟି ଆଉ ଥରେ ଜାତିମୁକ୍ତ ସମାଜ ଗଠନପାଇଁ ଆଗେଇ ଆସନ୍ତୁ । ମାନବିକତା ମଣିଷର ପ୍ରକୃତ ସଂଜ୍ଞା ଓ ପରିଚୟ ହେଉ ।

*୨୬ ଫେବୃଆରୀ, ୨୦୦୯*



# ସୂଚନା : ଅଧିକାର, ବିବାଦ, ବିପଦ ଓ ବିପ୍ଳବ

୨୦୦୫ ମସିହା ଜୁନ୍ ୧୫ ତାରିଖ ଦିନ ଲୋକସଭାରେ 'ରାଇଟ୍ ଟୁ ଇନ୍‌ଫରମେସନ୍' ବା ସୂଚନା ଅଧିକାର ଆଇନ (ନଂ.୨୨/୨୦୦୫) ପାସ୍ ହୋଇଗଲା ଏବଂ ସେହିବର୍ଷ ଅକ୍ଟୋବର ୧୩ ତାରିଖଠାରୁ ଏହି ଆଇନ ସାରା ଦେଶରେ ଲାଗୁ ହେଲା, କେବଳ ଜାମ୍ମୁ ଓ କାଶ୍ମୀରକୁ ଛାଡି । ଏହା ସହିତ ୧୯୨୩ ମସିହାରୁ ବ୍ରିଟିଶ୍ ଅମଳରୁ କାର୍ଯ୍ୟକାରୀ ହେଉଥିବା ୮୫ ବର୍ଷର ପୁରୁଣା 'ଅଫିସିଆଲ୍ ସିକ୍ରେଟ୍ ଆକ୍ଟ' ନିଜର ଗୁରୁତ୍ୱ ହରାଇଲା । ସୂଚନା ଅଧିକାରକୁ କାର୍ଯ୍ୟକାରୀ କରିବା ପାଇଁ କେନ୍ଦ୍ରରେ ଓ ରାଜ୍ୟମାନଙ୍କରେ ସୂଚନା ଅଧିକାର କମିସନ ସବୁ ସ୍ଥାପିତ ହେଲା । କିନ୍ତୁ ଏହା ପୂର୍ବରୁ ଭାରତର ୯ଟି ରାଜ୍ୟ ସୂଚନା ଅଧିକାର ଆଇନ ପ୍ରଚଳନ କରି ସାରିଥିଲେ । ଏଥିରେ ସବୁଠାରୁ ଆଗୁଆ ଥିଲେ ତାମିଲନାଡୁ (୧୯୯୭) ଓ ଗୋଆ ତା'ପଛକୁ ରାଜସ୍ଥାନ ଓ କର୍ଣ୍ଣାଟକ (୨୦୦୦), ଦିଲ୍ଲୀ, ମହାରାଷ୍ଟ୍ର, ମଧ୍ୟପ୍ରଦେଶ, ଆସାମ, ଜାମ୍ମୁ ଓ କାଶ୍ମୀର । ଓଡ଼ିଶାରେ ପ୍ରାୟ ଦୁଇ ବର୍ଷ ହେଲା ସ୍ୱେଚ୍ଛାସେବୀ ସଂଗଠନମାନେ ଦାବି କରିଆସୁଥିଲେ । କେଉଁ ସୂଚନାପାଇଁ ଲୋକେ ହକ୍‌ଦାର ସେ ବିଷୟରେ ମନ ସ୍ଥିର କରିବାକୁ ସରକାରଙ୍କୁ ଲାଗିଲା ୭ ବର୍ଷ । ଏଚ୍.ଡି. ସୌରୀଙ୍କ 'ଫ୍ରିଡମ୍ ଅଫ୍ ଇନ୍‌ଫରମେସନ୍' ରିପୋର୍ଟ ଉପରେ ବିତର୍କ ହେଲା ଦୁଇ ବର୍ଷ କାଳ । ଇନ୍‌ଫରମେସନ୍ ବା ସୂଚନା ସଂଜ୍ଞା ନିରୂପଣପାଇଁ ଲାଗିଲା ୬ ବର୍ଷ । ଶେଷରେ ଆଇନ୍‌ରେ କୁହାଗଲା ଯେ ସରକାରଙ୍କ ପାଖରେ ଥିବା ସବୁ ଖବର, ରେକର୍ଡ, ଦସ୍ତାବିଜ, ସର୍କୁଲାର, ଅଫିସ୍ ଅର୍ଡର, କଣ୍ଟ୍ରାକ୍ଟ, ଫାଇଲରେ ନିଆଯାଇଥିବା ନିଷ୍ପତ୍ତି, ନୋଟିଂ, ମେମୋ, ସୁପାରିଶ, ଏଗ୍ରିମେଣ୍ଟ ସମ୍ପର୍କରେ ଜାଣିବାପାଇଁ ଜନସାଧାରଣଙ୍କର

ପୂର୍ଣ୍ଣ ଅଧିକାର ରହିଛି ଏବଂ ଜଣାଇବା ସରକାରଙ୍କ ପୂର୍ଣ୍ଣ ଦାୟିତ୍ୱ । ନିଜ ହକ୍ ପାଇବା ପାଇଁ କାହିଁକି ବିଳମ୍ବ ହେଉଛି ତା'ର କାରଣ ବତାଇବାପାଇଁ ମଧ୍ୟ ସରକାର ବାଧ୍ୟ । ତିରିଶ ଦିନ ଭିତରେ ଆବେଦନ ସବୁର ଉତ୍ତର ଦେବାକୁ ହେବ । ନ ହେଲେ ଦଣ୍ଡ ।

ଆଜିକୁ ୧୫ ବର୍ଷ ତଳେ ୧୯୯୨ ମସିହାରେ ଭାରତୀୟ ସମ୍ବିଧାନରେ ୭୩ ଓ ୭୪ତମ ସଂଶୋଧନ କରାଯାଇ ପଞ୍ଚାୟତ ଓ ସ୍ୱାୟତ୍ତ ଶାସନ ସଂସ୍ଥା ମାଧ୍ୟମରେ ଲୋକଙ୍କୁ ତୃଣମୂଳ ସରକାର ଗଢିବାପାଇଁ କ୍ଷମତା ବିକେନ୍ଦ୍ରୀକରଣର ଐତିହାସିକ ନିଷ୍ପତ୍ତି ପରେ ସୂଚନା ଅଧିକାର ଆଇନ ଥିଲା ଦ୍ୱିତୀୟ ବୈପ୍ଳବିକ ସିଦ୍ଧାନ୍ତ । ଏଥିପାଇଁ ଭାରତୀୟ ପାର୍ଲିଆମେଣ୍ଟ ଧନ୍ୟବାଦର ପାତ୍ର । ସୂଚନାର ଅନ୍ୟ ନାମ ହେଲା କ୍ଷମତା । ଇଂରାଜୀରେ କହନ୍ତି 'ଇନ୍‌ଫରମେସନ୍ ଇଜ୍ ପାୱାର' । ଗତ ଦୁଇ ଦଶନ୍ଧି ହେଲା ସମଗ୍ର ପୃଥିବୀ ସୂଚନା ବିପ୍ଳବଦ୍ୱାରା ପ୍ରଭାବିତ । ଜ୍ଞାନ, ନୂତନତ୍ୱ ବା ଇନୋଭେସନ୍ ଓ ସୂଚନାକୁ ଏବେ ପ୍ରଗତିର ଅସରନ୍ତି, ନୂଆ କଞ୍ଚାମାଲ ବୋଲି କୁହାଯାଉଛି । ଯାହାଙ୍କ ପାଖରେ ସୂଚନା ନାହିଁ - ସେମାନଙ୍କୁ କୁହାଯାଉଛି "ସୂଚନା-ଦରିଦ୍ର", ଯାହାଙ୍କ ପାଖରେ ସୂଚନା ଅଛି, ସେମାନେ "ସୂଚନା-ଧନୀ" ବା ଇନ୍‌ଫରମେସନ୍ ରିଚ୍ । କାରଣ ସୂଚନା ଜୀବନ ମରଣ ମଧ୍ୟରେ ଥିବା ସରୁ ସୂତାଖିଅ । ମହାବାତ୍ୟା, ବନ୍ୟା, ସୁନାମି, ଭୂମିକମ୍ପର ସୂଚନା ଠିକ୍ ସମୟରେ ନ ମିଳିଲେ ଲକ୍ଷ ଲକ୍ଷ ଲୋକ ମୃତ୍ୟୁ ମୁଖରେ ପଡନ୍ତି । ୧୯୪୫ ମସିହା ପରଠାରୁ ପ୍ରତିଦ୍ୱନ୍ଦ୍ୱୀ ଦେଶର ନେତାଙ୍କ ମଧ୍ୟରେ ହଟ୍ ଲାଇନ୍‌ଦ୍ୱାରା ସୂଚନା ଆଦାନ ପ୍ରଦାନ ଫଳରେ ଏପର୍ଯ୍ୟନ୍ତ ୬ ଥର ତୃତୀୟ ବିଶ୍ୱଯୁଦ୍ଧର ସମ୍ଭାବନାକୁ ଏଡାଇ ଦିଆଯାଇ ପାରିଛି । କମ୍ପ୍ୟୁଟର, ଇଣ୍ଟରନେଟ୍, ସାଟେଲାଇଟ୍, ଟେଲିଭିଜନ୍, ରେଡିଓ , ସମ୍ବାଦପତ୍ର ଓ ମାସ୍ ମେଡିଆ ପୃଥିବୀରେ ସୃଷ୍ଟି କରିଛି ଏକ ଅଭୂତପୂର୍ବ ସୂଚନା ବିପ୍ଳବ । ଫଳରେ 'ସରକାରୀ ଗୋପନୀୟତା' ଏବେ ହୋଇଗଲାଣି ଅଥର୍ବ, ଅର୍ଥହୀନ, ଅଳିଆ ଗଦା । ସୂଚନା ଅଧିକାର ଆଇନ୍ ଫଳରେ ଲୋକଙ୍କର ଦୈନନ୍ଦିନ ଜୀବନକୁ ପ୍ରଭାବିତ କରୁଥିବା ସୂଚନା ଓ ନିଷ୍ପତ୍ତି ସବୁକୁ ଆଉ ସେମାନଙ୍କଠାରୁ ଲୁଚାଇ ରଖି ହେବ ନାହିଁ । ବ୍ଲକ୍, ତହସିଲ, ପି.ଡବ୍ଲ୍ୟୁ.ଡି ଅଫିସ୍‌ଠାରୁ ଆରମ୍ଭ କରି ସଚିବାଳୟ ପର୍ଯ୍ୟନ୍ତ ସବୁ କର୍ମଚାରୀ, ଅଧିକାରୀ ଓ ସଚିବମାନେ ଏ ବିଷୟରେ ଏବେ ଅଧିକ ସଚେତନ, ସତର୍କ ଓ ଉତ୍ତରଦାୟୀ ହେବାକୁ ପଡିବ । କାରଣ ଏମାନଙ୍କର ମୁଖ୍ୟ କାମ ହେଉଛି ସୂଚନା ଦେବା ଓ ନେବା ।

ଆମ ଦେଶରେ ଯେତେ ଚାକିରିଆ ଅଛନ୍ତି ସେମାନଙ୍କ ମଧ୍ୟରୁ ୭୦ ଭାଗରୁ ଅଧିକ କେବଳ ଫାଇଲ୍‌ରେ ସୂଚନା ଦିଅନ୍ତି, ମାଗନ୍ତି, ନିଅନ୍ତି । ସୂଚନା ପାଇବାକୁ,

ଫାଇଲ କାହା ପାଖରେ ପଡିଛି ଜାଣିବାକୁ, ବଦଳି ଅର୍ଡର କେବେ ବାହାରୁଛି, କିଏ କୋଉଠିକୁ ଯାଉଛି, ସେକ୍ରେଟାରି, ମନ୍ତ୍ରୀ, ମୁଖ୍ୟମନ୍ତ୍ରୀଙ୍କର କିଏ ପାଖ ଲୋକ, କିଏ କେତେ ଲାଞ୍ଚ ନିଅନ୍ତି, କିଏ ଶୁଣନ୍ତି ନାହିଁ - ନିଅନ୍ତି ନାହିଁ - ଏ ସବୁର ସୂଚନା ପାଇବାପାଇଁ ସେକ୍ରେଟାରିଏଟ୍ ଓ ଡାଇରେକ୍ଟରେଟ୍‌ମାନଙ୍କରେ ବହୁତ ଗହଳି ଅନେକ କାରବାର । ଲାଗେ ଯେପରି ଏକ ପ୍ରାଇଭେଟ୍ ସୂଚନା ବଜାରରେ କ୍ରେତା ଓ ବିକ୍ରେତା ସୌଦାବାଜିରେ ନ୍ୟସ୍ତ । ସୂଚନାର ବିଶ୍ୱ ବଜାରରେ ପ୍ରତିଦିନ ତିନି ଲକ୍ଷ କୋଟି ଟଙ୍କାର ସୂଚନା କିଣା ବିକା ହୁଏ । ଏଠି ବହୁଦେଶୀୟ କମ୍ପାନି ଓ ଡିଫେନ୍‌ସ କଣ୍ଟ୍ରାକ୍ଟର ଓ ଏଜେଣ୍ଟଙ୍କ ଭିଡ ବେଶୀ । ସରଳ, ସଚ୍ଚୋଟ, ନିଷ୍ପାପର ଓ ଗରିବ ଲୋକେ ଏ ବଜାରରେ ପଶି ପାରନ୍ତି ନାହିଁ । ସୂଚନା ଅଧିକାର ଆଇନ୍ ଦେଶକୁ ଏକ ନିର୍ମଳ, ନିର୍ଭୟ, ସକ୍ରିୟ ଉତ୍ତରଦାୟୀ ଶାସନ ଦେବା ପାଇଁ । କେବଳ ଦେଶର ନିରାପତ୍ତା ଓ ବୈଦେଶିକ ନୀତି ସହ ଜଡିତ ୧୧ଟି ବିଷୟକୁ ଛାଡିଦେଲେ, ସରକାର କ'ଣ କରୁଛନ୍ତି ସେ କଥା ଜାଣିବା ଅଧିକାର ପ୍ରତ୍ୟେକ ନାଗରିକଙ୍କର ଅଛି । କେନ୍ଦ୍ର ଓ ରାଜ୍ୟ ସୂଚନା କମିସନ୍ ଏ ସବୁ ସୂଚନା ଅଧିକାରକୁ କାର୍ଯ୍ୟକାରୀ କରାଇବେ, ଇନ୍‌ଫରମେସନ୍ ୱାଚ୍ ଡଗ୍ ବା ତତ୍ତ୍ୱାବଧାରକ ଭାବେ ।

ଓଡ଼ିଶାରେ ସୂଚନା କମିସନ୍ ସ୍ଥାପନା ରାଜ୍ୟରେ ପ୍ରବଳ ଉତ୍ସାହ ଓ ଆଶାର ବାତାବରଣ ସୃଷ୍ଟି କରିଛି । ବର୍ଷ ବର୍ଷ ଧରି ପଡି ରହିଥିବା ପେନ୍‌ସନ୍, ପ୍ରୋଭିଡେଣ୍ଟ ଫଣ୍ଡ, ବିପିଏଲ୍ କାର୍ଡ, ଜମିଜମା ରେକର୍ଡ ଏବେ ଅତି ଶୀଘ୍ର ଫଇସଲା ହେଉଛି । କିନ୍ତୁ ବ୍ୟୁରୋକ୍ରେଟିକ୍ ବା ପ୍ରାଶାସନିକ ଅପାରଗତାର ବୋଝ ଏତେ ବେଶୀ ଓ ସାଧାରଣ ଲୋକଙ୍କ ସମସ୍ୟା ଏତେ ଅଧିକ ଯେ; କମିସନ୍ ସୃଷ୍ଟି କରିଥିବା ଆଶା, ଉତ୍ସାହ କ୍ରମେ ମଉଳିଯିବାର ଆଶଙ୍କା ଦେଖାଦେଲାଣି । ନିକଟରେ 'ସୂଚନା ସଚେତନତା ଓ ଡ୍ରାଇଭ୍ ଏଗେନେଷ୍ଟ ବ୍ରାଇବ୍ (ଲାଞ୍ଚ ବିପକ୍ଷରେ କାର୍ଯ୍ୟକ୍ରମ)' ବିଷୟକୁ ନେଇ ରାଜ୍ୟବ୍ୟାପୀ ପନ୍ଦର ଦିନିଆ ଅଭିଯାନ ଫଳରେ ୬୨ ହଜାର ଲୋକ ନିଜ ସମସ୍ୟା ସମାଧାନପାଇଁ ଏକଚାଳିଶ ହଜାର ଦରଖାସ୍ତ ଦେଇଥିଲେ । ଏହି ତୁଳନାରେ କେନ୍ଦ୍ର ସୂଚନା କମିସନ୍‌ଙ୍କୁ ଏକ ବର୍ଷ ମଧ୍ୟରେ ମିଳିଥିଲା ମାତ୍ର ୪୨,୮୭୬ ଆବେଦନ ପତ୍ର । ଏହି ପରିପ୍ରେକ୍ଷୀରେ ପ୍ରଶ୍ନ ଉଠୁଛି, ଓଡ଼ିଶାରେ ମାତ୍ର ଦୁଇଜଣିଆ ସୂଚନା କମିସନ କେତେଦୂର ଏଇ ବୋଝ ଉଠାଇ ପାରିବେ । ଏହାଛଡା ଅନ୍ୟ ଏକ ବଡ ସମସ୍ୟା ହେଉଛି କ୍ରମବର୍ଦ୍ଧିଷ୍ଣୁ ନଗଣ୍ୟ, ଆଜେବାଜେ ଆବେଦନପତ୍ରର ସଂଖ୍ୟା । ଉଦାହରଣ ସ୍ୱରୂପ ଜଣେ ଆବେଦନକାରୀ ଜାଣିବାକୁ ଚାହିଁଛନ୍ତି ୧୯୪୭ ମସିହାରୁ ଏପର୍ଯ୍ୟନ୍ତ କେତେଥର କ୍ୟାବିନେଟ୍ ସେକ୍ରେଟାରି ସଭା ଡାକିଛନ୍ତି ଓ ସେସବୁ ସଭାରେ

କ'ଣ ଆଲୋଚନା ହୋଇଛି, ତା'ର ସମ୍ପୂର୍ଣ୍ଣ ବିବରଣୀ ଦିଅ । ଦାରିଦ୍ର୍ୟ ସୀମାରେଖା ଉପରେ କେତେ ଲୋକ ଅଛନ୍ତି, ସମସ୍ତଙ୍କ ନାଁ, ବୟସ ଜଣାଅ । ଏ ସୂଚନା ଦେବାକୁ ହେଲେ ୭୫ କୋଟି ଲୋକଙ୍କ ନାଁ ସଂଗ୍ରହ କରି ଟାଇପ୍ ଓ ଫଟୋ କପି କରି ଦେବାକୁ ପଡିବ । ଆଉ ଜଣେ ଆବେଦନ କରିଛନ୍ତି, ଦେଶର ବିଭିନ୍ନ କୋର୍ଟରେ ୧୯୪୭ରୁ କେତେ କେଶ୍ ହୋଇଛି ତା'ର ସମ୍ପୂର୍ଣ୍ଣ ବିବରଣୀ ଦିଅ । ଦେଶରେ କେତେ ଭଣ୍ଡାରୀ କେତେ କତୁରୀ ରଖିଛନ୍ତି ଓ ସେଥିରୁ କେତେ ଷ୍ଟେରିଲାଇଜ୍ ହେଉଛି ତା'ର ହିସାବ ଦିଅ । ପ୍ରଶ୍ନକର୍ତ୍ତା ବୋଧେ ଭୁଲିଗଲେ ପଚାରିବାକୁ, କେତେ ବାଳ କାଟିଛନ୍ତି, ତାକୁ ଗଣି ସଂଖ୍ୟା ବତାଅ । ଏବେ ଜଣେ ଯୁବ ବୈଜ୍ଞାନିକ ତାଙ୍କର ଏକ ଉଦ୍ଭାବନ ସମ୍ପର୍କରେ ସୂଚନା ଦେବାକୁ ଚାହିଁଲେ ମଧ୍ୟ ସିଏସ୍ଆଇଆର୍ ନେଉନାହାନ୍ତି ବୋଲି ଅଭିଯୋଗ କରିଛନ୍ତି । ସୂଚନା ପାଇବା ଅଧିକାର ସ୍ୱୀକୃତ, ଦେବା ଅଧିକାର ନୁହେଁ ।

ଏହାଛଡା ଏବେ ରାଜା ଓ ରଙ୍କ ଉଭୟେ ସୂଚନା କମିସନ୍‌ଙ୍କ ଦ୍ୱାରସ୍ଥ ହେଉଛନ୍ତି । ଓଡ଼ିଶାର ପଥରଗଡା ଗାଁର ଚୈତନ୍ୟ ଜେନାଙ୍କଠାରୁ ଆରମ୍ଭ କରି ପ୍ରଥମ ମହିଳା ପୁଲିସ୍ ଅଫିସର କିରଣ ବେଦୀଙ୍କ ପର୍ଯ୍ୟନ୍ତ । ବୈଦେଶିକ ସଚିବ ପଦପାଇଁ ଆଶାୟୀ ବୀଣା ସିକ୍ରି, ଏବକାର ସଚିବ ମେନନ୍ କେମିତି ତାଙ୍କୁ ସୁପରସିଡ୍ କଲେ ଜଣାଇବାକୁ କେନ୍ଦ୍ର ସୂଚନା କମିସନ୍‌କୁ ପଚାରିଛନ୍ତି । କମିସନ୍ କ୍ୟାବିନେଟ୍ ସେକ୍ରେଟାରୀଙ୍କୁ ତଲବ କରିଛନ୍ତି । କେନ୍ଦ୍ର ପବ୍ଲିକ୍ ସର୍ଭିସ୍ କମିସନ୍ କେମିତି ଡିପାର୍ଟମେଣ୍ଟାଲ ପ୍ରମୋସନ୍‌ର ବିଚାର କରୁଛନ୍ତି ପଚାରିବାରୁ କମିସନ୍ ହାଇକୋର୍ଟ ଗଲେଣି । ଆଇଆଇଟି, ଆଇଆଇଏମ୍ ଓ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର କୁଳପତି ଓ ଶିକ୍ଷାମନ୍ତ୍ରୀଙ୍କୁ ସୂଚନା କମିସନ ଅତୁଆ ପ୍ରଶ୍ନ ପଚାରିବାରୁ ବିବାଦ ସୃଷ୍ଟି ହେଲାଣି । ୟୁଜିସିକୁ ଜୋରିମାନା ହୋଇଛି ୨୫୦୦୦ । ପୂର୍ବତନ ମୁଖ୍ୟ ବିଚାରପତି ସବରୱାଲଙ୍କ ସରକାରୀ ଘରେ ପୁଅ ବ୍ୟବସାୟ କରୁଥିବାର ପ୍ରଶ୍ନ ନେଇ ସୂଚନା କମିସନ୍ ଓ ସୁପ୍ରିମ୍‌କୋର୍ଟ ମଧ୍ୟରେ ବିବାଦ ଓ ମତଭେଦ ହେଲାଣି । ଏବେ ସୁପ୍ରିମ୍‌କୋର୍ଟ ନିଜକୁ ସୂଚନା କମିସନ୍‌ଙ୍କ ପରିଧି ବାହାରେ ରଖିବାକୁ ଆବଶ୍ୟକ ଆଇନ୍ ସଂଶୋଧନପାଇଁ ସରକାରଙ୍କୁ ପରାମର୍ଶ ଦେଇଛନ୍ତି । ଅମିତାଭ ବଚ୍ଚନଙ୍କୁ ଉତ୍ତରପ୍ରଦେଶ ସୂଚନା କମିସନ୍‌ଙ୍କ ଜରିଆରେ ପ୍ରଶ୍ନ ହୋଇଛି ସେ କେଉଁ ସୂଚନାକୁ ଆଧାର କରି "ୟୁପି ମେ ହେ ଦମ୍, ୟହାଁ ଜୁଲୁମ୍ କମ୍" ସ୍ଲୋଗାନ୍ ଦେଇ ମୁଲାୟମଙ୍କୁ ସମର୍ଥନ କରୁଥିଲେ - କୁହନ୍ତୁ । ସୂଚନା ଅଧିକାରକୁ ନିରୁତ୍ସାହିତ କରିବାକୁ କେତେକ ରାଜ୍ୟ ଆବେଦନ ପତ୍ରର ମୂଲ୍ୟକୁ ୨୦ ଟଙ୍କାରୁ ୫୦୦ ଟଙ୍କା ବଢାଇ ଦେଇଛନ୍ତି ଓ ସୂଚନା

ନ ଦେଲେ ଜୋରିମାନାକୁ ୨୫୦୦୦ ଟଙ୍କାରୁ କମାଇ ୫୦୦ ଟଙ୍କା କରି ଦିଆଯାଇଛି । ଓଡ଼ିଶାରେ ଶାହା ଆନ୍‌ସାରୀଙ୍କ ଭଳି ସାହସୀ ସୂଚନା ଆନ୍ଦୋଳନକାରୀଙ୍କ ଉପରେ ଆକ୍ରମଣ ଆରମ୍ଭ ହେଲାଣି ।

ସୂଚନା କମିସନ୍‌ଙ୍କ ଅଧିକାରକୁ ନେଇ ବାଦ ବିବାଦ ସତ୍ତ୍ୱେ ସାରା ଭାରତରେ ସାଧାରଣ ଜନତା କମିସନ୍‌ଙ୍କ କାର୍ଯ୍ୟକୁ ପସନ୍ଦ କରୁଛନ୍ତି । "ସୂଚନା ଅଧିକାରପାଇଁ ରାଷ୍ଟ୍ରୀୟ ଆନ୍ଦୋଳନ" ସଂଗଠନ ରିପୋର୍ଟ ଅନୁସାରେ ଅନଭିଜ୍ଞ କର୍ମଚାରୀ ଓ ସରକାରୀ ସହଯୋଗ ଅଭାବରୁ ସୂଚନା କମିସନ୍‌ମାନେ ଆଗେଇ ପାରୁନାହାନ୍ତି । ତେଣୁ ଯେଉଁମାନେ ସୂଚନା ଦେବାର ଦାୟିତ୍ୱରେ ଅଛନ୍ତି, ସେମାନଙ୍କ ମନୋବୃତ୍ତି ଆଗେ ବଦଳାଇବାପାଇଁ ଉପଯୁକ୍ତ ତାଲିମ୍ ଦରକାର । ଏହାଛଡା ଓଡ଼ିଶାରେ ଏନ୍‌ଏସ୍‌ଏସ୍, ଏନ୍‌ସିସି, ସ୍କାଉଟ୍‌ସ ଓ ଗାଇଡ୍‌ସ ଏବଂ ରେଡ୍‌କ୍ରସ ତଥା ବଛା ବଛା ନାମକରା ସିଭିଲ୍ ସୋସାଇଟି ସଂଗଠନରେ କାମ କରୁଥିବା ପ୍ରାୟ ଦୁଇ ଲକ୍ଷ ଯୁବ ସ୍ୱେଚ୍ଛାସେବୀଙ୍କ ସହଯୋଗ ନିଆଗଲେ, ସୂଚନା ଅଧିକାରକୁ ଏକ ଜନ ଆନ୍ଦୋଳନରେ ରୂପାନ୍ତରିତ କରି ହେବ । ଏହା ଫଳରେ ରାଜ୍ୟରେ ଦୁଇ ଲକ୍ଷ ଶାହା ଅନ୍‌ସାରୀ ତିଆରି ହୋଇଯିବେ ଏବଂ ସୂଚନା ଦେବା ନଦେବା ଉପରେ ତିଷ୍ଠି ରହିଥିବା କ୍ଷମତା ଦୁର୍ଗ ଭଶୁଡି ପଡିବ । ଆମ ଦେଶରେ ଏପରି ଦୁଇ କୋଟି ସ୍ୱେଚ୍ଛା ସେବକ ଅଛନ୍ତି ।

*୧୩ ଡିସେମ୍ବର, ୨୦୦୭*



# ମାନ୍ୟବରଙ୍କ ଉପସ୍ଥାନ ଓ ଅନ୍ତର୍ଦ୍ଧାନ

ଏ ପର୍ଯ୍ୟନ୍ତ ଫ୍ରାନସ ଦେଶରେ ସବୁଠାରୁ ଦକ୍ଷ ଓ ଲୋକପ୍ରିୟ ଭାବରେ ପରିଗଣିତ ରାଷ୍ଟ୍ରପତି ଚାର୍ଲସ୍ ଡିଗଲ ଥରେ କହିଥିଲେ ମୁଁ ବହୁବାର ଭାବିଚିନ୍ତି ଏହି ସିଦ୍ଧାନ୍ତରେ ପହଞ୍ଚିଛି କି 'ରାଜନୀତି' ଭଳି ଏକ ଅତ୍ୟନ୍ତ ଗମ୍ଭୀର ବିଷୟ 'ରାଜନେତାଙ୍କ ହାତରେ ପୂରାପୁରି ଛାଡି ଦେବା ଠିକ୍ ହେବ ନାହିଁ ।' ଏବେ ଖବର ପ୍ରକାଶ ପାଇଛି ଯେ ୨୦୦୮ ମସିହାରେ ଦେଶର ସର୍ବୋଚ୍ଚ ରାଜନୈତିକ ଓ ନୀତି ନିୟାମକ ସଂସ୍ଥା ଇଣ୍ଡିଆନ୍ ପାର୍ଲିଆମେଣ୍ଟ ମାତ୍ର ୩୨ ଦିନପାଇଁ ବସିଥିଲା । ୧୯୫୧ ମସିହାରୁ ଆଜି ପର୍ଯ୍ୟନ୍ତ ଏହା ଥିଲା ଭାରତୀୟ ଲୋକସଭାରେ ନିମ୍ନତମ ରେକର୍ଡ । ଆଜିକୁ ୫୩ ବର୍ଷ ପୂର୍ବେ, ୧୯୫୬ ମସିହାରେ, ୧୫୧ ଦିନ କାଳ ବସି ଲୋକସଭା ଯେଉଁ ସର୍ବୋଚ୍ଚ ରେକର୍ଡ ଓ ପରମ୍ପରା ସୃଷ୍ଟି କରିଥିଲେ ତାହା ଏ ପର୍ଯ୍ୟନ୍ତ ଏକମାତ୍ର ଉଦାହରଣ ହୋଇ ରହିଛି । ସେହିଦିନଠାରୁ ମାନ୍ୟବର ସଭ୍ୟମାନଙ୍କ ଲୋକସଭା ଓ ରାଜ୍ୟସଭାରେ ଉପସ୍ଥିତ ଓ କାର୍ଯ୍ୟରତ ସମୟ କାଳ ଦ୍ରୁତ ଗତିରେ କମିବାରେ ଲାଗିଛି ।

ଉଦାହରଣ ସ୍ୱରୂପ, ୧୯୬୩ ମସିହାରେ ଲୋକସଭା ବସିଥିଲା ୧୨୨ ଦିନ, ୧୯୮୫ରେ ୧୦୯ ଦିନ ଏବଂ ୧୯୭୬ ଓ ୧୯୯୨ ରେ ମାତ୍ର ୯୮ ଦିନ । ୨୦୦୩ ମସିହାରେ ଏହା କମି ଆସିଲା ୭୪ ଦିନକୁ । ୧୯୯୯ ମସିହାରେ ଲୋକସଭା କାମ କରିଥିଲା ମାତ୍ର ୫୧ ଦିନପାଇଁ । କେବଳ ପାର୍ଲିଆମେଣ୍ଟ ନୁହେଁ, ରାଜ୍ୟ ବିଧାନସଭାମାନଙ୍କର ମଧ୍ୟ ଊଣା ଅଧିକେ ସେଇ ଅବସ୍ଥା । ହରିଆନା, ଗୋଆ ଓ ଉତ୍ତର ପୂର୍ବ ରାଜ୍ୟର ବିଧାନସଭାଗୁଡିକ ମଧ୍ୟ ଏଇ ଅନୁପସ୍ଥିତି ବ୍ୟାଧିଗ୍ରସ୍ତ ହେଲେଣି । ଦେଶର ବୁଦ୍ଧିଜୀବୀ, ବିଶିଷ୍ଟ ନାଗରିକ, ଗଣମାଧ୍ୟମ, ବାଚସ୍ପତି ଓ ବରିଷ୍ଠ ଲୋକସଭା ସଦସ୍ୟମାନଙ୍କର ଚିନ୍ତା ଓ ଉଦ୍‌ବେଗକୁ ଧ୍ୟାନକୁ ନେଇ କିଛି ବର୍ଷ ପୂର୍ବେ ଜନପ୍ରତିନିଧିମାନେ ଅଣଆନୁଷ୍ଠାନିକ ଭାବରେ ବସି ଏକ ନିଷ୍ପତ୍ତି ନେଇଥିଲେ ଯେ

ବିଧାନସଭା, ଲୋକସଭାର କାର୍ଯ୍ୟରତ ସମୟ କାଳ ବର୍ଷକେ ଅତି କମ୍‌ରେ ୧୦୦ ଦିନରୁ ଯେପରି କମ୍ ହେବ ନାହିଁ । ଏପରି ସାମୂହିକ ନିଷ୍ପତ୍ତି ସତ୍ତ୍ୱେ ଏ କାଳ ଏବେ ୩୨ ଦିନକୁ କମି ଆସିବା ଉଭୟ ଦେଶ ଓ ଜାତିପାଇଁ ଏକ ଅତ୍ୟନ୍ତ ଉଦ୍‌ବେଗଜନକ ବିଷୟ ଓ ଗଣତନ୍ତ୍ରପାଇଁ ବିପଦ ଘଣ୍ଟି ।

କେବଳ ଏତିକି ନୁହେଁ, ପାର୍ଲିଆମେଣ୍ଟରେ ଆଲୋଚନାର ଗୁଣବତ୍ତା ମଧ୍ୟ କ୍ରମେ ହ୍ରାସ ପାଇବାରେ ଲାଗିଛି । ବର୍ଷରେ ବତିଶି ଦିନ ବସୁଥିବା ଲୋକସଭା ଅନେକ ସମୟରେ 'କୋରମ୍' ଅଭାବରୁ ବନ୍ଦ ହୋଇଯାଉଛି । ଗୁରୁତ୍ୱପୂର୍ଣ୍ଣ ବିଷୟ ଆଲୋଚନା ହୋଇ ପାରୁନାହିଁ । କାରଣ ପାର୍ଲିଆମେଣ୍ଟରେ ଏମ୍‌ପିଙ୍କ ମରୁଡ଼ି । ଯେଉଁମାନେ ବେଳେବେଳେ ଆସନ୍ତି, ଘଣ୍ଟେ ଦି ଘଣ୍ଟା ରହି ଚାଲିଯାନ୍ତି । ଏହି କାରଣରୁ ପ୍ରତି ବର୍ଷ ଆତଙ୍କବାଦ, ଦରଦାମ ବୃଦ୍ଧି ଓ ମୁଦ୍ରାସ୍ଫୀତି ସମ୍ପର୍କରେ କୋରମ୍ ଅଭାବରୁ ଆଲୋଚନା ହୋଇ ପାରେ ନାହିଁ । ଧ୍ୟାନ ଆକର୍ଷଣ ପ୍ରଶ୍ନ ୱାପସ ନିଆଯାଏ । ସ୍ୱୟଂ ପ୍ରଶ୍ନକର୍ତ୍ତାମାନେ ଉପସ୍ଥିତ ରୁହନ୍ତି ନାହିଁ । ଏହିଭଳି ସାଂସଦମାନେ ଦରବୃଦ୍ଧି ଉପରେ ସଂସଦରେ ହେବାକୁ ଥିବା ଆଲୋଚନାରେ ଯୋଗ ନ ଦେଇ ସଂସଦ ବାହାରେ ଧାରଣା, ଧର୍ମଘଟରେ ଯୋଗ ଦେବାକୁ ରାଜନୀତିକ ଦୃଷ୍ଟିରୁ ଅଧିକ ଲାଭଦାୟକ ବୋଲି ଭାବନ୍ତି ।

୧୯୪୯ ମସିହା ନଭେମ୍ବର ୨୫ ତରିଖରେ ଭାରତୀୟ ସମ୍ବିଧାନ ସଭାରେ ଅଂଶଗ୍ରହଣ କରି ଡକ୍ଟର ଭୀମରାଓ ଆମ୍ବେଦକର ସାଂସଦମାନଙ୍କର ଏଭଳି ସମ୍ଭାବିତ ଆଚରଣକୁ 'ଅରାଜକତାର ବ୍ୟାକରଣ' ବା 'ଗ୍ରାମାର୍ ଅଫ୍ ଆନାର୍କି' ବୋଲି କହିଥିଲେ । ଏବେ ଏହାକୁ କୁହାଯାଉଛି 'ପ୍ରୋଟେଷ୍ଟ ପଲିଟିକ୍ସ' । ଆଉ କେତେକ ଏହାକୁ ଆଜିକାର ରାଜନୀତିକ 'ରିଅଲିଟି ସୋ' କହିଲେଣି । ଏହି ଭଳି ଅସାମ୍ବିଧାନିକ ଆଚରଣଦ୍ୱାରା ସାଧାରଣ ନାଗରିକମାନେ ସଂସଦୀୟ ଗଣତନ୍ତ୍ର ଉପରୁ କ୍ରମେ ଆସ୍ଥା ହରାଉଛନ୍ତି ।

ପୁଣି ସଂସଦ ଯେଉଁ ସ୍ୱଳ୍ପ ଦିନପାଇଁ ବସେ, ତା'ର ଶତକଡ଼ା ୨୦ ଭାଗ ସମୟ ଝଗଡ଼ା ଝାଟିରେ ନଷ୍ଟ ହୋଇଯାଏ । ତ୍ରୟୋଦଶ ଲୋକସଭା (୧୯୯୯-୨୦୦୪) ଓ ଚତୁର୍ଦ୍ଦଶ ଲୋକସଭାରେ (୨୦୦୪-୨୦୦୮, ଡିସେମ୍ବର) ଏହି କାରଣରୁ ପ୍ରାୟ ଏକ ଚତୁର୍ଥାଂଶ ସମୟ ନଷ୍ଟ ହୋଇ ଯାଇଥିଲା । ସେହିପରି ୨୦୦୬ ମସିହାରେ ଯେଉଁ ବିଲ ସବୁ ପାସ ହୋଇଥିଲା, ସେଥିରୁ ୪୦ ଭାଗ ବିଲରେ ଆଲୋଚନାର ସମୟ ଥିଲା ଏକ ଘଣ୍ଟାରୁ କମ୍ । ସେହି ବର୍ଷ ୬୫ ଭାଗ ସଂସଦ ଉଭୟ ଲୋକସଭା ଓ

ରାଜ୍ୟସଭାରେ ଥରେ ହେଲେ ମୁହଁ ଖୋଲି ନଥିଲେ । ଅନେକ ଗୁରୁତ୍ୱପୂର୍ଣ୍ଣ ବିଲ୍ ତିନି ଚାରି ମିନିଟ୍ ବା ବିନା ଆଲୋଚନାରେ ପାସ ହୋଇଯାଇଥିଲା । 'ସ୍ପେଶାଲ ଇକନମିକ ଜୋନ୍' ଭଳି ଅତ୍ୟନ୍ତ ଗମ୍ଭୀର ସ୍ପର୍ଶକାତର ଆଇନ୍ ମଧ୍ୟ କୌଣସି ଗଭୀର ଆଲୋଚନା ବିନା ପାସ୍ ହୋଇଯାଇଥିଲା ୨୦୦୫ ମସିହାରେ । ୨୦୦୮ ଡିସେମ୍ବର ୨୩ ତାରିଖ ଦିନ ଲୋକସଭାରେ ୧୭ ମିନିଟରେ ଆଠଟି ବିଲ୍ ପାଶ୍ ହୋଇଗଲା ବିନା ଡିବେଟରେ ଏବଂ ତା'ଭିତରେ ଥିଲା ଦେଶପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ 'କ୍ରିମିନାଲ ପ୍ରସେଡ୍ୟୁଅର କୋଡ ବିଲ୍' । ଏବେ ବିଶେଷଜ୍ଞମାନେ କହିଲେଣି ଏହି ପାରିତବିଲ୍ ଦେଶର ସୁରକ୍ଷାକୁ ଆହୁରି ଦୁର୍ବଳ କରିଦେବ ।

ସଂସଦୀୟ ପ୍ରଣାଳୀରେ ପ୍ରଶ୍ନକାଳ ଏକ ଗୁରୁତ୍ୱପୂର୍ଣ୍ଣ ବ୍ୟବସ୍ଥା । ଏହି ସମୟରେ ସାଂସଦମାନେ ଦେଶ ଓ ରାଜ୍ୟର ପ୍ରଗତି, ଶାସନ ପ୍ରଣାଳୀ, ସୁରକ୍ଷା, ଜନସ୍ୱାର୍ଥ, ବିଭିନ୍ନ ଯୋଜନାର କାର୍ଯ୍ୟକାରିତା ସମ୍ପର୍କରେ ପ୍ରଶ୍ନ ପଚାରି ସରକାରଙ୍କୁ ସନ୍ତୋଷଜନକ ଉତ୍ତର ଦେବାପାଇଁ ବାଧ୍ୟ କରିଥାନ୍ତି । ସମଗ୍ର ପ୍ରଶ୍ନକାଳରେ ସାତ, ଆଠ ହଜାର ପ୍ରଶ୍ନପାଇଁ ସମୟ ଥାଏ । ଏବେ 'ସୋସିଆଲ୍ ୱାଚ୍'ଦ୍ୱାରା ପ୍ରକାଶିତ ଏକ ରିପୋର୍ଟରୁ ଜଣାଯାଏ ପଚରା ଯାଉଥିବା ଅନେକ ପ୍ରଶ୍ନ ଅପ୍ରାସଙ୍ଗିକ ଓ ନିରର୍ଥକ । ଯେଉଁ ପ୍ରୋଗ୍ରାମ୍ ଓ ସ୍କିମ୍ ସମ୍ପର୍କରେ ପ୍ରଶ୍ନ ହୋଇଥାଏ ସେଥିରୁ ଅନେକ ପୁରୁଣା ଓ ବନ୍ଦ ହୋଇଯାଇଥିବା ସ୍କିମ୍ । ଉଦାହରଣ ସ୍ୱରୂପ ଗତବର୍ଷ ଜଣେ ମାନ୍ୟବର ସାଂସଦଙ୍କ ପ୍ରଶ୍ନ ଥିଲା ୨୦୦୬ ମସିହାରେ ଅପରେସନ୍ ବ୍ଲାକ୍ ବୋର୍ଡ଼ ସ୍କିମ୍‌ପାଇଁ ମଧ୍ୟପ୍ରଦେଶ ସରକାରଙ୍କୁ କେତେ ଟଙ୍କା ଦିଆଯାଇଥିଲା? ସମ୍ପୃକ୍ତ ମନ୍ତ୍ରୀ ଏହି ପ୍ରଶ୍ନର ଉତ୍ତର ଦେଇ କହିଲେ, "ସ୍କିମ୍‌ଟି ୨୦୦୧ ମସିହାରୁ ବନ୍ଦ ହୋଇଗଲାଣି ।"

ଅନ୍ୟ ପକ୍ଷରେ ପଇସା ଓ ଲାଞ୍ଚ ନେଇ ପ୍ରଶ୍ନ ପଚାରିଥିବା ଅଭିଯୋଗରେ ଦୋଷୀ ସାବ୍ୟସ୍ତ ହେବା ଫଳରେ ଗତବର୍ଷ ଲୋକସଭାରୁ ବଡ଼ ବଡ଼ ରାଜନୈତିକ ଦଳର ୧୦ ଜଣ ଓ ରାଜ୍ୟସଭାର ଜଣେ ସାଂସଦ ସଭ୍ୟପଦ ହରାଇଛନ୍ତି । ମାନ୍ୟବର ସାଂସଦମାନେ ବସୁଥିବା ପାର୍ଲାମେଣ୍ଟରେ ପ୍ରତିମିନିଟ୍‌ର ମୂଲ୍ୟ ୨୬,୦୩୫ ଟଙ୍କା । କିନ୍ତୁ ଏହି ମୂଲ୍ୟବାନ୍ ସମୟ ଅନୁସ୍ଥିତି, ଅପାରଗତା, ବାଦ-ବିବାଦ, ବୃଥା ପ୍ରଶ୍ନ ବା ପଇସା ଖାଇ ପ୍ରଶ୍ନ ପଚାରିବାରେ କଟିଯାଏ । ଯେଉଁ କେତେକ ବିଜ୍ଞ,ଯୋଗ୍ୟ ସାଂସଦ ଥା'ନ୍ତି ସେମାନେ ଏହି ପ୍ରକ୍ରିୟାକୁ ପ୍ରଭାବିତ କରିପାରନ୍ତି ନାହିଁ। ଏହାଛଡ଼ା ଅଧିକାଂଶ ସାଂସଦଙ୍କର ଆଲୋଚନାରେ ଯୋଗ ଦେବାପାଇଁ ଆବଶ୍ୟକ ପ୍ରସ୍ତୁତି ନଥାଏ । ଦଳମାନେ ମଧ ଯୋଗ୍ୟ ଲୋକଙ୍କୁ ଟିକେଟ ଦିଅନ୍ତି ନାହିଁ । ବାହୁବଳ, ଧନବଳ,

ଜାତି, ଧର୍ମ ଓ ନେତାଙ୍କ ପ୍ରତି ଆନୁଗତ୍ୟ ଭିତ୍ତିରେ ଟିକେଟ ବଣ୍ଟାଯାଏ । କେତେକ ଦଳ ଡକାଏତ୍‌ମାନଙ୍କୁ ଟିକେଟ୍ ଦେଇ ଜିତାଇଥିବାର ଦୃଷ୍ଟାନ୍ତ ରହିଛି । ଚିତ୍ର ତାରକାମାନେ ନିର୍ବାଚିତ ହୋଇ ଆସନ୍ତି କିନ୍ତୁ ପାର୍ଲାମେଣ୍ଟକୁ ଆସନ୍ତି ନାହିଁ କି ବସନ୍ତି ନାହିଁ । ଦିପିକା ଚିକାଲିଆ (ସୀତା), ରାଜବାବର୍, ଶତ୍ରୁଘ୍ନ ସିହ୍ନା, ହେମାମାଳିନୀ, ଧର୍ମେନ୍ଦ୍ର, ଗୋବିନ୍ଦା, ଜୟାପ୍ରଦା ଭଳି ନିର୍ବାଚିତ ଚିତ୍ରତାରକା ପାର୍ଲାମେଣ୍ଟରେ କୌଣସି ଗୁରୁତ୍ୱପୂର୍ଣ୍ଣ ଆଲୋଚନାରେ ଭାଗ ନିଅନ୍ତି ନାହିଁ । କେତେକ ମାନ୍ୟବରଙ୍କ ଆଚରଣ ଦେଖି ସର୍କସ ପାର୍ଟିର ଦୃଶ୍ୟ ଭଳି ଲାଗେ ।

ଆମ ଦେଶରେ ପ୍ରତିଥର ଲୋକସଭା ନିର୍ବାଚନରେ ଖର୍ଚ୍ଚ ହୁଏ ପ୍ରାୟ ୫୦୦୦ କୋଟି ଟଙ୍କା ଓ ଲୋକସଭାର ବାର୍ଷିକ ବ୍ୟୟ ୪୪୦ କୋଟି ଟଙ୍କା । ମନ୍ତ୍ରୀମାନେ ଯେଉଁ ବଙ୍ଗଳାରେ ରହନ୍ତି ପ୍ରତି ବଙ୍ଗଳାର ବାର୍ଷିକ ମାର୍କେଟ୍ ଭଡା ହେବ ୧୫୦ କୋଟି ଟଙ୍କା । ଲୋକ ପ୍ରତିନିଧିଙ୍କୁ ଲୋକଙ୍କଠାରୁ ରକ୍ଷା କରିବାପାଇଁ ଭିଆଇପି ସିକ୍ୟୁରିଟିରେ ଅଜସ୍ର ପଇସା ଖର୍ଚ୍ଚ ହୁଏ । କମାଣ୍ଡୋମାନେ ଦେଶ ରକ୍ଷା ଛାଡି ଭିଆଇପି ରକ୍ଷାରେ ବ୍ୟସ୍ତ ରହନ୍ତି । ଆମ ଦେଶରେ କର୍ମଚାରୀମାନଙ୍କପାଇଁ ପେ'କମିଶନ ବସେ, କିନ୍ତୁ ମାନ୍ୟବରମାନେ ନିଜେ ବସି ନିଜର ଦରମା, ଭତ୍ତା ବଢାଇଥାନ୍ତି । ସଂସଦକୁ ନ ଆସିଲେ ବି ଦରମା, ଭତ୍ତା ମିଳିଥାଏ । ଏବେ ଭାରତର ପୂର୍ବତନ ଉପରାଷ୍ଟ୍ରପତି ଓ ଜଣେ ପୋଖତ ନେତା ନିର୍ବାଚନପାଇଁ ଟିକେଟର କିଣା ବିକା ହେଉଛି ବୋଲି ଅଭିଯୋଗ କରିଛନ୍ତି । ଅନ୍ୟ ଏକ ରିପୋର୍ଟରୁ ଜଣାପଡିଛି ଯେ ଚଳିତ ଲୋକସଭା-ରାଜ୍ୟସଭାରେ ଅପରାଧ-ଇତିହାସ ଥିବା ସାଂସଦଙ୍କ ସଂଖ୍ୟା ୧୨୫; ଏହା ସମୁଦାୟ ସଭ୍ୟ ସଂଖ୍ୟାର ଚାରିଭାଗରୁ ଭାଗେ । ଏଣୁ ଆଇନ୍ ପ୍ରଣୟନକାରୀ ଓ ଭଙ୍ଗକାରୀ ପାର୍ଲାମେଣ୍ଟ ଓ ବିଧାନସଭାରେ ଏକାଠି ବସନ୍ତି । ନିର୍ବାଚନ କମିସନଙ୍କ ନିର୍ଦ୍ଦେଶ, ନିୟମ ମାନନ୍ତି ନାହିଁ । "ଦର୍ଦ୍ଦୁର ରବ ଶୁଣି ନୀରବ ପିକ, ମୂର୍ଖ ସଭାରେ ମୂକ ଯଥା ଧାର୍ମିକ" ଭଳି ନିଷ୍ପାପର ସାଂସଦମାନେ ଚୁପ୍ ରହନ୍ତି - ସବ୍‌ସେ ଚୁପ୍ ଭଲା ।

ଭାରତରେ ଯୋଗ୍ୟ ଓ ବିଜ୍ଞ ଲୋକଙ୍କର ଅଭାବ ନାହିଁ । ତେଣୁ ଦେଶ କାହିଁକି ଅଯୋଗ୍ୟ, ଅପାରଗ, ଦୁର୍ନୀତିଗ୍ରସ୍ତ ଓ ଅପରାଧୀଙ୍କଦ୍ୱାରା ଶାସିତ ହେଉଥିବ ? ବିବେକବାନ ସାଂସଦମାନେ ପାର୍ଲାମେଣ୍ଟକୁ ସଜାଡିବାପାଇଁ ପାର୍ଲାମେଣ୍ଟ ଭିତରେ ତର୍କ-ବିତର୍କ ଆରମ୍ଭ କରନ୍ତୁ । ଏହା ଶୀଘ୍ର ନ ହେଲେ ଅଧିକରୁ ଅଧିକ ଲୋକେ ପ୍ରଚଳିତ ଗଣତନ୍ତ୍ରିକ ପଦ୍ଧତି ଓ ପ୍ରକ୍ରିୟା ଉପରୁ ଆସ୍ଥା ହରାଇ ମାଓବାଦୀ, ନକ୍ସଲବାଦୀ ଓ ବ୍ୟବସ୍ଥା ପରିବର୍ତ୍ତନବାଦୀଙ୍କ ଆଶ୍ରା ନେବେ । ସେତେବେଳକୁ ଲେଡି ଗୁଡ କହୁଣିକୁ

ବୋହି ଯାଇଥିବ । ଭାରତର ବୁଦ୍ଧିଜୀବୀ, ନାଗରିକ ସମାଜ ଓ ଯୁବ ସମାଜ ଏକାଠି ହୋଇ ଏ ଅବସ୍ଥା ସୁଧାରିବାପାଇଁ ଆବଶ୍ୟକ ହେଲେ ଜନଆନ୍ଦୋଳନପାଇଁ ପ୍ରସ୍ତୁତ ରହନ୍ତୁ । ଦୁର୍ଜନଙ୍କୁ ବର୍ଜନ କରି ସଚ୍ଚୋଟ, ନିଷ୍ଠାପର, ଦେଶପ୍ରେମୀଙ୍କୁ ନିର୍ବାଚିତ କରାନ୍ତୁ । ଇଂରାଜୀରେ ଉକ୍ତି ଅଛି "ୟୁ ଗେଟ୍ ଦି ଗଭର୍ଣ୍ଣମେଣ୍ଟ ୟୁ ଡିଜର୍ଭ" - ଯେମିତି ନାଗରିକ, ସେମିତି ସରକାର ।

*୧୪ ଜାନୁଆରୀ, ୨୦୦୯*



# ଧୃତରାଷ୍ଟ୍ରଙ୍କ ବଂଶବୃଦ୍ଧି

ଏବେ ମଧ୍ୟପ୍ରଦେଶର ପୂର୍ବତନ ମୁଖ୍ୟମନ୍ତ୍ରୀ ଓ ଭାରତୀୟ ଜନଶକ୍ତି ପାର୍ଟିର ଅଧ୍ୟକ୍ଷା ସୁଶ୍ରୀ ଉମାଭାରତୀ, ଗୁଜୁରାଟର ମୁଖ୍ୟମନ୍ତ୍ରୀ ନରେନ୍ଦ୍ର ମୋଦିଙ୍କୁ ଦୁର୍ଯ୍ୟୋଧନ ଓ ତାଙ୍କ ରାଜନୈତିକ ଗୁରୁ ବିରୋଧୀ ଦଳ ନେତା ଲାଲକୃଷ୍ଣ ଆଡଭାନୀଙ୍କୁ ଧୃତରାଷ୍ଟ୍ର ଆଖ୍ୟା ଦେଇଛନ୍ତି । କ୍ଷମତା ରାଜନୀତିରେ ଏପରି ଆରୋପ, ପ୍ରତ୍ୟାରୋପ ସ୍ୱାଭାବିକ । କିନ୍ତୁ ଏହା ସତ୍ୟ ଯେ ମହାଭାରତ ଯୁଦ୍ଧରେ, ଧର୍ମକ୍ଷେତ୍ର କୁରୁକ୍ଷେତ୍ରରେ କୌରବମାନେ ପରାସ୍ତ ଓ ଧ୍ୱଂସ ହୋଇଗଲେ ଏବଂ କୁରୁକୁଳ ବୁଡିଗଲା ସିନା, କିନ୍ତୁ ସେହିଦିନୁ ଭାରତରେ ଧୃତରାଷ୍ଟ୍ରଙ୍କ ବଂଶ ବୃଦ୍ଧି ପାଇବାରେ ଲାଗିଛି । ଧୃତରାଷ୍ଟ୍ର ଜଣେ ଅନ୍ଧ ରାଜା ନଥିଲେ, ସେ ପ୍ରକୃତରେ ଥିଲେ ଜଣେ ଅନ୍ଧ ପିତା - ଅନ୍ଧ ଶାସକ - ଅନ୍ଧ ବିଚାରକ । ତାଙ୍କର ସନ୍ତାନ ମୋହ କାରଣରୁ ପ୍ରଥମ ଥରପାଇଁ ଭାରତର ବିଭାଜନ ଘଟିଥିଲା । ୧୯୪୭ ମସିହା 'ପାର୍ଟିସନ୍'ର ପାଞ୍ଚ ହଜାର ବର୍ଷ ପୂର୍ବରୁ । ଏବେ ଭାରତର ରାଜନୈତିକ, ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ କ୍ଷେତ୍ରମାନଙ୍କରେ ମଧ୍ୟ ଧୃତରାଷ୍ଟ୍ରମାନେ ବ୍ୟାପି ଗଲେଣି ।

ଭାରତୀୟ ଜାତୀୟ କଂଗ୍ରେସରେ ପରିବାରବାଦ ବିରୁଦ୍ଧରେ ଯେଉଁ ଦଳ ଓ ନେତାମାନେ ବଡ ପାଟି କରୁଥିଲେ, ତାଙ୍କ ପିଲାମାନେ ଏବେ ତାଙ୍କ ଦଳକୁ ଅକ୍ତିଆର କରିନେଲେଣି । ଭାରତୀୟ ଜନତା ପାର୍ଟିର ସଭାପତି ପରିବାରବାଦ ବିରୁଦ୍ଧରେ ବିବୃତି ଦେବା ବାସି ଦିନ ତାଙ୍କ ପୁଅ ଉତ୍ତରପ୍ରଦେଶ ଯୁବ ବିଜେପିର ସଭାପତି ହୋଇଗଲେ । କରୁଣାନିଧି ନିଜ ପୁଅକୁ ତାମିଲନାଡୁରେ ଓ ଝିଅକୁ କେନ୍ଦ୍ର ସରକାରରେ ପ୍ରତିନିଧିତ୍ୱ କରିବାକୁ ବାଛିଲେ - କାରଣ ଡିଏମ୍‌କେରେ ଆଉ ଯୋଗ୍ୟ ଲୋକ ନଥିଲେ । ଏହା ପୂର୍ବରୁ ସେ ପୁତୁରା ଓ ଭଣଜାଙ୍କୁ କେନ୍ଦ୍ରରେ ମନ୍ତ୍ରୀ କରାଇଥିଲେ । ପିଏମ୍‌କେ ପାର୍ଟିର ସଭାପତି ଏସ୍. ରାମାଡସ୍ ନିଜ ପୁଅ ଅମ୍ବୁମନି ରାମାଡସ୍‌ଙ୍କୁ କେନ୍ଦ୍ର ମନ୍ତ୍ରିମଣ୍ଡଳରେ

ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ କରାଇଲେ । ତାଙ୍କ ପାର୍ଟିରେ କେବଳ ଦୁଇଜଣ ଯୋଗ୍ୟ ବ୍ୟକ୍ତି ଅଛନ୍ତି - ବାପ ଓ ପୁଅ । କାଶ୍ମୀରରେ ଶେଖ ଅବଦୁଲା, ଫାରୁକ୍ ଅବଦୁଲା, ଓମର୍ ଅବଦୁଲା, ମୁଫ୍‌ତି ସୟିଦ୍ ଓ ମେହବୁବା ମୁଫ୍‌ତି ଏହି ପରମ୍ପରାର ଓ ଧୃତରାଷ୍ଟ୍ରବାଦର ପ୍ରତୀକ ।

ସେହିପରି ପୂର୍ବତନ ପ୍ରଧାନମନ୍ତ୍ରୀ ଦେବେଗୌଡ ଭାବନ୍ତି ଯେ କର୍ଣ୍ଣାଟକରେ ସୁପୁତ୍ର କୁମାରସ୍ୱାମୀଙ୍କ ଛଡା ମୁଖ୍ୟମନ୍ତ୍ରୀ ହେବାକୁ ଆଉ ଯୋଗ୍ୟ ବ୍ୟକ୍ତି ନାହାନ୍ତି । ଲାଲୁପ୍ରସାଦ ଯାଦବ ଜେଲ୍ ଯିବା ଆଗରୁ ନିଜ ସ୍ତ୍ରୀ ରାବଡି ଦେବୀଙ୍କୁ ମୁଖ୍ୟମନ୍ତ୍ରୀ ଆସନରେ ବସାଇ ଦେଇଥିଲେ । ଶରଦ ପାୱାର ନିଜ ଝିଅକୁ ପଠାଇଲେ ରାଜ୍ୟସଭାକୁ । ବଂଶ ଶାସନ ବିରୁଦ୍ଧରେ ଗଳା ଫଟାଇ ଚିତ୍କାର କରୁଥିବା ଶିବସେନା ଅଧ୍ୟକ୍ଷ ବାଲ୍ ଥାକ୍‌ରେ ପୁତ୍ର ଉଦ୍ଧବଙ୍କୁ ଦଳର ମୁଖ୍ୟ ଘୋଷଣା କରିବାରୁ ଖପ୍ପା ହୋଇ ପୁତୁରା ରାଜ ଥାକ୍‌ରେ ଗଢିଲେ ଆଉ ଏକ ଦଳ । ହରିଆନାରେ ପିତା ଦେବୀଲାଲ୍, ଭଜନଲାଲ୍ ଓ ବଂଶୀଲାଲ୍ ନିଜ ପିଲାମାନଙ୍କୁ ଏମ୍‌ଏଲ୍‌ଏ, ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ କରିବାରେ ସଫଳ ହୋଇଥିଲେ । ପଞ୍ଜାବରେ ମୁଖ୍ୟମନ୍ତ୍ରୀ ପ୍ରକାଶ ସିଂ ବାଦଲଙ୍କ ପୁତ୍ରପ୍ରେମ ସମସ୍ତଙ୍କୁ ଜଣା । ସେ ମୁଖ୍ୟମନ୍ତ୍ରୀ ଓ ପୁଅ ଉପମୁଖ୍ୟମନ୍ତ୍ରୀ । କେରଳରେ ଡ.କରୁଣାକରନ୍ ନିଜ ପୁତ୍ରମଣିଙ୍କୁ ମନ୍ତ୍ରୀ କରି ନ ପାରିବାରୁ ଦଳ ଛାଡି ଚାଲିଗଲେ । ଉତ୍ତରପ୍ରଦେଶରେ ପୂର୍ବତନ ମୁଖ୍ୟମନ୍ତ୍ରୀ ସମାଜବାଦୀ ଓ ଲୋହିଆଙ୍କ ଚେଲା ମୁଲାୟମ ସିଂହ ଯାଦବଙ୍କ ଅତ୍ୟଧିକ ପୁତ୍ର ଓ ଜାତିପ୍ରେମ ନିର୍ବାଚନରେ ହାରିଯିବାର ଅନ୍ୟ ଏକ କାରଣ ଥିଲା । ପୁଅକୁ ଟିକଟ ନ ମିଳିବାରୁ କଲ୍ୟାଣ ସିଂ ବିଜେପି ଛାଡି ଚାଲିଗଲେ । ଛତିଶ ଗଡରେ ଅଜିତ୍ ଯୋଗୀଙ୍କର "ଅମିତ୍" ପ୍ରେମଯୋଗୁଁ ଦଳ ବଦନାମ ହେଲା । ୨୦୦୪ ଓ ୨୦୦୯ ଲୋକସଭା ନିର୍ବାଚନରେ ୧୦୦ଟି ରାଜନୈତିକ ପରିବାର ୨୫୦ଟି ସ୍ଥାନରେ ଲଢିଥିବାରୁ ଏହାକୁ ପୃଥିବୀର ସବୁଠାରୁ ବଡ ଫ୍ୟାମିଲି ସୋ ବୋଲି କୁହାଯାଉଥିଲା । ବାପ-ଝିଅ-ପୁଅ-ମା, ଭଣଜା, ପୁତୁରା, ଝିଆରୀ, ଶଳା, ଜ୍ୱାଁଇ, ଶ୍ୱଶୁରମାନେ ମିଶି ଭାରତୀୟ ରାଜନୈତିକ ଦଳମାନଙ୍କୁ ଅକ୍ତିଆର କରିନେଲେଣି । ଆନ୍ଧ୍ର ପ୍ରଦେଶ ମୁଖ୍ୟମନ୍ତ୍ରୀ ରାଜଶେଖର ରେଡ୍ଡିଙ୍କର ହେଲିକପ୍ଟର ଦୁର୍ଘଟଣାରେ ମୃତ୍ୟୁ ପରେ ତାଙ୍କ ପୁଅକୁ ଉତ୍ତରାଧିକାରୀ କରିବାପାଇଁ ଅନୁଗାମୀମାନଙ୍କ ଚେଷ୍ଟା ଜାରୀ ରହିଛି ।

ଆମ ପଡୋଶୀ ଦେଶମାନଙ୍କରେ ବି ଧୃତରାଷ୍ଟ୍ରଙ୍କର ବହୁ ଅନୁଗାମୀ ଅଛନ୍ତି । ନେପାଳ ରାଜା ଜ୍ଞାନେନ୍ଦ୍ରଙ୍କର ଅଯୋଗ୍ୟ ପୁତ୍ର ପାରଶ୍‌ଙ୍କ ପ୍ରତି ଅତ୍ୟନ୍ତ ଅନ୍ଧ-ପ୍ରେମ ଓ

ବଡଭାଇଙ୍କର ସାରା ପରିବାରକୁ ହତ୍ୟାର ଅଭିଯୋଗ ଏବେ ତାଙ୍କୁ ଦେଶର ସବୁଠାରୁ ଅପ୍ରିୟ ରାଜା କରିଦେଇଛି, ତାଙ୍କଠାରୁ ସବୁ କ୍ଷମତା କାଢି ନିଆଯାଇଛି । ବାଂଲାଦେଶର ଦୁଇଜଣ ପୂର୍ବତନ ମହିଳା ପ୍ରଧାନମନ୍ତ୍ରୀ ଖାଲିଦା ଜିଆ ଓ ଶେଖ୍ ହାସିନା ନିଜ ସନ୍ତାନମାନଙ୍କର ଦୁର୍ନୀତି ଓ କ୍ଷମତା ଦୁରୁପଯୋଗକୁ ପ୍ରଶ୍ରୟ ଦେବା ଅଭିଯୋଗରେ ଏବେ ଜେଲ୍‌ରେ ଅଛନ୍ତି ।

ପାକିସ୍ତାନର ପୂର୍ବତନ ପ୍ରଧାନମନ୍ତ୍ରୀ ବେନଜୀର ଭୁଟ୍ଟୋଙ୍କ ସ୍ୱାମୀ ଆସିଫ୍ ଜରଦାରୀଙ୍କ ନିକ୍ ନେମ୍ ହେଉଛି ମିଷ୍ଟର ଟେନ୍ ପର୍ସେଣ୍ଟ । ଆଠବର୍ଷ ଦେଶାନ୍ତର ପରେ ରାଜକ୍ଷମା ପାଇ ଏବେ ସେ ଦେଶକୁ ଫେରିଛନ୍ତି । ଶ୍ରୀଲଙ୍କାର ବନ୍ଦରନାୟକ ପରିବାର କଥା ପ୍ରାୟ ସମସ୍ତେ ଜାଣନ୍ତି । କିନ୍ତୁ ଏବକାର ପ୍ରେସିଡେଣ୍ଟ ନିଜ ଭାଇଙ୍କୁ ମନ୍ତ୍ରୀ, ଆଉ ଏକ ଭାଇଙ୍କୁ ପ୍ରତିରକ୍ଷା ସଚିବ ଓ ତୃତୀୟ ଭାଇଙ୍କୁ ମଧ୍ୟ କ୍ଷମତାସୀନ କରାଇ ଦେଶକୁ ନିଜ ନିୟନ୍ତ୍ରଣରେ ରଖିଛନ୍ତି ବୋଲି ଅଭିଯୋଗ ହେଲାଣି । କିନ୍ତୁ ସବୁଠାରୁ କୌତୂହଳର ବିଷୟ ଯେ ଏବେ ଏଲ୍‌ଟିଟିଇର ସର୍ବୋଚ୍ଚ ନେତା ଓ କମାଣ୍ଡର ପ୍ରଭାକରନ୍ ମଧ୍ୟ ମୃତ୍ୟୁ ପୂର୍ବରୁ ନିଜ ପୁଅକୁ ଜାଫନାରେ ରାଜ୍ୟାଭିଷେକ କରିବା ଚେଷ୍ଟାରେ ଥିଲେ । ମାଲ୍‌ଡିଭ୍‌ରେ ଗତ ବତିଶ ବର୍ଷ ହେଲା ପ୍ରେସିଡେଣ୍ଟ ରହିଥିବା ଅବଦୁଲ୍ ଗାୟୁମ୍ ନିଜର ନିକଟ ସମ୍ପର୍କୀୟମାନଙ୍କୁ ପ୍ରମୁଖ ସ୍ଥାନରେ ରଖି ଦେଶ ଶାସନ କରୁଛନ୍ତି ବୋଲି ଅଭିଯୋଗ ହେଲା ପରେ ଏବେ ଗାଦି ଛାଡିଛନ୍ତି । ସେଥିଲାଗି ଦୁଇଥର ବିଦ୍ରୋହ ହୋଇଥିଲା ।

ପଡୋଶୀ ସାମ୍ୟବାଦୀ ଚୀନ୍‌ରେ ମାଓ ସେତୁଙ୍କ ଶାସନର ଶେଷ କାଳରେ ତାଙ୍କ ପ୍ରିୟ ପତ୍ନୀଙ୍କ ନେତୃତ୍ୱରେ 'ଗ୍ୟାଙ୍ଗ ଅଫ୍ ଫୋର୍', ପାର୍ଟିକୁ ନିଜ କବ୍‌ଜାରେ ରଖି ସାରା ଦେଶରେ ନିନ୍ଦିତ ହୋଇଥିଲେ । ଏବେ ରାଷ୍ଟ୍ରପତି ହୁ ଜିନ୍ତାଓଙ୍କ ନେତୃତ୍ୱରେ ନବଗଠିତ ସର୍ବୋଚ୍ଚ ପଲିଟିବ୍ୟୁରୋରେ କ୍ଷମତାଶାଳୀ ପିତାମାନଙ୍କ ଅସୀମ କରୁଣାରୁ ପାଞ୍ଚଜଣ 'ଯୁବରାଜ' ସଭ୍ୟ ମନୋନୀତ ହୋଇଛନ୍ତି । ଏମାନଙ୍କ ଭିତରେ ଅଛନ୍ତି ସଂଘାଇର ପାର୍ଟି 'ବସ୍' ଜି ଜିନ୍‌ପିଙ୍ଗ୍, ରାଷ୍ଟ୍ରୀୟ ନିରାପତ୍ତା 'ଜାର୍', ଚୌଯୋଙ୍ଗଙ୍ଗ୍, ବାଣିଜ୍ୟ-ବେପାର ମନ୍ତ୍ରୀ ବୋ ଜିଲାଇ ଓ ରାଜଧାନୀ ବେଜିଂର ମେୟର ୱାଙ୍ଗ କ୍ୱିସାନ୍ । ଇରାକ୍‌ରେ ସଦ୍ଦାମ ହୁସେନ୍ ନିଜ ସନ୍ତାନ ଉଦୟ ଓ ଭାଇ ବନ୍ଧୁମାନଙ୍କୁ ଦେଶରକ୍ଷା, ବୈଦେଶିକ ଓ ଆଭ୍ୟନ୍ତରୀଣ ନିରାପତ୍ତା ଦାୟିତ୍ୱରେ ଅବସ୍ଥାପିତ କରି ଦେଶକୁ ନିଜ କର୍ତ୍ତୃତ୍ୱାଧୀନ ରଖିଥିଲେ । ଆରବ ଦେଶମାନଙ୍କରେ ମଧ୍ୟ ଏହିପରି ଅବସ୍ଥା । ଦକ୍ଷିଣ ପୂର୍ବ ଏସିଆର ସବୁଠାରୁ ଧନୀ ଦେଶ ବ୍ରୁନେଇ ଦାରୁସାଲାମ୍‌ର ସୁଲତାନଙ୍କ ଭାଇ

କ୍ଷମତାର ଅପବ୍ୟବହାର କରି ଏବେ ସୁଲତାନ୍‌ଙ୍କୁ ବଦନାମ୍ କରି ସାରିଲେଣି । କ୍ୟୁବାର ସାମ୍ୟବାଦୀ ରାଷ୍ଟ୍ରପତି ଫିଡେଲ୍ କାଷ୍ଟ୍ରୋଙ୍କ ବୟସ ଅଶୀରୁ ଅଧିକ ହେଲାଣି ଓ ସେ ପ୍ରାୟ ଶଯ୍ୟାଶାୟୀ ରହୁଛନ୍ତି । କିନ୍ତୁ କ୍ଷମତା ହସ୍ତାନ୍ତରପାଇଁ ପ୍ରସ୍ତୁତ ନୁହଁନ୍ତି । ତେଣୁ ନିଜ ସାନଭାଇଙ୍କୁ ସବୁ କ୍ଷମତା ଦେଇ ପରୋକ୍ଷରେ ଶାସନ ଉପରେ ନିୟନ୍ତ୍ରଣ ରଖିଛନ୍ତି । ଅତୀତରେ ଫିଲିପାଇନ୍‌ସର ମାର୍କସ ପରିବାର ଓ ଏବେ ଉତ୍ତର କୋରିଆର କିମ୍ ପରିବାର ବି ସେଇ ବାଟରେ ଅଛନ୍ତି । ଇଣ୍ଡୋନେସିଆର ପୂର୍ବତନ ରାଷ୍ଟ୍ରପତି ସୁହାର୍ତୋ ଅତ୍ୟନ୍ତ ଅପତ୍ୟ ସ୍ନେହ ଓ ଏକଛତ୍ର ଶାସନଯୋଗୁଁ ଗାଦିଚ୍ୟୁତ ହୋଇଥିଲେ ।

ରାଜନୀତି କ୍ଷେତ୍ର ପରେ ସିନେମା, ସ୍ୱେଚ୍ଛାସେବୀ ସଂଗଠନ ଓ ବ୍ୟବସାୟ କ୍ଷେତ୍ରରେ ପରିବାର ଓ ପୁତ୍ର-ପୁତ୍ରୀ ସ୍ନେହର ଟାଣଟା ପ୍ରଭାବ ରହିଛି । ବଲିଉଡ୍‌ରେ ନୂଆ କଳାକାରମାନେ ପଶି ପାରୁନାହାନ୍ତି କାରଣ ଅଭିନେତା ପିତା-ମାତା ନିଜ ପୁତ୍ର-କନ୍ୟାଙ୍କୁ ହିରୋ ହିରୋଇନ୍ କରି ନବାଗତଙ୍କ ରାସ୍ତା ରୋକିଦେଲେଣି । ଯେଉଁମାନେ ଅନ୍ୟମାନଙ୍କ ସାହାଯ୍ୟରେ ବଡ ଅଭିନେତା ହୋଇଛନ୍ତି ସେମାନେ ଏବେ ନିଜ ପିଲାଙ୍କୁ ପ୍ରମୋଟ୍ କରିବାରେ ବ୍ୟସ୍ତ ଅଛନ୍ତି । କର୍ପୋରେଟ୍ ଜଗତରେ ବି ସେଇ ଅବସ୍ଥା । ଆନ୍ତର୍ଜାତିକ ରେଟିଂ ଏଜେନ୍‌ସି 'ମୁଡି'ଙ୍କ ସର୍ଭେ ଅନୁସାରେ ଭାରତର ଅଧିକାଂଶ ବଡ ବଡ କମ୍ପାନୀ ଟାଟା, ବିରଳା, ଅମ୍ବାନି, ଗଡରେଜ୍, ବେଦାନ୍ତ, ୱିପ୍ରୋ, ଇସାର, ଭାରତୀ, ଟିଭିଏସ୍, ମିତ୍ତଲ, ମୁରୁଗାପା ଗ୍ରୁପ୍ ଆଦି ପରିବାରର ନିୟନ୍ତ୍ରଣରେ ଅଛନ୍ତି । ଷ୍ଟକ୍ ମାର୍କେଟ୍‌ର ୫୫ ପ୍ରତିଶତ ଏମାନଙ୍କ ଅକ୍ତିଆରରେ ଅଛି । ଫଳରେ ଏହିସବୁ କମ୍ପାନିରେ ଶାସନ ଓ ପରିଚାଳନା ବ୍ୟବସ୍ଥାରେ ସ୍ୱଚ୍ଛତା ଓ ନିରପେକ୍ଷତା ରହୁନାହିଁ । କମ୍ପାନି ଅପେକ୍ଷା ବ୍ୟକ୍ତିଙ୍କ ପ୍ରାଧାନ୍ୟ ବଢିଯାଉଛି । ସମ୍ପତ୍ତି ବଢୁଛି, କିନ୍ତୁ ସମୂହ ଦାୟିତ୍ୱ କମୁଛି । ସାମାଜିକ କର୍ତ୍ତବ୍ୟବୋଧ ଦୁର୍ବଳ ରହୁଛି । ଉତ୍ତରାଧିକାରପାଇଁ ପାରିବାରିକ ବିବାଦ କୋର୍ଟରେ ଫଇସଲା ହେଉଛି ।

ଏକ ଗଣତାନ୍ତ୍ରିକ ଦେଶରେ, ଗଣତାନ୍ତ୍ରିକ ପଦ୍ଧତିରେ ନେତାଙ୍କ ପିଲାଏ ନେତା ହେବାରେ କୌଣସି ଅସୁବିଧା ନାହିଁ । ଅତୀତରେ ଏମାନଙ୍କ ମଧ୍ୟରୁ ଅନେକ ନିଜ ନିଜର ଯୋଗ୍ୟତା ବି ପ୍ରମାଣ କରିସାରିଛନ୍ତି । ଉଦାହରଣସ୍ୱରୂପ ରାଜୀବ ଗାନ୍ଧୀ ଜଣେ ଅତି ଜନପ୍ରିୟ ଓ ସଫଳ ପ୍ରଧାନମନ୍ତ୍ରୀ ଭାବରେ ଭାରତରେ ସୂଚନା ବିପ୍ଳବ ଆଣିଥିଲେ, ଯାହା ଫଳରେ ଆଜି ଭାରତ ବିଶ୍ୱର ଆଇଟି ନେତା ଭାବରେ ଉଭା ହୋଇଛି , ପ୍ରତିବର୍ଷ ୫୦ ହଜାର କୋଟି ଟଙ୍କାର ସଫ୍‌ଟୱେର ରପ୍ତାନି କରୁଛି । ହିଲାରି ରୋଧାମ୍ କ୍ଲିଣ୍ଟନ୍ (ବିଲ୍ କ୍ଲିଣ୍ଟନ୍‌ଙ୍କ ପତ୍ନୀ) ରାଷ୍ଟ୍ରପତି ନିର୍ବାଚନରେ ଜିତିଥିଲେ ଯୁକ୍ତରାଷ୍ଟ୍ର

ଆମେରିକାରେ ବୁଶ୍ ଓ କ୍ଲିଣ୍ଟନ ପରିବାର ରାଜତ୍ୱ କରିଥାନ୍ତେ ୨୮ ବର୍ଷ । ସେହିପରି ଆମେରିକାରେ ରବର୍ଟ କେନେଡି, ଜନ୍ ଏଫ୍ କେନେଡି ଓ ଏଡ୍‌ୱାର୍ଡ କେନେଡି ଅତ୍ୟନ୍ତ ଯୋଗ୍ୟ ଓ ଜନପ୍ରିୟ ଥିଲେ । କିନ୍ତୁ ଧୃତରାଷ୍ଟ୍ରଙ୍କ ଭଳି ଜାଣି ଶୁଣି ଅନ୍ଧ ଅପତ୍ୟ ସ୍ନେହ ବଶରେ ନିଜର ଅଯୋଗ୍ୟ ସନ୍ତାନଙ୍କୁ କ୍ଷମତା ବଳରେ ନେତା ଓ ଉତ୍ତରାଧିକାରୀ କରି ଦେଶ ଓ ସମାଜ ଉପରେ ଲଦି ଦେବା ଅନ୍ୟାୟ । ସନ୍ତାନଙ୍କ ଦୁଷ୍କର୍ମକୁ ଘଣ୍ଟ ଘୋଡାଇବା, ଅନ୍ୟାୟକୁ ଉତ୍ସାହିତ କରିବା ଏକ ପୈତୃକ ଦୁର୍ବଳତା । ଲଙ୍କାର ବିଶ୍ରବା ଋଷିଙ୍କଠାରୁ ଆରମ୍ଭ କରି ଓଡ଼ିଶାରେ ବିଦ୍ୟାଭୂଷଣଙ୍କ ପର୍ଯ୍ୟନ୍ତ ବହୁ ପିତାମାତାଙ୍କ କ୍ଷମତା ଓ ପ୍ରଭାବର ଅପବ୍ୟବହାର କରି ସନ୍ତାନମାନେ ଉପରକୁ ଉଠି ପାରନ୍ତି, କିନ୍ତୁ ଏହା ଦ୍ୱାରା ପିତାମାତାଙ୍କ ମାନ ସମ୍ମାନ ତଳକୁ ଖସିଯାଏ । ଏବେ ଗୁରୁଗାଁଓର ଏକ ସ୍କୁଲରେ ଜଣେ ଛାତ୍ର ନିଜ ପିତାଙ୍କ ପିସ୍ତଲ ନେଇ ସେଇ ସ୍କୁଲର ନିଜ ସହପାଠୀକୁ ଗୁଳି କରି ମାରିଦେଲା ପରେ ତାଙ୍କ ପିତା କହିଲେ "ମୋ ପିଲା ନିର୍ଦ୍ଦୋଷ", ସୁନା ପିଲା, ଅନ୍ୟ କିଏ ମାରିଥିବ । ଏମାନେ ଧୃତରାଷ୍ଟ୍ରବାଦର ପ୍ରକୃତ ଦାୟାଦ ।

ଧୃତରାଷ୍ଟ୍ର ଓ ଗାନ୍ଧାରୀ ଗୋଟିଏ ନୁହେଁ - ଦୁଇଟି ବିଚାର ଧାରାର ପ୍ରତୀକ । ଜଣେ ସନ୍ତାନ ମୋହରେ ଅନ୍ଧ - ଅନ୍ୟ ଜଣେ ସତ୍ୟ, ନ୍ୟାୟ, ଧର୍ମ ଓ ବିଚାରବନ୍ତୀ । ଗାନ୍ଧାରୀ ସର୍ବଦା ନିଜ ପତି ଓ ସନ୍ତାନଙ୍କୁ ଠିକ୍ ବାଟରେ ଚାଲିବାକୁ ଉପଦେଶ ଦେଉଥିଲେ । ତେଣୁ ପଥଭ୍ରଷ୍ଟ ପିଲାମାନଙ୍କୁ ବିଜୟ ଆଶୀର୍ବାଦ ଦେଇନଥିଲେ । ଶ୍ରୀମନ୍ଦିର ନିର୍ମାଣ ସରିଲା ପରେ ଓଡ଼ିଶାର ଠାକୁର ରାଜା ଜଗନ୍ନାଥଙ୍କୁ ବର ମାଗିଥିଲେ - ପ୍ରଭୁ ! ମତେ ନିର୍ବଂଶ କରି ଦିଅନ୍ତୁ - ନହେଲେ ମୋ ବଂଶଧରମାନେ ଦାବି କରି କହିବେ ଏ ମନ୍ଦିର ଆମର ପିତୃ ଅର୍ଜିତ ସମ୍ପତ୍ତି । ସମାଜକୁ ଯୋଗ୍ୟ, ଧାର୍ମିକ, ସତ୍ୟନିଷ୍ଠ ସନ୍ତାନସନ୍ତତି ଦାନ କରିବା ମାତା ପିତାଙ୍କ କର୍ତ୍ତବ୍ୟ ଓ ଧର୍ମ । ତେଣୁ ଧୃତରାଷ୍ଟ୍ରମାନଙ୍କର ସଂଖ୍ୟା ହ୍ରାସ ଓ ଗାନ୍ଧାରୀଙ୍କ ପରି ବ୍ୟକ୍ତିଙ୍କ ସଂଖ୍ୟା ବୃଦ୍ଧି ହେଲେ ଯାଇ ଦେଶରେ ପ୍ରଗତି, ନ୍ୟାୟ ଓ ଶାନ୍ତି ପ୍ରତିଷ୍ଠା ହେବ । ଏହା ଦେଶର ସବୁ ପିତାମାତାଙ୍କ ପ୍ରତି ଏକ ଆହ୍ୱାନ ।

*୧୧ ଜାନୁଆରୀ, ୨୦୦୮*



# ଆମେ କାହିଁକି ସବାତଳେ ?

ଭାରତ ଆବିଷ୍କାର ଯାତ୍ରାରେ ବାହାରିଥିବା ଜାତୀୟ କଂଗ୍ରେସର ଯୁବ ସାଧାରଣ ସମ୍ପାଦକ ରାହୁଲ ଗାନ୍ଧି ରାଉରକେଲାରେ ପହଞ୍ଚି କହିଛନ୍ତି 'ଗରିବତମ ରାଜ୍ୟ ବୋଲି ଓଡ଼ିଶାରୁ ଭାରତ ଯାତ୍ରା ଆରମ୍ଭ କରିଛି' । ଏହା ପୂର୍ବରୁ ତାଙ୍କର ସ୍ୱର୍ଗତ ପିତା ରାଜୀବ ଗାନ୍ଧି ଓ ଗୋସେଇଁ ମା ଇନ୍ଦିରା ଗାନ୍ଧି ଓଡ଼ିଶାର ଦାରିଦ୍ର୍ୟ ସ୍ୱଚକ୍ଷୁରେ ଦେଖି ଯାଇଥିଲେ । ମହାତ୍ମା ଗାନ୍ଧୀ ତ ଓଡ଼ିଶା ପଦଯାତ୍ରା ବେଳେ ଏଠାର ଦାରିଦ୍ର୍ୟ ଦେଖି ପିନ୍ଧା ଦୋଷଡ଼ାରୁ ଖଣ୍ଡିଏ ଛାଡି ଦେଇ ସାରା ଜୀବନ ଖଣ୍ଡିଏ ପିନ୍ଧିବାକୁ ନିଷ୍ପତ୍ତି ନେଇଥିଲେ । ଏହା ସତ୍ତ୍ୱେ ଓଡ଼ିଶା ସବୁଠାରୁ ପଛୁଆ ଓ ଦରିଦ୍ରତମ ରାଜ୍ୟ ହୋଇ ରହିଛି । ବଲାଙ୍ଗୀର, କଳାହାଣ୍ଡି, କୋରାପୁଟ ଦେଶର ସବୁଠୁ ଗରିବ ଅଞ୍ଚଳ । ଏବେ ପ୍ରଥମ ଥରପାଇଁ ଏକ ନୂଆ ରାଜନୈତିକ ଦଳ 'ସମୃଦ୍ଧ ଓଡ଼ିଶା' ଜନ୍ମଭୂମି ବିକାଶ ଯାତ୍ରା ଜରିଆରେ ପାଞ୍ଚବର୍ଷରେ ଓଡ଼ିଶାରୁ ଗରିବୀ ହଟାଇ ଦେବ ବୋଲି ରଣହୁଙ୍କାର ଦେଇଛି ଏବଂ ଯଦି ଏହା ନ ହେବ, ତେବେ ପରବର୍ତ୍ତୀ ନିର୍ବାଚନ ଲଢ଼ିବ ନାହିଁ ବୋଲି ଘୋଷଣା କରିଛି । ଗତ ସାତ ବର୍ଷ ଭିତରେ ରାଜ୍ୟରେ ଥିବା ଗରିବଙ୍କ ସଂଖ୍ୟା ଚଉଦ ଲକ୍ଷ ବଢ଼ିଗଲାଣି । ୨୦୦୦ ମସିହାରେ ଏ ସଂଖ୍ୟା ଥିଲା ଏକ କୋଟି ସତୁରୀ ଲକ୍ଷ । ଏବେ ବଢ଼ି ହେଲାଣି ଏକ କୋଟି ଚଉରାଅଶୀ ଲକ୍ଷ । ଦେଶର ଅର୍ଥମନ୍ତ୍ରୀ ଚିଦମ୍ବରମ୍ ଯେଉଁ 'ଇକନମିକ୍ ସର୍ଭେ' ଲୋକସଭାରେ ପେସ୍ କଲେ, ତା' ଅନୁସାରେ କେବଳ କେବିକେ ନୁହେଁ, ସମଗ୍ର ଓଡ଼ିଶା ହେଉଛି ଦେଶର ସବୁଠୁ ଦରିଦ୍ର ରାଜ୍ୟ ।

ଗତ ସାତ ବର୍ଷ ହେଲା 'ଇଣ୍ଡିଆ ଟୁଡେ' ଅଭିଜ୍ଞ ଅନୁଧାନକାରୀ ଗବେଷକ ଦଳକୁ ଦେଶର ବିଭିନ୍ନ ରାଜ୍ୟକୁ ପଠାଇ ରିପୋର୍ଟ ଦେଇ ଆସୁଛନ୍ତି । ପ୍ରଗତିର ବିଭିନ୍ନ ମାନଦଣ୍ଡ ପ୍ରୟୋଗ କରି ଏହି ଗବେଷକମାନେ କେଉଁ ରାଜ୍ୟ କେଉଁଠି ଓ କେଉଁ ଅବସ୍ଥାରେ ଅଛନ୍ତି ତା'ର ଏକ ତାଲିକା ପ୍ରସ୍ତୁତ କରନ୍ତି ଏବଂ ସେହି ସବୁ ରାଜ୍ୟର

ମୁଖ୍ୟମନ୍ତ୍ରୀମାନଙ୍କୁ ଦିଲ୍ଲୀ ଆମନ୍ତ୍ରଣ କରି ତାଙ୍କ ଆଗରେ ପେସ୍ କରନ୍ତି । ୨୦୦୩ 'ଇଣ୍ଡିଆ ଟୁଡେ' ରିପୋର୍ଟ ଅନୁସାରେ ୧୮ଟି ରାଜ୍ୟରୁ ଓଡ଼ିଶାର ସ୍ଥାନ ଥିଲା ସତର । ସବାତଳେ (୧୮ ନମ୍ବର) ଥିଲା ବିହାର । ଗୋଆ ଥିଲା ପ୍ରଗତି ପାହାଚର ସବା ଉପରେ । ଏ ବର୍ଷ ଆମେ ପୁଣି ଆସିଗଲେ ୩୪ ରାଜ୍ୟ ତଳକୁ । ଦେଶରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ସବୁଠୁ ଅଧିକ ଲୋକ ଆମ ରାଜ୍ୟରେ । ରାଜ୍ୟର ଗ୍ରାମାଞ୍ଚଳରେ ଥିବା ସବୁଠୁ ଅଧିକ ଲୋକ ଆମ ରାଜ୍ୟରେ ।

ରାଜ୍ୟର ଗ୍ରାମାଞ୍ଚଳରେ ଥିବା ଲୋକଙ୍କ ଅର୍ଥନୈତିକ ଅବସ୍ଥା ସବୁଠୁ ଦୟନୀୟ । ପ୍ରତି ଶହେ ଗ୍ରାମବାସୀଙ୍କ ମଧ୍ୟରୁ ୫୭ ଜଣଙ୍କର ଦୈନିକ ରୋଜଗାର ହାରାହାରି ବାରଟଙ୍କା । ଆମ ପଡ଼ୋଶୀ ରାଜ୍ୟ ଛତିଶଗଡ଼, ମଧ୍ୟପ୍ରଦେଶ, ବିହାର ଓ ଝାଡ଼ଖଣ୍ଡର ଗ୍ରାମାଞ୍ଚଳ ଲୋକଙ୍କ ଦୈନିକ ରୋଜଗାର ଏହାଠାରୁ ଅଧିକ । ଉଦାହରଣ ସ୍ୱରୂପ ଓଡ଼ିଶାର ୫୭ ତୁଳନାରେ ଝାଡ଼ଖଣ୍ଡରେ ୪୬ ଜଣଙ୍କର ଦୈନିକ ରୋଜଗାର ବାର ଟଙ୍କା, କିନ୍ତୁ ପଞ୍ଜାବର ଶତକଡ଼ା ମାତ୍ର ୪ ଜଣଙ୍କର ଏପରି ଅବସ୍ଥା । ସାରା ଭାରତରେ ପ୍ରତି ଶହେ ଜଣରୁ ମାତ୍ର ବାର ଜଣଙ୍କର ଦୈନିକ ରୋଜଗାର ୧୨ ଟଙ୍କାରୁ କମ୍ ।

ଏ ବିଷୟରେ ଓଡ଼ିଶାର ବୁଦ୍ଧିଜୀବୀ, ପ୍ରଫେସନାଲ୍, ସ୍ୱେଚ୍ଛାସେବୀ ସଂଗଠନମାନେ ଗଭୀର ଆଲୋଚନା କରିବା ଆବଶ୍ୟକ । ବିଚାର ଆଲୋଚନା ନ କଲେ ନୂଆବାଟ ଦିଶେ ନାହିଁ । ପୁଣି ନୂଆବାଟ ଦିଶିଲେ ବି ସେ ବାଟରେ ଚାଲିବାକୁ ଡର ଲାଗେ । ଭୟ, ହତାଶା ଓ ଉଦାସୀନତା ଆମ ଚାରିପଟେ ପାଚେରୀ ହୋଇ ରହିଥାନ୍ତି । ଫଳରେ ଆମର କାମ କରିବାର ଶୈଳୀ ଓ ସ୍ୱଭାବରେ ପରିବର୍ତ୍ତନ ହୁଏ ନାହିଁ । ଓଡ଼ିଆଙ୍କୁ କେତେକ ଲୋକ ଆଳସ୍ୟ ପରାୟଣ, କର୍ମକୁଣ୍ଠ, ମେଣ୍ଢା, କଙ୍କଡ଼ା, ଓଲୁ, ଅଳ୍ପରେ ସନ୍ତୁଷ୍ଟ କରି ଏହି କାରଣରୁ ଆମେ ଗରିବ ବୋଲି କହନ୍ତି । ଏହା କେତେଦୂର ସତ୍ୟ ସେ ସମ୍ପର୍କରେ ଏ ପର୍ଯ୍ୟନ୍ତ ଗବେଷଣା ହୋଇନାହିଁ । ଓଡ଼ିଶା ଭିତରେ ଓ ବାହାରେ ବହୁ ଓଡ଼ିଆ ନିଜ ନିଜ କର୍ମ କୁଶଳତାଦ୍ୱାରା ପ୍ରତିଷ୍ଠିତ ହୋଇଛନ୍ତି । ବୋଧହୁଏ ଆମେ ଏପର୍ଯ୍ୟନ୍ତ ନିଜକୁ ଆବିଷ୍କାର କରିପାରୁ ନାହୁଁ । ଓଡ଼ିଆଙ୍କ ସାମାଜିକ ଦର୍ଶନ ଓ ଦିଗ୍‌ଦର୍ଶନ ଚିତ୍ର ଏବେ ବି ଅସ୍ପଷ୍ଟ ଲାଗେ । ଯୋଜନା କମିଶନ ଓ ବିଭିନ୍ନ ରାଜ୍ୟ ପାଞ୍ଚବର୍ଷ ହେଲା 'ଭିଜନ୍ ୨୦୨୦' ତିଆରି କରି ୨୦୨୦ ମସିହା ସୁଦ୍ଧା ଦେଶ ଓ ରାଜ୍ୟ ପ୍ରଗତିର କେତେ ପାହାଚ ଚଢ଼ି ସାରିଥିବେ ସେଥିପାଇଁ ଯୋଜନା କରିସାରିଲେଣି । ଆମର ନିଦ ଭାଙ୍ଗି ନାହିଁ । ଆମକୁ ଯୋଜନା କମିଶନର ବିଶେଷଜ୍ଞ ଦଳ ଓଡ଼ିଶା ଆସି ବୁଝାଉଛନ୍ତି ବାର୍ଷିକ ଛଅ ହଜାର କୋଟି କାହିଁକି ମାଗିବ, ଏଥିରେ ଦାରିଦ୍ର୍ୟ ହଟିବ ନାହିଁ । ଦଶ

ହଜାର କୋଟି ମାଗ । ପ୍ରତି ଶହେ ଟଙ୍କା ଅନୁଦାନରୁ ୪୨ ଟଙ୍କା ଖର୍ଚ୍ଚ କଲେ ରାଜ୍ୟର ଅଧା ଲୋକଙ୍କୁ ଦାରିଦ୍ର୍ୟ ସୀମାରେଖା ଉପରକୁ ଉଠାଇବା କେମିତି ?

ଆମେ ସମ୍ବଳ ଜୁଟାଇବାରେ ଅକ୍ଷମ, ସମ୍ବଳ ଆସିଲେ ଖର୍ଚ୍ଚ କରିବାକୁ ଅକ୍ଷମ । ଏଥିପାଇଁ ରାଜ୍ୟର ଶାସନତନ୍ତ୍ରରେ ସଂସ୍କାର ଆଣିବାକୁ ହେବ । ନିଶ୍ଚିତ କର୍ମନିଯୁକ୍ତି ଯୋଜନା ଅନୁସାରେ ବର୍ଷକୁ ଶହେ ଦିନ ନିଶ୍ଚିତ ରୋଜଗାର ଜାଗାରେ ପାଞ୍ଚ ଦଶଦିନର ରୋଜଗାର ମିଳୁଛି, ପ୍ରାପ୍ୟ ଛ ମାସ, ବର୍ଷକରେ ମିଳୁଛି, ଏଥିପାଇଁ କିଏ ଦାୟୀ ? କେତେଜଣ ଜେଲ୍ ଗଲେଣି, ସସ୍‌ପେଣ୍ଡ ହେଲେଣି ? ଆମ ରାଜ୍ୟର ଯୋଜନା ତିଆରିରେ ରାଜ୍ୟ ଯୋଜନା ବୋର୍ଡର କୌଣସି ଭୂମିକା ନଥାଏ । ବର୍ଷକେ ଥରେ ମିଟିଂ ହୁଏ, ସବୁ ସଭ୍ୟ 'ଅନାଚାରି' (ଅନାହାରୀ ?) । ଯୋଜନା ଫାଇଲ୍‌ରେ ତିଆରି ହୁଏ, କାହାକୁ ପଚରାଯାଏ ନାହିଁ, କନ୍‌ସଲ୍‌ଟେସନ୍ କରାଯାଏ ନାହିଁ, ସିଭିଲ ସୋସାଇଟିକୁ ଡକାଯାଏ ନାହିଁ, ସ୍ୱେଚ୍ଛାସେବୀ ସଂଗଠନମାନଙ୍କୁ ସମ୍ପୃକ୍ତ କରାଯାଏ ନାହିଁ । କାରଣ ଓଡ଼ିଶା ସେକ୍ରେଟାରିଏଟ୍‌ରେ ସମସ୍ତେ ପଣ୍ଡିତ, ବିଜ୍ଞ, ବିଶାରଦ । ବାହାରେ ଆଉ ସବୁ ଅଜ୍ଞ, ମୂର୍ଖ, ଅନାମଧେୟ । ସେମାନଙ୍କ ବିଚାର, ମତାମତର କୌଣସି ମୂଲ୍ୟ ନାହିଁ । ମୁଖ୍ୟମନ୍ତ୍ରୀଙ୍କ ଅଭିଯୋଗ ପ୍ରକୋଷ୍ଠ ଗତ ଅଢ଼େଇ ବର୍ଷରେ ଖୋଲିଛି ଆଠ ଦିନ ।

ଆଜିକି ଦଶବର୍ଷ ତଳେ ଗୋଆ ଦେଶର ପ୍ରଥମ ପାଞ୍ଚଟି ରାଜ୍ୟ ମଧ୍ୟରେ ଗଣା ହେଉ ନଥିଲା, ଆଜି ଏକ ନମ୍ବର । ଏହା କିପରି ସମ୍ଭବ ହେଲା ? ସବୁ ରାଜ୍ୟକୁ ପଛରେ ପକାଇ ପ୍ରଗତିର ପ୍ରଥମ ସ୍ଥାନ ଅଧିକାର କରି ନେଲା ? ଗୋଆ ଓ ଓଡ଼ିଶା ଉଭୟେ ସମୁଦ୍ର ତଟବର୍ତ୍ତୀ ରାଜ୍ୟ । ସ୍ୱାଧୀନତା ସମୟରେ ଉଭୟ ରାଜ୍ୟର ଆର୍ଥିକ ସ୍ଥିତିରେ ବିଶେଷ ଫରକ ନଥିଲା । ତାହେଲେ ଆଜି କାହିଁକି ସେ ରାଜ୍ୟ ସମସ୍ତଙ୍କ ଉପରେ ଓ ଆମେ ସମସ୍ତଙ୍କ ତଳେ ? ଏ ସମ୍ପର୍କରେ ପ୍ରତ୍ୟେକ ଓଡ଼ିଆ ସକ୍ରିୟ ଭାବରେ ଚିନ୍ତା କରିବାର ସମୟ ଆସିଛି । ଦଶ ବାର ବର୍ଷ ପୂର୍ବେ ଆନ୍ଧ୍ରପ୍ରଦେଶ ଆମଠୁ ଚାଉଳ କିଣୁଥିଲା, ଆଜି ଆମେ ଆନ୍ଧ୍ରଠାରୁ ୨୫ ହଜାର ପ୍ରକାର ଖାଦ୍ୟ ସାମଗ୍ରୀ କିଣୁଛୁ, ବର୍ଷକୁ ୨୫ ହଜାର କୋଟି ଓଡ଼ିଶାରୁ ଆନ୍ଧ୍ରକୁ ଯାଉଛି ଏ ବାବଦରେ । ଚାରିଭାଗରୁ ଭାବେ ଖଣି ଆମର । ଏଠାରୁ ବକ୍ସାଇଟ୍ ଆଲୁମିନା ନଗଲେ ପୃଥିବୀର ଅଧେ ଅସ୍ତ୍ରଶସ୍ତ୍ର, ସାମରିକ ଯାନ କାରଖାନା ବନ୍ଦ ହୋଇଯିବ । 'ସମୃଦ୍ଧ ଓଡ଼ିଶା' ରିପୋର୍ଟ ଅନୁସାରେ ଗତବର୍ଷ ୨୦ ଜଣ ଖଣି ଲିଜ୍‌ଧାରୀଙ୍କ ମଧ୍ୟରୁ ୧୮ ଜଣ ରାଜ୍ୟ ବାହାରର ଲୋକ । ଆମ ସମ୍ପତ୍ତିରୁ ସେମାନେ ଲାଭ କରିଛନ୍ତି ବର୍ଷକେ ୨୪,୫୦୦ କୋଟି ଟଙ୍କା ଓ ଖଣିର ପ୍ରକୃତ ମାଲିକ ଓଡ଼ିଶାକୁ ଦେଇଛନ୍ତି ଶତକଡ଼ା ମାତ୍ର ଚାରି ଭାଗ । କେତେ ଖଣି

ଲୁଟ୍ ହୋଇଛି ତା'ର ହିସାବ ନାହିଁ । ଲାଭର ବେସରକାରୀ ହିସାବ ବହୁ ଅଧିକ । ଏହି ଲାଭରୁ ଭାଗଚାଷୀ ହିସାବରେ ଅନ୍ତତଃ ଅଧାଲାଭ ଟଙ୍କା ଯଦି ଓଡ଼ିଶାକୁ ମିଳିଥାନ୍ତା ତେବେ ଓଡ଼ିଶାର ୪୯ ଲକ୍ଷ ଯୁବକ-ଯୁବତୀ ମାସିକ ଦୁଇ ହଜାର ଟଙ୍କା ଦରମାରେ ନିଯୁକ୍ତି ପାଇଥାନ୍ତେ । ଯେଉଁ ୩୭ ଲକ୍ଷ ଗରିବ ପରିବାର ଅଛନ୍ତି, ପ୍ରତ୍ୟେକ ପରିବାରରୁ ଜଣକୁ ନିଯୁକ୍ତି ମିଳିଥାନ୍ତା ଓ ପାଞ୍ଚବର୍ଷରେ ଓଡ଼ିଶାର ସବୁ ପରିବାର ଦାରିଦ୍ର୍ୟ ସୀମାରେଖା ଡେଇଁ ଯାଇଥାନ୍ତେ । ଆମଦାନୀ ନ ବଢ଼ାଇ ଓଭରଡ୍ରାଫ୍‌ଟଦ୍ୱାରା ଋଣ ପରିଶୋଧରେ ବଜେଟ୍‌ର ଅଧାରୁ ଅଧିକ ପଇସା ଚାଲିଗଲେ ଦାରିଦ୍ର୍ୟ ହଟିବ ନାହିଁ । ହିନ୍ଦୀରେ ଏକ ଉକ୍ତି ଅଛି - 'ଆମଦାନୀ ଆଠନୀ ଖର୍ଚ୍ଚା ରୂପେୟା, ନତିଜା ଠନ୍ ଠନ୍ ଗୋପାଲ୍' ।

ଏହି ଦୁର୍ଭାଗ୍ୟଜନକ ପରିସ୍ଥିତିରୁ ଉଦ୍ଧାରପାଇଁ ଏକ ଯୋଜନାବଦ୍ଧ ପ୍ରଗତିକୈନ୍ଦ୍ରିକ ଅର୍ଥନୈତିକ ସଂଗ୍ରାମ ଆବଶ୍ୟକ । ନୂଆ ନୂଆ ଜ୍ଞାନ ଓ କୌଶଳର ପ୍ରୟୋଗ ଆବଶ୍ୟକ । ପ୍ରତ୍ୟେକ ଜମିକୁ ପାଣି ଓ ହାତକୁ କାମ ଯୋଗାଇ ଦେବାପାଇଁ ଯାହା ଯାହା ଦରକାର ସେସବୁକୁ ଅଗ୍ରାଧିକାର ଦେବାକୁ ପଡ଼ିବ । କୃଷି ଉତ୍ପାଦନ ବୃଦ୍ଧି ହାର ଶତକଡ଼ା ୩.୮ ରୁ ୨.୬ କୁ କମିଗଲାଣି । ବର୍ଷକୁ ଶତକଡ଼ା ଦୁଇଭାଗରୁ ଅଧିକ ଜମିକୁ ଜଳସେଚନ ବ୍ୟବସ୍ଥା କରିହେଉନାହିଁ । ଏଭଳି ସ୍ଥଳେ ଉତ୍ପାଦନ ବଢ଼ିବ କେମିତି ? ରାଜ୍ୟର ୬୫ ହଜାର ଲିଫ୍‌ଟ ଇରିଗେସନ୍ ପ୍ରୋଜେକ୍ଟ, ୧୩୮ଟି ଜଳଭଣ୍ଡାର, ୬୩ ହଜାର ପଞ୍ଚାୟତ ପୋଖରୀ କ୍ରମେ ପୋତି ହୋଇ ଯାଉଛନ୍ତି । ତେଣୁ ଆମର ଉତ୍ପାଦନ, ଅର୍ଜନ, ବଣ୍ଟନ ଓ ସାମାଜିକ ନ୍ୟାୟ ବ୍ୟବସ୍ଥାକୁ ପୁଣିଥରେ ପର୍ଯ୍ୟବେକ୍ଷଣ କରିବାକୁ ହେବ ।

ରାଜ୍ୟର ସାମଗ୍ରିକ ଆୟରୁ କୃଷିଭିତ୍ତିକ ଆୟ ପାଞ୍ଚଭାଗରୁ ଭାଗେ, କିନ୍ତୁ ଲୋକସଂଖ୍ୟାର ୫ ଭାଗରୁ ୪ ଭାଗ କୃଷି ଉପରେ ନିର୍ଭରଶୀଳ ରହିଛନ୍ତି । ଦାରିଦ୍ର୍ୟ ବୃଦ୍ଧିର ଏହା ଏକ ମୁଖ୍ୟ କାରଣ । ଆମେରିକାରେ ମାତ୍ର ଅଢ଼େଇ ଭାଗ ଲୋକ କୃଷି ଉପରେ ନିର୍ଭର କରନ୍ତି । ସିଙ୍ଗାପୁରରେ ଚାଷ ଜମି ନାହିଁ, ତେଣୁ ସେଠାରେ କେହି କୃଷି କରନ୍ତି ନାହିଁ । ଜଣ ପିଛା ବାର୍ଷିକ ଆୟ ବାରଲକ୍ଷ ଟଙ୍କା । ତେଣୁ ଯେଉଁ ରାଜ୍ୟ ବା ଦେଶ ଅନୁନ୍ନତ ଅବସ୍ଥାରୁ ଉଠି ଏବେ ଉନ୍ନତ ରାଜ୍ୟ ବା ଦେଶ ଭାବରେ ଗଣା ହେଉଛନ୍ତି, ସେମାନଙ୍କଠାରୁ ଶିଖିବାକୁ ହେବ । ବ୍ୟକ୍ତିଗତ ଭାବେ ଆମର ପ୍ରକୃତି ଓ ପ୍ରବୃତ୍ତି ସବୁକୁ ସମୀକ୍ଷା କରିବାକୁ ପଡିବ । ମହିଳା ଓ ଯୁବବର୍ଗଙ୍କୁ ପ୍ରଗତିର ଆଗଧାଡ଼ିରେ ଠିଆ ହେବାକୁ ସୁଯୋଗ ସୃଷ୍ଟି କରିବାକୁ ହେବ । ଆମର 'ଧନ, ଜନ ଲୋଡ଼ା ନାହିଁ' କି ଲୋଡ଼ା ସ୍ଥିର କରିବାକୁ ହେବ । 'ଶରଧା ବାଲିରୁ ହାତେ'ରେ

ସତରେ ପେଟ ପୂରିବ କି ନାହିଁ ଭାବିବାକୁ ପଡ଼ିବ । ଆଜି ସମୟ ଆସିଛି, ନିଜକୁ ପଚାରିବାକୁ, ଶାସନ ଓ ସରକାରକୁ ପଚାରିବାକୁ - ଆମେ ବିହାରକୁ ଆଦର୍ଶ କରି ଚାଲିବା ନା ଗୋଆକୁ । ଆଉ କେତେବର୍ଷ, କେତେଯୁଗ ଏମିତି ସବା ତଳେ ପଡ଼ି ଗଡ଼ୁଥିବା ? ସଢ଼ୁଥିବା ?

*୨୦ ମାର୍ଚ୍ଚ, ୨୦୦୮*

■ ■ ■

# ହିନ୍ଦୀ, ବାବର, ମେଲନ୍ ଓ ମୋହବତ୍

ତାସ୍‌କେଣ୍ଟରେ ଭାରତ ମହୋତ୍ସବ ସାରି ଆମ କଳାକାର ଦଳ ସମରକନ୍ଦ, ବୁଖାରା ଓ ବାବରଙ୍କ ଜନ୍ମସ୍ଥାନ ଫରଘନା ଗସ୍ତରେ ବାହାରିଲେ । ବାବର ତାଙ୍କ ସଂଘର୍ଷମୟ ଜୀବନର ସବୁଠାରୁ ଦୁଃଖଦ ସମୟ ତାସ୍‌କେଣ୍ଟରେ କାଟିଥିଲେ । ଏଠାରେ କେବଳ ଦୁଇଜଣ ସୈନିକଙ୍କୁ ଛାଡି ଆଉ ସମସ୍ତେ ବାବରଙ୍କୁ ଛାଡି ଚାଲିଯାଇଥିଲେ । ଆମର ଏହି ଗସ୍ତକୁ ସଫଳ କରିବାକୁ ସେଠାକାର ସରକାର ସବୁପ୍ରକାର ଉଦ୍ୟମ କରିଥିଲେ । ଏକାକୀ, ଅସହାୟ ବାବର ଯେ ଦିନେ ମୋଗଲ ସାମ୍ରାଜ୍ୟ ପ୍ରତିଷ୍ଠା କରି ଇତିହାସ ସୃଷ୍ଟି କରିବେ ଏକଥା ସେତେବେଳେ କେହି କଳ୍ପନା କରିନଥିଲେ । ତେଣୁ ଆମେ ସମସ୍ତେ ତା'ଙ୍କ ଜନ୍ମସ୍ଥାନ ଦେଖିବାକୁ ଉତ୍ସୁକ ଥିଲୁ । ସେତେବେଳକୁ ଭାରତରେ ବାବରୀ ମସ୍‌ଜିଦ୍-ରାମ ଜନ୍ମଭୂମି ଆନ୍ଦୋଳନର ରାଜନୈତିକୀକରଣ ହୋଇନଥାଏ । ଆମ ଯାତ୍ରାପାଇଁ ଏକ ସ୍ୱତନ୍ତ୍ର ରେଳଗାଡି ତିଆରି କରାଯାଇ ତା ନାଁ ରଖାଯାଇଥିଲା 'ମୈତ୍ରୀ' । ପ୍ରତି ଷ୍ଟେସନରେ ଗାଡି ପହଞ୍ଚିଲା ବେଳେ ସେଠାକାର ଲୋକେ ବହୁ ସଂଖ୍ୟାରେ ଆସି ଉଲ୍ଲସିତ ସମ୍ବର୍ଦ୍ଧନା ଜଣାଉଥାନ୍ତି ।

ଉଜ୍‌ବେକିସ୍ତାନ, ଚୀନ୍ ଓ ପାଶ୍ଚାତ୍ୟ ଦେଶଙ୍କ ମଧ୍ୟରେ ଏକ ସେତୁ ସ୍ୱରୂପ । ପୁରୁଣା ରେଶମ ରାସ୍ତା ବା ସିଲ୍‌କ୍ ରୋଡ୍ , ଏହି ଅଞ୍ଚଳ ଦେଇ ଯାଇଛି । ଆଲେକ୍‌ଜାଣ୍ଡର ଏଇ ରାସ୍ତା କଡେ କଡେ ଆଠଟି ସହର ପ୍ରତିଷ୍ଠା କରିଥିଲେ - ଖ୍ରୀଷ୍ଟପୂର୍ବ ୩୩୪ ରୁ ୩୨୩ ମଧ୍ୟରେ । କ୍ରମେ ଏଗୁଡିକ ଶିକ୍ଷା ଓ ବାଣିଜ୍ୟର କେନ୍ଦ୍ର ଭାବରେ ବିକଶିତ ହେଲେ । ମସିହା ୪୮୪ ରୁ ୧୧୫୦ ପର୍ଯ୍ୟନ୍ତ ପ୍ରାୟ ସାତଶହ ବର୍ଷ ପର୍ଯ୍ୟନ୍ତ ଏହି ଅଞ୍ଚଳ ହୁନ୍ ଓ ତୁର୍କୀମାନଙ୍କ ପ୍ରଭାବାଧୀନ ଥିଲା ଏବଂ ଏହି ସମୟରେ ଉଜ୍‌ବେକିମାନେ ଇସ୍‌ଲାମ ଧର୍ମ

ଗ୍ରହଣ କରିଥିଲେ ଓ ଶତାଧିକ କାରୁକାର୍ଯ୍ୟପୂର୍ଣ୍ଣ ମସଜିଦ୍ ଗଢି ଉଠିଥିଲା । ତେରଶହ ଶତାବ୍ଦୀ ଆଦ୍ୟ ଭାଗରେ ଚେଙ୍ଗିଜ୍ ଖାନ୍‌ଙ୍କ ଆକ୍ରମଣରେ ଏ ଅଞ୍ଚଳ ଛାରଖାର ହୋଇଯାଇଥିଲା । କିନ୍ତୁ ପରବର୍ତ୍ତୀ କାଳରେ ତାଙ୍କ ବଂଶଧର ତୈମୁରଲଙ୍ଗ ଯୁଦ୍ଧବେଳେ ବନ୍ଦୀ ହୋଇଥିବା କାରିଗରମାନଙ୍କୁ ଦାସ ଭାବରେ ଲଗାଇ ଧ୍ୱସ୍ତ ବିଧ୍ୱସ୍ତ ସହର ଓ ଧର୍ମସ୍ଥାନଗୁଡ଼ିକର ପୁନରୁଦ୍ଧାର କରିଥିଲେ । ତୈମୁରଲଙ୍ଗ ଇରାକ୍, ଇରାନ୍ ଜୟ କରି ଦିଲ୍ଲୀ ପର୍ଯ୍ୟନ୍ତ ଆସିଯାଇଥିଲେ ଓ ଭାରତ ଇତିହାସର ଏକ ଖଳନାୟକ ହୋଇ ଯାଇଥିଲେ । ଇରାକ୍, ଇରାନ୍‌ରେ ମଧ୍ୟ ତାଙ୍କ ଅତ୍ୟାଚାର କାହାଣୀ ଲୋକେ ଏପର୍ଯ୍ୟନ୍ତ ଭୁଲିନାହାନ୍ତି ।

ସମରକନ୍ଦରେ ପହଞ୍ଚି ଆମେ ଗଲୁ ଫରଘନା ଉପତ୍ୟକାରେ ଥିବା ଆଣ୍ଡିଜାନ ସହର - ବାବରଙ୍କ ପ୍ରକୃତ ଜନ୍ମସ୍ଥାନ । ଏଠାରେ ଥିବା ଅତି କାରୁକାର୍ଯ୍ୟ ପୂର୍ଣ୍ଣ ସୁନ୍ଦର ଜୁମା ମସ୍‌ଜିଦ୍‌କୁ ଦୃଢ଼ କରିବାକୁ ଭାରତରୁ ୯୮ଟି କାଠର ସ୍ତମ୍ଭ ଅଣାଯାଇ ବ୍ୟବହାର କରାଯାଇଥିଲା । ୧୫୦୧ ମସିହାରେ ବାବର ସମରକନ୍ଦ ଛାଡି ପଳାୟନ କରିଥିଲେ । ତାଙ୍କର ପ୍ରକୃତ ନାମ ଥିଲା ଜହିରୁଦ୍ଦିନ୍ ମହମ୍ମଦ (୧୪୮୩-୧୫୩୦) ଓ ଡାକ ନାଁ ଥିଲା ବାବର । ଆଣ୍ଡିଜାନ୍‌ର ଅଧିକାଂଶ ଲୋକ ତୁର୍କୀ । ଚାରିପଟେ ପାହାଡ଼ ଓ ମଝିରେ ଥିବା ଉପତ୍ୟକାରେ ପ୍ରଚୁର ଗହମ ଓ ଫଳ ହୁଏ । ଲେମ୍ବୁ ଆକାରର ବଡ ବଡ ମିଠା ଅଙ୍ଗୁର ଫଳେ । ଲୋକମାନେ ଦେଖିବାକୁ ଭାରି ସୁନ୍ଦର - ଶ୍ୱେତକାୟ, କୃଷ୍ଣକେଶ ଓ କକେସୀୟ ନାସା । ତରଭୁଜ ଖାଇବାକୁ ପସନ୍ଦ କରନ୍ତି ଏମାନେ । ଏଠାକାର 'ମିର୍ ତିମୁରୀ ତରଭୁଜ' ବିଶ୍ୱପ୍ରସିଦ୍ଧ । ବାବରଙ୍କ ରାଜତ୍ୱ ସମୟରେ ଏହି ମେଲନ୍ ବା ତରଭୁଜକୁ ଭାରତ ଅଣାଯାଇଥିଲା । 'ମିର୍ ତିମୁରୀ' ତରଭୁଜ ଖାଇବାକୁ ବାବର ଉତ୍ସୁକତାର ସହ ଅପେକ୍ଷା କରୁଥିଲେ । ସେତେବେଳେ ରାସ୍ତାଘାଟର ବିଶେଷ ସୁବିଧା ନଥିବାରୁ ଘୋଡାସବାର ମାନେ ତରଭୁଜକୁ ଅତି କଷ୍ଟରେ ଦିଲ୍ଲୀ ପର୍ଯ୍ୟନ୍ତ ବୋହି ଆଣୁଥିଲେ । ବାବରଙ୍କ ପରେ 'ମିର୍ ତିମୁରୀ' ଚାଷ ଭାରତରେ ଆରମ୍ଭ ହୋଇ ଏବେ ସାରା ଦେଶ ବ୍ୟାପି ଗଲାଣି । ମାନବ ସମାଜ ଇତିହାସ ଭଳି ଫଳ ଫୁଲଙ୍କ ଇତିହାସ ବେଶ୍ ଚିତ୍ତାକର୍ଷକ ।

ଫରଘନା ଓ ବୁଖାରାରେ ଭାରତୀୟ କଳାକାର ଦଳ ନିଜର କଳା ପ୍ରଦର୍ଶନ କରି ଦର୍ଶକମାନଙ୍କୁ ମୁଗ୍ଧ କରି ଦେଇଥିଲେ । ତା'ପରଦିନ ସମରକନ୍ଦ ସହରରେ ଷ୍ଟାଡିଅମ୍‌ରେ ପ୍ରାୟ ୩୦ ହଜାର ଲୋକ ଏକାଠି ହୋଇଥିଲେ ଏହି ଦଳକୁ ନାଗରିକ ସମ୍ବର୍ଦ୍ଧନା ଦେବାପାଇଁ । ଏଠାକାର ଲୋକେ 'ଭାରତ' ନାଁ ସହ ଅପରିଚିତ - ଭାରତକୁ

ହିନ୍ଦୁସ୍ତାନ ଓ ଇଣ୍ଡିଆ ବୋଲି କହନ୍ତି । ସମ୍ବର୍ଦ୍ଧନାର କାର୍ଯ୍ୟକ୍ରମ ଅନୁସାରେ ପ୍ରଥମେ ସମରକନ୍ଦ ମେୟର ସ୍ୱାଗତ ଭାଷଣ ଦେବେ ଓ ଭାରତୀୟ ଦଳର ନେତା ଭାବେ ମୁଁ ତା'ର ଉତ୍ତର ଦେବି ଓ ତା'ପରେ ସାଂସ୍କୃତିକ କାର୍ଯ୍ୟକ୍ରମ । ଯେହେତୁ ମୁଁ ଉଜ୍‌ବେକୀ ବା ଋଷୀୟ ଭାଷା ଜାଣିନାହିଁ ମୋର ଭାଷଣଟି ଇଂରାଜୀ ଭାଷାରେ ପ୍ରସ୍ତୁତ କରିଥାଏ । ମୋ ସାଥୀରେ ଥିବା ଦ୍ୱିଭାଷୀ (ଇଂରାଜୀରୁ ଋଷୀୟ ଭାଷାକୁ ବ୍ୟାଖ୍ୟା କରୁଥିବା) 'ଇଣ୍ଟରପ୍ରିଟର' ଭାଷଣଟି ଋଷୀୟ ଭାଷାରେ ଅନୁବାଦ କରି ରଖିଥାନ୍ତି ।

କିନ୍ତୁ ଆଶ୍ଚର୍ଯ୍ୟର କଥା ମେୟର ତାଙ୍କ ସ୍ୱାଗତ ଭାଷଣ ହିନ୍ଦୀରେ ଆରମ୍ଭ କରିଦେଲେ । ଏହା ଆମ ସମସ୍ତଙ୍କପାଇଁ ଅପ୍ରତ୍ୟାଶିତ ଥିଲା । ମେୟର ଯଦି ମୋ ଦେଶ ଭାଷାରେ ଆମକୁ ସ୍ୱାଗତ କରୁଛନ୍ତି, ମୁଁ ତାଙ୍କ ଦେଶ ଭାଷାରେ ଉତ୍ତର ଦେବା କଥା । କିନ୍ତୁ ମୋର ଶୁଦ୍ଧ ହିନ୍ଦୀ ଭାଷାରେ କହିବାର ଶକ୍ତି ନଥାଏ । କିନ୍ତୁ ଯଦି ହିନ୍ଦୀରେ କହିନପାରିଚି ତେବେ ଇଂରାଜୀ ଭଳି ଏକ ବିଦେଶୀ ଭାଷାରେ ମେୟରଙ୍କ ହିନ୍ଦୀ ଭାଷଣର ପ୍ରତ୍ୟୁତ୍ତର ଦେବାରେ ଔଚିତ୍ୟ କଥା ଭାବି ମୁଁ ବିବ୍ରତ ହୋଇପଡିଲି । ଏହା ମୋ ଦେଶର ସମ୍ମାନର ବିଷୟ । ଯଦି ଇଂରାଜୀରେ କହେ ଉଜ୍‌ବେକୀ ଓ ରୁଷୀୟମାନେ କ'ଣ ଭାବିବେ ? କିନ୍ତୁ ମୋତେ ତତ୍‌କ୍ଷଣାତ୍ ନିଷ୍ପତ୍ତି ନେବାକୁ ହେବ । ମୋ ପାଖରେ ଠିଆ ହୋଇଥିବା ଉତ୍ତର ପ୍ରଦେଶର ଜଣେ ମହିଳା କଥକ ନର୍ତ୍ତକୀଙ୍କୁ ଇଂରାଜୀ ଭାଷଣର କପିଟି ବଢାଇ ଦେଇ ତା'ର ସାରାଂଶକୁ ହିନ୍ଦୀରେ ଚଞ୍ଚଳ ଲେଖିଦେବାକୁ ବିଶେଷ ଅନୁରୋଧ କଲି । ସେ ଦି ମିନିଟ୍‌ରେ ସାରାଂଶ ହିନ୍ଦୀରେ ଲେଖିଦେଲେ ଓ ମୁଁ ସେଇଟି ପଢି ମୋ ବକ୍ତବ୍ୟ ଶେଷ କଲି । ଏହି ଶିକ୍ଷା ପରେ ଯେତେ ସବୁ ସଭାରେ ମୋତେ କହିବାକୁ ଡକାଗଲା ସବୁଠି ଟୁଟା ଫୁଟା ହିନ୍ଦୀ କହି କାମ ଚଳାଇଲି ।

ତା'ପରଦିନ ବୁଖାରା ସହରରେ ଆଉ ଏକ ସ୍ୱାଗତ ସମ୍ବର୍ଦ୍ଧନା ଉତ୍ସବରେ ମସ୍‌ଜିଦ୍ ମାଳିନୀ ବୁଖାରାର ୨୦ ହଜାର ଲୋକ ଏକତ୍ରିତ ହୋଇଥିଲେ ବିପୁଳ ଉନ୍ମାଦନା ଓ ଉତ୍ସାହର ସହ । ସେଠାରେ ପହଞ୍ଚିବା ପୂର୍ବରୁ ଆମେ ୧୧ ଜଣ ମଦ୍‌ଗାରୀନା ବା ବହୁ ସନ୍ତାନଙ୍କୁ ଜନ୍ମ ଦେଇଥିବାଯୋଗୁଁ ରାଜ୍ୟ ପୁରସ୍କାରପ୍ରାପ୍ତ ମହିଳାଙ୍କୁ ଭେଟିଥିଲୁ । ତା'ପରେ ଅବସରପ୍ରାପ୍ତ ମିଲିଟାରୀ ଅଫିସରଙ୍କ ସହ ଭେଟ ହେଲାବେଳେ ତାଙ୍କ ମଧ୍ୟରୁ ଜଣେ ଗର୍ବର ସହିତ କହିଲେ 'ମୁଁ ଜବାହାରଲାଲ ନେହେରୁଙ୍କ ସହ କରମର୍ଦ୍ଦନ କରିଛି ।' ସେଠାରୁ ଗଲୁ 'କମ୍ୟୁନ୍' ଦେଖିବାକୁ । ଏକାଠି ନିଜ ଶକ୍ତି ଅନୁସାରେ କାମ କରିବା ଓ ଉତ୍ପାଦନକୁ ଆବଶ୍ୟକତା ଅନୁସାରେ ବାଣ୍ଟିନେବା ସାମ୍ୟବାଦୀ ଦର୍ଶନର ଏକ

ମୂଳମନ୍ତ୍ର । କିନ୍ତୁ ଏହି ପରୀକ୍ଷାନିରୀକ୍ଷା ଓ ଆଦର୍ଶ ସଫଳ ନ ହେବାରୁ ସୋଭିଏତ୍ ୟୁନିୟନ୍ ଭୁଶୁଡ଼ି ପଡ଼ିଲା । ତେବେ, କାହିଁକି ଏହି ମହାନ୍ ମାନବୀୟ ଦର୍ଶନ ଅଚଳ ହୋଇଗଲା ସେ ସମ୍ପର୍କରେ ବିଭିନ୍ନ ମତ ରହିଛି ।

ଆମେ ବୁଖାରୀ ଷ୍ଟାଡିଅମ୍‌ରେ ପହଞ୍ଚିଲା ମାତ୍ରେ ସେଠାକାର ମେୟର ପାଛୋଟି ନେଲେ ଓ ରଷୀୟ ଭାଷାରେ ଏକ ଲମ୍ବା ଭାଷଣ ଦେଇ ଉଜ୍‌ବେକିସ୍ତାନ ଓ ହିନ୍ଦୁସ୍ତାନ ମଧ୍ୟରେ ଯୁଗ ଯୁଗ ଧରି ରହିଥିବା 'ଦୋସ୍ତି' ବିଷୟରେ ବିଭିନ୍ନ ଉଦାହରଣ ଦେଇ ଚାଲିଲେ । ଭାରତୀୟ କଳାକାର ଦଳ ପକ୍ଷରୁ ଉତ୍ତରରେ ମୁଁ ଯାହା ସବୁ କହିଲି ସେଥିରୁ ତିନିଟି କଥା ଲୋକଙ୍କର ପସନ୍ଦ ହୋଇଥିଲା ଓ କରତାଳି ମାଧ୍ୟମରେ ସମର୍ଥନ ମିଳିଥିଲା । ମୁଁ କହିଥିଲି ଯେ ମହାକାବ୍ୟ ମହାଭାରତର ସବୁଠାରୁ ସମ୍ମାନିତ ମହିଳା ଓ ଜନନୀ ଗାନ୍ଧାରୀ (କାନ୍ଦାହାରୀ) ଥିଲେ 'ମଧ୍ୟ ଏସିଆ'ର କନ୍ୟା । ବାବର ଥିଲେ ପ୍ରଥମ ଆକ୍ରମଣକାରୀ ଯେ ଲୁଣ୍ଠନ ନ କରି ଭାରତକୁ ନିଜର କର୍ମଭୂମି କରିଥିଲେ । ଉଜ୍‌ବେକିସ୍ତାନରୁ ଭାରତକୁ ଯାହା ଆସିଛି ସେ ସବୁଠୁ ମିଠା ହେଲା ମିରଟିମୁର ମେଲନ୍ ବା ତରଭୁଜ । ଆମ ଦୁଇ ଦେଶରେ ଗୋଟିଏ ପଦ ଭାରି ପପୁଲାର - ତାଁ'ର ନାଁଟି ହେଲା 'ମୁହବତ୍' । ଏହା ଉଜ୍‌ବେକୀ ଭାଷାରୁ ଆସିଛି । ସେହିପରି ଭାରତରେ ଯାହାଙ୍କୁ କୁହାଯାଏ 'ବ୍ରାହ୍ମନ୍', ସେଥିରୁ 'ବ' ଫଳା ଲୁପ୍ତ ହୋଇଯାଇଛି ଉଚ୍ଚାରଣରେ । ଆପଣମାନଙ୍କ ଦେଶରେ ସେମାନଙ୍କ ନାମ "ରହମନ୍" । ତେଣୁ ଆମ ଦୁଇ ଦେଶର ସମ୍ପର୍କ 'ମେଲନ୍' ଓ 'ମୁହବତ୍' ଭଳି ମଧୁର ହେଉ । ହିନ୍ଦୁସ୍ତାନ ଓ ଉଜ୍‌ବେକିସ୍ତାନ ମଧ୍ୟରେ ହଜାର ବର୍ଷ ଧରି ଯେଉଁ ଐତିହାସିକ ସମ୍ପର୍କ ଗଢ଼ି ଉଠିଛି ତାହା ଆହୁରି ବଳବତ୍ତର ହେଉ । ଉପସ୍ଥିତ ଶ୍ରୋତାମାନେ ବିପୁଳ କରତାଳି ଦେଇ ଏହାକୁ ସ୍ୱାଗତ କରିଥିଲେ । ଫେରିଲା ବାଟରେ ଅନୁବାଦକ ଖୁବ୍ ଖୁସି ଜଣାପଡୁଥିଲେ । କହିଲେ ଆମ ଦୁଇ ଦେଶ ମଧ୍ୟରେ ଏପରି ମଧୁର ସମ୍ପର୍କର ଇତିହାସ ମତେ ଜଣା ନଥିଲା ।

*୧୭ ଏପ୍ରିଲ୍, ୨୦୦୮*



# ଏକ ନିଷ୍ଠୁର ବିଦ୍ରୂପ

ପୃଥିବୀରେ ଦେଖା ଦେଇଥିବା ଖାଦ୍ୟ ସଙ୍କଟ ସକାଶେ ଯେତେ ସବୁ କାରଣ ରହିଛି, ତା ଭିତରୁ ଭାରତ ଓ ଚୀନ୍‌ର କ୍ରମବର୍ଦ୍ଧିଷ୍ଣୁ ମଧ୍ୟବିତ୍ତ ସମାଜର ଅଧିକ ଓ ଉତ୍ତମ ଖାଦ୍ୟ ଅଭ୍ୟାସ ଅନ୍ୟତମ ବୋଲି କହି ରାଷ୍ଟ୍ରପତି ଜର୍ଜ ବୁଶ୍ ନିଜ ଦେଶର ଅସନ୍ତୁଷ୍ଟ ନାଗରିକମାନଙ୍କୁ ବୁଝାଉଛନ୍ତି । ଏହା ପୂର୍ବରୁ ସେ ଆମେରିକା ସ୍କୁଲପିଲାଙ୍କୁ କହୁଥିଲେ ଅଙ୍କ ଓ ବିଜ୍ଞାନ ଭଲ କରି ପଢ, ନହେଲେ ଇଣ୍ଡିଆ ଓ ଚୀନ୍ ପିଲାମାନେ ଚାକିରି ଛଡାଇନେବେ । କିନ୍ତୁ ସୁଖର କଥା ଯେ ଓବାମା ଏପରି ଭାବୁନାହାନ୍ତି । ଏବେ ୟୁରୋପିଆନ୍ ୟୁନିଅନ୍‌ର ମୁଖ୍ୟ ଖାଦ୍ୟ କମିସନର କହୁଛନ୍ତି ଜନବହୁଳ ଭାରତୀୟ ଓ ଚାଇନିଜ୍ ବଡ ହାତୀ ଦୁଇଟି ସବୁ ଖାଦ୍ୟ ଖାଇଯିବେ, ଏମାନଙ୍କୁ ସାବଧାନ ! ପ୍ରଥମେ ଚୀନ୍ ଓ ପନ୍ଦର ବର୍ଷ ପରେ ଭାରତର ଅର୍ଥନୈତିକ ଉନ୍ନତି ଦେଖି ଅନେକ ଧନୀ ଦେଶ ଛାନିଆ ହେଲେଣି । ଜଗତୀକରଣ, ଉଦାରୀକରଣ ଓ ବଜାରୀକରଣର ଲାଭ ଉଠାଇ ବିକାଶଶୀଳ ଦେଶମାନେ ଏବେ ବିକଶିତ ଦେଶମାନଙ୍କ ବଜାରରେ ପଶିଲେଣି । ସେ ଦେଶର କଳ, କାରଖାନା, ହୋଟେଲ, ଦୋକାନ କିଣିଲେଣି । ଏକଥା ସହଜରେ ହଜମ ହେଉନାହିଁ, କାରଣ ନିଜ ଦେଶର ଜିନିଷ ବିକିବାପାଇଁ ଗରିବ ଦେଶର ମାର୍କେଟ ମିଳିବା ଏଣିକି କଷ୍ଟକର ହେବ ।

ପଲିଟିକାଲ୍ ଇକୋନମିଷ୍ଟ ଗୁନ୍ନାର ମିର୍ଦାଲଙ୍କ ମତରେ ଗୋଟିଏ ଅଞ୍ଚଳର ସମୃଦ୍ଧିର ପ୍ରତିକୂଳ ପ୍ରଭାବ ଅନ୍ୟ ଅଞ୍ଚଳରେ ପଡିଥାଏ – 'ବ୍ୟାକ୍‌ଲାଶ୍ ଏଫେକ୍ଟ' । କିନ୍ତୁ ମଧ୍ୟବିତ୍ତ ଭାରତୀୟମାନଙ୍କ ଖାଦ୍ୟପେୟ ଶୈଳୀ ବିଶ୍ୱ ବଜାରରେ ଖାଦ୍ୟର ମୂଲ୍ୟବୃଦ୍ଧି ପାଇଁ ସତରେ ଦାୟୀ କି ନୁହେଁ, ଖାଦ୍ୟ ଅଭ୍ୟାସ ପ୍ରକୃତରେ ପରିବର୍ତ୍ତନ ହୋଇଛି କି ନାହିଁ ସେ ସମ୍ପର୍କରେ ଆଲୋଚନା ଆବଶ୍ୟକ । ପୃଥିବୀରେ ଯେଉଁ ଅଶୀକୋଟି ଲୋକ ଏବେ ଭୋକ ଉପାସରେ ରହୁଛନ୍ତି, ସେମାନେ ଦୁଇଓଳା ଖାଇବାକୁ ପାଇଲେ

ବିଶ୍ୱବଜାରରେ ଖାଦ୍ୟ ମୂଲ୍ୟ ବୃଦ୍ଧି ହେବ ନା ଯେଉଁ ଦେଶର ଲୋକ ଅତିଭୋଜନ କରୁଛନ୍ତି ଓ ଖାଦ୍ୟଶସ୍ୟକୁ ପେଷି ତା ତେଲରେ ଗାଡିମଟର ଚଳାଉଛନ୍ତି ସେମାନଙ୍କ ଯୋଗୁଁ ଖାଦ୍ୟ ଦର ବୃଦ୍ଧି ହେଉଛି ? ବିଚାରିବା କଥା କିଏ କେତେ ଖାଦ୍ୟ ଖାଉଛି, କେତେ ତେଲ ପିଉଚି ଓ ତେଲପାଇଁ କେତେ ଖାଦ୍ୟ ପେଷୁଛି ?

ଗୋଟିଏ ଉଦାହରଣରୁ କଥାଟି ପରିଷ୍କାର ହୋଇଯିବ । ଏକଥା ପ୍ରାୟ ସମସ୍ତଙ୍କୁ ଜଣା ଯେ ଏକ କିଲୋ ମାଂସ ଉତ୍ପାଦନପାଇଁ ପାୟ ୨୦ କିଲୋ ଖାଦ୍ୟଶସ୍ୟ ଦରକାର ହୋଇଥାଏ । ଜଣେ ଆମେରିକୀୟ ନାଗରିକ ବର୍ଷକୁ ୧୨୦ କିଲୋ ମାଂସ ଖାଆନ୍ତି । ଅର୍ଥାତ୍ ଜଣ ପିଛା ବର୍ଷକୁ ଏକ କୁଇଣ୍ଟାଲ୍ ଜାଗାରେ ୨୪ କୁଇଣ୍ଟାଲ ଶସ୍ୟ ଖର୍ଚ୍ଚ ହୁଏ । ଅନ୍ୟପକ୍ଷରେ ଭାରତରେ ଜଣ ପିଛା ବାର୍ଷିକ ମାଂସାହାର ୪ କିଲୋ ଯାହାକି ୮୦ କିଲୋ ଖାଦ୍ୟଶସ୍ୟ ସଙ୍ଗେ ସମାନ । ଏହି ହିସାବରେ ଜଣେ ଭାରତୀୟଙ୍କଠାରୁ ଜଣେ ଆମେରିକୀୟ ୩୦ ଗୁଣ ଅଧିକ ଖାଆନ୍ତି । ତେଣୁ କାହାଯୋଗୁଁ ବିଶ୍ୱ ବଜାରରେ ଖାଦ୍ୟଶସ୍ୟର ମୂଲ୍ୟବୃଦ୍ଧି ଘଟୁଛି ? କିଏ ଆଗ ଖାଦ୍ୟ କମାଇବା କଥା ? ଚାଲୁଣି ନା ଛୁଞ୍ଚି ?

ସେହିପରି ମାଛ, ମାଂସକୁ ଛାଡିଦେଲେ, ଜଣେ ଭାରତୀୟ ଚାଉଳ, ଗହମ, ପନିପରିବା, କ୍ଷୀର, ଫଳ, ତେଲ ଇତ୍ୟାଦିରେ ବର୍ଷକୁ ୧୭୮ କିଲୋ ଖାଉଥିଲା ବେଳେ, ଜଣେ ଆମେରିକୀୟ ନାଗରିକ ବର୍ଷକୁ ଏ ବାବଦରେ ୧୦୪୬ କିଲୋ ଖାଆନ୍ତି । ଏହା ଜଣେ ୟୁରୋପୀୟଙ୍କ ଖାଦ୍ୟଠାରୁ ଦୁଇଗୁଣ, ଚୀନ୍ ନାଗରିକଙ୍କ ଖାଦ୍ୟ ଠାରୁ ୩ ଗୁଣ ଓ ଭାରତୀୟଙ୍କଠାରୁ ୫ ଗୁଣରୁ ଅଧିକ । ଏପରିକି ଦୁଗ୍ଧପ୍ରିୟ ଭାରତୀୟ ବର୍ଷକୁ ଜଣପିଛା ୩୬ ଲିଟର ଦୁଗ୍ଧ ବ୍ୟବହାର କରୁଥିଲା ବେଳେ ମାଂସପ୍ରିୟ ଜଣେ ଆମେରିକୀୟ ବର୍ଷକୁ ୭୮ ଲିଟରେ ଦୁଗ୍ଧ ବ୍ୟବହାର କରନ୍ତି । କିନ୍ତୁ ଚୀନ୍‌ରେ ଏହା ମୁଣ୍ଡ ପିଛା ୧୧ ଲିଟର ।

କେବଳ ସଉକପାଇଁ ଗୃହପାଳିତ ଜୀବଜନ୍ତୁଙ୍କ ପିଛା ଆମେରିକା ଓ ୟୁରୋପର ନାଗରିକମାନେ ବର୍ଷକୁ ପେଟଫୁଡ ବାବଦରେ ଖର୍ଚ୍ଚ କରନ୍ତି ୮୦ ହଜାର କୋଟି ଟଙ୍କା, ଏବଂ ତିନିଗୁଣ ଅଧିକ ଲୋକସଂଖ୍ୟା ଥିବା ଭାରତରେ ଏ ବାବଦରେ ବର୍ଷକୁ ଖର୍ଚ୍ଚ ହୁଏ ମାତ୍ର ୧୨୦ କୋଟି ଟଙ୍କା । ୨୦୦୭ ମସିହାରେ ପୋଷା ବିରାଡି, କୁକୁରଙ୍କୁ ଖୁଆଇବାରେ ଆମେରିକାର ଖର୍ଚ୍ଚ ହୋଇଛି ୬୦ ହଜାର କୋଟିରୁ ଅଧିକ ଟଙ୍କା । ବିକଶିତ ଦେଶ ମାନଙ୍କରେ ବସବାସ କରୁଥିବା ପୃଥିବୀର ୨୦ ଭାଗ ଲୋକ, ପ୍ରାୟ ୫୦ ଭାଗ ମାଛ, ମାଂସ ଖାଇଯାଆନ୍ତି, ୮୪ ଭାଗ କାଗଜ ଖର୍ଚ୍ଚ କରନ୍ତି, ୮୦

ଭାଗ ଗାଡିମଟରେ ବ୍ୟବହାର କରନ୍ତି, ୫୮ ଭାଗ ଜାଳେଣି ଖର୍ଚ୍ଚ କରନ୍ତି । ତେଣୁ କାହା ଯୋଗୁଁ ବୃଦ୍ଧି ଘଟୁଛି ?

କେବଳ ସେତିକି ନୁହେଁ । ପୃଥିବୀର ଉତ୍ତାପ ବୃଦ୍ଧି ଓ ବାୟୁମଣ୍ଡଳ ପ୍ରଦୂଷଣରେ ତଥାକଥିତ ବିକଶିତ ଦେଶମାନେ ବିଶେଷ ଭାବରେ ଦାୟୀ । ସଦ୍ୟ ହିସାବରୁ ଜଣାଯାଏ ବାୟୁମଣ୍ଡଳକୁ ପ୍ରତିବର୍ଷ ଯେତିକି ଅଙ୍ଗାରକାମ୍ଳ ଛଡ଼ା ଯାଉଛି, ତାହା ମୁଣ୍ଡପିଛା ଚାରି ଟନ୍ ପଡୁଛି। ଗ୍ଲୋବାଲ୍ ୱାର୍ମିଂର ଏହା ମୁଖ୍ୟତମ କାରଣ । ଏବେ ଏହି ପରିମାଣକୁ ୨୦୧୦ ସୁଦ୍ଧା ମୁଣ୍ଡ ପିଛା ୨ ଟନ୍ ଓ ୨୦୧୫ ସୁଦ୍ଧା ମୁଣ୍ଡ ପିଛା ଦେଢ ଟନ୍ କମାଇବାକୁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଏହା ନ ହୋଇ ପାରିଲେ ୨୦୨୦ ମସିହାରୁ ଅବସ୍ଥା ଅତ୍ୟନ୍ତ ଗୁରୁତର ହୋଇ ପଡିବ । ଦଶବର୍ଷ ତଳର ହିସାବ ଅନୁସାରେ ଆମେରିକାରେ ମୁଣ୍ଡ ପିଛା କାର୍ବନ୍ ପ୍ରଦୂଷଣ ୨୧ ଟନ୍, କାନାଡାରେ ୧୫ ଟନ୍, ଜର୍ମାନୀରେ ୧୦ ଟନ୍, ଜାପାନରେ ୯ ଟନ୍, ଦକ୍ଷିଣ ଆଫ୍ରିକାରେ ୭.୪ ଟନ୍, ଚୀନ୍‌ରେ ୨.୭ ଟନ୍, ବ୍ରାଜିଲ୍‌ରେ ୧.୬ ଟନ୍ ଓ ଭାରତରେ ଜଣ ପିଛା ୧ ଟନ୍‌ରୁ କମ୍ । ସବୁଠାରୁ କମ୍ ପ୍ରଦୂଷଣ କରୁଥିବା ଭାରତ ଓ ଚୀନ୍‌କୁ ସବୁଠାରୁ ବେଶୀ ପ୍ରଦୂଷଣ କରୁଥିବା ଦେଶମାନେ ଉପଦେଶ ଦେବାକୁ ଆରମ୍ଭ କଲେଣି । ପରୋପଦେଶେ ପାଣ୍ଡିତ୍ୟମ୍ ।

ଏସବୁ କଥା ଲେଖିବାର ଅର୍ଥ ନୁହେଁ ଆମେ ନିରାପଦ ବଳୟରେ ଅଛେ । ଆମ ଦେଶରେ ପ୍ରଦୂଷଣ କିଛି କମ୍ ନୁହେଁ । ବିଶ୍ୱର ସବୁଠାରୁ ପ୍ରଦୂଷିତ ସ୍ଥାନ ସୁକିନ୍ଦା ଆମ ଓଡ଼ିଶାରେ । ଛ'ଶହ ଚାଳିଶ ହଜାର ବର୍ଷ ତଳେ ଆର୍ଣ୍ଟର୍କଟିକାର ବରଫ ଭିତରେ ବାନ୍ଧି ହୋଇଥିବା ଦଶ ଲକ୍ଷ ବାୟୁକଣା ବା ଏଆର ମଲେକ୍ୟୁଲ୍‌ରେ କାର୍ବନ୍ ମଲେକ୍ୟୁଲ ଥିଲା ମାତ୍ର ୨୩ଟି । ଏହି ପ୍ରାକୃତିକ ଭାରସାମ୍ୟ ଫେରାଇ ଆଣିବାକୁ ହେଲେ ଭାରତ ଚୀନ୍ ସମେତ ପ୍ରତ୍ୟେକ ଦେଶର ପ୍ରତ୍ୟେକ ନାଗରିକ, କିଛି ସ୍ୱାର୍ଥ ତ୍ୟାଗ ଓ ଦୈନନ୍ଦିନ ବ୍ୟବହାରରେ ପରିବର୍ତ୍ତନ କରିବା ଆବଶ୍ୟକ । ବ୍ୟକ୍ତି ପିଛା ବାର୍ଷିକ ଏକ ଟନ୍ ଅଙ୍ଗାରକାମ୍ଳ ବାୟୁମଣ୍ଡଳକୁ ଛାଡିବା ମଧ୍ୟ ଅତ୍ୟନ୍ତ କ୍ଷତିକାରକ । ଭାରତରେ ଯେଉଁ ୩୫୦ ମିଲିୟନ୍ ମଧ୍ୟବିତ୍ତ ସମାଜକୁ ଜର୍ଜ ବୁଶ୍ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି ସେମାନଙ୍କର ମଧ୍ୟ ଏ ସମ୍ପର୍କରେ ଦାୟିତ୍ୱ ସବୁଠୁ ବେଶୀ । ସେମାନେ ନିଜର ଲାଇଫ୍ ଷ୍ଟାଇଲ୍ ଓ ଅଭ୍ୟାସ ନ ବଦଳାଇଲେ ଭାରତରେ ଖାଦ୍ୟାଭାବ ଲାଗି ରହିବ । ପୃଥିବୀରେ ଭୋକିଲା ଲୋକଙ୍କ ସଂଖ୍ୟା ବଢୁଛି । ଭାରତରେ କ୍ରମାଗତ ଭାବରେ କୃଷି ଉତ୍ପାଦନ ହ୍ରାସ ପାଇବାରେ ଲାଗିଛି । ବିଭିନ୍ନ ରାଜ୍ୟର କୃଷକମାନେ ଫସଲ ଉଜୁଡି

ଯିବା ଓ ଋଣ ଶୁଝି ନ ପାରିବା କାରଣରୁ ଆତ୍ମହତ୍ୟା କରୁଛନ୍ତି । ଶତକଡା ୪୨ ଭାଗ ଲୋକ ପୁଷ୍ଟିକର ଖାଦ୍ୟ ପାଉନାହାନ୍ତି । ଓଡ଼ିଶାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଅବସ୍ଥା ଏହାଠାରୁ ଖରାପ । ଏହି ପରିପ୍ରେକ୍ଷୀରେ ବୁଶ୍‌ଙ୍କ ମନ୍ତବ୍ୟ ଏକ 'ନିଷ୍ଠୁର ବିଦ୍ରୂପ' ଭଳି ମନେ ହୁଏ । ଯିଏ ଅଧିକ ଖାଉଛି, ସିଏ ଆହୁରି ଖାଉ, ଅଖିଆ, ଅଳଖିଆ ଗାଧୋଇ ଯାଉ ।

*୧୫ ମେ, ୨୦୦୮*

■ ■ ■

# ଅନ୍ୟ ଦୃଷ୍ଟିରେ ଆମେ

ଆମ ଦେଶରେ ମାସାଧିକ କାଳ ଚାଲିଥିବା ମହାନିର୍ବାଚନ ସରିବା ପରେ କେନ୍ଦ୍ର ଓ ରାଜ୍ୟମାନଙ୍କରେ ନୂଆ ସରକାର (ସର୍ବକାର ?) ଗଢା ହେବାର ଇତି ମଧ୍ୟରେ ତିନି ମାସ ପୂରିବାକୁ ବସିଛି । ପଞ୍ଚଦଶ ଲୋକସଭାର ମାନ୍ୟବର ସଭ୍ୟମାନେ କେବେଠୁ ଶପଥ ନେଇ ସାରିଲେଣି ।  ନିର୍ବାଚନରେ ଟଙ୍କାର ସୁଅ ଛୁଟିବା ଓ ଅତ୍ୟନ୍ତ ଲଜ୍ଜାହୀନ ଭାବରେ ଭୋଟ୍ କିଣାଯିବା ପ୍ରସଙ୍ଗ ଉପରେ ଦିସ୍ତା ଦିସ୍ତା ଲେଖା ସରିଗଲାଣି । ଏ ନିର୍ବାଚନରେ ଇଲେକ୍ଟ୍ରୋନିକ୍ ଭୋଟିଂ ମେସିନ୍ ବା ଇଭିଏମ୍ ସନ୍ଦେହ ଘେରକୁ ଆସିଲା । ଅନେକ ଜନପ୍ରିୟ ଓ ଉତ୍ତମ ଛବି ଥିବା ପ୍ରାର୍ଥୀ ବହୁ ଭୋଟ୍‌ରେ ହାରି ଯାଇଥିବାରୁ ଏ ସନ୍ଦେହ ଜାତ ହେଲା । ଏବେ ଏକ ସ୍ୱେଚ୍ଛାସେବୀ ସଂସ୍ଥା ରାଜଧାନୀ ଭୁବନେଶ୍ୱରରେ ଗଣମାଧ୍ୟମ ଆଗରେ ପ୍ରମାଣ କରି ଦେଖାଇଦେଲେ ଯେ ଭୋଟିଂ ମେସିନ୍ ନିର୍ଭରଯୋଗ୍ୟ ନୁହେଁ ।

ଆମ ଗଣତନ୍ତ୍ରର ଗତିବିଧି ଦେଖି କିଛି ସମୀକ୍ଷକ ଭବିଷ୍ୟବାଣୀ କଲେଣି ଯେ ଆସନ୍ତା ପଚିଶ ବର୍ଷ ମଧ୍ୟରେ ୫୦୦ଟି ରାଜନୈତିକ ପରିବାର ଦେଶର ଶାସନ ବ୍ୟବସ୍ଥାକୁ ନିୟନ୍ତ୍ରଣ କରିବେ । ପୁଣି ବିଡମ୍ବନା ହେଉଛି, ଭାରତର ପ୍ରଚଳିତ ଗଣତାନ୍ତ୍ରିକ ବ୍ୟବସ୍ଥାରେ କୌଣସି ଦଳ ପଚାଶ ପ୍ରତିଶତରୁ ଅଧିକ ଭୋଟ ନ ପାଇ ମଧ୍ୟ ସରକାର ଗଢି ପାରୁଥିବାରୁ ଏହା ସଂଖ୍ୟାଗରିଷ୍ଠ ନାଗରିକଙ୍କ ସରକାର ବୋଲି କୁହାଯାଇ ପାରିବ ନାହିଁ । ପୂର୍ବଭଳି, ଏଥର ମଧ ଅପରାଧ ଇତିହାସ ଥିବା ବହୁ ବ୍ୟକ୍ତି ବିଧାନସଭା ଓ ଲୋକସଭାକୁ ନିର୍ବାଚିତ ହୋଇ ଆସିଛନ୍ତି । ସେମାନେ ଭବିଷ୍ୟତରେ କ'ଣ କାଣ୍ଡ କରିବେ ଦେଖିବାକୁ ବାକି ରହିଲା ।

ଏସବୁ ଦୋଷ, ତ୍ରୁଟି, ଦୁର୍ବଳତା ସତ୍ତ୍ୱେ ଭାରତକୁ ପୃଥିବୀର ବୃହତ୍ତମ ଗଣତନ୍ତ୍ର ବୋଲି କୁହାଯାଉଛି । ନିର୍ବାଚନ ପୂର୍ବରୁ ବଡ ବଡ ସମ୍ବାଦପତ୍ରମାନେ ଏ ବିଷୟରେ ସମୀକ୍ଷାମାନ ଛାପିଥିଲେ । ସେ ମଧ୍ୟରେ ଥିଲେ ବିଶ୍ୱପ୍ରସିଦ୍ଧ 'ନ୍ୟୁୟର୍କ ଟାଇମ୍‌ସ' । ନିର୍ବାଚନର ଅବ୍ୟବହିତ ପୂର୍ବରୁ 'ନ୍ୟୁୟର୍କ ଟାଇମ୍‌ସ'ର ଜନପ୍ରିୟ ସ୍ତମ୍ଭକାର ଭି. ମିଟେଲ୍

ଭାରତର 'ପାର୍ଲାମେଣ୍ଟାରୀ ଡେମୋକ୍ରାସି'କୁ ଏକ ନୂତନ ଦୃଷ୍ଟିରେ ପେସ୍ କରିଥିଲେ ବିଶ୍ୱ ସମାଜ ଆଗରେ । ପାଶ୍ଚାତ୍ୟ ଗଣମାଧ୍ୟମଗୁଡ଼ିକ ସଦାବେଳେ ଭାରତର ନକାରାତ୍ମକ ଚିତ୍ରଣ କରୁଥିବା ବେଳେ ମିଚେଲ୍‌ଙ୍କ ରିପୋର୍ଟରେ ଥିଲା ଏକ ଭିନ୍ନ ସ୍ୱାଦ । କାରଣ ୧୯୫୨ ମସିହାରେ ଯେତେବେଳେ ପ୍ରଥମଥରପାଇଁ ସ୍ୱାଧୀନ ଭାରତରେ ସାଧାରଣ ନିର୍ବାଚନ ହେଲା ଅନେକ ବିଦେଶୀ ସମୀକ୍ଷକ ଏହାକୁ ବିଶ୍ୱର ସବୁଠୁ ବଡ଼ ଜୁଆଖେଳ (ଗାମ୍ବଲ) ବୋଲି କହୁଥିଲେ । ୭୦ ଭାଗ ନିରକ୍ଷର ଭୋଟରଙ୍କ ହାତରେ ଦେଶର ଭବିଷ୍ୟତ ଓ ଭାଗ୍ୟ ନିର୍ଦ୍ଧାରଣ ବା ନିଷ୍ପତ୍ତି ଛାଡ଼ିଦେବା ସମ୍ପର୍କରେ ଦେଶ ବାହାରେ ଭିତରେ ପ୍ରଶ୍ନ ଉଠିଥିଲା ।

୧୯୬୩ ମସିହାର ସାଧାରଣ ନିର୍ବାଚନକୁ ପାଶ୍ଚାତ୍ୟ ଗଣମାଧ୍ୟମ ଭାରତର ଶେଷ ନିର୍ବାଚନ ବୋଲି କହୁଥିଲେ ଓ ଏହା ପରେ ଭାରତରେ ଏକଛତ୍ର ଶାସନ ଚାଲିବ ବୋଲି ଭାବୁଥିଲେ । କିନ୍ତୁ ମିଚେଲ୍‌ଙ୍କ ଦୃଷ୍ଟିରେ ୨୦୦୯ ମସିହା ନିର୍ବାଚନ ଥିଲା ପୃଥିବୀର ସବୁଠାରୁ ଚିତ୍ତାକର୍ଷକ ପ୍ରଦର୍ଶନୀ । ଏଥିରେ ଭିନ୍ନ ଭିନ୍ନ ଆଦର୍ଶ ଓ ଆଦର୍ଶ ବିହୀନ ୩୦୦ ରୁ ଅଧିକ ରାଜନୈତିକ ଦଳ ଇସ୍ତାହାର, ବାଜା, ବାଣ, ପତାକା, ପୋଷ୍ଟର, ସ୍ଲୋଗାନ୍ ନେଇ ଲୋକଙ୍କ ପାଖକୁ ଆସିଥିଲେ । ମନେ ହେଉଥିଲା ବିବିଧତା, ବିଭିନ୍ନତା ପରିପୂର୍ଣ୍ଣ ଭାରତୀୟ ଗଣତାନ୍ତ୍ରିକ ଭାବଧାରାର ଏହା ଏକ ମହାସଙ୍ଗୀତ । ଏବଂ ଏହି ମହା ନାଟକରେ ଯୋଗ ଦେବାକୁ ଅଛନ୍ତି ୭୦ କୋଟି ଭୋଟର ମତଦାତା । ପୃଥିବୀର କୌଣସି ଦେଶରେ ଏତେ ଭୋଟର ନାହାନ୍ତି । ଏମାନଙ୍କ ମଧ୍ୟରୁ ଏକ ତୃତୀୟାଂଶ ନିରକ୍ଷର । ଅନେକ ଦେଶରେ ଲୋକଙ୍କର ଭୋଟ ଅଧିକାର ନାହିଁ । କିନ୍ତୁ ଏହି ବିଶାଳ ଭାରତୀୟ ମତଦାତାମାନେ ପୃଥିବୀର ପ୍ରାଚୀନତମ ଜୀବନ୍ତ ସଭ୍ୟତାକୁ ଏକ ନବଦିଗନ୍ତ ଓ ଦିଗ୍‌ଦର୍ଶନ ଦେଲେ ମେ ମାସ ୨୦୦୯ରେ ।

ସବୁଠାରୁ ପ୍ରଶଂସାର କଥା, ଏ ଦେଶ ଚାରିପଟେ ଘେରି ରହିଥିବା ପଡ଼ୋଶୀ ଦେଶ ପାକିସ୍ତାନ, ବାଂଲାଦେଶ, ଶ୍ରୀଲଙ୍କା, ନେପାଳ, ବର୍ମା ଓ ଚୀନ୍ ଆତଙ୍କବାଦ ବା ଏକଛତ୍ରବାଦଦ୍ୱାରା ପ୍ରଭାବିତ ଥିବା ସତ୍ତ୍ୱେ ଭାରତୀୟମାନେ ଗଣତନ୍ତ୍ରକୁ ବଞ୍ଚାଇ ରଖିଛନ୍ତି । ଏବଂ ଏକାଧିକ ପଡ଼ୋଶୀ ଦେଶରେ ସଂଖ୍ୟାଗରିଷ୍ଠଙ୍କ ଧର୍ମକୁ ରାଷ୍ଟ୍ରଧର୍ମର ସ୍ୱୀକୃତି ଥିବା ବେଳେ ଭାରତ ଧର୍ମ-ନିରପେକ୍ଷ ରାଷ୍ଟ୍ର ହୋଇ ରହିଛି ।

ଏହାଠାରୁ ଆହୁରି ଆଶ୍ଚର୍ଯ୍ୟର କଥା ଯେ ୨୦ଟି ଭାଷା ଓ ଦୁଇ ହଜାର ଉପଭାଷା ଏବଂ ବିଭିନ୍ନ ଧର୍ମ, ଜାତି, ସମ୍ପ୍ରଦାୟରେ ବିଭକ୍ତ ଏବଂ ଦୀର୍ଘ ଦିନ ଧରି ଆତଙ୍କବାଦ ବିରୋଧରେ ଲଢୁଥିବା ଏ ଦେଶ ଏବେ ବି ଏକ ହୋଇ ରହିଛି ଏବଂ ପ୍ରଗତି ପଥରେ

ଆଗେଇ ଚାଲିଛି । ପୃଥିବୀର ୭ଟି ବଡ ବଡ ଧର୍ମ ମଧ୍ୟରୁ ଭାରତରେ ଜନ୍ମ ନେଇଛନ୍ତି ୪ଟି ଧର୍ମ - ହିନ୍ଦୁ, ଜୈନ, ବୌଦ୍ଧ ଓ ଶିଖ୍ । ଏବଂ ଭାରତ ହେଉଛି ପୃଥିବୀର ଦ୍ୱିତୀୟ ବୃହତ୍ତମ ମୁସଲିମ୍ ଦେଶ ମଧ୍ୟ, କାରଣ ଇଣ୍ଡୋନେସିଆ ପରେ ଭାରତରେ ହିଁ ସବୁଠାରୁ ବେଶୀ ମୁସଲମାନ ବାସ କରନ୍ତି । ଏଠି ଖ୍ରୀଷ୍ଟିୟାନ୍‌ମାନେ ବି ଗତ ଦୁଇହଜାର ବର୍ଷ ହେଲା ବାସ କରି ଆସୁଛନ୍ତି ।

ଏହି ଧର୍ମ ଆଗ ଆସିଛି ଭାରତକୁ ଓ ପରେ ୟୁରୋପ, ଆଫ୍ରିକା ଓ ଏସିଆର ଅନ୍ୟ ଦେଶକୁ ଯାଇଛି । ସେହିପରି ରୋମାନ୍‌ମାନେ ତାଙ୍କ ପ୍ରାର୍ଥନା ମନ୍ଦିର ଭାଙ୍ଗି ଦେଲା ପରେ ଇହୁଦୀମାନେ ପ୍ରାୟ ଅଢେଇ ହଜାର ବର୍ଷ ହେଲା ଭାରତକୁ ପଳାଇ ଆସି ବସବାସ କରୁଛନ୍ତି । ଠିକ୍ ସେମିତି, ଭୟଭୀତ ପାର୍ସିମାନେ ବି ଇରାନ୍ ଛାଡି ଭାରତକୁ ପଳାଇ ଆସିଲେଣି ପ୍ରାୟ ହଜାରେ ବର୍ଷ ହେଲା । ଏବେ ପ୍ରାୟ ପଚାଶ ବର୍ଷ ହେଲା ତିବ୍ବତୀୟ ବୌଦ୍ଧ ଧର୍ମଗୁରୁ ନିଜ ଦେଶ ଛାଡି ଭାରତରେ ଆଶ୍ରୟ ନେଇଛନ୍ତି ନିଜର ଲକ୍ଷାଧିକ ଅନୁଗାମୀଙ୍କ ସହ । ଏହାଛଡା ଉଜ୍‌ବେକୀ, ଆଫଗାନୀ, ଆର୍ମେନୀୟ, ସିରୀୟ, ଲେବାନନ୍ ଅଧିବାସୀ ଆରବ ତଥା ମଧ୍ୟ ଓ କେନ୍ଦ୍ର ଏସିଆର ଅନେକ ଲୋକ ବିଭିନ୍ନ ସମୟରେ ନିଜ ଦେଶ ଛାଡି ଭାରତରେ ଆସି ରହୁଛନ୍ତି । ଏମାନେ ସମସ୍ତେ ମିଳିମିଶି ପୁରାତନ ଭାରତକୁ ନୂଆ ରୂପ, ରଙ୍ଗ ଦେଉଛନ୍ତି ।

ନ୍ୟୁୟର୍କ ଟାଇମ୍‌ସ ଆହୁରି ବି କହିଛି ଯେ ବିଗତ ଦୁଇ ହଜାର ବର୍ଷ ମଧ୍ୟରୁ ଦେଢ ହଜାର ବର୍ଷ କାଳ ଭାରତ ପୃଥିବୀର ସବୁଠାରୁ ବଡ ଅର୍ଥନୀତି ଓ ସମୃଦ୍ଧିଶାଳୀ ଦେଶ ଥିଲା । ଏବଂ ଏବେ ବି ଏ ଦେଶର ସ୍ୱଚ୍ଛଳ ମଧ୍ୟବିତ୍ତ ବର୍ଗଙ୍କ ସଂଖ୍ୟା ଆମେରିକାର ସମଗ୍ର ଜନସଂଖ୍ୟାଠାରୁ ଅଧିକ । ଇଏ ହେଉଛି ସେଇ ଦେଶ ଯେଉଁଠି ପ୍ରତିବର୍ଷ ଚାରି କୋଟିରୁ ଅଧିକ ଲୋକ ଦାରିଦ୍ର୍ୟ ସୀମାରେଖା ଡେଇଁ ଉପରକୁ ଉଠୁଛନ୍ତି । ଷାଠିଏ ବର୍ଷରେ ପନ୍ଦର ଥର ସୁରୁଖୁରୁରେ ନିର୍ବାଚନ ସମ୍ପାଦନ କରିଥିବା ଏ ଦେଶର କଳା, ଭାସ୍କର୍ଯ୍ୟ, ସଂସ୍କୃତି, ସଙ୍ଗୀତ, ନୃତ୍ୟ, ନାଟକ, ସିନେମା, ସାରା ପୃଥିବୀକୁ ପ୍ରଭାବିତ କଲାଣି । ଭାରତୀୟ ଭାଷାର ସହସ୍ରାଧିକ ଶବ୍ଦ ଏବେ ଇଂରାଜୀ ଭାଷାର ଅଙ୍ଗ ଏବଂ ଏବେ ଯେଉଁ ଅର୍ଦ୍ଧ ବାକ୍ୟଟି ବିଦେଶୀ ଶବ୍ଦ କୋଷରେ ଯୋଡି ହୋଇଗଲା ସେଇଟି ସ୍ଲମ୍‌ଡଗ୍ ମିଲିଏନିଅର୍ ଫିଲ୍ମର 'ଜୟ ହୋ' । ଏଇ ଦେଶର ସଭ୍ୟତା ସଂସ୍କୃତିରେ ସଜୀବତା, ଉତ୍‌ଫୁଲ୍ଲତା ଓ ସଦା ଆଶାବାଦୀ ସ୍ପନ୍ଦନ ଭରି ହୋଇ ରହିଚି । ତଳେ ପଡିଥିବା ଏହାର ଅର୍ଥନୀତି ଏବେ ପୁଣି ଉଠି ଠିଆ ହେଲାଣି ବିଶ୍ୱର ତୃତୀୟ ବୃହତ୍ତମ ଶକ୍ତି ଭାବରେ । ଏବଂ ଏବେ ବିଭିନ୍ନ ଶକ୍ତିଶାଳୀ ଦେଶଙ୍କୁ ଭାରତର

ବଜାରରେ ପ୍ରବେଶ କରିବାପାଇଁ ତୀବ୍ର ପ୍ରତିଯୋଗିତା କରିବାକୁ ପଡୁଛି । ବିଶ୍ୱ ଦରବାରରେ ଏକ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଅଧିକାର କଲାଣି ଏଇ ଦେଶ ।

ଭାରତୀୟ ଭୋଟରମାନଙ୍କ ପରିପକ୍ୱତା, ବିଚାରଶକ୍ତି, ବିଜ୍ଞତା, ଧର୍ମନିରପେକ୍ଷତା ଓ ଉଦାରତାକୁ ପ୍ରଶଂସା କରିଛନ୍ତି ନ୍ୟୁୟର୍କ ଟାଇମ୍ସ ପତ୍ରିକା । ଏହାର ସମର୍ଥନରେ କେତେକ ସଦ୍ୟ ଉଦାହରଣ ଦେଇଛନ୍ତି । ଶତକଡା ପଞ୍ଚାଅଶୀ ଭାଗ ହିନ୍ଦୁ ବସବାସ କରୁଥିବା ଏ ଦେଶ ଥରେ ନୁହେଁ, ତିନି ତିନି ଥର ମୁସଲମାନଧର୍ମୀ ବ୍ୟକ୍ତିଙ୍କୁ ଦେଶର ରାଷ୍ଟ୍ରପତି ଭାବରେ ନିର୍ବାଚିତ କରିଛି । ଏବଂ ରକେଟ୍ ବିଜ୍ଞାନୀ ତୃତୀୟ ମୁସଲିମ୍ ରାଷ୍ଟ୍ରପତିଙ୍କୁ ଭାରତୀୟ ଯୁବ ବର୍ଗ ରାଷ୍ଟ୍ରୀୟ ଆଦର୍ଶ ପୁରୁଷ ବା ରୋଲ୍ ମଡେଲ୍ ଭାବେ ଶ୍ରଦ୍ଧା ଓ ସମ୍ମାନ କରନ୍ତି । ସେହିପରି ବିଦେଶରେ ଜନ୍ମିତ ଜଣେ ଶ୍ୱେତାଙ୍ଗିନୀ କାଥଲିକ ମହିଳା ଏବେ ଦେଶର ସବୁଠୁ ବଡ ରାଜନୈତିକ ଦଳର ସଭାନେତ୍ରୀ ଏବଂ ଭାରତୀୟ ଭୋଟରମାନେ ତାଙ୍କୁ ବିପୁଳ ସଂଖ୍ୟାରେ ବାରମ୍ବାର ଜିତାଉଛନ୍ତି । ବାହାର ଦେଶମାନଙ୍କ ପାଇଁ ଆଉ ଏକ ଆଶ୍ଚର୍ଯ୍ୟର କଥା ଯେ ଏହି ଦେଶର ସଂଖ୍ୟା ଲଘୁ ଶିଖ୍ ସମ୍ପ୍ରଦାୟର ଜଣେ ବ୍ୟକ୍ତି ଏବେ ଦ୍ୱିତୀୟ ଥର ପାଇଁ ପ୍ରଧାନମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରିଛନ୍ତି । ଭାରତରେ ଏହି ସଂଖ୍ୟାଲଘୁ ସମ୍ପ୍ରଦାୟର ସଂଖ୍ୟା ସମଗ୍ର ଜନସଂଖ୍ୟାର ଦୁଇ ପ୍ରତିଶତରୁ ସାମାନ୍ୟ ଅଧିକ । ଏବଂ ତାଙ୍କୁ ଯେ ଶପଥ ପାଠ କରାଇଲେ ସେ ହେଉଛନ୍ତି ଦେଶର ପ୍ରଥମ ମହିଳା ରାଷ୍ଟ୍ରପତି ।

ଅବଶେଷରେ ନ୍ୟୁୟର୍କ ଟାଇମ୍ସର ବରିଷ୍ଠ ସାମ୍ବାଦିକ ମିଚେଲ୍ ଲେଖିଛନ୍ତି, ଯେଉଁ ଦେଶରେ ଏହିଭଳି ଉତ୍ସାହଜନକ ଘଟଣାମାନ ଘଟୁଛି ସେଇ ଦେଶର ନାଁ ହେଲା 'ଇଣ୍ଡିଆ' । ଏହା ସମଗ୍ର ମାନବଜାତିପାଇଁ ଏକ ପ୍ରେରଣାର ସ୍ରୋତ । ମିଚେଲ୍ଙ୍କ ରିପୋର୍ଟଟି ଥିଲା ତଥ୍ୟଭିତ୍ତିକ , ତେଣୁ ତାତ୍ପର୍ଯ୍ୟପୂର୍ଣ୍ଣ । ଏଥିରେ କୌଣସି ଫମ୍ପା ପ୍ରଶଂସା ନଥିଲା । ସେ ନିର୍ବାଚନ ବେଳେ ଯଦି ଭାରତରେ ଥାଆନ୍ତେ, ହୁଏତ ଆମ ନିର୍ବାଚନର ଦୋଷ ଦୁର୍ବଳତାକୁ ମଧ୍ୟ ଦର୍ଶାଇଥାନ୍ତେ । ପାର୍ଲାମେଣ୍ଟାରି ଡେମୋକ୍ରାସି ପ୍ରୟୋଗରେ ଆମେ ଅନେକ ମୂଲ୍ୟବୋଧ ହରାଇଛେ, କିନ୍ତୁ ମିଚେଲ୍ଙ୍କ ସମୀକ୍ଷାରେ ଆମେ କ'ଣ ସବୁ ପାଇଛେ ତା'ରି ଉପରେ ଗୁରୁତ୍ୱ ଥିଲା । ଏହା ଭାରତୀୟ ଭୋଟରଙ୍କ ଆତ୍ମ ବିଶ୍ୱାସକୁ ଶକ୍ତି ଯୋଗାଇବ ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ଭାରତର ଛବି ଓ ପରିଚୟକୁ ନୂଆ ରୂପ ଦେବ । ଜୟ ହୋ ।

*୬ ଅଗଷ୍ଟ, ୨୦୦୯*



# ପିସି, ଗୋଡ଼ିଭୋଜି ଓ କୁଓା ଖାତା

"ବିଧାୟକମାନେ 'ପିସି' ବା ହାତପାଣ୍ଠିର ପରସେଣ୍ଟ - ନେଉଛନ୍ତି ବୋଲି ଓଡ଼ିଶା ବିଧାନସଭାରେ ଅଭିଯୋଗ ହୋଇଛି" (ଇମିସ, ୨୯.୦୭.୨୦୦୯)। ଏହା ଛଡା କେବିକେ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ କାମ ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତାଘାଟ ଓ ବିଭିନ୍ନ ଜନକଲ୍ୟାଣ ଯୋଜନା - ସବୁଥିରେ 'ପିସି' ବା ପର୍ସେଣ୍ଟ ଚାଲିଛି ବୋଲି ଓଡିଶାରେ ହୁରି ପଡିଛି। ଏ ସମ୍ପର୍କରେ ମନେ ପଡିଲା ଏକ ପୁରୁଣା ଅନୁଭୂତି। ୧୯୭୦ଦଶକର କଥା। କଳହାଣ୍ଡିରେ କାମ କରୁଥାଏ। ଜଣେ ବନ୍ଧୁଙ୍କୁ ସନ୍ଧ୍ୟା ସାତଟାରେ ତରବର ହୋଇ ଯାଉଥିବା ଦେଖି ପଚାରିଲି- କାହିଁକି ଏତେ ବ୍ୟଗ୍ର ? କାନ ପାଖରେ ଚୁପ୍ କରି କହିଲେ ଆଜି 'ଗୋଡି ଭୋଜି'। ତମକୁ ଡାକି ନାହାନ୍ତି କି ? ମୁଁ ବୁଝିପାରିଲି ନାହିଁ। ତା ଆରଦିନ ଆଉ ଜଣଙ୍କୁ ପଚାରିଲି - ଗୋଡି ଭୋଜି ମାନେ କ'ଣ ? କହିଲେ କଣ୍ଟ୍ରାକ୍ଟର ରାସ୍ତାରେ ଗୋଡି ପକାଇବାପାଇଁ ଯୋଉ କାମ ପାଇଥିଲେ, ଗୋଡି ନ ପକାଇ ସେ ବିଲ୍ ପାସ୍ କରାଇ ନେଇଛନ୍ତି। ତେଣୁ ଖୁସିରେ ହାକିମମାନଙ୍କୁ ଯେଉଁ ଭୋଜି ଦିଆଯାଏ ତା ନାଁ 'ଗୋଡି ଭୋଜି'।

ଜଣେ ଅବସରପ୍ରାପ୍ତ ଚିଫ୍ ଇଞ୍ଜିନିଅରଙ୍କୁ ପଚାରିଲି, ଆପଣଙ୍କ ବିଭାଗରେ ଏ 'ପିସି' ବ୍ୟବସ୍ଥାଟି କ'ଣ। ଏଥିରେ ମନ୍ତ୍ରୀ, ସେକ୍ରେଟାରିଙ୍କ ଭାଗ ଥାଏ କି ? କହିଲେ ଅନେକ ବିଭାଗରେ ଏପରି ହୁଏ କିନ୍ତୁ ଏହା ସଦାବେଳେ ସତ ନୁହେଁ। କଣ୍ଟ୍ରାକ୍ଟରମାନଙ୍କୁ ସାଢେ ବାର ପର୍ସେଣ୍ଟ 'ପିସି' ଦିଆଯାଏ। ଅର୍ଥାତ୍ ଯେଉଁ ରାସ୍ତାପାଇଁ କୋଟିଏ ଟଙ୍କା ଏଷ୍ଟିମେଟ୍ ହୋଇଥାଏ, ସେଥିରେ ଆଉ ସାଢେ ବାର ଲକ୍ଷ ଟଙ୍କା କଣ୍ଟ୍ରାକ୍ଟରପାଇଁ ରଖାଯାଇଥାଏ। କିନ୍ତୁ ଏମାନେ ସେତିକରେ ସନ୍ତୁଷ୍ଟ ନ ହୋଇ ଇଟା, ଗୋଡି, ସିମେଣ୍ଟ, ଛଡ ପରିମାଣ ହେରଫେର କରି, ତଳ ସ୍ତରରେ ଲାଞ୍ଚ ଦେଇ, ଖଇଚା କାମ କରି ବିଲ୍ ପାସ୍ କରାଇ ନିଅନ୍ତି। ଏଇ କାରଣରୁ ଆମ ରାଜ୍ୟର ରାସ୍ତାଘାଟ ଓ କୋଠାବାଡି ଅତ୍ୟନ୍ତ ନିମ୍ନମାନର। 'ପିସି' ଲୋଭ ଏହାର ମୁଖ୍ୟ କାରଣ।

ସେମିତି ଆଉ ଗୋଟିଏ ଅନୁଭୂତି ସେଇ କଳାହାଣ୍ଡିରେ ଥିଲାବେଳେ । ଜଣେ ଜଣାଶୁଣା ବ୍ୟବସାୟୀଙ୍କ ପୁଅ ଥରେ ମୋ ସ୍କୁଟରଟି ନେଇ ହସ୍‌ପିଟାଲ୍ ସାମନାରେ ଜଣେ ରୋଗୀଙ୍କ ଉପରେ ଲଗେଇ ଦେଲେ ଓ ପୁଲିସ୍ ତାଙ୍କୁ ଧରି ହାଜତକୁ ନେଇଗଲା । ପୁଅକୁ ହାଜତରୁ ମୁକୁଳାଇ ଆଣିବାପାଇଁ ବାପା ତିନିଦିନ କାଳ ଦଉଡି ଦଉଡି ପାରିଲେ ନାହିଁ । ଶେଷରେ ତାଙ୍କ ସ୍ତ୍ରୀ ବ୍ୟସ୍ତ ହୋଇ ମତେ ଡକାଇ ସାହାଯ୍ୟ ପାଇଁ ଅନୁରୋଧ କରୁଥିଲାବେଳେ ତାଙ୍କର ନବେ ବର୍ଷୀୟ ଶଯ୍ୟାଶାୟୀ ଶ୍ୱଶୁର ପାଟି କରି କହିଲେ 'ଆରେ, ବେଟା କାହିଁକି ଏମିତି ଧାଁ ଧପଡ ଅନୁନୟ ବିନୟ କରୁଛ, ମେରେ ବାତ୍ ମାନୋ, କୁତା କୋ ଦୋ ଟୁକଡେ ରୋଟି ଫେକ୍ ଦୋ' । ମୁଁ ହଠାତ୍ ଏହାର ଅର୍ଥ ବୁଝିପାରିଲି ନାହିଁ । ସେଇଦିନ ସନ୍ଧ୍ୟାରେ ତାଙ୍କ ନାତି ହାଜତରୁ ମୁକୁଳି ଆସିଲେ । ତା ଆରଦିନ ତାଙ୍କୁ ପଚାରିଲି 'କୁତ୍ତା କୋ ଦୋ ରୋଟି ଫେକ୍ ଦୋ' ର ମାନେ କ'ଣ । ହସି କହିଲେ 'ଦୋ ଟୁକଡେ ରୋଟି' ମାନେ ଦୁଇ ଶହ ଟଙ୍କା ଓ 'କୁତ୍ତା' ମାନେ ଯେଉଁ ମଣିଷରୂପୀ କୁକୁରଙ୍କୁ ଏହି ଟଙ୍କା ଲାଞ୍ଚ ଦିଆଗଲା । ଆମେ କାମପାଇଁ ଯାହାଙ୍କୁ ଲାଞ୍ଚ ଦେଉ ସେମାନଙ୍କପାଇଁ ଏକ ଅଲଗା ଖାତା ଥାଏ ଓ ସେ ଖାତାଟିର ନାଁ 'କୁତ୍ତା ଖାତା' । ସବୁ ବ୍ୟବସାୟୀ ଓ କମ୍ପାନିମାନେ ଏମିତି କୁତ୍ତା ଖାତା ରଖିଥାନ୍ତି ଯେଉଁଥିରେ 'ଲାଞ୍ଚଖିଆ କୁତ୍ତା'ମାନଙ୍କର ନାମ, ଠିକଣା, ଲାଞ୍ଚ ପରିମାଣ ଉଲ୍ଲେଖ ଥାଏ ।

ଏପରି କୁତ୍ତାମାନଙ୍କୁ ପୁଣି ଦୁଇ ଭାଗରେ ବିଭକ୍ତ କରାଯାଇଥାଏ - ସାନ କୁତ୍ତା ଓ ବଡ କୁତ୍ତା, ଦେଶୀ କୁତ୍ତା ଓ ବିଦେଶୀ କୁତ୍ତା, ସରକାରୀ କୁତ୍ତା ଓ ବେସରକାରୀ କୁତ୍ତା ଇତ୍ୟାଦି । ଯେଉଁ କୁତ୍ତାମାନେ ଲାଞ୍ଚ ଖାଇ ବି କାମ କରନ୍ତି ନାହିଁ ସେମାନଙ୍କ ନାଁ ହେଲା 'କମିନେ କୁତ୍ତା', ଦୁର୍ନୀତି ବିରୋଧରେ ତଦନ୍ତକୁ ବିଭ୍ରାଟ ଓ ଦିଗଭ୍ରଷ୍ଟ କରିବାପାଇଁ ସବୁଠୁ ବେଶୀ ଲାଞ୍ଚ ଦିଆଯାଏ । ଭିଜିଲାନ୍‌ସର ପଦସ୍ଥ ଅଫିସରମାନେ ବି ଏପରି ପ୍ରଲୋଭନରୁ ମୁକ୍ତ ନୁହନ୍ତି । ଖୋଜିଲେ କୁତ୍ତା ଖାତାରେ ଏମାନଙ୍କ ନାମ ଓ କୀର୍ତ୍ତି ମିଳିବ । ଆଜି ପଶ୍ଚିମ ଓଡିଶା ଓ କେବିକେ ଜିଲ୍ଲାଗୁଡିକରେ ଉନ୍ନୟନପାଇଁ ଦଶ ହଜାର କୋଟି ଟଙ୍କା ଖର୍ଚ୍ଚ ହୋଇ ସାରିଲା ପରେ ମଧ୍ୟ କୌଣସି ଆଖିଦୃଶିଆ ପରିବର୍ତ୍ତନ ନ ହୋଇଥିବାର କାରଣ ହେଲା ଏପରି 'କୁତ୍ତା' ଓ ସେମାନଙ୍କ ମାଲିକମାନେ । ଏବଂ କୁତ୍ତା ଖାତାଗୁଡିକର ପୃଷ୍ଠା ଲେଉଟାଇଲେ ଏମାନଙ୍କର ନାଁ, ଗାଁ ଠିକଣା ଜଣାପଡିଯିବ । ଏଇମାନଙ୍କ ଆଚରଣରୁ କେବିକେ ଏବେ ବି ବିଶ୍ୱର ଦାରିଦ୍ର୍ୟ ଓ ଶୋଷଣର ଉପତ୍ୟକା ହୋଇ ରହିଛି । ତେଣୁ କୁତ୍ତାଙ୍କ କବଳରୁ କେବିକେ କେମିତି ରକ୍ଷା ପାଇବ, ମୁଖ୍ୟମନ୍ତ୍ରୀ ଓ ମୁଖ୍ୟ ସଚିବ ଅଧିକ ଚିନ୍ତା କରି ପଦକ୍ଷେପ ନିଅନ୍ତୁ । ଲୋକେ କୁତ୍ତାମାନଙ୍କୁ ଠାବ କରି ଧରନ୍ତୁ ।

ଏବେ ଓଡିଶା ଖଣି ବିଭାଗ ଦୁର୍ନୀତିର ପରିମାଣ ହଜାରେ କୋଟିରୁ ଲକ୍ଷେ କୋଟି ଟଙ୍କା ବୋଲି ଖବର ପ୍ରକାଶ ପାଇଛି । ଏତେ ପରିମାଣର ହେରଫେର ଭାରତରେ ଏପର୍ଯ୍ୟନ୍ତ ଘଟିଥିବା ସବୁ ଦୁର୍ନୀତିର ସୀମା ଟପିଯାଇଛି । ବୋଫର୍ସ, ଚାରା ଘୋଟାଲା, କଫିନ୍ ସ୍କାଣ୍ଡାଲ, ହର୍ଷଦ୍ ମେହେଟା ସିକ୍ୟୁରିଟି ସ୍କାମ୍, ହାୱାଲା, ଜେଏମ୍ଏମ୍ ବ୍ରାଇବେରି, ପ୍ରଶ୍ନପାଇଁ ପଇସା ଇତ୍ୟାଦି ସବୁ ବଡ ବଡ ଦୁର୍ନୀତିକୁ ଟପି ଗଲା ବୋଲି କୁହାଯାଉଚି । ଏହା ଆଗରୁ ଗ୍ରାମ୍ୟ ଉନ୍ନୟନ, ପଞ୍ଚାୟତି ରାଜ, ଶିକ୍ଷା, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ, ଶିଳ୍ପ ଓ ନିର୍ମାଣ ବିଭାଗର ଦୁର୍ନୀତି ପଦାକୁ ଆସିଥିଲା । ୨୦୦୭ ମସିହାରେ 'ସେଣ୍ଟର ଫର୍ ଏନ୍‌ଭରନ୍‌ମେଣ୍ଟ ଆଣ୍ଡ ଫୁଡ୍ ସିକ୍ୟୁରିଟି' (ସେଫ୍‌ସ) ତରଫରୁ 'ନିଶ୍ଚିତ କର୍ମ ନିଯୁକ୍ତି ଯୋଜନା' କାର୍ଯ୍ୟକାରୀ ହେଉଥିବା ଓଡିଶାର ଛ'ଟି ଜିଲ୍ଲାର ୧୦୦ ଟି ଗାଁରେ କରାଯାଇଥିବା ସର୍ବେକ୍ଷଣ ରିପୋର୍ଟ ଅନୁସାରେ ଏହି ଯୋଜନାର ୭୦ ଭାଗ ଅର୍ଥ ଖାଇ ଯାଇଛନ୍ତି ସରକାରୀ ବାବୁମାନେ । ଏହି ଜିଲ୍ଲାଗୁଡିକ ହେଲେ ବଲାଙ୍ଗିର, ନୂଆପଡା, କଳାହାଣ୍ଡି, କୋରାପୁଟ, ନବରଙ୍ଗପୁର ଓ ରାୟଗଡା । ଏହି ଅଞ୍ଚଳର ୫୦୦୦ ଗାଁର ଗରିବଙ୍କପାଇଁ ଉଦ୍ଦିଷ୍ଟ ଯୋଜନାର ଲୁଟ ପରିମାଣ ୭୩୩ କୋଟି ଟଙ୍କା ବୋଲି ଆକଳନ କରାଯାଇଛି । ୨୦୦୭ ମସିହା ଅଗଷ୍ଟ ସତର ତାରିଖ ଦିନ ନୂଆଦିଲ୍ଲୀ ପ୍ରେସ୍ କ୍ଲବ୍‌ରେ ଉପସ୍ଥିତ ଶତାଧିକ ସାମ୍ବାଦିକ ଓ ଗଣମାଧ୍ୟମ ଆଗରେ ପ୍ରସିଦ୍ଧ ସମାଜ ଶାସ୍ତ୍ରୀ ପ୍ରଫେସର ଆଶିଷ ନନ୍ଦୀ ଏହି ସବୁ ତଥ୍ୟ ପ୍ରକାଶ କରି ସମସ୍ତଙ୍କୁ ଚକିତ ଓ ସ୍ତବ୍ଧ କରି ଦେଇଥିଲେ ।

ଏଥିରୁ ୫୦୦ କୋଟି ଟଙ୍କା ସରକାରୀ ବାବୁଙ୍କ ପକେଟକୁ ଯାଇଛି ବୋଲି ଜଣା ପଡିଛି । କାରଗିଲ୍ କଫିନ୍ ସ୍କାଣ୍ଡାଲ୍‌ରେ ସମ୍ପୃକ୍ତ ଦୁର୍ନୀତିଗ୍ରସ୍ତ ଅଫିସରମାନଙ୍କୁ ଗଣମାଧ୍ୟମ 'ମୁର୍ଦାରଖିଆ' ବୋଲି ଅଭିହିତ କରିଥିଲେ । କେବିକେ ଜିଲ୍ଲା ଗରିବଙ୍କ ହକ୍ ଲୁଟୁଥିବା ସରକାରୀ 'ବାବୁ'ମାନଙ୍କୁ କେଉଁ ସଂଜ୍ଞା ଦେବା ? ଚାଉଳ ଚୋର ନା ମାଟି ମଜୁରୀ ଚୋର ? ପୁଣି ଯେଉଁ ବଡବାବୁମାନେ ଖଣି ମାଲିକଙ୍କଠାରୁ ଗାଡି, କୋଠା ଓ ସପ୍ତୀକ ବିଦେଶ ଯାତ୍ରା ଖର୍ଚ୍ଚ ପାଆନ୍ତି, ସେମାନଙ୍କୁ କେଉଁ ସଜ୍ଞା ଦେବା ? ଯେଉଁ ରାଜନେତା ମାନେ ଉନ୍ନୟନପାଇଁ ହାତପାଣ୍ଠିକୁ ନିଜେ ଖାଇଯାଆନ୍ତି ଓ ଯେଉଁ ରାଜନୀତିକ ଦଳମାନେ ଶିଳ୍ପପତିମାନଙ୍କଠାରୁ ବିପୁଳ ଅର୍ଥ ନେଇ ଭୋଟରକୁ କିଣନ୍ତି ଓ ହିସାବ ଦିଅନ୍ତି ନାହିଁ- ସେମାନଙ୍କ ଆଚରଣକୁ କେଉଁ ଓ କିପରି ଭାଷାରେ ବର୍ଣ୍ଣନା କରିବା ? ବଢି, ବାତ୍ୟା, ମରୁଡି ହେଲେ କେତେକ ନ୍ୟସ୍ତସ୍ୱାର୍ଥ ଲୋକ କେମିତି ଖୁସିରେ ନାଚନ୍ତି, ସେକଥା ପ୍ରାଞ୍ଜଳ ଭାବରେ ପି. ସାଇନାଥ ତାଙ୍କ ବହୁ ଚର୍ଚ୍ଚିତ ପୁସ୍ତକ 'ଏଭ୍ରିୱାନ୍ ଲଭ୍‌ସ ଏ ଗୁଡ୍ ଡ୍ରାଉଟ୍' ରେ ବର୍ଣ୍ଣନା କରିଛନ୍ତି ।

ଏବେ ସୁପ୍ରିମ୍ କୋର୍ଟ ଏ ସମ୍ପର୍କରେ ଏକ ଗୁରୁତ୍ୱପୂର୍ଣ୍ଣ ରାୟ ଦେଇ କହିଛନ୍ତି ଯେ ସରକାରୀ କଳକୁ ସ୍ୱଚ୍ଛ ଓ କ୍ରିୟାଶୀଳ କରିବାପାଇଁ ଏଥିରୁ ଅମନଯୋଗୀ, ନେତିବାଦୀ ଓ ଦୁର୍ନୀତିଗ୍ରସ୍ତ କର୍ମଚାରୀମାନଙ୍କୁ ବାଧ୍ୟତାମୂଳକ ଅବସର ଦେବା ନିଷ୍ପତ୍ତି ଆଇନସିଦ୍ଧ ଓ ଯଥାର୍ଥ । ଏବଂ କହିଛନ୍ତି ଏମାନଙ୍କ ସାମ୍ବିଧାନିକ ସୁରକ୍ଷା କବଚକୁ ତୁରନ୍ତ ହଟାଇ ଦେଇ ଦୁର୍ନୀତିଦ୍ୱାରା ଅର୍ଜିତ ସମ୍ପତ୍ତିକୁ ଜବତ୍ କରାଯାଉ । ବୃହତ୍ତର ଜନସ୍ୱାର୍ଥ ସୁରକ୍ଷା ପାଇଁ ଏଭଳି କର୍ମଚାରୀଙ୍କ କବଳରୁ ପରିଚାଳନା ବ୍ୟବସ୍ଥାକୁ ମୁକ୍ତ କରାଯିବା ଆବଶ୍ୟକ । ସମାଜ, ରାଜନୀତି, ଅମଲାତନ୍ତ୍ର, ପୋଲିସ୍, ଭିଜିଲାନ୍ସ ଓ ଶିଳ୍ପ ବାଣିଜ୍ୟ କ୍ଷେତ୍ରରେ ଏବେ ବି ଅନେକ ସକ୍ରିୟ, ସଚ୍ଚୋଟ ଲୋକ ଅଛନ୍ତି । ଏମାନଙ୍କୁ ସ୍ୱୀକୃତି, ସୁରକ୍ଷା ଓ ପ୍ରେରଣା ମିଳିଲେ ଦେଶ ଓ ରାଜ୍ୟର ଛବି ନିର୍ମଳ ଦେଖାଯାଆନ୍ତା ଓ କନିଷ୍ଠମାନେ ଏପରି ବରିଷ୍ଠଙ୍କ ଆଦର୍ଶରେ ଅନୁପ୍ରାଣିତ ହୁଅନ୍ତେ ।

ସ୍ୱାଧୀନତାର ୬୨ ବର୍ଷ ପରେ ମଧ୍ୟ ଯଦି ଆଜି ୧୧୦ କୋଟି ଲୋକଙ୍କ ଦେଶ ଭାରତ ବିଶ୍ୱ ମହାଶକ୍ତି ହୋଇ ପାରିନାହିଁ, ତା'ର ମୂଳରେ ରହିଛି ଆମର ଦୁର୍ନୀତିଗ୍ରସ୍ତ ଶାସନ ଓ ରାଜନୀତି । ଏବଂ ରାଜନୀତି ଦୁର୍ନୀତିମୁକ୍ତ ହେଲେ ପ୍ରଶାସନରୁ ଦୁର୍ନୀତି ଦୂର କରିବା ସହଜ ହେବ । ଗଙ୍ଗୋତ୍ରୀ ପ୍ରଦୂଷିତ ହେଲେ ଗଙ୍ଗା ପବିତ୍ର ହୋଇ ରହିପାରିବ ନାହିଁ । ବଡବଡ ନେତା ଓ ହାକିମମାନେ ସଚ୍ଚୋଟ ରହିଲେ ତଳିଆ କର୍ମଚାରୀମାନେ ଲାଞ୍ଚ ନେବାକୁ ଡରିବେ । ଏବଂ ଲାଞ୍ଚୁଆଙ୍କୁ ଧରି ତୁରନ୍ତ ଦଣ୍ଡ ଦିଆଗଲେ ଶାସନ ଓ ସମାଜ ଉପରେ ଭଲ ପ୍ରଭାବ ପଡିବ । ୧୯୮୮ ମସିହାରୁ 'ପ୍ରିଭେନସନ୍ ଅଫ୍ କରପ୍ସନ୍ ଆକ୍ଟ' ପାସ୍ ହୋଇ ଆଇନ୍ ହୋଇ ସାରିଲାଣି । କେନ୍ଦ୍ରରେ ଲୋକପାଳ ରାଜ୍ୟରେ ଲୋକାୟୁକ୍ତ ବ୍ୟବସ୍ଥା ଏପର୍ଯ୍ୟନ୍ତ ଠିକ୍ ଭାବରେ କାର୍ଯ୍ୟକାରୀ ହୋଇପାରି ନାହିଁ । 'ଟ୍ରାନ୍ସପାରେନ୍ସି ଇଣ୍ଟରନ୍ୟାସନାଲ୍' ର 'କରପ୍ସନ୍ ଇଣ୍ଡେକସ୍' ଅନୁସାରେ ଭାରତ ସବୁଠାରୁ ଦୁର୍ନୀତିଗ୍ରସ୍ତ ଦେଶଙ୍କ ସାଙ୍ଗରେ ରହିଛି । ପିସି, ଗୋଡିଭୋଜି ଓ କୁରା ଖାତା ସଂସ୍କୃତି ଅବ୍ୟାହତ ଅଛି । କୁରାମାନଙ୍କ ସଂଖ୍ୟା ମଧ୍ୟ ବଢି ଚାଲିଛି ଓ କୁରା ଖାତାର କଳେବର ବଢିବାରେ ଲାଗିଛି ।

*୩ ସେପ୍ଟେମ୍ବର, ୨୦୦୯*



# ର୍ୟାଗିଂ : ରୋଗ, ରୂପ, ରତୁ ଓ ପ୍ରତିକାର

ତିନିବର୍ଷ ତଳେ (ଅକ୍ଟୋବର-୨୦୦୬), ତିନି ସପ୍ତାହ ଧରି ର୍ୟାଗିଂଜନିତ ନିର୍ଯ୍ୟାତନା ସହି ନ ପାରି ଓଡ଼ିଶାର ବିଜୟ କୁମାର ମହାରଥୀଙ୍କ ମୃତ୍ୟୁ ସାରା ରାଜ୍ୟରେ ଚହଳ ପକାଇଥିଲା । ଏବେ, ଭାରତର ପ୍ରଥମ ମହିଳା ରାଷ୍ଟ୍ରପତି ପ୍ରତିଭା ପାଟିଲ ରାଜ୍ୟପାଳମାନଙ୍କୁ ପତ୍ର ଲେଖି ଶିକ୍ଷାନୁଷ୍ଠାନମାନଙ୍କରେ ବ୍ୟାପୁଥିବା ର୍ୟାଗିଂ ରୋଗକୁ ରୋକିବାପାଇଁ ଦୃଢ ପଦକ୍ଷେପ ନେବାକୁ ପରାମର୍ଶ ଦେଇଛନ୍ତି । ଶିକ୍ଷା ଜଗତରୁ ଏହି କଳଙ୍କକୁ ମୂଳୋତ୍ପାଟନ କରିବାପାଇଁ ରାଜ୍ୟପାଳମାନେ ନିଜର ଜ୍ଞାନ, ଅଭିଜ୍ଞତା ଓ କ୍ଷମତା ପ୍ରୟୋଗ କରନ୍ତୁ ଓ ଦେଶର ସର୍ବୋଚ୍ଚ ନ୍ୟାୟାଳୟଙ୍କର ଏ ସମ୍ପର୍କୀୟ ନିର୍ଦ୍ଦେଶ କଡ଼ାକଡ଼ି ଲାଗୁପାଇଁ ଆବଶ୍ୟକ ସ୍ଥଳେ ରାଜ୍ୟରେ ନୂଆ ଆଇନ୍ ପ୍ରଣୟନ କରାଯାଉ ଏବଂ ଶିକ୍ଷାନୁଷ୍ଠାନ, ଶିକ୍ଷକ, ଅଭିଭାବକ ଓ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କୁ ଏହି ପ୍ରକ୍ରିୟାରେ ସାମିଲ କରାଯାଉ ବୋଲି ରାଷ୍ଟ୍ରପତି କହିଛନ୍ତି । ପ୍ରକାଶଥାଉକି, ଏବର୍ଷ (ଜୁଲାଇ ୨୦୦୮-ଜୁନ୍ ୨୦୦୯) ବାରଜଣ ବିଦ୍ୟାର୍ଥୀ ର୍ୟାଗିଂଯୋଗୁଁ ପ୍ରାଣ ହରାଇଲେଣି ଓ ୫ ଜଣ ଆତ୍ମହତ୍ୟା କଲେଣି । ବର୍ଷ ଶେଷକୁ ଏ ସଂଖ୍ୟା ଆହୁରି ବଢି ଯାଇଥିବ । ଆଡ୍‌ମିଶନ୍ ପରେ ପରେ ଏହା ଏକ ଦୈନନ୍ଦିନ ଘଟଣା ।

୨୦୦୧ ମସିହାରେ ର୍ୟାଗିଂ ବିରୋଧରେ ସୁପ୍ରିମ୍‌କୋର୍ଟଙ୍କ ରାୟ ପରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (ୟୁଜିସି) ଶିକ୍ଷାନୁଷ୍ଠାନମାନଙ୍କୁ ସତର୍କ କରିବା ସହ ସାରା ଦେଶପାଇଁ ଏକ ଚବିଶ ଘଣ୍ଟିଆ "ହେଲ୍‌ପ ଲାଇନ୍ (ଟୋଲ୍ ଫ୍ରି ନମ୍ବର ୧୮୦୦୧୮୦୫୫୨୨)" ପ୍ରବର୍ତ୍ତନ କରିଛନ୍ତି । ର୍ୟାଗିଂର ଶିକାର ହୋଇଥିବା ଯେ କୌଣସି ଛାତ୍ର-ଛାତ୍ରୀ ଏହାର ସହାୟତା ନେଇପାରିବେ । ଏହାସତ୍ତ୍ୱେ ର୍ୟାଗିଂ ନ

କମୁଥିବାରୁ ଏବେ ବିଶ୍ୱ ବିଦ୍ୟାଳୟ ଅନୁଦାନ ଆୟୋଗ, ୟୁଜିସି ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ସହଯୋଗ ମାଗିଲେଣି । ଭାରତରେ ଯେଉଁ ୬ଟି ରାଜ୍ୟରେ ସବୁଠୁ ବେଶୀ ର୍‍ୟାଗିଂ ହୁଏ ତା'ମଧ୍ୟରେ ଅଛି ଓଡ଼ିଶା । "କୋଆଲିଶନ୍ ଟୁ ଅପରୁଟ୍ ର୍‍ୟାଗିଂ ଫ୍ରମ୍ ଏଡୁକେସନ୍" -(କିଓର) ନାମକ ଏକ ର୍‍ୟାଗିଂ ବିରୋଧୀ ସଂସ୍ଥାର ରିପୋର୍ଟ ଅନୁସାରେ ପ୍ରତିବର୍ଷ ନୃଶଂସ ର୍‍ୟାଗିଂଯୋଗୁଁ ୯ ଜଣ ଛାତ୍ର-ଛାତ୍ରୀ ପ୍ରାଣ ହରାଇଥାନ୍ତି । ଏହି କାରଣରୁ ମନସ୍ତାପରେ ଆତ୍ମହତ୍ୟା କରୁଥିବା ବ୍ୟକ୍ତିଙ୍କର ହିସାବ ନାହିଁ । ଏହାଛଡା ସହସ୍ରାଧିକ ବିଦ୍ୟାର୍ଥୀ ଶାରୀରିକ ଓ ମାନସିକ ଯନ୍ତ୍ରଣା ଭୋଗିଥାନ୍ତି । ଏହାଦ୍ୱାରା ପ୍ରଭାବିତ ପରିବାରମାନଙ୍କର ପୀଡା ଅନୁଭବୀ ହିଁ ହୃଦୟଙ୍ଗମ କରିପାରିବେ । ପ୍ରଥମେ ସତ୍‌କର୍ମନେ (ଚାରିଟି) ଦାନପାଇଁ ଅର୍ଥ ସଂଗ୍ରହ ଉଦ୍ଦେଶ୍ୟରେ ଛାତ୍ରମାନଙ୍କଦ୍ୱାରା ଆୟୋଜିତ ହେଉଥିବା ଆମୋଦ-ପ୍ରମୋଦ, ଖେଳ-କୌତୁକ କାର୍ଯ୍ୟକ୍ରମ ଦିନେ ନବାଗତ ବିଦ୍ୟାର୍ଥୀଙ୍କୁ ଅପମାନ, ହଇରାଣ, ହରକତ କରିବା ଉଦ୍ଦେଶ୍ୟରେ ବ୍ୟବହୃତ ହେବ ବୋଲି କେହି ଆଶା କରିନଥିଲେ ।

ର୍‍ୟାଗିଂ ରୋଗର କୁତ୍ସିତ ରୂପ ନ ଦେଖିଲେ ବିଶ୍ୱାସ କରି ହେବ ନାହିଁ । ସେଗୁଡିକ ହେଲା ମଦ, ସିଗାରେଟ୍ ପିଇବାକୁ ବାଧ କରିବା, ବିବସ୍ତ୍ର ହୋଇ ଚାଲିବାକୁ ବାଧ୍ୟ କରିବା, ଚଟାଣରେ ପହଁରିବା, ସମସ୍ତଙ୍କ ଆଗରେ ସମଲିଙ୍ଗୀ ଯୌନକ୍ରିୟାପାଇଁ ଚାପ ଓ ନ କଲେ ଦଣ୍ଡ, ପିଚାରେ ତଳୁ ଅଣ୍ଡା ଉଠାଇବା, ପେନ୍‌ସିଲ୍ ଉଠାଇବା, ଲଙ୍ଗଳା ହୋଇ ଦୌଡିବା, ନାଚିବା, ଚୁମ୍ବନ ଦେବା, ଅଶ୍ଳୀଳ ଭାଷା କହିବା, ସିନିଅରଙ୍କୁ 'ସାର୍' ସମ୍ବୋଧନ କରିବା ଓ ତାଙ୍କପାଇଁ ବେଠି ଖଟିବା ଇତ୍ୟାଦି । ଛାତ୍ରାବାସ, ରେସ୍ତୋରାଁ, ଖେଳପଡିଆ, ଶିକ୍ଷକ ନଥିବା ଶ୍ରେଣୀଗୃହ, କ୍ୟାମ୍ପସ୍ ଭିତରେ ଥିବା ଅନ୍ୟ ଖୋଲା, ନିର୍ଜନ ସ୍ଥାନମାନଙ୍କରେ ବେଶୀ ର୍‍ୟାଗିଂ ହୋଇଥାଏ । ଯେଉଁ ନବାଗତମାନେ ସଙ୍କୋଚ ବା ବିରୋଧ କରନ୍ତି ତାଙ୍କୁ ଅଶ୍ରାବ୍ୟ ଭାଷାରେ ଗାଳି ଓ ଶାରୀରିକ ନିର୍ଯ୍ୟାତନା ଦିଆଯାଏ ।

ଛାତ୍ରଛାତ୍ରୀମାନେ ଉଚ୍ଚ ଆଶା ନେଇ ଉଚ୍ଚ ଶିକ୍ଷାପାଇଁ ଓ ଉଚ୍ଚ ଭବିଷ୍ୟତ ଗଢିବାର ସ୍ୱପ୍ନ ନେଇ ଉଚ୍ଚ ଶିକ୍ଷାନୁଷ୍ଠାନରେ ନାମ ଲେଖାଇଥାନ୍ତି । ର୍‍ୟାଗିଂ କରୁଥିବା ନରରାକ୍ଷସମାନେ ଏସବୁ ସ୍ୱପ୍ନକୁ ଦଳିଚକଟି ଦିଅନ୍ତି । ପରିବାର, ସମାଜ ଓ ବିଦ୍ୟାଳୟରୁ ଯେଉଁ ବିଶ୍ୱାସ ଓ ମୂଲ୍ୟବୋଧଦ୍ୱାରା ଅନୁପ୍ରାଣିତ ହୋଇ ଜଣେ ବିଦ୍ୟାର୍ଥୀ କଲେଜ ଓ ବୈଷୟିକ ଶିକ୍ଷାନୁଷ୍ଠାନକୁ ଆସିଥାଏ, ସେସବୁ ଭାବନା ଅସଭ୍ୟ ର୍‍ୟାଗରଙ୍କ ଅତ୍ୟାଚାରରେ ଜଳିଯାଏ । କେତେକ ଉଚ୍ଚ ଶିକ୍ଷାନୁଷ୍ଠାନରେ କର୍ତ୍ତୃପକ୍ଷ ଓ ଅଧ୍ୟାପକମାନେ

ମଧ୍ୟ ର୍‌ୟାଗିଂକୁ ପରୋକ୍ଷ ସମର୍ଥନ ଦେଉଥିବା ଦୃଷ୍ଟାନ୍ତ ରହିଛି । ଏମାନେ କାର୍ଯ୍ୟାନୁଷ୍ଠାନ ନେବାରେ କୁଣ୍ଠାବୋଧ କରନ୍ତି । ର୍‌ୟାଗିଂକୁ 'ଜଷ୍ଟିଫାଏ' କରିବାକୁ ଚେଷ୍ଟା କରନ୍ତି, ଭ୍ରମଧାରଣା ସୃଷ୍ଟି କରନ୍ତି । କହନ୍ତି ଏପରି କଲେ କୁଆଡେ ବନ୍ଧୁତା ବଢେ ।

ବିଦେଶରୁ ଆମଦାନୀ ଏଇ ଅସଭ୍ୟ ଅପସଂସ୍କୃତିର ଇତିହାସ ମଧ ବିଚିତ୍ର । ଖ୍ରୀଷ୍ଟପୂର୍ବ ୭ମ ଶତାବ୍ଦୀରେ ଗ୍ରୀକ୍ ରାଜ୍ୟରେ ଅନୁଷ୍ଠିତ ଖେଳକୁଦ ପ୍ରତିଯୋଗିତାରେ ଅଂଶଗ୍ରହଣପାଇଁ ଆସୁଥିବା ଖେଳାଳିମାନଙ୍କ ସହିଷ୍ଣୁତା ପରୀକ୍ଷାପାଇଁ ନାନା ପ୍ରକାର କଠିନ ଓ କ୍ଳେଶପୂର୍ଣ୍ଣ ପରିସ୍ଥିତି ସୃଷ୍ଟି କରାଯାଉଥିଲା । ଏହି ପ୍ରଣାଳୀକୁ ପରବର୍ତ୍ତୀ କାଳରେ ମିଲିଟାରି ଟ୍ରେନିଂରେ ପ୍ରୟୋଗ କରାଗଲା । ଏହା ପରେ ୟୁରୋପରେ ଉଚ୍ଚଶିକ୍ଷାନୁଷ୍ଠାନ ମାନଙ୍କରେ ଏହା ବ୍ୟାପିଲା ଓ ହିଂସାତ୍ମକ ରୂପ ନେଲା । ପ୍ରଥମ ବିଶ୍ୱମହାଯୁଦ୍ଧ ବେଳେ ଅନେକ ଯୁବକ ପାଠପଢା ଛାଡି ଦେଶ ରକ୍ଷାପାଇଁ ଲଢୁଥିଲେ । ବିଶ୍ୱଯୁଦ୍ଧ ପରେ ଏମାନଙ୍କ ମଧରୁ ଅନେକ କଲେଜ ଓ ବିଶ୍ୱବିଦ୍ୟାଳୟରେ ପଢିବାକୁ ଆସିଲେ ଓ ପୁରୁଣା ଅଭ୍ୟାସକୁ କ୍ୟାମ୍ପସ୍‌ରେ ନବାଗତ ବିଦ୍ୟାର୍ଥୀଙ୍କ ଉପରେ ପ୍ରୟୋଗ କଲେ । ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ୟୁରୋପ ଓ ଆମେରିକାର ଉଚ୍ଚଶିକ୍ଷାନୁଷ୍ଠାନ ମାନଙ୍କରେ ଛାତ୍ରମାନେ ଆଲ୍‌ଫା, ବିଟା, ଡେଲ୍‌ଟା ଇତ୍ୟାଦି ଗ୍ରୀସୀୟ ନାମରେ କ୍ଲବ୍ ଗଢି ର୍‌ୟାଗିଂ ଆରମ୍ଭ କଲେ । ର୍‌ୟାଗିଂର ଆମେରିକାନ୍ ନାମ 'ହେଜିଂ' ବା ହଇରାଣ, ହରକତ କରିବା ।

୧୮୧୭ ମସିହାରେ କର୍ଣ୍ଣେଲ୍ ବିଶ୍ୱବିଦ୍ୟାଳୟରେ ପ୍ରଥମଥରପାଇଁ ଜଣେ ନବାଗତ ଛାତ୍ର ର୍‌ୟାଗିଂ ବା ହେଜିଂର ଶିକାର ହୋଇ ପ୍ରାଣତ୍ୟାଗ କରିଥିଲେ । ତାଙ୍କୁ ର୍‌ୟାଗରମାନେ ଏକ ବିରାଟ ଗର୍ତ୍ତକୁ ପେଲି ଦେଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ର୍‌ୟାଗିଂ ଆହୁରି ଭୟଙ୍କର ହେଲା । ଭାରତରେ ର୍‌ୟାଗିଂ ପହଞ୍ଚିଲା ବିଂଶ ଶତାବ୍ଦୀରେ – ଇଂରାଜୀ ମାଧମରେ ଶିକ୍ଷା ଦେଉଥିବା ଅନୁଷ୍ଠାନ ମାଧ୍ୟମରେ । ୧୯୭୦ ଦଶକରେ ଦକ୍ଷିଣ ଭାରତର ଇଞ୍ଜିନିୟରିଂ, ମେଡିକାଲ ଓ ବୈଷୟିକ ଶିକ୍ଷାନୁଷ୍ଠାନମାନଙ୍କରେ ର୍‌ୟାଗିଂ ଆରମ୍ଭ ହୋଇ ଦେଶର ସବୁ ଅଞ୍ଚଳକୁ କ୍ରମେ ବ୍ୟାପିଗଲା । ଏଥିରେ ବିବ୍ରତ ହୋଇ ସର୍ବପ୍ରଥମେ ତାମିଲନାଡୁ ରାଜ୍ୟ ସରକାର ଏହା ବିରୋଧରେ ୧୯୯୭ ମସିହାରେ ଆଇନ ପ୍ରଣୟନ କଲେ । ୨୦୦୧ ମସିହାରେ ଏହାକୁ ରାଷ୍ଟ୍ରୀୟ ସ୍ତରରେ ବ୍ୟାନ୍ ବା ନିଷିଦ୍ଧ କରାଗଲା । ଇଞ୍ଜିନିୟରିଂ ଛାତ୍ର ଅମନ୍ କଚ୍ଚୁଙ୍କ ମୃତ୍ୟୁ ପରେ ଏବେ ହିମାଚଳ ସରକାର ର୍‌ୟାଗିଂ ବିରୋଧରେ ନୂଆ ଆଇନ୍ ପ୍ରଣୟନ କରିଛନ୍ତି । ଓଡ଼ିଶା ସରକାର ଓ ଶିକ୍ଷାନୁଷ୍ଠାନମାନେ କେବେ ଚେଇଁବେ ?

ପୃଥିବୀରେ ର୍‍ୟାଗିଂଦ୍ୱାରା ସବୁଠାରୁ ଅଧିକ ଉତ୍ପୀଡିତ ଦେଶ ଶ୍ରୀଲଙ୍କା । ଯେଉଁ ପାଶ୍ଚାତ୍ୟ ଦେଶମାନେ ଥିଲେ ର୍‍ୟାଗିଂର ଉତ୍ପତ୍ତିସ୍ଥଳ, ସେଠାରେ ଏ ରୋଗକୁ ରୋକାଗଲାଣି । ଏବେ ଏହା ଆମ ଶିକ୍ଷାନୁଷ୍ଠାନମାନଙ୍କରେ ବେକରେ ଘଣ୍ଟି ହୋଇଛି । ହଷ୍ଟେଲ, ମେସ୍, ଲାଇବ୍ରେରୀ, ଖେଳପଡିଆ, ରେଷ୍ଟୋରାଁ ଆଦି ଅନେକ ନବାଗତ ଛାତ୍ରଛାତ୍ରୀଙ୍କ ଶୋଷଣ, ଅତ୍ୟାଚାର ସ୍ଥଳ ହେଲାଣି । ବେସରକାରୀ ବୈଷୟିକ ଅନୁଷ୍ଠାନମାନଙ୍କରେ ଏହାର ପ୍ରକୋପ ବେଶି । ଏଠି ଅଧିକାଂଶ ପଇସାବାଲାଙ୍କ ପିଲାଏ ଲକ୍ଷ ଲକ୍ଷ ଟଙ୍କା ଡୋନେସନ୍ ଦେଇ ନାଁ ଲେଖାଇଥାନ୍ତି । ମାନବ ମୂଲ୍ୟବୋଧ ପ୍ରତି ଏମାନଙ୍କର ସମ୍ମାନ ନଥାଏ, ପଇସା ଦେଇ ପଇସାପାଇଁ ପାଠ ପଢିବାକୁ ଆସିଥାନ୍ତି ।

ର୍‍ୟାଗିଂ ସମସ୍ୟାର ଏକ ସର୍ବକାଳୀନ ସମାଧାନ ସକାଶେ ସୁପ୍ରିମ୍‌କୋର୍ଟ ସିବିଆଇର ପୂର୍ବତନ ନିର୍ଦ୍ଦେଶକ ଡଃ ଆର୍.କେ.ରାଘବନ୍‌ଙ୍କ ଅଧ୍ୟକ୍ଷତାରେ ଏକ ସାତଜଣିଆ ବିଶେଷଜ୍ଞ କମିଟି ଗଠନ କରି ତୁରନ୍ତ ରିପୋର୍ଟ ଦେବାକୁ ଆଦେଶ ଦେଇଥିଲେ । ରାଘବନ୍ କମିଟି ର୍‍ୟାଗିଂ ନିୟନ୍ତ୍ରଣପାଇଁ ତିନିଟି ଉପାୟ ସୂଚାଇଛନ୍ତି । ସେଗୁଡିକ ହେଲା (୧) ନିଷେଧ (ପ୍ରୋହିବିଶନ୍), (୨) ନିରୋଧ (ପ୍ରିଭେନ୍‌ସନ୍) ଓ ଦଣ୍ଡ ବା ଶାସ୍ତି (ପନିସ୍‌ମେଣ୍ଟ) । ର୍‍ୟାଗିଂକୁ ଏକ ଦଣ୍ଡନୀୟ ଅପରାଧ ଭାବେ ଗଣ୍ୟ କରିବା ଏବଂ ଅର୍ଡିନାନ୍‌ସ ଜରିଆରେ ବ୍ୟାନ୍ କରିବା, ଏହାର ନିରୋଧପାଇଁ ଶିକ୍ଷାନୁଷ୍ଠାନର କର୍ତ୍ତୃପକ୍ଷଙ୍କୁ ତାଲିମ ଦେବା ଓ ଉତ୍ତରଦାୟୀ କରିବା, ଫିଲ୍ମ ସେନ୍‌ସର ବୋର୍ଡକୁ ସିନେମା, ଟେଲିଭିଜନ୍‌ରେ ର୍‍ୟାଗିଂକୁ ପ୍ରତ୍ୟକ୍ଷ ବା ପରୋକ୍ଷ ପ୍ରୋତ୍ସାହନ ଦେଉଥିବା ଦୃଶ୍ୟ ପାସ୍ ନ କରିବାକୁ କହିବା, ପ୍ରସ୍‌ପେକ୍ଟସ୍, ଆଡମିଶନ ଫର୍ମଦ୍ୱାରା ବିଦ୍ୟାର୍ଥୀ ଓ ଅଭିଭାବକମାନଙ୍କୁ ସତର୍କ କରାଇବା ଓ ଆଗୁଆ ଅଣ୍ଡରଟେକିଂ ନେବା, ର୍‍ୟାଗିଂ ପ୍ରବଣ ଛାତ୍ରଛାତ୍ରୀଙ୍କର ଆଚରଣ ଓ ଆଭିମୁଖ୍ୟ ବଦଳାଇବାପାଇଁ ମାନସିକ ଚିକିତ୍ସା, ପରାମର୍ଶ ବ୍ୟବସ୍ଥା, ଆଣ୍ଟି ର୍‍ୟାଗିଂ ଭିଜିଲାନ୍‌ସ କମିଟି ଗଠନ, ଦୋଷୀ ଛାତ୍ରଙ୍କୁ ତୁରନ୍ତ ଦଣ୍ଡର ବ୍ୟବସ୍ଥା, ର୍‍ୟାଗିଂ ଋତୁରେ ନବାଗତ ଛାତ୍ରଛାତ୍ରୀଙ୍କ ସୁରକ୍ଷା ବ୍ୟବସ୍ଥା, ଅଧ୍ୟକ୍ଷମାନଙ୍କୁ ସ୍ୱତନ୍ତ୍ର କ୍ଷମତା, ମାଇଗ୍ରେସନ୍ ସାର୍ଟିଫିକେଟ୍‌ରେ ର୍‍ୟାଗିଂ ସମ୍ପର୍କରେ ଉଲ୍ଲେଖ, ର୍‍ୟାଗିଂ ବିରୋଧରେ ଦୃଢ ପଦକ୍ଷେପ ନେଉନଥିବା ଅନୁଷ୍ଠାନମାନଙ୍କୁ ଅନୁଦାନ ବନ୍ଦ ଓ ସ୍ୱୀକୃତି ପ୍ରତ୍ୟାହାର ଇତ୍ୟାଦି ଅନେକ ସୁପାରିଶ ରିପୋର୍ଟରେ ରହିଛି ।

ଏସବୁକୁ ସୁପ୍ରିମ୍‌କୋର୍ଟ ଗ୍ରହଣ କରି କହିଛନ୍ତି ଯେ "ର୍‍ୟାଗିଂ ରୋକିବା ସମ୍ପୃକ୍ତ ଶିକ୍ଷାନୁଷ୍ଠାନମାନଙ୍କର ପ୍ରଥମ ଦାୟିତ୍ୱ । ଏହା ମାନବ ଅଧିକାର ଓ ମୂଲ୍ୟବୋଧ ଉପରେ ପ୍ରତ୍ୟକ୍ଷ ଆକ୍ରମଣ ।" ଏହାକୁ ରୋକିବାପାଇଁ କେନ୍ଦ୍ର, ରାଜ୍ୟ, ବିଶ୍ୱବିଦ୍ୟାଳୟ,

ଗଣମାଧ୍ୟମ ଓ ସମ୍ପୃକ୍ତ ପରିବାରମାନଙ୍କର କର୍ତ୍ତବ୍ୟ । ଯେଉଁ ଋତୁରେ ର୍‌ୟାଗିଂ ବେଶି ହୁଏ, ସେ ସମୟର ଡ୍ରାମା, ବିତର୍କ, ସେମିନାର୍ ମାଧ୍ୟମରେ ସଚେତନତାର ଆବଶ୍ୟକତା ରହିଛି । ଅନୁଷ୍ଠାନ, ନବାଗତ ଛାତ୍ରଙ୍କୁ ଭବ୍ୟ ସ୍ୱାଗତ ଓ ସିନିୟର ବିଦ୍ୟାର୍ଥୀଙ୍କ ସହ ବନ୍ଧୁତାର ବାତାବରଣ ଓ ସୁଯୋଗ ସୃଷ୍ଟି କରିବା ଆବଶ୍ୟକ । ଶିକ୍ଷାନୁଷ୍ଠାନକୁ ଭୟମୁକ୍ତ କରିବା ଶିକ୍ଷକ, ଅଧ୍ୟକ୍ଷ ଓ ବରିଷ୍ଠ ଛାତ୍ରଛାତ୍ରୀଙ୍କର ଆଚରଣ ଉପରେ ନିର୍ଭର କରେ । ର୍‌ୟାଗର୍ ଯେଉଁ ପରିବାରରୁ ଆସୁଛନ୍ତି ସେଇ ପରିବାର ସମ୍ପର୍କରେ ଅଧିକ ଧ୍ୟାନ ଗବେଷଣା ଆବଶ୍ୟକ ।

ସାଧାରଣତଃ ଗରିବ ଓ ସଂସ୍କୃତିସମ୍ପନ୍ନ ପରିବାରର ପିଲାଏ ର୍‌ୟାଗିଂ କରନ୍ତି ନାହିଁ । କିନ୍ତୁ ଏହା ମଧ୍ୟ ଏକ ବିଷଚକ୍ର, କାରଣ ର୍‌ୟାଗିଂ ପୀଡିତ ପିଲାଏ ଭାବନ୍ତି, ସିନିଅର୍ ହେଲା ପରେ ଜୁନିଅର୍‌ଙ୍କୁ ର୍‌ୟାଗିଂ କରିବା ତାଙ୍କର ଯେପରି ସ୍ୱାଭାବିକ ଅଧିକାର - ଶାଶୂ-ବୋହୂ ମାନସିକତାର ଏକ ଅନ୍ୟରୂପ । ତେଣୁ ଶିକ୍ଷାନୁଷ୍ଠାନମାନେ ଏକଜୁଟ ହୋଇ ର୍‌ୟାଗିଂରୁ ନିଜ ନିଜ ଅନୁଷ୍ଠାନକୁ ରକ୍ଷା କରନ୍ତୁ । ସରକାର, ସମାଜ, ନ୍ୟାୟାଳୟ, ସାଧାରଣ ଜନତା ଓ ବିଶେଷ କରି ସଂଖ୍ୟାଧିକ ଛାତ୍ରଛାତ୍ରୀ ସମସ୍ତେ ତାଙ୍କ ପଛରେ ଅଛନ୍ତି । ଯେଉଁ ଦେଶମାନଙ୍କରୁ ର୍‌ୟାଗିଂ ରୋଗ ଆମଦାନୀ ହୋଇଥିଲା ସେଇ ଦେଶର ଶିକ୍ଷାନୁଷ୍ଠାନମାନେ ଏକାଠି ହୋଇ ର୍‌ୟାଗିଂ ରାକ୍ଷସକୁ ଜବତ୍ କରିସାରିଲେଣି । ଆମେ କାହିଁକି ଆମ ପିଲାଙ୍କୁ ରକ୍ଷା କରି ପାରିବା ନାହିଁ ?

*୨୦ ଅଗଷ୍ଟ, ୨୦୦୯*



# ହିନ୍ଦ୍ ସ୍ୱରାଜ :

# ସ୍ୱାଧୀନତାର ନୂଆ ସଂଜ୍ଞା

ଶହେ ବର୍ଷ ତଳର କଥା । ମୋହନ ଦାସ କରମଚାନ୍ଦ ଗାନ୍ଧୀ ଜଳପଥରେ ଫେରୁଥାନ୍ତି ଲଣ୍ଡନରୁ ଦକ୍ଷିଣ ଆଫ୍ରିକା । ଜଳ ଜାହାଜଟିର ନାଁ 'କିଲ୍‌ଡୋନମ୍ କାଶଲ' । ୧୯୦୯ ମସିହା ନଭେମ୍ବର ୧୩ ତାରିଖ । କାହା ସହ କଥା ହେବାକୁ ସମୟ ନଥାଏ । ଲେଖୁଥାନ୍ତି ପୃଷ୍ଠା ପରେ ପୃଷ୍ଠା । ଡାହାଣ ହାତ ଥକିଗଲେ ବାମ ହାତରେ ଲେଖୁଥାନ୍ତି, ଦୁଇ ହାତ ଥକିଗଲେ ଦୁଇମିନିଟ୍ ଆଖି ବୁଜି ବସିଲା ପରେ ପୁଣି ଲେଖିବା ଆରମ୍ଭ କରି ଦେଉଥାନ୍ତି । ସହଯାତ୍ରୀମାନେ ତାଙ୍କର ଏପରି ଆଚରଣ ଦେଖି ଭାବୁଥାନ୍ତି ଲୋକଟି ବୋଧେ କୌଣସି ଅସ୍ୱାଭାବିକ ଖିଆଲି ଅବସ୍ଥାରେ ଅଛି । ଏହିପରି ଅବସ୍ଥା ରହିଲା ଦଶ ଦିନ- ନଭେମ୍ବର ୧୩ ରୁ ୨୨ ପର୍ଯ୍ୟନ୍ତ । ଦକ୍ଷିଣ ଆଫ୍ରିକାରୁ ଗାନ୍ଧିଜୀ ଏହାର ଏକ କପି ଭାରତ ପଠାଇ ଥିଲେ । ୧୯୧୦ ମସିହା ମାର୍ଚ୍ଚ ୧୦ ତାରିଖରେ ଏହି ହାତ ଲେଖା ପାଣ୍ଡୁଲିପିଟିକୁ ପୁଲିସ୍ ଜବତ କରିନେଲେ ବମ୍ବେ ବନ୍ଦରଠାରେ ଓ ତାକୁ ମାଡ୍ରାସ ହାଇକୋର୍ଟରେ ପେସ୍ କଲେ । ବିଚାରପତି ଗୁଜୁରାଟି ଜାଣି ନଥିବାରୁ ଜଣେ ଅନୁବାଦକ ନିଯୁକ୍ତ ହେଲେ । ଖବର ପାଇ ବିଚାରପତିଙ୍କୁ ସାହାଯ୍ୟ କରିବା ପାଇଁ ମୋହନ ଦାସ ତରତରରେ ପାଣ୍ଡୁଲିପିଟିକୁ ଇଂରାଜୀ ଭାଷାରେ ଲେଖି ପଠାଇ ଦେଲେ । ସେଇବର୍ଷ ଦେଶଦ୍ରୋହ ପ୍ରଚାର ଅଭିଯୋଗରେ ଏହାକୁ ନିଷିଦ୍ଧ କରାଗଲା । ଏହି ଦ୍ୱିଭାଷୀ ପୁସ୍ତକଟିର ନାଁ 'ହିନ୍ଦ୍ ସ୍ୱରାଜ' । ୨୦୦୯ ମସିହାରେ ପୁସ୍ତକଟିର ବୟସ ୧୦୦ ବର୍ଷ ପୂରିଲା ।

କ'ଣ ଅଛି ଏ ପୁସ୍ତକରେ ଯାହାର ଶତବାର୍ଷିକୀ ପାଳନ ହେଲା ପୃଥିବୀର ବିଭିନ୍ନ ଅଞ୍ଚଳରେ ? କାରଣ ୧୯୦୯ ରୁ ୨୦୦୯ ମଧ୍ୟରେ ସାରା ପୃଥିବୀରେ ଦ୍ରୁତ

ପରିବର୍ତ୍ତନ ଘଟିଯାଇଛି, କିନ୍ତୁ ଗାନ୍ଧିଜୀଙ୍କ ବିଚାର ଓ ଦର୍ଶନ ଏବେ ବି ଅମ୍ଳାନ ରହିଛି । ହିନ୍ଦ ସ୍ୱରାଜ ସେଇ ବିଚାର ଓ ଦର୍ଶନର ଏକ ଝରକା ଓ ପ୍ରତିଛବି । ଏଥିରେ ଗାନ୍ଧୀଜୀ ସେତେବେଳର ଦୁଇଟି ଲୋକପ୍ରିୟ ସିଦ୍ଧାନ୍ତ ବା ତତ୍ତ୍ୱକୁ ସିଧାସଳଖ ପ୍ରତ୍ୟାଖ୍ୟାନ କରି ଦେଇଛନ୍ତି । ପ୍ରଥମଟି ହେଲା ମାକିଆଭେଲିଙ୍କ 'ମାଇଟ୍ ଇଜ୍ ରାଇଟ' ଥିଓରି ବା ଦୁର୍ବଳ ଉପରେ ବଳଶାଳୀଙ୍କ ପ୍ରଭୁତ୍ୱ ନ୍ୟାୟ ସଂଗତ ବା ବଳ ଯାହାର ରାଜ୍ୟ ତାହାର ବିଚାରଧାରା । ଏବଂ ଦ୍ୱିତୀୟଟି ହେଲା 'ସରଭାଇଭାଲ ଅଫ୍ ଦି ଫିଟେଷ୍ଟ' ତତ୍ତ୍ୱ ଯାହାକୁ ପ୍ରସିଦ୍ଧ ଅର୍ଥନୈତିଜ୍ଞ ଆଦମ୍ ସ୍ମିଥ ସମର୍ଥନ କରୁଥିଲେ । ସେ କହୁଥିଲେ ସ୍ୱାର୍ଥ ନୀତି ହିଁ ସଫଳ ଅର୍ଥନୀତି ।

ତେଣୁ 'ହିନ୍ଦ ସ୍ୱରାଜ'ରେ ତିନିଟି ବିଷୟ ବାରମ୍ବାର ଉପସ୍ଥାପନ କରାଯାଇଛି- (୧) ଉପନିବେଶଭିତ୍ତିକ ସାମ୍ରାଜ୍ୟବାଦ (୨) ଶିଳ୍ପଭିତ୍ତିକ ପୁଞ୍ଜିବାଦ ଓ (୩) 'ହେତୁ' ଭିତ୍ତିକ ଭୋଗବାଦ । ପ୍ରଥମ ବିଷୟଟିକୁ ବ୍ୟାଖ୍ୟା କରି ଗାନ୍ଧୀ କହୁଥିଲେ ଇଂରେଜ ଓ ତାଙ୍କ ପୂର୍ବରୁ ଓ ଅନ୍ୟ ବିଦେଶୀମାନେ ପ୍ରକୃତରେ ଭାରତକୁ ଅଧିକାର କରି ନଥିଲେ । ବରଂ ଆମେ ସେମାନଙ୍କୁ ଏ ଅଧିକାର ସମର୍ପଣ କରିଥିଲେ । ନିଜ ବଳରେ ସେମାନେ ଭାରତରେ ତିଷ୍ଠି ନଥିଲେ । ବାଣିଜ୍ୟ ବ୍ୟବସାୟପାଇଁ ଆସିଥିବା ବଣିକ ଆମକୁ କିଣିଲେ । ସେହିପରି ଉପନିବେଶବାଦର ମୂଳ ଶକ୍ତି ହେଲା ପୁଞ୍ଜି । ଶିଳ୍ପ ଶ୍ରମିକଙ୍କ ଶୋଷଣରୁ ସୃଷ୍ଟି ହେଲା ପୁଞ୍ଜି । କେବଳ ପ୍ରଣାଳୀ ଛଡା ଏ ବିଷୟରେ ଗାନ୍ଧୀ ଓ ମାର୍କସ୍‌ଙ୍କ ମଧ୍ୟରେ ମତ ପାର୍ଥକ୍ୟ ନଥିଲା । ଗାନ୍ଧୀଙ୍କ ସ୍ୱଦେଶୀ ଥିଲା ଏଇ ପୁଞ୍ଜି ଉପରେ ପ୍ରଥମ ପ୍ରହାର ।

ସେହିପରି ଭୋଗବାଦ ଉପରେ ହିନ୍ଦ୍ ସ୍ୱରାଜରେ ଗାନ୍ଧୀଜୀଙ୍କ ମତ ୧୯୦୯ ରେ ଯାହା ଥିଲା ୧୯୪୮ ରେ ବି ସେୟା ଥିଲା । ସେ କହୁଥିଲେ ପ୍ରକୃତ ସଭ୍ୟତାର ବ୍ୟାବହାରିକ ଲକ୍ଷଣ ହେଉଛି, ତାହା ନିଜ କର୍ତ୍ତବ୍ୟ ପାଳନ ଦିଗରେ ବାଟ ଦେଖାଏ । କର୍ତ୍ତବ୍ୟ ପାଳନର ଅର୍ଥନୈତିକ ଆଚରଣ କରିବା ଏବଂ ନୈତିକତା ପାଳନର ଅର୍ଥ ହେଉଛି ନିଜ ମନ ଓ ଇନ୍ଦ୍ରିୟ ପ୍ରେରିତ ଭୋଗଲାଳସାଗୁଡିକୁ ନିଜ ଆୟତ୍ତରେ ରଖିବା । ନହେଲେ ଭୋଗବାଦୀ ସଂସ୍କୃତି ଆମ ସଭ୍ୟତାର ସର୍ବନାଶ ଘଟାଇବ । ଏହା ଅଧିକ ଚୋର, ଡକାୟତ ସୃଷ୍ଟି କରିବ, ପାପାଚାରୀଙ୍କ ସଂଖ୍ୟା ବଢିବ, ଧନୀମାନେ ଗରିବଙ୍କୁ ଲୁଣ୍ଠନ କରିବେ । ହାତ, ଗୋଡକୁ ଖଟେଇ କାମ କରିବା ଭଳି ସ୍ୱାସ୍ଥ୍ୟକର ଅଭ୍ୟାସ ବନ୍ଦ ହୋଇଯିବ । ସହରୀକରଣ ଓ ଭୋଗବାଦଯୋଗୁଁ ରୋମାନ୍, ଗ୍ରୀସୀୟ ଓ ମିଶରୀୟ ସଭ୍ୟତା ଲୋପ ପାଇଯାଇଛି । କଳକାରଖାନା ଓ ଯାନ୍ତ୍ରିକ ସଂସ୍କୃତି ୟୁରୋପ,

ଆମେରିକାର ସଭ୍ୟତାକୁ  ଦୁର୍ବଳ କରିଦେଲାଣି । ତେଣୁ ଆମ ପୂର୍ବ ପୁରୁଷମାନେ ବଡ ବଡ ଯନ୍ତ ଓ କଳକାରଖାନା ଜଞ୍ଜାଳରୁ ଦୂରରେ ରହୁଥିଲେ । ଅରଟ, ଲଙ୍ଗଳ, କୋଡି, କୋଦାଳ ଭଳି ଛୋଟ ଛୋଟ ଯନ୍ତଦ୍ୱାରା କାମ କରୁଥିଲେ ।

'ହିନ୍ଦ ସ୍ୱରାଜ'ରେ ବାପୁ ସ୍ୱରାଜ, ସ୍ୱଦେଶୀ, ସ୍ୱତନ୍ତ୍ର, ସର୍ବୋଦୟ ଓ ସତ୍ୟ ଉପରେ ନିଜ ମତ ରଖିଛନ୍ତି । ତାଙ୍କ ମତରେ ସ୍ୱରାଜର୍ ପ୍ରକୃତ ଅର୍ଥ ହେଉଛି ସର୍ବୋଦୟ । 'ସ୍ୱରାଜ' ଅର୍ଥାତ୍ ନିଜ ଉପରେ 'ରାଜ' ବା ନିୟନ୍ତ୍ରଣ ନ ରହିଲେ ସ୍ୱତନ୍ତ୍ରତା ଆସିବ ନାହିଁ । ଆତ୍ମ ପରୀକ୍ଷା, ଆତ୍ମ ଶୋଧନ ଓ ଆତ୍ମ ଦର୍ଶନଦ୍ୱାରା ହେବ ଆତ୍ମ ନିୟନ୍ତ୍ରଣ ଏବଂ ଆତ୍ମ ନିୟନ୍ତ୍ରିତ ବ୍ୟକ୍ତି ଓ ସମାଜପାଇଁ ସରକାରୀ ନିୟନ୍ତ୍ରଣର ଆବଶ୍ୟକତା ପଡିବ ନାହିଁ । ବାପୁ ସଦାବେଳେ 'ମିନିମାଲିଷ୍ଟ' ବା ସ୍ୱଳ୍ପତମ ଶାସନ ବ୍ୟବସ୍ଥା ସପକ୍ଷରେ ଯୁକ୍ତି କରୁଥିଲେ, କାରଣ ସରକାର ପ୍ରାୟତଃ କ୍ଷମତା ଓ ହିଂସାର ପ୍ରୟୋଗରେ ଆସ୍ଥା ରଖିଥାନ୍ତି । ଏବଂ ସଚ୍ଚା ସ୍ୱରାଜ କର୍ମୀ ସେଇମାନେ ଯେଉଁମାନେ ଆତ୍ମବଳରେ ବଳୀୟାନ୍ ଓ ପଶୁବଳ ପ୍ରୟୋଗକୁ ପ୍ରତ୍ୟାଖ୍ୟାନ କରୁଥିବେ ।

ସ୍ୱାଧୀନତା ଓ 'ସ୍ୱ' ରାଜପାଇଁ ଶକ୍ତି ଆବଶ୍ୟକ । କ'ଣ କଲେ ଏ ଶକ୍ତି ମିଳିବ, ଗାନ୍ଧୀ ତା'ର ୧୯ ଟି ଉଦାହରଣ ଦେଇଛନ୍ତି ହିନ୍ଦ ସ୍ୱରାଜରେ । ସେଗୁଡିକ ମଧ୍ୟରେ ଅଛି ସରକାରୀ ପେଷା ଛାଡିଦେବା, ଘରେ ଅରଟରେ ସୂତା କାଟିବା, ଓକିଲ ହୋଇଥିଲେ ବାଦୀ-ପ୍ରତିବାଦୀଙ୍କ କଳିରେ ନ ପଶିବା, ଡାକ୍ତର ହୋଇଥିଲେ ଶରୀର ସହ ଆତ୍ମାର ଆରୋଗ୍ୟପାଇଁ ଯତ୍ନ କରିବା, ଧନବାନ ହୋଇଥିଲେ ନିର୍ଭୟରେ ସତ୍ୟପଥରେ ଚାଲିବା ଓ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର କରିବା, ଇଂରେଜଙ୍କୁ ନିନ୍ଦା ନ କରି ନିଜକୁ ସଜାଡିବା, ବିଳାସ ବ୍ୟସନରୁ ଦୂରରେ ରହିବା, ପରାଧୀନତା ବନ୍ଧନରୁ ମୁକ୍ତିପାଇଁ ଦୁଃଖ, କଷ୍ଟ ସହିବାର ସାମର୍ଥ୍ୟ ଓ ଧୈର୍ଯ୍ୟ, କଥା କହିବା ଅପେକ୍ଷା କାର୍ଯ୍ୟରେ କରି ଦେଖାଇବା, ପରାଧୀନତାପାଇଁ ଶୋକ, ଅନୁତାପ ଓ ପ୍ରାୟଶ୍ଚିତ୍ତ; କାରଣ ଭାରତୀୟମାନେ ନିଜେ ନିଜର ସ୍ୱାଧୀନତା ଅନ୍ୟ ହାତରେ ଟେକି ଦେଇଛନ୍ତି । ଯେ ପର୍ଯ୍ୟନ୍ତ ଏହିପରି ୧୯ ଟି ଆଚରଣ ଅନୁସରଣ କରୁଥିବା ଜଣେ ବ୍ୟକ୍ତି ବି ଦେଶରେ ଥିବେ, ସେ ଦେଶ ଛାଡିଯିବାକୁ ମହା ପରାକ୍ରମୀ ଇଂରେଜ ସରକାର ବାଧ୍ୟ ହେବେ । ଆମେ ଯେଉଁ କାରଣରୁ ଆଜି ବିଦେଶୀ ଶାସନକୁ ବିରୋଧ କରୁଛେ, କାଲି ଦେଶୀମାନେ ଯଦି ସେପରି ଶାସନ ଚଳାଇବେ, ତେବେ ସେମାନଙ୍କୁ ମଧ୍ୟ ଏହି ଉପାୟରେ ହଟାଇବାକୁ ପଡିବ ।ସରକାର ମା, ବାପା ମାନସିକତାକୁ ପରିତ୍ୟାଗ କରିବାକୁ ପଡିବ । ଏବଂ କହୁଥିଲେ "ମୁଁ ଏମିତି ଲୋକମାନଙ୍କୁ ଖୋଜୁଚି ଯେଉଁମାନେ

ହିଂସା ବା ଅର୍ଥବଳ ଅପେକ୍ଷା ନୈତିକ ଶକ୍ତି ଓ ବ୍ୟକ୍ତିଗତ ଉଦାହରଣଦ୍ୱାରା ସମାଜରେ ପରିବର୍ତ୍ତନ ଆଣିବାକୁ ଚାହାନ୍ତି ।"

ସେହିପରି ଶିକ୍ଷା ସମ୍ପର୍କରେ ହିନ୍ଦ୍ ସ୍ୱରାଜରେ ଏକ ସ୍ପଷ୍ଟ ଚିତ୍ର ରଖିଯାଇଛନ୍ତି ବାପୁ । ଶିକ୍ଷା କେବଳ ଅକ୍ଷର ଜ୍ଞାନ, ପଠନ, ଲିଖନ, ଗଣିତ, ଜ୍ୟାମିତି, ବିଜ୍ଞାନ ନୁହେଁ । ବରଂ ଯେ କୈଶୋର ଓ ଯୁବାବସ୍ଥାରେ ଏପରି ଶିକ୍ଷା ଓ ତାଲିମ ପାଇଛନ୍ତି ଯାହାଫଳରେ ତାଙ୍କର ଶରୀର ଇଚ୍ଛା ଓ ଆତ୍ମଶକ୍ତିର ସଦା ଆଜ୍ଞାବନ୍ଧ, ମୌଳିକ ସତ୍ୟ ଓ ମୂଲ୍ୟବୋଧଗୁଡ଼ିକର ଜ୍ଞାନ ଓ ଆଚରଣରେ ଯେ ଦକ୍ଷ, ଯାହାଙ୍କର ଉଗ୍ର ଇନ୍ଦ୍ରିୟ ବାସନାଗୁଡ଼ିକ ନିଜ ଆୟତ୍ତ ଓ ଯେ କୋମଳ ବିବେକ ଶକ୍ତିଦ୍ୱାରା ସେଗୁଡ଼ିକୁ ବଶ କରି ରଖିପାରନ୍ତି, ଯେ ନୀଚତାକୁ ଘୃଣା ଓ ଅନ୍ୟକୁ ଆପଣା ପରି ସମ୍ମାନ ଦିଅନ୍ତି, ସେ ହିଁ ପ୍ରକୃତରେ ଶିକ୍ଷିତ ।

ହିନ୍ଦୁ ଧର୍ମକୁ ମଧ୍ୟ ବାପୁ ଏକ ଉଦାର ସର୍ବଧର୍ମ ସମଭାବାପନ୍ନ ଧର୍ମ ଭାବରେ ବୁଝିଥିଲେ । ହିନ୍ଦୁ ଓ ମୁସଲମାନଙ୍କୁ ଭାରତ ମାତାର ଦୁଇ ଆଖି ବୋଲି କହୁଥିଲେ । ଏକ ଶ୍ରେଣୀହୀନ ସମାଜ ହିଁ ଭାରତର ଆଦର୍ଶ ବୋଲି ବାରମ୍ବାର କହୁଥିଲେ । ଜାତିପ୍ରଥା ଓ ଅସ୍ପୃଶ୍ୟତା ବିରୋଧରେ ସଂଗ୍ରାମ କରି କରି ଥକି ନଥିଲେ । ଶେଷରେ ସେ କହିଥିଲେ, ଭାରତରେ କେବଳ ଗୋଟିଏ ଜାତିର ଆବଶ୍ୟକତା ଅଛି ଓ ସେଇ ଜାତିଟିର ସୁନ୍ଦର ନାଁଟି ହେଲା ଭାଙ୍ଗି (ବା ଦଳିତ) । ଏଇମାନେ ଦିନେ ଆମ ସମାଜ , ସଂସ୍କୃତି ଓ ବିଚାରରେ ଯେଉଁ ମଳି ଓ ମଳ ଅଛି ତାକୁ ସଫା କରି ସୁସ୍ଥ ଭାରତ ଗଢ଼ିବେ ।

୧୯୧୭ ମସିହାରେ ଗାନ୍ଧୀଜୀ 'ସ୍ୱରାଜ' ଗଣ ଦାବୀ ପତ୍ରରେ ଦସ୍ତଖତ ଦେବାକୁ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ । ସମର୍ଥକ ମଧ୍ୟରେ ଥିଲେ ସର୍ଦାର ବଲ୍ଲଭ ଭାଇ ପଟେଲ, ବିନାୟକ ଦାମୋଦର ସାଭରକର, ମୌଲାନା ଆଜାଦ ଓ ରାମ ମନୋହର ଲୋହିଆ । ଦୁଇ ବର୍ଷ ପରେ 'ସ୍ୱରାଜ' ବିଚାର ପ୍ରଚାରପାଇଁ ଗଢ଼ା ହେଲା ନବଜୀବନ ଟ୍ରଷ୍ଟ । ତା ପରେ ପରେ ଗାନ୍ଧୀଜୀ ପ୍ରତିଷ୍ଠା କଲେ ଅଖିଳ ଭାରତୀୟ ଗ୍ରାମ୍ୟ ଶିଳ୍ପ ସଂସ୍ଥା, ହରିଜନ ସେବକ ସଂଘ, ଲେପ୍ରୋସି ଫାଉଣ୍ଡେସନ, ଖଦୀ ଆନ୍ଦୋଳନ ସ୍ୱରାଜ ସମର୍ଥନରେ । ଏହାର ସିମ୍ବଲ ବା ପ୍ରତୀକ ଥିଲା ଚରଖା । ୧୯୨୦ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ସଭ୍ୟମାନେ 'ସ୍ୱରାଜ' ବିଚାରକୁ ସମର୍ଥନ କରିଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ପଣ୍ଡିତ ନେହେରୁ 'ସ୍ୱରାଜ' ବିଚାରଧାରାକୁ 'ସମ୍ପୂର୍ଣ୍ଣ ଅବାସ୍ତବ' କହି ରାଜନୀତିକ ସ୍ୱରାଜକୁ ପ୍ରାଧାନ୍ୟ ଦେଇଥିଲେ ।

ଗାନ୍ଧୀଜୀଙ୍କ ହତ୍ୟା ପରେ ଆଚାର୍ଯ୍ୟ ବିନୋବା ଭାବେ ଜାତୀୟ ସ୍ତରରେ 'ସର୍ବ ସେବା ସଂଘ' ଓ ଆଞ୍ଚଳିକ ସ୍ତରରେ 'ସର୍ବୋଦୟ ମଣ୍ଡଳ'ମାନ ପ୍ରତିଷ୍ଠା କରି ଗାନ୍ଧୀଙ୍କ ସ୍ୱପ୍ନର ଭାରତ ଓ 'ହିନ୍ଦ୍ ସ୍ୱରାଜ' ବିଚାରଧାରାକୁ ପ୍ରଥମେ 'ଭୂଦାନ ଆନ୍ଦୋଳନ' ମାଧ୍ୟମରେ କାର୍ଯ୍ୟକାରୀ କରିଥିଲେ ଓ ପରେ ଜୟପ୍ରକାଶଙ୍କ ପ୍ରେରଣାରେ ଏହା 'ସମ୍ପୂର୍ଣ୍ଣ କ୍ରାନ୍ତି' ଆନ୍ଦୋଳନର ରୂପ ନେଇ ତାଙ୍କ ପରେ ପୁଣି ମଉଳିଗଲା । ତେବେ ଏକମାତ୍ର ଆଶ୍ୱସନାର କଥା ଯେ ସମ୍ବିଧାନ ସଂଶୋଧନ କରି ଗାନ୍ଧୀଜୀଙ୍କ 'କ୍ଲାସଲେସ, ଷ୍ଟେଟଲେସ ଡାଇରେକ୍ଟ ଡେମୋକ୍ରାସି' ଚିନ୍ତାଧାରାକୁ ଏବେ ପଞ୍ଚାୟତିରାଜ ମାଧ୍ୟମରେ ସୀମିତ ରୂପରେ କାର୍ଯ୍ୟକାରୀ କରାଯାଉଛି । ଆଧୁନିକ ଭାରତ ଗାନ୍ଧୀଜୀଙ୍କୁ ଭୁଲି ଯାଇ ନଥିଲେ ବି ବିଦେଶୀ ସଂସ୍କୃତିର ପ୍ରଭାବରୁ ମୁକୁଳି ପାରି ନାହିଁ । ହିନ୍ଦ ସ୍ୱରାଜର ଶତବାର୍ଷିକୀ ପାଳନ ଅବସରରେ ଆଉ ଥରେ, ଗଭୀର ଭାବରେ ଗାନ୍ଧୀଜୀଙ୍କ ଦର୍ଶନ ଓ ବିଚାର ଉପରେ ବିଚାର କରିବାର ସମୟ ଆଜି ଉପସ୍ଥିତ । ଘୋଡା ଦୌଡ, ମୂଷା ଦୌଡ ଓ ଭାଗ୍ ଦୌଡ ମୁହୂର୍ତ୍ତେ ବନ୍ଦ କରି ଆସନ୍ତୁ ଆଜି ଆତ୍ମସମୀକ୍ଷା କରିବା ।

*୧୦ ସେପ୍ଟେମ୍ବର, ୨୦୦୯*



# ଦୁର୍ନୀତିର ଦୃଶ୍ୟପଟ

ଲାଞ୍ଚୁଆ, ସର୍ବଗିଳା ଓ ଖାଉ ମହାବାହୁଙ୍କପାଇଁ ବ୍ୟବସାୟୀ ଓ କମ୍ପାନିମାନେ ଯେଉଁ 'କୁଗା' ଖାତାରେ ହିସାବ ରଖିଥାନ୍ତି, ତା'ଦ୍ୱାରା ଦୁର୍ନୀତିଗ୍ରସ୍ତଙ୍କୁ ଧରିବା ସହଜ ନୁହେଁ । କାରଣ ସୁଇସ୍ ବ୍ୟାଙ୍କ୍‌ରେ ବି 'କୁଗା'ଙ୍କର ୭୦ ଲକ୍ଷ କୋଟି ଟଙ୍କାର ଖାତା ଅଛି ଓ ବ୍ୟାଙ୍କ ଭାରତ ସରକାରଙ୍କୁ ତା'ର ହିସାବ ଓ ବ୍ୟକ୍ତିଙ୍କର ନାଁ ଜଣାଇବାକୁ ରାଜି ହେଉନାହିଁ । ଏମାନଙ୍କ ହାତ ବହୁତ ଲମ୍ବା । ତେବେ ଭାରତରେ 'କୁଗା ଖାତା'ର କଳେବର ବୃଦ୍ଧି ଦେଖି ସ୍ୱୟଂ ପ୍ରଧାନମନ୍ତ୍ରୀ ବି ବିବ୍ରତ । ଅଗଷ୍ଟ ୨୬ ତାରିଖ ଦିନ (୨୦୦୯) ସି.ବି.ଆଇ. ଓ ରାଜ୍ୟ ଭିଜିଲାନ୍‌ସ ମୁଖ୍ୟମାନଙ୍କୁ ସମ୍ବୋଧନ କରି ମନମୋହନ ସିଂହ କହିଛନ୍ତି - ନିର୍ଭୟରେ ନିଜ କର୍ତ୍ତବ୍ୟ କର ଓ ପ୍ରଥମେ 'ବିଗ୍ ଫିସ୍' ବା ବଡ ବଡିଆ ମାଛଙ୍କୁ ଜାଲ ପକାଇ ଧର ଓ ରାସ୍ତା ସଫା କର । ଏଥିପାଇଁ ଅଫିସରମାନଙ୍କୁ ସାମ୍ବିଧାନିକ ସୁରକ୍ଷା ଦିଆଯାଇଛି । ଗୁଲ୍‌ଜାରୀଲାଲ ନନ୍ଦା ଓ ରାଜୀବ ଗାନ୍ଧୀଙ୍କ ପରେ ଏପରି କଡ଼ା ଶବ୍ଦ ଶୁଣିବାକୁ ବହୁ ଦିନ ପରେ ମିଳିଲା । ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲଙ୍କ ଭାଷା ଏହାଠାରୁ ଅଧିକ କଠୋର ଥିଲା । ସେ କହୁଥିଲେ, ଦୁର୍ନୀତି ଖୋରଙ୍କୁ ସବୁଠାରୁ ପାଖ ବତିଖୁଣ୍ଟ (ନିଅରେଷ୍ଟ ଲ୍ୟାମ୍ପ୍ ପୋଷ୍ଟ)ରେ ଫାଶୀ ଚଢାଅ । କିନ୍ତୁ ଏପର୍ଯ୍ୟନ୍ତ କେହି ଜଣେ ହେଲେ ଫାଶୀ ଚଢ଼ି ନାହାନ୍ତି । ୭୦ ଓ ୮୦ ଦଶକରେ ତ ଦୁର୍ନୀତିକୁ ଏକ ବିଶ୍ୱବ୍ୟାପୀ ସମସ୍ୟା (ଗ୍ଲୋବାଲ୍ ଫେନୋମେନା) କହି ହାଲୁକା କରି ଦିଆଯାଇଥିଲା । ରାଷ୍ଟ୍ରପତି ଅବଦୁଲ୍ କାଲାମ ବାରମ୍ବାର ଏକ ଦୁର୍ନୀତିମୁକ୍ତ ଭାରତ କଥା କହୁଥିଲେ ।

ନିର୍ମଳ ଛବିଧାରୀ ପ୍ରଧାନମନ୍ତ୍ରୀଙ୍କ ଉକ୍ତି ଓ ଆଦର୍ଶକୁ ବରିଷ୍ଠ ଅଧିକାରୀମାନେ କେମିତି ପାଳିବେ ଦେଖିବାକୁ ରହିଲା । ଅତୀତରେ ସରକାରଙ୍କ କଥାକୁ ସତ ଭାବି ରାଷ୍ଟ୍ରୀୟ ରାଜପଥ ଇଞ୍ଜିନିଅର ସତ୍ୟେନ୍ଦ୍ର ଦୁବେ ଓ ପରେ ମଞ୍ଜୁନାଥ (୨୦୦୩) ଓ

ଜଣେ ସଚ୍ଚୋଟ ଆଇଏଏସ୍ ଅଫିସର ବିଜୟ କୁମାର (୨୦୦୫) ମହାଚୋରମାନଙ୍କୁ ଧରିବା ପ୍ରକ୍ରିୟାରେ ମୃତ୍ୟୁମୁଖରେ ପଡ଼ିଥିଲେ । ଓଡ଼ିଶାରେ ନେତାଙ୍କ ଚାପ ଏତେ ଅଧିକ ଓ ଅଧିକାରୀମାନେ ଏତେ ଦୁର୍ବଳମନା ଓ ଡରୁଆ ଯେ 'ବଡ଼ମାଛ'ମାନଙ୍କୁ ଜାଲରେ ପକାଇବା ଏକ କଷ୍ଟସାଧ୍ୟ ବ୍ୟାପାର । ଏଠି ତ ପୁଲିସ୍ ଅଧିକାରୀମାନେ ନକ୍ସଲ, ମାଓବାଦୀଙ୍କ ନାଁ ଶୁଣୁ ଶୁଣୁ ଛାନିଆଁରେ ଥାନା ଛାଡି ପଳାଇ ଯାଆନ୍ତି, ଦୁର୍ନୀତି-ଡକାଏତ୍‌ମାନଙ୍କୁ ଧରିବେ କେମିତି ? ଯେଉଁମାନଙ୍କର କିଞ୍ଚିତ୍ ସାହସ ଅଛି ସେମାନେ ଏହି ଅପ୍ରିୟ ଦାୟିତ୍ୱ ନେବାକୁ ଚାହାନ୍ତି ନାହିଁ, କାରଣ ସମସ୍ତଙ୍କୁ ଜଣା । ତେଣୁ ଆମ ରାଜ୍ୟରେ 'କରପ୍‌ସନ୍' ବିଷୟରେ ଆଲୋଚନା ବେଶି, କାମ କମ୍ । ଓଡ଼ିଶାରେ ୨୧ ହଜାର ସ୍ୱେଚ୍ଛାସେବୀ ସଂସ୍ଥା ମଧ୍ୟରୁ କେବଳ 'କରପ୍‌ସନ୍' ଉପରେ କାମ କରୁଥିବା ପଞ୍ଜୀକୃତ ଅନୁଷ୍ଠାନ ମାତ୍ର ଗୋଟିଏ ।

ଶବ୍ଦକୋଷରେ 'କରପ୍‌ସନ୍'ର ସଂଜ୍ଞା ଓ ଅର୍ଥ ବିଭିନ୍ନ । ଅସାଧୁତା, ଚରିତ୍ରହୀନତା, ଅନୈତିକତା, ଖଳ ପ୍ରକୃତି, ସନ୍ଦେହପୂର୍ଣ୍ଣ ଆଚରଣ, ଅପମିଶ୍ରଣ ଅଭ୍ୟାସ, ପ୍ରୀୟାପ୍ରୀତି ତୋଷଣ, ସ୍ୱାର୍ଥପରତା, ହଇରାଣ ହରକତ କରିବା, ଆଦର୍ଶରୁ ବିଚ୍ୟୁତି, ଶୋଷଣ, ଠକେଇ, ଅନ୍ୟାୟ, କ୍ଷମତା, ଅପବ୍ୟୟ, ଲାଞ୍ଚ, ଉତ୍କୋଚ ପ୍ରବଣତା, କଳୁଷିତ, ଦୂଷିତ, ପଚାସଡା ପ୍ରକୃତି, ନିର୍ଭରହୀନତା ଇତ୍ୟାଦି ଦୁର୍ନୀତି ପର୍ଯ୍ୟାୟଭୁକ୍ତ । ୧୯୬୮ ମସିହାରେ ରବର୍ଟ ହାର୍ଟଫୋଡ୍ ଡେଭିଙ୍କ ନିର୍ଦ୍ଦେଶରେ 'ଦୁର୍ନୀତି' ନାମକ ବ୍ରିଟିଶ୍ ଚଳଚ୍ଚିତ୍ରରେ ଏ ସମ୍ପର୍କରେ ପ୍ରାଞ୍ଜଳ ଦୃଶ୍ୟ ଓ ଉଦାହରଣ ରହିଛି । ଆମ ଦେଶରେ ବି ଦୁର୍ନୀତିକୁ ଆଧାର କରି ଚଳଚ୍ଚିତ୍ରମାନ ନିର୍ମିତ ହୋଇଛି ।

ଭାରତର ପୂର୍ବତନ କେନ୍ଦ୍ରୀୟ ଭିଜିଲାନ୍‌ସ କମିସନର ଏନ୍.ବିଠଲ, ଦୁର୍ନୀତିଗ୍ରସ୍ତ ସରକାର ଓ ସମାଜର ପାଞ୍ଚଟି ନିର୍ଦ୍ଦିଷ୍ଟ ଚରିତ୍ରକୁ ଚିହ୍ନଟ କରିଛନ୍ତି । ଏମାନେ ହେଲେ (୧) ନେତା (ଦୁର୍ନୀତିଗ୍ରସ୍ତ ରାଜନୈତିକ ନେତାମାନେ), (୨) ବାବୁ (ସରକାରୀ ଅଫିସର, କର୍ମଚାରୀ), (୩) ଲାଲା (ଅସାଧୁ ବ୍ୟବସାୟୀ), (୪) ଝୋଲା (ସ୍ୱେଚ୍ଛାସେବୀ ସଂସ୍ଥାର କେତେକ ଦୁର୍ନୀତିଗ୍ରସ୍ତ କର୍ମକର୍ତ୍ତା) ଓ (୫) ଦାଦା (କ୍ରିମିନାଲ୍ ବା ଅପରାଧ ଇତିହାସ ଥିବା ଟାଉଟରମାନେ) । ନେତା, ବାବୁ, ଦାଦା, ଲାଲା ଓ ଝୋଲା - ଏଇ ପାଞ୍ଚଟି ଚରିତ୍ର ହେଉଛନ୍ତି ଦୁର୍ନୀତିକୁ ବୁଝିବାପାଇଁ ପାଞ୍ଚଟି ସୂତ୍ର । ଏମାନଙ୍କୁ ଦୁର୍ନୀତିର ପଞ୍ଚସଖା କୁହାଯାଇ ପାରିବ । ସେମିତି ଦୁର୍ନୀତି ବ୍ୟାପିବା ପଛରେ ପାଞ୍ଚଟି ପ୍ରଧାନ କାରଣ ରହିଛି । ସେଗୁଡିକ ହେଲା :- (୧) ପଣ୍ୟଦ୍ରବ୍ୟ ଓ ଜନସେବା ବ୍ୟବସ୍ଥାର ସ୍ୱଳ୍ପତା ବା କୃତ୍ରିମ ଅଭାବ, (୨) ନାଲିଫିତା ଶାସନ ଓ ଜଟିଳ

ଆଇନ୍‌କାନୁନ୍, (୩) ନିଷ୍ପତ୍ତି ନେବାରେ ବିଳମ୍ବ ଓ ସ୍ୱଚ୍ଛତାର ଅଭାବ, (୪) ଦଣ୍ଡରୁ ଖସିବାପାଇଁ କୋର୍ଟ, କଚେରି, ଦାମିକା ଓକିଲ ଓ ପ୍ରଭାବଶାଳୀ ପରିବାରଙ୍କ ଆଶ୍ରୟ ଓ (୫) ଟ୍ରାଇବାଲିଜମ୍ ଅର୍ଥାତ୍ ପରସ୍ପରକୁ ସୁରକ୍ଷା ଦେବା - ହେଁସ କାହିଁ ପାଇଁ ଧୋଇବା ପ୍ରକୃତି ଓ ପ୍ରବୃତ୍ତି ।

୨୦୦୭ ମସିହାରେ ସେଣ୍ଟର ଫର୍ ମିଡିଆ ଷ୍ଟଡିଜ୍ (ସିଏମ୍‌ଏସ୍) ଓ ଟ୍ରାନ୍‌ସପାରେନ୍‌ସି ଇଣ୍ଟରନାସନାଲ ମିଶି 'ଭାରତରେ ଦୁର୍ନୀତି' ଉପରେ ଯେଉଁ ଅଧ୍ୟୟନ ଓ ଗବେଷଣା କରିଥିଲେ ତାହାର ରିପୋର୍ଟ ଅନୁସାରେ ସେ ବର୍ଷ ବିପିଏଲ୍ ବା ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଏକ ତୃତୀୟାଂଶ ଲୋକ ନିଜର ହକ୍ ଓ ଜନସୁବିଧା ପାଇବା ପାଇଁ ଆଠ ହଜାର ଆଠ ଶହ ତିରିଶ କୋଟି ଟଙ୍କା ଲାଞ୍ଚ ଦେଇଥିଲେ । ଏଥିରୁ ୯୨ ଭାଗ ଲାଞ୍ଚ ନଗଦ ଟଙ୍କା ଆକାରରେ ଦିଆଯାଇଥିଲା । ଯେଉଁମାନେ ଲାଞ୍ଚ ମାଗନ୍ତି ବା ଖାଆନ୍ତି, ସେମାନଙ୍କ ମଧ୍ୟରୁ ପଚାଶ ଭାଗ ହେଲେ ରାଜ୍ୟ ସରକାରୀ କର୍ମଚାରୀ, ମ୍ୟୁନିସିପାଲିଟି ଷ୍ଟାଫ୍, ପୁଲିସ୍ ଓ ପ୍ରାୟ ୩୩ ଭାଗ କେନ୍ଦ୍ରୀୟ କର୍ମଚାରୀ, ଦୁଇ ଭାଗ କ୍ଷମତାରେ ଥିବା ଦଳର ପ୍ରତିନିଧି, ଦୁଇ ଭାଗ କମ୍ପାନି କର୍ମଚାରୀ ଓ ଏକ ପ୍ରତିଶତ ସ୍ୱେଚ୍ଛାସେବୀ ସଂସ୍ଥାର କର୍ତ୍ତା ଓ କର୍ମଚାରୀ ଏବଂ ଶତକଡା ୭୭ ଭାଗ ଲାଞ୍ଚ ଦିଆଯାଇଥାଏ ଠିକ୍ ସମୟରେ ଜନସେବା ଓ ସୁବିଧା ପାଇବାପାଇଁ । ତେଣୁ ଲାଞ୍ଚର ଅନ୍ୟ ନାମ 'ସ୍ପିଡ୍ ମନି' । ଚାରି ବର୍ଷ ପୂର୍ବେ ବିଚାର ବିଭାଗ ଉପରେ ମଧ୍ୟ ଏହିପରି ଏକ ଅଧ୍ୟୟନରୁ ଜଣା ପଡିଥିଲା ଯେ ପ୍ରତି ଶହେ ଜଣରେ ୭୭ ଜଣ ଭାରତୀୟଙ୍କ ଧାରଣା ଯେ ଆମ ବିଚାର ବ୍ୟବସ୍ଥା ଦୁର୍ନୀତିଗ୍ରସ୍ତ । ସେଇ ବର୍ଷ ଯେଉଁ ଚାରି ହଜାର କୋଟି ଟଙ୍କା ଲାଞ୍ଚ ଦିଆଯାଇଥିଲା ସେଥିରୁ ୬୧ ଭାଗ ନେଇଥିଲେ ଓକିଲମାନେ, ୨୯ ଭାଗ କୋର୍ଟ କର୍ମଚାରୀମାନେ ଓ ୫ ଭାଗ ପାଇଥିଲେ ମଧ୍ୟସ୍ଥ ଓ ଦଲାଲ୍‌ମାନେ । ଏହା ସତ୍ତ୍ୱେ ଦେଶର ବିଭିନ୍ନ କୋର୍ଟରେ ତିନି କୋଟି କେଶ୍ ଫଇସଲା ନ ହୋଇ ପଡି ରହିଛି ।

ଏ ହେଲା ଆମ ଦେଶ ଅବସ୍ଥା । ୨୦୦୮ ରେ ପ୍ରକାଶିତ 'କରପ୍‌ସନ୍ ପର୍ସେପ୍‌ସନ୍ ଇଣ୍ଡେକ୍ସ' ଅନୁସାରେ ପୃଥିବୀର ୧୮୦ ଟି ଦେଶକୁ ନେଇ ହୋଇଥିବା ଅଧ୍ୟୟନରେ ଭାରତର ସ୍ଥାନ ୮୫ରେ । ଆମେରିକର ସ୍ଥାନ ୨୦, ଇଂଲଣ୍ଡ ୧୩ ଓ ଜାପାନ୍ ୨୩ ସ୍ଥାନରେ । ସବୁଠୁ କମ୍ ଦୁର୍ନୀତିଗ୍ରସ୍ତ ଦେଶମାନେ ହେଲେ ଡେନ୍‌ମାର୍କ, ସୁଇଡେନ୍, ସିଙ୍ଗାପୁର, ନିଉଜିଲାଣ୍ଡ, ଫିନ୍‌ଲାଣ୍ଡ, ନେଦରଲାଣ୍ଡ । ସବୁଠାରୁ ସ୍ୱଚ୍ଛ ଡେନ୍‌ମାର୍କ । ସେହିପରି ଟ୍ରାନ୍‌ସପାରେନ୍‌ସି ଇଣ୍ଟରନାସନାଲଙ୍କ ଗ୍ଲୋବାଲ୍ ବାରୋମିଟର

ଇଣ୍ଡେକ୍ସ ଅନୁସାରେ ଏସିଆ ଓ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳର ଶତକଡା ୨୨ ଭାଗ ଲୋକ ଲାଞ୍ଚ ଦେଇଥାନ୍ତି । ଭାରତରେ ଶତକଡା ୨୫ ଭାଗ ଲୋକ ଲାଞ୍ଚ ଦିଅନ୍ତି ଅତି ସାଧାରଣ କାମ କରାଇବାପାଇଁ । ଏବେ ଭାରତ ସମେତ ପୃଥିବୀର ୨୨ଟି ଅର୍ଥନୀତି ଦୃଷ୍ଟିରୁ ଆଗୁଆ ଓ ବଡ ଦେଶଙ୍କରେ ଯେଉଁ ଅଧ୍ୟୟନ କରାଯାଇଛି ସେଥିରେ ସବୁଠାରୁ ଅଧିକ ଦୁର୍ନୀତିମୁକ୍ତ ଦେଶ ହେଲେ ବେଲ୍‌ଜିଅମ୍ ଓ କାନାଡା (ପ୍ରଥମ ଓ ଦ୍ୱିତୀୟ) । ଭାରତର ସ୍ଥାନ ୧୯ ରେ (ବ୍ରାଇବ୍ ପେୟର୍ ଇଣ୍ଡେକ୍ସ) । ଏହି ସଂସ୍ଥାର ୨୦୦୯ ମସିହା ରିପୋର୍ଟ ଅନୁସାରେ ବିଦେଶରେ ବ୍ୟବସାୟ କରୁଥିବା ଭାରତୀୟଙ୍କ ମଧ୍ୟରୁ ଅନେକ ବ୍ୟବସାୟୀ ସେ ଦେଶର ତଳ ସ୍ତରୀୟ କର୍ମଚାରୀମାନଙ୍କୁ ଲାଞ୍ଚ ଦେଇ କାମ ହାସଲ କରନ୍ତି । ଏହାଛଡା, ଗତ ପନ୍ଦର ବର୍ଷ ଭିତରେ ପୃଥିବୀର ବିଭିନ୍ନ ଦେଶରେ ଥିବା ୩୦୦ଟି ବେସରକାରୀ କମ୍ପାନି ଖାଉଟିମାନଙ୍କୁ ଠକିଛନ୍ତି ପନ୍ଦର ଲକ୍ଷ କୋଟି ଟଙ୍କା ।

ଏହି ସୂଚକାଙ୍କରେ ଲାଞ୍ଚ ବା ଘୁସ୍‌ଖୋରିକୁ ତିନି ଭାଗରେ ବିଭକ୍ତ କରାଯାଇଛି - (୧) ରାଜନୈତିକ ଦଳ ଓ ଦଳର ଉଚ୍ଚସ୍ତରୀୟ ନେତୃବୃନ୍ଦ, (୨) ତଳସ୍ତରୀୟ କର୍ମଚାରୀ ଓ (୩) ପାରିବାରିକ ସମ୍ପର୍କଦ୍ୱାରା ନିଷ୍ପତ୍ତିକୁ ପ୍ରଭାବିତ କରୁଥିବା ଲୋକେ । ଦୁର୍ନୀତି ଏକ ଦୋହରି ରାସ୍ତା । ଜଣେ ଲାଞ୍ଚ ନିଅନ୍ତି ଓ ଜଣେ ଲାଞ୍ଚ ଦିଅନ୍ତି । ଉଭୟଙ୍କଦ୍ୱାରା ଦୁର୍ନୀତିର ଚେର ମଜଭୁତ ହୁଏ । ଏହାର ପ୍ରତିକାରପାଇଁ ବିଭିନ୍ନ ସ୍ତରରେ ବିଚାର ଆଲୋଚନା ଚାଲିଛି । ପାଠ୍ୟକ୍ରମରେ ନୀତି ଓ ମୂଲ୍ୟବୋଧ ଶିକ୍ଷାକୁ ଯୋଡା ଗଲାଣି । କିଛି ବର୍ଷ ତଳେ ଉତ୍ତର ପ୍ରଦେଶର ଆଇଏଏସ୍ ଅଫିସରମାନେ ନିଜ ବିରାଦରିରେ ସବୁଠୁ ଦୁର୍ନୀତିଗ୍ରସ୍ତ ଅଫିସର୍ କିଏ - ତାଙ୍କୁ ସିକ୍ରେଟ୍ ବାଲଟ୍‌ଦ୍ୱାରା ବାଛୁଥିଲେ । ଏହି ଦୃଷ୍ଟାନ୍ତ ସବୁ ସରକାରୀ ଓ ବେସରକାରୀ ସଂସ୍ଥା ଅନୁସରଣ କରି ନିଜ ବିଭାଗ ବା ସଂସ୍ଥାର ଦୁର୍ନୀତି ପରାୟଣ କର୍ମଚାରୀଙ୍କୁ ଚିହ୍ନଟ କରିପାରିବେ ।

ପ୍ରତ୍ୟେକ ବିଭାଗର ଲୋକେ ଜାଣନ୍ତି ସେ ବିଭାଗରେ କିଏ କିଏ ପଇସା ଖାଉଛନ୍ତି, ଲାଞ୍ଚ ନେଉଛନ୍ତି । ସୂଚନା ଅଧିକାର ପ୍ରୟୋଗଦ୍ୱାରା ମଧ୍ୟ ଅନେକ କ୍ଷେତ୍ରରେ ଦୁର୍ନୀତିର ପର୍ଦାଫାସ ହେଲାଣି । ଆମ ରାଜ୍ୟର ଗଣମାଧ୍ୟମ ମଧ୍ୟ ସାହସ ଓ ସକ୍ରିୟତା ଦେଖାଇଲେଣି । ଚୋରଙ୍କୁ ଧରିବାପାଇଁ ପ୍ରଧାନମନ୍ତ୍ରୀ ସାରା ଦେଶରେ ୭୩ ଟି ଫାଷ୍ଟଟ୍ରାକ୍ ସିବିଆଇ କୋର୍ଟ ସ୍ଥାପନପାଇଁ ଘୋଷଣା କରିଛନ୍ତି । ପ୍ରାଶାସନିକ ସଂସ୍କାର କାର୍ଯ୍ୟକ୍ରମ ତ୍ୱରାନ୍ୱିତ ହେଲେ ଦୁର୍ନୀତି ପ୍ରବଣତା ଆହୁରି ଦୁର୍ବଳ ହେବ । ସଚ୍ଚୋଟ ସ୍ୱେଚ୍ଛାସେବୀ ସଂସ୍ଥାମାନେ ସାଧାରଣ ନାଗରିକମାନଙ୍କୁ ଏ ବିଷୟରେ ଅଧିକ

ସଚେତନ କଲେ ଏହାର ପ୍ରଭାବ ସରକାରଙ୍କ ଉପରେ ପଡ଼ିବ । ଜଗତ୍‌କରଣ ଓ ମୁକ୍ତ ଅର୍ଥନୀତି ଏକ ଦୁଇ ଧାରୁଆ ଖଣ୍ଡା । ଏହାକୁ ନ ଜଗିଲେ ଦୁର୍ନୀତି ଆହୁରି ବଢ଼ିଯିବ । ପଡୋଶୀ ଚାଇନା ଏବେ ଏହି ପରିସ୍ଥିତି ଦେଇ ଗତି କରୁଛି । ଜର୍ଜ ବର୍ଣ୍ଣାଡ୍ ଶ' ଥରେ କହିଥିଲେ, କ୍ଷମତା ବ୍ୟକ୍ତିକୁ ଦୁର୍ନୀତିଗ୍ରସ୍ତ କରେ ନାହିଁ, ବରଂ ଯେତେବେଳେ ଅଯୋଗ୍ୟ ଓ ନିର୍ବୋଧ ଲୋକଙ୍କୁ କ୍ଷମତା ମିଳେ, ସେମାନେ କ୍ଷମତାକୁ ଦୁର୍ନୀତିଗ୍ରସ୍ତ କରି ଦିଅନ୍ତି । ଦୁର୍ନୀତି ଏକ ବିକାଶ ବିନାଶକାରୀ ଶକ୍ତି । ଏହାଦ୍ୱାରା ସୁସ୍ଥ ପ୍ରତିଯୋଗିତା ନଷ୍ଟ ଭ୍ରଷ୍ଟ ହୋଇଯାଏ । ଅର୍ଥନୈତିକ ଉନ୍ନତି ବାଧାପ୍ରାପ୍ତ ହୁଏ, ଦ୍ରବ୍ୟ ଓ ସେବାର ଗୁଣବତ୍ତା କମିଯାଏ । ବ୍ୟକ୍ତି ଓ ସମାଜର ନୈତିକ ବଳ ଭାଙ୍ଗିଯାଏ, ପ୍ରକଳ୍ପମାନଙ୍କର ଖର୍ଚ୍ଚ ବହୁଗୁଣ ବଢିଯାଏ,ପରସ୍ପର ପ୍ରତି ବିଶ୍ୱାସ ତୁଟିଯାଏ, ବ୍ୟବସାୟ ବୁଡ଼ିଯାଏ ଓ ବିଦେଶରେ ନିଜ ଦେଶର ମାନ ସମ୍ମାନ ହାନି ହୁଏ, ସାଧୁ ଲୋକମାନେ ହତୋତ୍ସାହ ହୋଇପଡ଼ନ୍ତି । ତେଣୁ ସାଧୁ ସଚ୍ଚୋଟ ଲୋକଙ୍କୁ ସୁରକ୍ଷା, ସ୍ୱୀକୃତି ଓ ସମ୍ମାନ ମିଳିଲେ ଅନ୍ୟମାନେ ସେପରି ହେବାକୁ ଉତ୍ସାହିତ ହେବେ । ପରିତ୍ରାଣାୟ ସାଧୂନାଂ, ବିନାଶାୟ ଚ ଦୁଷ୍କୃତାମ୍ । ଅସାଧୁ, ଦୁଷ୍କୃତ, ଦୁର୍ନୀତିଖୋରଙ୍କୁ ଉପଯୁକ୍ତ ଦଣ୍ଡ ମିଳିଲେ ଓ ନୈତିକ ଶାସନ ବ୍ୟବସ୍ଥାର ପୁନରୁତ୍‌ଥାନ ହେଲେ ଦୁର୍ନୀତି ମନକୁ ମନ କମିଯିବ । ସାଧାରଣ ଲୋକେ ଶୋଷଣର ଶିକାର ହେବେ ନାହିଁ । ଦେଶର ମର୍ଯ୍ୟାଦା ବଢିବ, ଛବି ଉଜ୍ଜ୍ୱଳ ହେବ । ଏଥିପାଇଁ ଦେଶର ପ୍ରତ୍ୟେକ ନାଗରିକଙ୍କର ସ୍ୱତନ୍ତ୍ର ଦାୟିତ୍ୱ ରହିଛି ।

*୧୭ ସେପ୍ଟେମ୍ବର, ୨୦୦୯*



# ନିର୍ବାଚନ, ଯୋଜନା ଓ ଚେତନା : କିଏ ଆଗ, କିଏ ପଛ ?

ସ୍ୱାଧୀନତାର ବହୁପୂର୍ବରୁ ଭାରତ ବିକାଶପାଇଁ ପୁଞ୍ଜିବାଦ ଓ ସାମ୍ୟବାଦ ମଡେଲ୍‌ରୁ କେଉଁଟି ଅନୁସରଣ କରିବ ସେ ବିଷୟରେ ପ୍ରାୟ କୋଡିଏ ବର୍ଷ ଧରି ଚର୍ଚ୍ଚା ପରେ ଦେଶ ବାଛିଥିଲା ମିଶ୍ର ଅର୍ଥନୀତି ଓ ଯୋଜନାବଦ୍ଧ ବିକାଶର ବାଟଟିକୁ । ଜବାହରଲାଲ୍ ନେହେରୁ ଲୋକଙ୍କୁ ଏ ବିଷୟରେ ସଚେତନ କରିବାଲାଗି ଯୁଆଡେ ଯାଉଥିଲେ ପଞ୍ଚବାର୍ଷିକ ଯୋଜନା ବା ପ୍ଲାନିଙ୍ଗ୍ ବିଷୟରେ ପ୍ରଥମେ ଲୋକଙ୍କୁ ବୁଝାଉ ଥିଲେ । ସେତେବେଳେ ଯୋଜନାବଦ୍ଧ ବିକାଶର ଯେଉଁ ମଞ୍ଜି ପୋତାଯାଇଥିଲା, ଏବେ ସେ ଗଛ ହୋଇ ଫଳ ଧରିଲାଣି ।

ଉଦାହରଣ ସ୍ୱରୂପ, ପୃଥିବୀରେ ଯେଉଁ ଛ'ଟି ଦେଶ ମହାକାଶକୁ ଉପଗ୍ରହ ପଠାନ୍ତି ତା'ମଧ୍ୟରେ ଅଛି ଆମ ଦେଶ । ଚନ୍ଦ୍ରରେ ବି ଆମ ମହାକାଶ ଯାନ ପହଞ୍ଚି ସାରିଲାଣି । ସେହିପରି ପୃଥିବୀର ତିନିଟି ଦେଶ ହାତରେ ସୁପର୍ କମ୍ପ୍ୟୁଟର ଅଛି, ଭାରତ ସେଥିରୁ ଗୋଟିଏ ଦେଶ, ଅନ୍ୟ ଦୁଇଟି ଦେଶ ହେଲେ ଆମେରିକା ଓ ଜାପାନ୍ । ୧୯୮୭ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକା ଭାରତକୁ ସୁପର୍ କମ୍ପ୍ୟୁଟର ବିକ୍ରି କରିବାକୁ ମନା କରିଦେଲା ପରେ ଆମ ବୈଜ୍ଞାନିକମାନେ ତିଆରି କରି ଦେଖାଇ ଦେଲେ 'ପରମ ପଦ୍ମ' ସୁପର କମ୍ପ୍ୟୁଟର । ୧୯୬୮ ମସିହା ପର୍ଯ୍ୟନ୍ତ ଆମେ ପ୍ରତି ବର୍ଷ କୋଟିଏ ଟନ୍ ଖାଦ୍ୟ ଆମଦାନି କରୁଥିଲେ, ଏବେ ଆମ ଅମାରରେ ବଳକା ଖାଦ୍ୟ ପରିମାଣ ୭ କୋଟି ଟନ୍ । ଏବେ ଯେଉଁ କୋଡିଏଟି ଦେଶ ହାତରେ ପୃଥିବୀର ୮୫ଭାଗ ସମ୍ପତ୍ତି, ସେମାନଙ୍କ ମଧ୍ୟରେ ଅଛି ଭାରତ । ପୃଥିବୀର ଦୁଇ ତୃତୀୟାଂଶ ଜନସଂଖ୍ୟା, ଅଶୀଭାଗ ବ୍ୟବସାୟ ବାଣିଜ୍ୟ ନିୟନ୍ତ୍ରଣ କରନ୍ତି ଏଇ କୋଡିଏଟି ଦେଶ

ବା ଜି-ଟ୍ରେଣ୍ଟି - ବିଶ୍ୱର ସବୁଠାରୁ ଶକ୍ତିଶାଳୀ ଅର୍ଥନୀତି ନିୟନ୍ତ୍ରଣ ସଂସ୍ଥା ।

ଏହି ପରିପ୍ରେକ୍ଷୀରେ ୧୯୩୭ ମସିହାର ଏକ ଛୋଟ ଘଟଣା ଥିଲା ବେଶ୍ ଗୁରୁତ୍ୱପୂର୍ଣ୍ଣ ଓ ଚେତନା ଉଦ୍ଦୀପକ ଓ ତେଣୁ ଏଠାରେ ଉଲ୍ଲେଖଯୋଗ୍ୟ । ସେତେବେଳେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହୋଇ ସାରିଥାଏ ଓ ଦେଶର ବିଭିନ୍ନ ପ୍ରଦେଶରେ ନୂଆକରି ସ୍ୱାୟତ୍ତ ଶାସନପାଇଁ ପ୍ରତିନିଧିମୂଳକ ସରକାରଗୁଡିକ ଗଢାହୋଇଥାଏ। ପ୍ରକୃତ ସ୍ୱାଧୀନତାର ଦଶ ବର୍ଷ ପୂର୍ବରୁ ଇଂରେଜ ସରକାର କଳାମୁଣ୍ଡିଆ ଦେଶୀ ଭାରତୀୟଙ୍କ ଶାସନ କ୍ଷମତା ପରଖୁଥାନ୍ତି । ମହାତ୍ମା ଗାନ୍ଧୀଙ୍କ ପରାମର୍ଶ କ୍ରମେ କଂଗ୍ରେସ କାର୍ଯ୍ୟକାରୀ କମିଟି ଦେଶର ଯୋଜନାବଦ୍ଧ ବିକାଶପାଇଁ ଏକ ଖସଡା ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ଅର୍ଥନୈତିକ ଶ୍ରୀ କେ.ଟି ଶାହାଙ୍କୁ ପ୍ଲାନିଙ୍ଗ୍ କମିଟିର ଚେୟାରମ୍ୟାନ୍ ନିଯୁକ୍ତ କରିଥାନ୍ତି । ପଣ୍ଡିତ ନେହେରୁ ଥାଆନ୍ତି ପ୍ଲାନିଙ୍ଗ୍‌ର ପ୍ରଧାନ ପ୍ରବକ୍ତା । ଏ ବିଷୟରେ ଲୋକଙ୍କୁ ସଚେତନ କରାଉଥାଆନ୍ତି ।

ସେ ବର୍ଷ ନିର୍ବାଚନ ପ୍ରଚାରପାଇଁ ନେହେରୁ ମାଡ୍ରାସ ଆସିଥାନ୍ତି । ସେତେବେଳେ ମାନ୍ଦ୍ରାଜ ଥିଲା ଏକ ଦୋଭାଷୀ ପ୍ରଦେଶ । ଏବକାର ତାମିଲନାଡୁର ତାମିଲ ଭାଷାଭାଷୀ ଲୋକ ଓ ଆନ୍ଧ୍ର ପ୍ରଦେଶର ତେଲୁଗୁ ଭାଷୀ; ଉଭୟଙ୍କ ରାଜ୍ୟ ଥିଲା ମାନ୍ଦ୍ରାଜ । ଓଡିଶାର କୋରାପୁଟ ଓ ଗଞ୍ଜାମ ଜିଲ୍ଲା ମଧ୍ୟ ସେତେବେଳେ ମାନ୍ଦ୍ରାଜ ପ୍ରଦେଶର ଅଂଶ ଥିଲେ । ଏଭ ସଭାରେ ଜବାହରଲାଲ ହିନ୍ଦୀରେ ଭାଷଣ ଦେଉଥାନ୍ତି । ସେତେବେଳର ପ୍ରଦେଶ କଂଗ୍ରେସ ସଭାପତି ଡ. ସତ୍ୟମୂର୍ତ୍ତି ଓ ଶ୍ରମିକ ନେତା ଓ ପରେ ରାଷ୍ଟ୍ରପତି ଶ୍ରୀ ଭି.ଭି. ଗିରି ନେହେରୁଙ୍କ ହିନ୍ଦୀ ଭାଷଣକୁ ଯଥାକ୍ରମେ ତାମିଲ ଓ ତେଲୁଗୁରେ ଅନୁବାଦ କରି ଲୋକଙ୍କୁ ବୁଝାଉଥାନ୍ତି । ଭାଷଣରେ ନେହେରୁ ଦୁଇ ଘଣ୍ଟା କାଳ ଯୋଜନାବଦ୍ଧ ବିକାଶରେ ଜନସାଧାରଣଙ୍କ ଭୂମିକା ସମ୍ପର୍କରେ ବିଶେଷ ଜୋର୍ ଦେଉଥାନ୍ତି । ଏବଂ ଭାରତ ସ୍ୱାଧୀନ ହେଲେ ସାଧାରଣ ଲୋକେ ଏହି ଯୋଜନା ପ୍ରସ୍ତୁତିରେ ସକ୍ରିୟ ସହଯୋଗ କରିବେ ବୋଲି କହୁଥାନ୍ତି । ତାଙ୍କ ପ୍ରତିଶ୍ରୁତି ଥିଲା, ଏଥର ଯୋଜନା ହେବ ଲୋକଙ୍କଦ୍ୱାରା ଓ ଲୋକଙ୍କପାଇଁ । ଅନୁବାଦ କରି କହୁଥିଲା ବେଳେ ଦୀର୍ଘକାୟ ଭି.ଭି. ଗିରିଙ୍କ ବଜ୍ର ମୁଷ୍ଟି ଆଘାତରେ ମାଇକ୍‌ଟି ଖରାପ ହୋଇଯିବାରୁ ସଭା କିଛି ସମୟ ଟାଳି ସରିଗଲା । ନେହେରୁଙ୍କ ଭାଷଣ ଓ ଦେଶର ଉଜ୍ଜ୍ୱଳ ଭବିଷ୍ୟତ କଥା ଶୁଣି ମନଖୁସିରେ ଭୋଟରମାନେ ଘରକୁ ଫେରିଗଲେ ।

କିନ୍ତୁ ସତ୍ୟମୂର୍ତ୍ତିଙ୍କ ମୁଖମଣ୍ଡଳରେ ପ୍ରସନ୍ନତା ନ ଥାଏ । ରହିବା ସ୍ଥାନକୁ ଫେରି ଆସିବା ପରେ ସତ୍ୟମୂର୍ତ୍ତି ଖୁବ୍ ବ୍ୟସ୍ତ, ବିବ୍ରତ ଭାବ ଓ ଭାଷାରେ ନେହେରୁଙ୍କୁ କହିଲେ

- 'ପଣ୍ଡିତ୍‌ଜୀ, ଆପଣ ତ ନିର୍ବାଚନ ସଭାରେ, ନିର୍ବାଚନ ଓ ଭୋଟ ଉପରେ ପଦୁଟିଏ କହିଲେ ନାହିଁ, ଲୋକେ ଭୋଟ୍ କାହାକୁ ଦେବେ ସେକଥା ବି ଉଚ୍ଚାରଣ କଲେ ନାହିଁ, କଂଗ୍ରେସ ପାର୍ଟି କଥା କହିଲେ ନାହିଁ, ଦି'ଘଣ୍ଟା କାଳ ଖାଲି ବିକାଶପାଇଁ ପ୍ଲାନିଙ୍ଗର ଆବଶ୍ୟକତା କହି ଆଉ ସବୁ ଭୁଲିଗଲେ । ଆମ ଦଳକୁ କିଏ ଭୋଟ ଦେବ ?' ଅଳ୍ପ ହସି ଜବାହାରଲାଲ୍ କହିଲେ, 'ଆରେ ସତେ ତ, ମୁଁ ଯୋଜନା ଆଉ ବିକାଶ କଥା କହୁ କହୁ ଭୋଟ କଥା ପୂରାପୂରି ଭୁଲିଗଲି । ଆଚ୍ଛା ହେଉ, କାଲି ସକାଳ ସଭାରେ ଖାଲି ନିର୍ବାଚନ କଥା କହିବା ଓ ଭୋଟ ମାଗିବା ।' ସତ୍ୟମୂର୍ତ୍ତି ସେଇ ଆଶାରେ ନିଜ ଘରକୁ ଫେରିଗଲେ । ନେହେରୁ ରାତିଟି କଟାଇଲେ ଗେଷ୍ଟ ହାଉସରେ ।

ତା'ପରଦିନ ସକାଳ ଦଶଟା ବେଳେ ଆଉ ଏକ ନିର୍ବାଚନ ସଭା ଥାଏ । ମାନ୍ଦ୍ରାଜ ଠାରୁ ଦୂର ଏକ ଗାଁରେ । ଖୁବ୍ ସକାଳୁ ବାହାରିବାକୁ ପଡିବ । ରାତି ଚାରିଟାରୁ ଉଠିବାକୁ ହେବ । ଦୁର୍ଭାଗ୍ୟ କ୍ରମେ ସେଦିନ ରାତିରେ ମାଡ୍ରାସ ସହରର ବିଦ୍ୟୁତ ସରବରାହ ଓ ପାଣି ଯୋଗାଣ ବ୍ୟବସ୍ଥା ବନ୍ଦ ହୋଇଗଲା । ନିଜ ଘରକୁ ବିଜୁଳି ପାଣି ନ ଆସିବାରୁ ସତ୍ୟମୂର୍ତ୍ତି ନିତ୍ୟକର୍ମ ସାରି ପାରୁନଥାନ୍ତି । ଏଣେ ସକାଳୁ ନେହେରୁଙ୍କୁ ନେଇ ନିର୍ବାଚନ ସଭାକୁ ଯିବାକୁ ପଡିବ । ଚାରି ଘଣ୍ଟାର ରାସ୍ତା । ନେହେରୁ ସମୟାନୁବର୍ତ୍ତୀ ଲୋକ, ଠିକ୍ ସମୟରେ ନ ପହଞ୍ଚିଲେ ରାଗି ଯାଆନ୍ତି । ତେଣୁ କାଳେ ନେହେରୁ ବିଗିଡି ଯିବେ ଭାବି ଅଘଷା, ଅଗାଧୁଆ ନେହେରୁ ରହୁଥିବା ଗେଷ୍ଟ ହାଉସ୍‌କୁ ଗାଡି ଧରି ଦଉଡିଲେ । କାରଣ ପାଣି, ଲାଇଟ୍ ବିନା ନେହେରୁ ବି ତାଙ୍କ ଭଳି ହଇରାଣ ହେଉଥିବେ । ତେଣେ ଡେରିରେ ପହଞ୍ଚିଲେ ବୋଲି ବିରକ୍ତ ହେବେ ।

କିନ୍ତୁ ଗେଷ୍ଟ ହାଉସ୍ ଗେଟ ପାଖରେ ପହଞ୍ଚି ଦେଖିଲେ ପଣ୍ଡିତଜୀ ସବୁ ନିତ୍ୟକର୍ମ ସାରି ପୋଷାକ ପତ୍ର ପିନ୍ଧି ତାଙ୍କ ଅପେକ୍ଷାରେ ବାରଣ୍ଡା ଚୌକିରେ ବସିଛନ୍ତି । ସତ୍ୟମୂର୍ତ୍ତି ଏହା ଦେଖି ଅବାକ୍ ହୋଇଗଲେ । ପାଖକୁ ଯାଇ ପଚାରିଲେ, 'ପଣ୍ଡିତଜୀ, ସାରା ସହରରେ ଆଲୁଅ, ପାଣି ବନ୍ଦ, ଆପଣ କେମିତି ଏତେ ଶୀଘ୍ର ନିତ୍ୟକର୍ମ ସାରି ପ୍ରସ୍ତୁତ ହୋଇଗଲେ ? ମୋର ତ ସେଇ କାରଣରୁ ବିଳମ୍ବ ହୋଇଗଲା । ତେଣୁ ଅଘଷା, ଅଗାଧୁଆ ଆସିଛି ।' ପୂର୍ବ ଭଳି ମୁରୁକି ହସି ଜବାହରଲାଲ୍ କହିଲେ- 'ମୂର୍ତ୍ତିଜୀ, ଦିସ୍ ଇଜ୍ ପ୍ଲାନିଙ୍ଗ ଆଣ୍ଡ ପ୍ଲାନିଙ୍ଗ ଓନଲି, ଅବ୍ ଚଲୋ ଚୁନାବ୍ ସଭା କେ ଲିଏ ଜଲ୍‌ଦି, ରାସ୍ତେମେ ବତାଏଙ୍ଗେ ।' ସହରମାନଙ୍କରେ ବିଜୁଳି, ପାଣି ସରବରାହର ଅସ୍ଥିରତା ଓ ଅନିୟମିତତା ସମ୍ପର୍କରେ ନେହେରୁ ଆଗରୁ ସଚେତନ ଥିଲେ । ତେଣୁ ଶୋଇବା ଆଗରୁ ସେ ପରଦିନ ସକାଳପାଇଁ ଆବଶ୍ୟକ ପାଣି ସଂଗ୍ରହ କରି ରଖି ଦେଇଥିଲେ । ପୁଣି

ରାତିରୁ ଉଠି ଯିବାପାଇଁ ପ୍ରସ୍ତୁତ ହେବାକୁ ପଡିବ, କାଳେ ଲାଇଟ ନ ଆସିବ ଭାବି ନିତ୍ୟକର୍ମପାଇଁ ଆବଶ୍ୟକ ସବୁ ଜିନିଷ କାଢି ଯଥା ସ୍ଥାନରେ ରଖି ଦେଇଥିଲେ ଯେପରିକି ଅନ୍ଧାରରେ ମଧ୍ୟ ନିତ୍ୟକର୍ମ ସାରିଦେଇ ପାରିବେ । ଏଥର ସତ୍ୟମୂର୍ତ୍ତି ବୁଝିଗଲେ ଭୋଟ ରାଜନୀତି ଅପେକ୍ଷା ଯୋଜନା କାହିଁକି ଗୁରୁତ୍ୱପୂର୍ଣ୍ଣ ।

ତେଣୁ ଦେଶ ବିକାଶପାଇଁ ଯେପରି ଯୋଜନା ଆବଶ୍ୟକ, ବ୍ୟକ୍ତିଗତ ଜୀବନରେ ମଧ୍ୟ ସେହିପରି ଯୋଜନା ଓ ଦୂରଦୃଷ୍ଟିର ଆବଶ୍ୟକତା ରହିଛି । ଅନେକ ସମୟରେ ଆମେ ଭଲ ଭାବରେ ନ ଭାବି, ନ ଚିନ୍ତି ଓ ବିଶ୍ଳେଷଣ ନ କରି ଲୋକଙ୍କୁ ତାଙ୍କର ପ୍ରକୃତ ଆବଶ୍ୟକତା ବିଷୟରେ ନ ପଚାରି ଯୋଜନାମାନ ତିଆରି କରୁ । ତେଣୁ ଯେଉଁମାନଙ୍କପାଇଁ ଯୋଜନା ଉଦ୍ଦିଷ୍ଟ, ସେମାନେ ଉପକୃତ ନ ହୋଇ ଅନ୍ୟମାନେ ଯୋଜନା ଗଛର ଫଳ ତୋଳି ନିଅନ୍ତି । ଦେଶରେ ଗ୍ରାମ ଗୋଷ୍ଠୀ ଉନ୍ନୟନ ଯୋଜନାର ପ୍ରଥମ ଦିଗଦର୍ଶକ ସ୍ୱର୍ଗତ ଏସ୍. କେ. ଦେ ଏ ସମ୍ପର୍କରେ ବିସ୍ତୃତ ଆଲୋଚନା କରି ଲେଖିଥିଲେ, ଯେପର୍ଯ୍ୟନ୍ତ ଲୋକେ ଯୋଜନା ତିଆରି କରିବା ପରିବର୍ତ୍ତେ ଲୋକଙ୍କ ଉପରେ ଯୋଜନା ଲଦି ଦିଆଯାଉଥିବ ଓ ସେମାନଙ୍କର ପ୍ରକୃତ ଆବଶ୍ୟକତାକୁ ଶାସକ ଓ ତଥାକଥିତ ବିଶେଷଜ୍ଞମାନେ ନିର୍ଦ୍ଧାରଣ କରୁଥିବେ, ସେ ପର୍ଯ୍ୟନ୍ତ କୌଣସି ଯୋଜନା ସମ୍ପୂର୍ଣ୍ଣ ସଫଳ ହୋଇପାରିବ ନାହିଁ । ଆମେ ଚନ୍ଦ୍ରଯାନ ଓ ସୁପର କମ୍ପ୍ୟୁଟର ତିଆରିରେ ସଫଳ ହେଲେ ବି ଗରିବୀ ହଟାଇବାରେ ବିଫଳ ହେଉଛୁ ମୁଖ୍ୟତଃ ଏହି କାରଣରୁ ।

କାରଣ ଲୋକଙ୍କର କେଉଁ ସୁବିଧାଟି ଆଗେ ଦରକାର ତାହା ଯୋଜନା ପ୍ରଣୟନକାରୀଙ୍କ ଅପେକ୍ଷା ଲୋକେ ବେଶି ଜାଣନ୍ତି । ଆମେ ଗାଁ ଗାଁରେ ପାନୀୟ ଜଳ ଯୋଗାଣପାଇଁ କୂଅ ଖୋଳୁଛୁ, ସବ୍‌ସିଡି ଦେଉଛୁ, କିନ୍ତୁ ଲୋକେ ସେ କୂଅ ପାଣି ନ ପିଇ ବହୁ ଦୂରରେ ଥିବା ନଦୀ, ପୋଖରୀ, ବନ୍ଧରୁ ମୁଣ୍ଡରେ ପାଣି ବୋହି ଆଣି ବ୍ୟବହାର କରୁଛନ୍ତି । ପାଇଖାନା ପକାଉଛୁ, ଲୋକେ ତାକୁ ଧୋବା ତୁଠ ପଥର ଭଳି ବ୍ୟବହାର କରୁଛନ୍ତି । ଦେଶର ବିଜ୍ଞ ଲୋକମାନେ ଏ ବିଷୟରେ ଅଧିକ ଚିନ୍ତା ଓ ବିଚାର କରିବା ଆବଶ୍ୟକ । ପୋକ ଯେପରି ଗଛ ଭିତର କାଟି ପୋଲା କରିଦିଏ ଓ ଫଳ ସ୍ୱରୂପ ଶେଷରେ ଗଛଟି ଭାଙ୍ଗି ପଡେ, ସେହିପରି ଆମର ସମାଜକୁ ବହୁ ପୋକ କାଟି ପୋଲା କରିବାରେ ବ୍ୟସ୍ତ । ଏଭଳି ଅବସ୍ଥାରୁ ରକ୍ଷା ପାଇବାକୁ ହେଲେ ପ୍ରଚଳିତ ମୂଲ୍ୟବୋଧର ଆଶୁ ପରିବର୍ତ୍ତନପାଇଁ ସୁଚିନ୍ତିତ ପଦକ୍ଷେପ ନେବାକୁ ହେବ । ଉନବିଂଶ ଶତାବ୍ଦୀରେ ତିଆରି ହୋଇଥିବା ସଂସ୍ଥା, ଶାସନ ଓ ଆଇନ୍ କାନୁନ୍‌ଦ୍ୱାରା ଏକବିଂଶ ଶତାବ୍ଦୀର ଯୋଜନା କାର୍ଯ୍ୟକାରୀ ହୋଇ ପାରିବ ନାହିଁ । ଗାନ୍ଧୀଜୀ ଯେତେବେଳେ

ସ୍ୱାଧୀନତା ଆନ୍ଦୋଳନର ନେତୃତ୍ୱ ନେଲେ, ସେ ପ୍ରଥମେ ଇଂରେଜମାନେ ଭାରତରେ ଶାସନପାଇଁ ଗଢିଥିବା ସଂସ୍ଥା ଓ ବ୍ୟବସ୍ଥାର ପରିବର୍ତ୍ତନପାଇଁ ବିକଳ୍ପ ବ୍ୟବସ୍ଥାମାନ ତିଆରି କରିଥିଲେ । ନେହେରୁ ନିର୍ବାଚନ ସଭାରେ ଭୋଟ ନ ମାଗି, ଆଗେ ଯୋଜନା ଓ ବିକାଶ ପ୍ରକ୍ରିୟାରେ ଲୋକଙ୍କୁ ସଚେତନ ଓ ସାମିଲ କରିବାକୁ ଚାହୁଁଥିଲେ । ଗାନ୍ଧୀଜୀ କହୁଥିଲେ, ଅର୍ଥନୈତିକ ଓ ସାମାଜିକ ସ୍ୱାଧୀନତା ହେଉଛି ପ୍ରକୃତ ସ୍ୱରାଜ୍ୟ । ଏହାର ଚାବିକାଠି ହେଉଛି ଆତ୍ମବଳ- ସ୍ୱାର୍ଥବାଦ ଭୋଟ କୈନ୍ଦ୍ରିକ ରାଜନୀତି ନୁହେଁ ।

*୧ ଅକ୍ଟୋବର, ୨୦୦୯*



# 'ଆଳୁ'ଙ୍କୁ ଆନ୍ତର୍ଜାତିକ ସ୍ୱୀକୃତି ଓ ସମ୍ମାନ

ପରିବାଙ୍କ ରାଜା ଓ ରଙ୍କଙ୍କର ରଜା ପରିବା 'ଆଳୁ'କୁ ଅନ୍ତର୍ଜାତୀୟ ସ୍ୱୀକୃତି ଓ ସମ୍ମାନ ମିଳିବାର ଏକ ବର୍ଷ ପୂରିଗଲାଣି । ବିଶ୍ୱ ଖାଦ୍ୟ ସଂସ୍ଥାଙ୍କ ପ୍ରସ୍ତାବକୁ ଗ୍ରହଣ କରି ମିଳିତ ଜାତିସଙ୍ଘ ଯେତେବେଳେ ୨୦୦୮ ମସିହାକୁ 'ଆନ୍ତର୍ଜାତିକ ଆଳୁ ବର୍ଷ' ଭାବେ ପାଳନ କରିବାକୁ ଘୋଷଣା କଲେ, ପ୍ରାୟ ମାସେ କାଳ ଇଣ୍ଟରନେଟ୍‌ରେ ଥଟ୍ଟା, ପରିହାସ 'ଜୋକ୍'ର ସୁଅ ଛୁଟିଲା । ଜଣେ ଲେଖିଲେ ଶ୍ରୀମାନ୍ ଓ ଶ୍ରୀମତୀ ଆଳୁଙ୍କ ପ୍ରେମଜ କନ୍ୟା 'ମିଷ୍ଟାଳୁ କୁମାରୀ'ଙ୍କୁ ଗାର୍ଲଫ୍ରେଣ୍ଡ କରିବାପାଇଁ ଲିମ୍ବ କୁମାର, କଲରା ନନ୍ଦନ ଓ ପୋଟଳ ପୁତ୍ରଙ୍କ ମଧ୍ୟରେ ପ୍ରବଳ ପ୍ରତିଯୋଗିତା ।

ଓଡ଼ିଶାରେ ପରୀକ୍ଷାରେ ଜିରୋ ବା ଶୂନ ପାଇଲେ କହନ୍ତି ଆଳୁ ପାଇଛି । ବାୟାମି ଥିଲେ କହନ୍ତି ଆଳୁଦୋଷ ଅଛି । ଏମିତି ଆଗରୁ ଆଳୁକୁ 'କାଉଚ୍ ପଟାଟୋ', 'ମାଉସ୍ ପଟାଟୋ', 'ହଟ୍ ପଟାଟୋ' ନାଁ ଦେଇ ଥଟ୍ଟା ପରିହାସ କରାଯାଉଥିଲା। ଏବେ ମିଲେନିୟମ୍ ଡେଭଲପ୍‌ମେଣ୍ଟ ଗୋଲ୍ ବା ଲକ୍ଷ୍ୟ ପୂରଣ ଆଳୁ ବିନା ଅସମ୍ଭବ ବୋଲି ବିଶେଷଜ୍ଞମାନେ କହିଛନ୍ତି । ଲୋକେ କ୍ଷୁଧା ଓ କୁପୋଷଣରୁ ମୁକ୍ତିପାଇଁ ଆଳୁର ଗୁରୁତ୍ୱକୁ ସ୍ୱୀକାର କରିବା ଆରମ୍ଭ କଲେଣି । ଗତ ବର୍ଷକ ଭିତରେ ପୃଥିବୀର ଦେଢଶହ ଦେଶରେ ଦୁଇଶହ ଆଳୁ କନ୍‌ଫରେନ୍‌ସ, ସେମିନାର, ସଭା ହୋଇସାରିଲାଣି । ଏପରି ଆଳୁ ଚର୍ଚ୍ଚା କେବେ ହୋଇନଥିଲା ।

ଧାନ, ଗହମ ଓ ମକା-ବାଜରା ପରେ ଆଳୁ ପୃଥିବୀର ଚତୁର୍ଥ ବୃହତ୍ତମ ଫସଲ । ପ୍ରତିବର୍ଷ ପୃଥିବୀରେ ୩୨ କୋଟି ଟନ୍ ଆଳୁ ଉତ୍ପାଦିତ ହୁଏ । ମାଟିତଳୁ ଏତେ ପରିମାଣର ପରିବା ଆଉ କୌଣସି ଫସଲରୁ ମିଳୁନଥିବାରୁ ଆଳୁର ଅନ୍ୟ ନାମ ହେଲା

'ହିଡେନ୍ ଟ୍ରେଜର' । ଗୋଟିଏ ଆଳୁରେ ଯେତିକି କ୍ୟାଲୋରୀ ଖାଦ୍ୟସାର, ପ୍ରୋଟିନ୍ ଓ, ଭିଟାମିନ୍ 'ସି' ଥାଏ, ଅନ୍ୟ ପରିବାରେ ତାହା ନଥାଏ । ପ୍ରାକୃତିକ ଚିକିତ୍ସାରେ ଆଳୁକୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଇଛି । ଏବେ ବାୟୋଟେକ୍‌ନୋଲୋଜି ବିଶାରଦମାନେ ଆଳୁକୁ ଔଷଧଯୁକ୍ତ ପରିବା ଭାବରେ ବ୍ୟବହାରପାଇଁ ଗବେଷଣା ଚଳାଇଛନ୍ତି । ଏହା ଫଳରେ ଆଳୁ ଉଭୟ ପରିବା ଭାବରେ କ୍ଷୁଧା ନିବାରଣ ଓ ଔଷଧ ଭାବରେ ରୋଗ ନିବାରଣପାଇଁ ବ୍ୟବହୃତ ହେବ । ୯୦ ରୁ ୧୪୦ ଦିନ ଭିତରେ ଅମଳ ହେଉଥିବାରୁ ଦୁର୍ଭିକ୍ଷ, ଦୁର୍ବିପାକ ସମୟରେ ଆଳୁ ଆଗ କାମରେ ଆସେ । ଆଳୁ ସହଜରେ ଖରାପ ହୁଏ ନାହିଁ, ବହୁତ ଦୂରକୁ କମ୍ ଖର୍ଚ୍ଚରେ ପଠାଇ ହୁଏ ।

କ୍ଷୁଧାମୁକ୍ତି ଆନ୍ଦୋଳନରେ ଆଳୁର ମୁଖ୍ୟ ଭୂମିକା ରହିଛି । କାରଣ ୧ ଏକର ଜମିରେ ଯେତିକି ଖାଦ୍ୟଶସ୍ୟ ଉତ୍ପାଦନ ହୁଏ, ତାଠାରୁ ଚାରିଗୁଣ ଆଳୁ ଉତ୍ପାଦନ ହୋଇଥାଏ । ଉଦାହରଣ ସ୍ୱରୂପ : ଯେଉଁ ଅଢେଇ ଏକର ଜମିରୁ ପ୍ରତ୍ୟହ ସାଢେ ବାର କେଜି ଧାନ ଓ ଅଠର କେଜି ଗହମ ଉତ୍ପାଦନ ହୁଏ, ସେତିକି ଜାଗାରୁ ୪୮ କେଜି ଆଳୁ ଉତ୍ପାଦନ ହୋଇଥାଏ । ଏହାଛଡା ଧାନ, ଗହମ, ବାଜରା, ମକା ପାଚିଲେ କଟା ହେଉଥିଲା ବେଳେ ଆଳୁକୁ ଅପରିପକ୍ୱ ଅବସ୍ଥାରେ ବି ଅମଳ କରାଯାଇପାରିବ । ପୁଣି ଭାରତରେ ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଋତୁରେ ଆଳୁ ଚାଷ ହୋଇ ପାରୁଥିବାରୁ ବର୍ଷସାରା ଆଳୁ ଖାଇବାକୁ ମିଳେ । ତେଣୁ ଖାଦ୍ୟ ନିରାପତ୍ତାପାଇଁ ଏହା ଗୁରୁତ୍ୱପୂର୍ଣ୍ଣ । ଭାରତର ପାହାଡିଆ ଅଞ୍ଚଳରେ ଆଳୁ ଗ୍ରୀଷ୍ମ ଋତୁରେ, କର୍ଣ୍ଣାଟକ, ମହାରାଷ୍ଟ୍ର, ହିମାଚଳ, ଉତ୍ତରାଞ୍ଚଳ, ଜାମ୍ମୁକାଶ୍ମୀରରେ ବର୍ଷାଋତୁରେ, ଉତ୍ତରପ୍ରଦେଶ, ବିହାର, ପଶ୍ଚିମବଙ୍ଗ ଓ ଓଡ଼ିଶାରେ ଶୀତଋତୁରେ ଆଳୁ ହୋଇଥାଏ ।

ପୃଥିବୀର ୧୫୧ଟି ଦେଶରେ ଆଳୁଚାଷ ହୋଇଥାଏ । ସମୁଦାୟ ଆଳୁ ଜମିର ପରିମାଣ ୫ କୋଟି ଏକର । ଏବଂ ସବୁଠୁ ବଡ ଆଳୁଚାଷୀ ଦେଶ ହେଲା ଚାଇନା, ଯାହାର ବାର୍ଷିକ ଉତ୍ପାଦନ ୭ କୋଟି ୧୦ ଲକ୍ଷ ଟନ୍ । ତା'ପରେ ଅଛି ରୁଷିଆ ୬ କୋଟି ୨୦ ଲକ୍ଷ ଟନ୍ । ଭାରତର ସ୍ଥାନ ତୃତୀୟ, ଅଢେଇ କୋଟି ଟନ୍ । ଆମ ଦେଶରେ ଆଳୁଚାଷ ଜମି ପରିମାଣ ୩୫ ଲକ୍ଷ ଏକର । ଏଥିରୁ ୮୦ ଭାଗ ଗାଙ୍ଗେୟ ଉପତ୍ୟକାରେ । ପାଞ୍ଚ ବର୍ଷ ଭିତରେ ଆଳୁ ଉତ୍ପାଦନକୁ ଦୁଇ ଗୁଣ କରିବାପାଇଁ ଆମ କୃଷି ଓ ଖାଦ୍ୟ ମନ୍ତ୍ରଣାଳୟ ଲକ୍ଷ୍ୟ ରଖିଛନ୍ତି ।

ବିଭିନ୍ନ ଦେଶରେ କିଏ କେତେ ଆଳୁ ଭୋଜନ କରନ୍ତି ? ପୃଥିବୀରେ ଜଣ ପିଛା ସବୁଠାରୁ କମ୍ ଆଳୁ ଖାଆନ୍ତି ଭାରତୀୟମାନେ - ଜଣପିଛା ବର୍ଷକୁ ୧୫ କିଲୋ ।

ସବୁଠାରୁ ଅଧିକ ଆଳୁ ଖାଆନ୍ତି ୟୁରୋପୀୟମାନେ - ମୁଣ୍ଡପିଛା ବର୍ଷକୁ ଏକ କ୍ୱିଣ୍ଟାଲ୍ । ପୃଥିବୀରେ ମୁଣ୍ଡପିଛା ହାରାହାରି ବାର୍ଷିକ ଆଳୁ ଭୋଜନ ୨୨ କେଜି । ବାର୍ଷିକ ଆଳୁ ବ୍ୟବସାୟର ମୂଲ୍ୟ ୪୦ ହଜାର କୋଟି । ପ୍ରାୟ ୫ କୋଟି ଲୋକ ଆଳୁ ଆମଦାନୀ ରପ୍ତାନି, କ୍ରୟ ବିକ୍ରୟରେ ନିଯୁକ୍ତ । ପ୍ରାୟ ସେତିକି ଲୋକ ଭାରତର ଗ୍ରାମାଞ୍ଚଳ, ଛୋଟ ବଡ ସହର, ରେଲ୍‌ୱେ ଷ୍ଟେସନ, ବସଷ୍ଟାଣ୍ଡରେ ବୁଲି ପଟାଟୋ ଚିପ୍‌ସ, ଆଳୁଚପ୍, ଆଳୁ ଟିକିଆ, ଗୁପ୍‌ଚୁପ୍ ଓ ଠେଲାଗାଡିରେ ଆଳୁଦମ୍ ବିକି ଚଳନ୍ତି । ଫ୍ରେଞ୍ଚ ଫ୍ରାଏ ଓ ଅଙ୍କଲ ଚିପ୍‌ସ ଆମେରିକା ଓ ୟୁରୋପ୍‌ରେ ପ୍ରଧାନ ଜଳଖିଆ । ଭୁବନେଶ୍ୱର, କଟକରେ ବରା-ଆଳୁଦମ୍, ମ୍ୟାକଡୋନାଲ୍‌ଡ ଭଳି ଏକ ଲୋକପ୍ରିୟ, ଲାଭଜନକ ବ୍ୟବସାୟ ଭାବେ ବହୁ ବେକାର ଯୁବକଙ୍କୁ ଥଇଥାନ କରିଛି । ଆଳୁ ସିଝା, ଆଳୁ ପୋଡା, ଆଳୁ ଭଜା, ଭର୍ତ୍ତା ବିନା ଓଡ଼ିଆଣୀଙ୍କ ରୋଷେଇ ଅସମ୍ପୂର୍ଣ୍ଣ । ଆଳୁ ସବୁ ବ୍ୟଞ୍ଜନରେ ସହଜରେ ମିଶିପାରେ, ତେଣୁ ଯେଉଁ ଲୋକ ସମସ୍ତଙ୍କ ସହ ସହଜରେ ମିଳିମିଶି ପାରନ୍ତି, ତାଙ୍କୁ କହନ୍ତି ଆଳୁ ପରିବା ।

କୋଉଠୁ କେମିତି ଆସିଲା ଏହି ସର୍ବଜନପ୍ରିୟ ଆଳୁ ? ଆନ୍ତର୍ଜାତିକ ଆଳୁ ଗବେଷଣା କେନ୍ଦ୍ରଙ୍କ ଅନୁସାରେ ପ୍ରାୟ ୮ ହଜାର ବର୍ଷ ପୂର୍ବେ ଦକ୍ଷିଣ ଆମେରିକାର ପେରୁ ଓ ଆଖପାଖ ଅଞ୍ଚଳରେ ଆଳୁ ଖାଦ୍ୟପଦାର୍ଥ ଭାବରେ ଆବିଷ୍କୃତ ହୋଇଥିଲା । କିନ୍ତୁ ବହୁ କାଳ ପରେ ଷୋଡଶ ଶତାବ୍ଦୀରେ ଆଳୁ ଆସିଲା ୟୁରୋପର ସ୍ପେନ୍ ଦେଶକୁ । ପରେ ପରେ ଇଂଲଣ୍ଡ ଓ ଅନ୍ୟ ୟୁରୋପୀୟ ଦେଶରେ ପହଞ୍ଚିଲା ଆଳୁ । ଆଳୁଚାଷ ଆରମ୍ଭ ହେବାଦ୍ୱାରା ପଶ୍ଚିମ ୟୁରୋପର ଖାଦ୍ୟବଣ୍ଟନ ବ୍ୟବସ୍ଥାରେ ଅନିଶ୍ଚିତତା ଦୂର ହେଲା ଓ ପ୍ରଥମେ ଶିଳ୍ପ ବିପ୍ଲବପାଇଁ ପଥ ପରିଷ୍କୃତ ହୋଇଗଲା । ଏବଂ ଆୟାରଲ୍ୟାଣ୍ଡର ଲୋକେ ଆଳୁକୁ ମୁଖ୍ୟ ଖାଦ୍ୟ କରି ଏହା ଉପରେ ନିର୍ଭରଶୀଳ ହୋଇପଡିଲେ । ଫଳରେ ଥରେ ରୋଗ ପୋକ ଲାଗି ଆଳୁ ଫସଲ କ୍ରମାଗତ ଭାବେ ଉଜୁଡି ଯିବାରୁ ୧୮୪୫ ରୁ ୧୮୫୧ ମସିହା ଭିତରେ ଦଶ ଲକ୍ଷ ଲୋକ ଦୁର୍ଭିକ୍ଷରେ ମରିଗଲେ । ତେଣୁ ଆଳୁ ଫସଲର ସୁରକ୍ଷାପାଇଁ ଗବେଷଣାଲବ୍ଧ ଜ୍ଞାନ ଓ କୌଶଳକୁ ଚାଷୀଙ୍କ ପାଖରେ ପହଞ୍ଚାଇବା ଆନ୍ତର୍ଜାତିକ ଆଳୁବର୍ଷର ଆଉ ଏକ ଲକ୍ଷ୍ୟ ।

ପର୍ତ୍ତୁଗୀଜମାନେ ପ୍ରଥମେ ଆଳୁ ଆଣିଥିଲେ ଭାରତକୁ । ପେରୁରୁ ପଶ୍ଚିମ ଭାରତରେ ପହଞ୍ଚିବାକୁ ପରିବା ରାଜାଙ୍କୁ ଲାଗିଥିଲା ସାତ ହଜାର ଆଠଶହ ବର୍ଷ । କିନ୍ତୁ ଶହେ ବର୍ଷରେ ଏହା ସାରା ଭାରତ ବ୍ୟାପିଗଲା । ଆଗ୍ରା ଓ କାନପୁର ଅଞ୍ଚଳରେ ସବୁଠୁ ବେଶୀ ଆଳୁ ଉତ୍ପାଦନ ହେଲା । ପେରୁରେ ପ୍ରାୟ ଆଠଶହ ପ୍ରକାର ଆଳୁ ଥିଲାବେଳେ

ଭାରତରେ ଏହା ପ୍ରାୟ ଦୁଇ ଡଜନ୍ ଭେରାଇଟିରେ ସୀମିତ ହୋଇଗଲା । ପାହାଡି, ଚିପ୍‌ସୋନା, କୁଫ୍ରି ଇତ୍ୟାଦି ବିଭିନ୍ନ ପ୍ରକାର ଓ ସ୍ୱାଦର ଆଳୁ ଭାରତୀୟଙ୍କ ମନ ଓ ହୃଦୟ ଜୟ କଲେ । ଭାରତ ମାଟିରେ ଆଳୁର ରୂପ, ରଙ୍ଗ ବଦଳିଗଲା । ବେଳେ ବେଳେ ଚାଷୀମାନେ ଏତେ ଆଳୁ ଉତ୍ପାଦନ କଲେ ଯେ ଦାମ୍ କମିଯିବା ଫଳରେ ଚାଷୀମାନେ ସର୍ବସ୍ୱାନ୍ତ ହୋଇଗଲେ । ତଥାପି 'ଭର୍ସାଟାଇଲ ଭେଜିଟେବଲ୍' ଆଳୁର ଜୟଯାତ୍ରା ଅବ୍ୟାହତ ରହିଛି ।

ଜନସଂଖ୍ୟା ବିଶାରଦମାନଙ୍କ ଭବିଷ୍ୟବାଣୀ ଅନୁସାରେ ଆସନ୍ତା ୨୦ ବର୍ଷ ପର୍ଯ୍ୟନ୍ତ ପ୍ରତିବର୍ଷ ଦଶ କୋଟି ଲୋକସଂଖ୍ୟା ବଢ଼ିବ ଏବଂ ଏହି କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟ ଆବଶ୍ୟକତା ପୂରଣ କରିବାପାଇଁ କେବଳ ଆଳୁର ହିଁ କ୍ଷମତା ରହିଛି । ତେଣୁ ଏହାକୁ 'ଫୁଡ୍ ଅଫ୍ ଦି ଫ୍ୟୁଚର' ବା ଆସନ୍ତାକାଲିର ଖାଦ୍ୟଭଣ୍ଡାର ବୋଲି କୁହାଯାଉଛି । ଏକ ବିଶ୍ୱ 'ପଟାଟୋ ପରିବାର' ଗଠନ କରି ଆଳୁ ସମ୍ପର୍କୀୟ ସବୁ ବୈଜ୍ଞାନିକ ତଥ୍ୟ ଯୋଗାଇ ଦେବାପାଇଁ ପ୍ରତ୍ୟେକ ଦେଶରେ 'ପଟାଟୋ ପାର୍କ' ପ୍ରତିଷ୍ଠା କରାଯିବାର ଯୋଜନା ପ୍ରସ୍ତୁତ ହୋଇଛି ।

ଆଳୁ ପ୍ରେମୀ ଓ ବିଶାରଦଙ୍କ ମନ ଦୁଃଖ ଯେ କବି ଓ ଲେଖକମାନେ ଫୁଲ, ଫଳ ଓ ଖାଦ୍ୟର ବର୍ଣ୍ଣନାରେ ଆଳୁକୁ ସ୍ଥାନ ଦେଇ ନାହାନ୍ତି । ଡାଫୋଡିଲ, ଗୋଲାପ, ପଦ୍ମ, ଚମ୍ପା, କଇଁ, ଆପଲ୍, ଡାଳିମ୍ବ, ଧାନ, ଗହମ, ମକା ସୋରିଷ ବର୍ଣ୍ଣନାରେ ମୁଖର କବି ଆଳୁପାଇଁ ନୀରବ । ଶ୍ରୀମନ୍ଦିରରେ ଶ୍ରୀମାନ୍, ଶ୍ରୀମତୀ, କୁମାର ଓ କୁମାରୀ ଆଳୁ ଏବେ ବି ଅସ୍ପୃଶ୍ୟ ହୋଇ ରହିଛନ୍ତି । କାଳିଆ ଠାକୁରଙ୍କୁ ଲକ୍ଷ୍ମୀବଜାର ଆଳୁ ସ୍ୱାଦ ଚାଖିବାକୁ ଦିଆଯାଉ ନାହିଁ । ମହାପ୍ରସାଦ ଯୋଗ୍ୟତାପାଇଁ ଆଳୁ ସଫଳ ହୋଇନାହିଁ । ଡାକ୍ତରମାନେ ଆଳୁ ମୁଣ୍ଡରେ ମଧୁମେହ ଦୋଷ ବୋଲି ଦୂର୍ ଦୂର୍ ମାର୍ ମାର୍ କରୁଛନ୍ତି । ତଥାପି ଆଳୁ ଆଗେଇ ଚାଲିଛି । କାରଣ ଖାଦ୍ୟ ଭଣ୍ଡାର ଆଳୁ ବିନା ଅନ୍ୟ ଗତି ନାହିଁ । ଆଳୁଙ୍କୁ ଆମର ଅଶେଷ ଧନ୍ୟବାଦ ।

*୧୧ ଡିସେମ୍ବର, ୨୦୦୮*



# ଚାଉଳର ସୁଖ ଦୁଃଖ ସଂସାର

'ଦୁଇ ଟଙ୍କିଆ ଚାଉଳ' ଆନ୍ଧ୍ର ପ୍ରଦେଶରେ ସ୍ୱର୍ଗତଃ ଏନ୍‌ଟି ରାମାରାଓଙ୍କୁ ରାଜନୈତିକ ସଫଳତା ଦେବା ପରେ 'ଚାଉଳ' ଅନେକ ନିର୍ବାଚନରେ ପ୍ରାର୍ଥୀମାନଙ୍କ ଭାଗ୍ୟ ନିର୍ଦ୍ଧାରଣ କରି ଆସୁଛି । ଆମ ରାଜ୍ୟରେ ଶାସକ ଦଳ 'ଦୁଇ ଟଙ୍କିଆ ଚାଉଳ' ଯୋଗାଇ ନିର୍ବାଚନ ବୈତରଣୀକୁ ସଫଳତାର ସହିତ ପାରି ହେଲେ । ଏବେ କେନ୍ଦ୍ର ସରକାର ବି ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକଙ୍କୁ ତିନି ଟଙ୍କାରେ ଚାଉଳ ଦେବା କଥା ଘୋଷଣା କରିଛନ୍ତି । ନିର୍ବାଚନ ଆଗରୁ କିଏ କେତେ କମ୍‌ରେ ଭୋଟରଙ୍କୁ ଚାଉଳ ଯୋଗାଇ ଦେବ ସେଥିପାଇଁ ଆରମ୍ଭ ହୋଇଛି ପ୍ରବଳ ପ୍ରତିଯୋଗିତା । ଓଡ଼ିଶା ଭଳି ଛତିଶଗଡ଼, କର୍ଣ୍ଣାଟକ, ଆନ୍ଧ୍ରପ୍ରଦେଶ ଓ ତାମିଲନାଡୁରେ ନିର୍ବାଚନ ପୂର୍ବରୁ ବି ଭୋଟରଙ୍କୁ ଏପରି ଲାଞ୍ଚ ଯଚା ଯାଇଥିଲା ବିଭିନ୍ନ ଦଳ ତରଫରୁ । ଗୋଟିଏ ଦଳ ଚାଉଳ ସହ ମାଗଣା ଟିଭି ମଧ୍ୟ ଯାଚିଥିଲେ । ପାଗ ପରିବର୍ତ୍ତନର କୁ-ପ୍ରଭାବ ଓଡ଼ିଶାରେ ଚାଉଳ ଉତ୍ପାଦନକୁ ବିଶେଷ କ୍ଷତି କରିବ ବୋଲି କୃଷି ବିଶେଷଜ୍ଞମାନେ କହିଲେଣି । ତା'ସାଙ୍ଗକୁ ଏବେ ଚାଉଳକୁ ନେଇ ରାଜନୈତିକ ପାଗ ବି ବେଶ୍ ଉଷ୍ମ ।

ପୃଥିବୀରେ ସବୁଠୁ ବେଶି ଚାଉଳ ଖାଆନ୍ତି ଏସିଆର ଲୋକମାନେ । ତେଣୁ ଏ ମହାଦେଶରେ ଚାଉଳକୁ ନେଇ ରାଜନୀତି ପ୍ରବଳ । ଥାଇଲାଣ୍ଡର ଗାଦିଚ୍ୟୁତ ପ୍ରଧାନମନ୍ତ୍ରୀ ଥାକ୍‌ସିନ୍ ଚାଉଳ ରାଜନୀତି କରି ତିନି ଥର ନିର୍ବାଚନ ଜିତିଥିଲେ । ଇଣ୍ଡୋନେସିଆର ଲୋକପ୍ରିୟ ରାଷ୍ଟ୍ରପତି ସୁକର୍ଣ୍ଣ ଚାଉଳ ରାଜନୀତିରେ ଛନ୍ଦି ହୋଇ ଗାଦି ଛାଡିଥିଲେ । କିନ୍ତୁ ଭାରତର ରାଜନେତାମାନେ ଚାଉଳକୁ ମୂଲ୍ୟହୀନ କରିବା ପ୍ରତିଯୋଗିତାରେ ବ୍ୟସ୍ତ ଥିବା ବେଳେ, ପଡୋଶୀ ଚୀନ୍ ନିଜ ଦେଶବାସୀଙ୍କ ଖାଦ୍ୟ ନିରାପତ୍ତାପାଇଁ ତାଞ୍ଜାନିଆ, ଲାଓସ୍, କାଜଖ୍‌ସ୍ତାନ, ବ୍ରାଜିଲ୍ ଓ ଆଉ ଅନେକ ଦେଶରେ ଠିକାରେ ଜମି ନେଇ ଧାନଚାଷ ଆରମ୍ଭ କଲାଣି । ମରୁଭୂମିର ଦେଶ ସାଉଦିଆରବ ଏବେ ପାକିସ୍ତାନର ପାଞ୍ଚଲକ୍ଷ ଏକର

ଜମି ଲିଜ୍‌ରେ ନେଇ ଚାଷ ଆରମ୍ଭ କଲାଣି । ଚାଷୀପାଇଁ ଚାଷ ମହଙ୍ଗା ହେଲେ ଏପରି କଣ୍ଟ୍ରାକ୍ଟ ଫାର୍ମିଂ ସଂସ୍କୃତି ବ୍ୟାପିବ । ଚାଷୀମାନେ ବହୁଦେଶୀୟ କମ୍ପାନିମାନଙ୍କୁ ଅଧିକ ପଇସା ପାଇଁ ଜମି ବିକିବେ । ଉତ୍ପାଦନ ନ ବଢ଼ିଲେ ଅଳ୍ପ ମୂଲ୍ୟରେ ବା ମାଗଣାରେ ବାଣ୍ଟିବାକୁ ବି ଚାଉଳ ମିଳିବ ନାହିଁ । ପୃଥିବୀର ଅଧେ ଲୋକଙ୍କ ମୁଖ୍ୟ ଖାଦ୍ୟ ଚାଉଳ । ତେଣୁ ମିଳିତ ରାଷ୍ଟ୍ରସଂଘ ୨୦୦୪ ମସିହାକୁ ଆନ୍ତର୍ଜାତିକ ଚାଉଳବର୍ଷ ଭାବରେ ଘୋଷଣା କରିଥିଲେ ।

ଉଦ୍ଭିଦ ପ୍ରଜନନ ବିଦ୍ୟା ଓ ଆନୁବଂଶିକ ବିଜ୍ଞାନ ବିଶାରଦ ନରମାନ ବରଲଗ୍ ଓ ଏମ୍‌ଏସ୍ ସ୍ୱାମୀନାଥନ୍ ଚାଉଳ ଉତ୍ପାଦନ ବୃଦ୍ଧିଲାଗି ଯେଉଁ ବିହନ ପ୍ରୟୋଗ କରିଥିଲେ ତା ନାଁ ଥିଲା "ଇଣ୍ଟରନାଶନାଲ୍ ରାଇଶ୍ -୮" । ଅଧିକ ଉତ୍ପାଦନ କ୍ଷମତା ଥିବାରୁ ଏହାକୁ ସେତେବେଳେ କୁହାଯାଉଥିଲା "ମିରାକଲ୍ ରାଇଶ୍" । ଏହା ଫଳରେ ଭାରତ ଦୁର୍ଭିକ୍ଷରୁ ରକ୍ଷା ପାଇଥିଲା । ସେହିପରି ଉନ୍ନତ ବିହନଦ୍ୱାରା ଉତ୍ପାଦନ ବଢ଼ାଇବାପାଇଁ ପ୍ରଥମେ ପଞ୍ଜାବକୁ ପରୀକ୍ଷାର ପ୍ରୟୋଗଶାଳା ରୂପେ ବ୍ୟବହାର କରାଗଲା । ଏହି ସମୟ ଥିଲା ଭାରତରେ ସବୁଜ ବିପ୍ଳବର ପ୍ରଥମ ପର୍ଯ୍ୟାୟ । ଏବେ ସେହି ପରମ୍ପରାର ବାହକ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର, କଟକ ଦ୍ୱାରା "ଆଘାନିବୋରା" ନାମକ ଏକ ନୂଆ ଚାଉଳ ପ୍ରସ୍ତୁତ କରାଯାଇଛି, ଯାହାକୁ ନ ରାନ୍ଧି କେବଳ ଗରମ ପାଣିରେ ବତୁରାଇ ଖାଇ ହେବ । ଏହା ପ୍ରକୃତରେ ଆସାମରେ ଚାଷ ହେଉଥିବା "କୋମଳ ଚାଉଳ"ର ଏକ ରୂପାନ୍ତର । ଏହାକୁ ଓଡ଼ିଶା, ବଙ୍ଗଳା, ଆନ୍ଧ୍ର, ତାମିଲନାଡୁ ଓ କେରଳ ଭଳି ତଟବର୍ତ୍ତୀ ରାଜ୍ୟମାନଙ୍କରେ ଚାଷ କରିହେବ ।

ଧାନ ଚାଉଳ ଆମ ସଂସ୍କୃତି, ସଭ୍ୟତା, ଜୀବନଯାପନ ପ୍ରଣାଳୀ ସହ ଓତପ୍ରୋତ ଭାବେ ଜଡ଼ିତ । ବୈଦିକ ଯୁଗରୁ ଧାନକୁ ମା' ଓ ମହାଲକ୍ଷ୍ମୀଙ୍କ ସ୍ଥାନ ଦିଆଯାଇଛି । କୃଷିଭିତ୍ତିକ ସମାଜର ମୂଳଦୁଆ ହେଉଛି ଧାନ । ଆମର ପୂଜା, ପାର୍ବଣ ଧାନ ଚାଉଳ ବିନା ଅସମ୍ପୂର୍ଣ୍ଣ । ହିନ୍ଦୁମାନଙ୍କ ବିବାହ, ବ୍ରତ, ପୂଜାପାଠରେ ଧାନର ପ୍ରଥମ ସ୍ଥାନ । ନୂଆ ବୋହୂଟିଏ ଘରେ ପ୍ରବେଶ ପୂର୍ବରୁ ପ୍ରଥମେ କଳସ ଚାଉଳକୁ ସ୍ପର୍ଶ କରନ୍ତି । ଦୂବ, ଓ ବରକୋଳି ପତ୍ର, ଚାଉଳଦ୍ୱାରା ଆଶୀର୍ବାଦ କରାଯାଏ । ଅନ୍ନଦାନକୁ ମହାଦାନ ବୋଲି କୁହାଯାଏ । ପାର୍ଥିବ ଶରୀରକୁ ଅନ୍ନମୟ ଶରୀର ବୋଲି କୁହାଯାଏ । ବିଭିନ୍ନ ଧର୍ମରେ ଧାନ୍ୟର ପ୍ରାଧାନ୍ୟ ରହିଛି । ଭାରତକୁ କବି ବର୍ଣ୍ଣନା କରିଛନ୍ତି ଧନ, ଧାନ୍ୟେ ପୁଷ୍ପେ ଭରା । ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ।

ସେହି ଧାନ୍ୟର ଜନ୍ମସ୍ଥାନ ହେଉଛି ଏସିଆ ଓ ଆଫ୍ରିକା ମହାଦେଶ । ଅନେକଙ୍କର ବିଶ୍ୱାସ ଧାନର ପ୍ରକୃତ ଜନ୍ମ ସ୍ଥାନ ପୂର୍ବ ଭାରତର ପଶ୍ଚିମ ଓଡ଼ିଶା । ଏଠାରେ ଧାନ ଅମଳ ସମୟରେ ନୂଆଖାଇ ସବୁଠାରୁ ବଡ ପର୍ବ । ଧାନ ଉତ୍ପାଦନରେ ପ୍ରଧାନ ଦଶଟି ଦେଶ ହେଲେ ଚାଇନା, ଭାରତ, ଇଣ୍ଡୋନେସିଆ, ଥାଇଲାଣ୍ଡ, ବର୍ମା, ଜାପାନ, ବାଂଲାଦେଶ, ବ୍ରାଜିଲ୍, ଫିଲିପାଇନ୍ସ ଓ ଭିଏତ୍‌ନାମ । ଚାଉଳ ବା ଜିନ୍ସ ଓରିଜାର ବିଶେଷତ୍ୱ ହେଲା ଏହା ଆର୍ଦ୍ର, ଶୁଖିଲା, ଶୀତ ଓ ଗ୍ରୀଷ୍ମଋତୁ, ଲୁଣି, କ୍ଷାର ମାଟି ଓ ଏପରିକି ମରୁଭୂମିରେ ମଧ୍ୟ ଉତ୍ପାଦିତ ହୋଇପାରେ । ଏସିଆରେ ଦୁଇ ଶହ କୋଟି ଲୋକଙ୍କର ୬୦ ରୁ ୭୦ ଭାଗ କାଲୋରି ଆବଶ୍ୟକତା ପୂରଣ କରିଥାଏ ଚାଉଳ । ଚାଉଳ ଉତ୍ପାଦନ, ବଣ୍ଟନ, ପ୍ରକ୍ରିୟାକରଣ ଓ ବ୍ୟବସାୟ ୧୨୦ କୋଟି ଲୋକଙ୍କର ଜୀବିକା । କେବଳ ଭାରତରେ ବର୍ଷକୁ ପ୍ରାୟ ୧୦ କୋଟି ଟନ୍ ଚାଉଳ ଉତ୍ପାଦନ ହୁଏ । ଶ୍ରୀ ପଦ୍ଧତି ଅନୁସରଣ କଲେ ଏହି ପରିମାଣ ୧୫ ରୁ ୨୦ କୋଟି ଟନ୍‌କୁ ବଢିବାର ସମ୍ଭାବନା ଅଛି ।

କିନ୍ତୁ ଚାଉଳର ମୂଲ୍ୟ ଦି'ଟଙ୍କା ହେବା ଫଳରେ ଅନେକ ଚାଷୀ ହତୋତ୍ସାହ ହୋଇ ପଡିଛନ୍ତି । କେତେକ ଚାଷୀ ଭାବୁଛନ୍ତି, ଖରା ବର୍ଷାରେ ପଙ୍କ କାଦୁଅ ଚକଟି ଚାଷବାସ ଅପେକ୍ଷା ଚାଉଳ କିଣି ଖାଇବା ଶସ୍ତା ପଡ଼ିବ । ଓଡ଼ିଶାରେ ଚାଷୀମାନେ ଏବେ ଋଣ ଶୁଝି ନପାରି ଆତ୍ମହତ୍ୟା କଲେଣି । ଏହାପରେ ଚାଷୀମାନେ ବହୁଦେଶୀୟ କମ୍ପାନିମାନଙ୍କୁ ଚାଷ ଜମି ବିକ୍ରିବା ଆରମ୍ଭ କରିବେ । ପଡୋଶୀ ଶ୍ରୀଲଙ୍କାରେ ବର୍ଷରେ ଦୁଇଟି ମୌସୁମୀ ଋତୁ ଥିବା ସତ୍ତ୍ୱେ ଅନେକ ଚାଷୀ ଚାଷ ଛାଡି ଦେଲେଣି । କାରଣ ଏଠାରେ ଉତ୍ପାଦନ ଅପେକ୍ଷା କିଣି ଖାଇବା ଲୋକଙ୍କୁ ଶସ୍ତା ପଡେ । ଏବେ ଫିଲିପାଇନ୍ସର ଏକ ସ୍କୁଲରେ ପଢୁଥିବା ୩୪ ଜଣ ଚାଷୀକୁଳର ପିଲାଙ୍କୁ ପଚାରିବାରେ ମାତ୍ର ୪ ଜଣ ଉତ୍ତର ଦେଇ କହିଲେ ଯେ ସେମାନେ କୃଷିଭିତ୍ତିକ ଜୀବିକା ପସନ୍ଦ କରିବେ । ଭାରତରେ ବି ଏହି ଅବସ୍ଥା । ଓଡ଼ିଶାରେ ୨୧ ଲକ୍ଷ ପରିବାର କୃଷି ଶ୍ରମ ଉପରେ ନିର୍ଭର କରି ଚଳନ୍ତି । କିନ୍ତୁ ଏବେ ଗ୍ରାମାଞ୍ଚଳରେ କୃଷି ଶ୍ରମିକ ଦୁର୍ଭିକ୍ଷ । ମିଲ୍ ମାଲିକମାନେ ଦି'ଟଙ୍କିଆ ଚାଉଳକୁ ଗରିବଙ୍କଠାରୁ ଆଠ ଟଙ୍କାରେ କିଣି ସରକାରଙ୍କୁ ୧୨ ଟଙ୍କାରେ ବିକି ବ୍ୟବସାୟ କଲେଣି । ଚାଉଳ ରାଜନୀତିର ଅନ୍ତ ନାହିଁ ।

ଗତ ପାଞ୍ଚ ହଜାର ବର୍ଷ ଧରି ଏସିଆ ଲୋକଙ୍କୁ ବାନ୍ଧି ରଖିଥିଲା ଚାଉଳ । ଗଙ୍ଗା, ବ୍ରହ୍ମପୁତ୍ର, କ୍ରିଷ୍ଣା, କାବେରୀ, ନର୍ମଦା, ମହାନଦୀ, ହୋୟାଙ୍ଗ୍‌ହୋ, ମେକଙ୍ଗ୍ ଅଞ୍ଚଳରେ ଗଢି ଉଠିଥିଲା କୃଷି ଭିତ୍ତିକ ସଭ୍ୟତା । ଜନ୍ମ ମୃତ୍ୟୁ ହାର ଉପରେ କୃଷି ଓ ଚାଉଳର

ପ୍ରଭାବଦ୍ୱାରା ଆବଶ୍ୟକୀୟ ଜନସଂଖ୍ୟା ବୃଦ୍ଧି ଘଟିଥିଲା । ଧାନ ଓ କୃଷି ଗାଁ ଲୋକଙ୍କୁ ଏକାଠି ରଖିଥିଲା । ଏସିଆରେ ଏହାର ନେତୃତ୍ୱ ନେଇଥିଲେ ତିନି ପ୍ରକାର ଧାନ :- (୧) ଇଣ୍ଡିକା (୨) ଜାପୋନିକା ଓ (୩) ଜାଭୋନିକା । ଭାରତ ଭଳି ଜାପାନ୍‌ରେ ଧାନର ଦ୍ୱିତୀୟ ନାମ ହେଲା ମା' ଓ କୃଷକଙ୍କୁ କୁହାଯାଏ ଜାପାନୀ ସଂସ୍କୃତିର ଅଭିଭାବକ । ଓଡ଼ିଶାରେ ଯେମିତି ମାଣବସା ଗୁରୁବାରରେ ଧାନ ଅକ୍ଷତ ପୂଜା ହୁଏ ଓ ଘରର ବଡ ବୋହୂଙ୍କୁ ଏ ଅଧିକାର ମିଳିଥାଏ, ସେମିତି ଦକ୍ଷିଣ ପୂର୍ବ ଏସିଆରେ ଚାଉଳକୁ ସମ୍ମାନିତ କରାଯାଏ । ବିଭିନ୍ନ ଚାଉଳର ରାନ୍ଧଣା, ବାସ୍ନା ଓ ସ୍ୱାଦ ବିଷୟରେ ଏ ଦେଶର କବି, ଲେଖକମାନେ ମୁଖର । ଏ ଅଞ୍ଚଳର ସମାଜକୁ କୁହାଯାଏ - 'ଭାତ, ମାଛ ସମାଜ' ବା 'ରାଇସ୍ - ଫିସ୍ ସୋସାଇଟି' । ଇଜିପ୍ଟର ନୀଳ ନଦୀ ଉପତ୍ୟକାରେ ପ୍ରଚଣ୍ଡ ରୌଦ୍ରତାପରୁ ରକ୍ଷା ପାଇବାପାଇଁ କୃଷକମାନେ ଧାନକ୍ଷେତର ଛାଇରେ ଆଶ୍ରୟ ନିଅନ୍ତି । ପୂର୍ବ ଓ ଦକ୍ଷିଣ ଭାରତର ଚାଷୀମାନେ ନଡ଼ା ଛପର ଘରେ ରହିବାକୁ ପସନ୍ଦ କରନ୍ତି । ଏ ସହଜ ସବୁଜ ଘର ସବୁ ଶୀତ ଦିନେ ଉଷୁମ ଓ ଖରାଦିନେ ଥଣ୍ଡା ଓ ପ୍ରଦୂଷଣମୁକ୍ତ ।

ବିଭିନ୍ନ ଦେଶରେ ଚାଉଳକୁ ନେଇ ଆଚାର, ବିଚାର, ଚାଲିଚଳଣ ଭିନ୍ନ ଭିନ୍ନ । ପ୍ରାଚୀନ କାଳରେ ଚୀନ୍ ଦେଶର ଲୋକମାନେ ପରସ୍ପରକୁ ଭେଟିଲା ବେଳେ "ଆପଣ କେମିତି ଅଛନ୍ତି" ନ କହି କହନ୍ତି - "ଆପଣ ଆଜି ଭାତ ଖାଇଛନ୍ତି ?" ଫ୍ରାନ୍‌ସରେ ରୋଲ୍‌ଡ ରାଇସ୍ ଓ ଟୁନା ମାଛ ଏକ ଲୋକପ୍ରିୟ ସୁଖାଦ୍ୟ । ଇଣ୍ଡୋନେସିଆରେ ରାଇସ୍ ପଲାଉ ଓ ଭାତ ମାଛ ସେମିତି ଲୋକପ୍ରିୟ । ଏ ଦେଶରେ ସାତ ହଜାର ପ୍ରକାର ଚାଉଳ ମିଳେ । ପ୍ରାତଃ ଭୋଜନପାଇଁ ସବୁଠାରୁ ସୁଖାଦ୍ୟର ନାଁ 'ନାସି ଗୋରେଙ୍ଗ' । ରାତ୍ରି ଭୋଜନରୁ ବଳି ପଡ଼ିଥିବା ଭାତଦ୍ୱାରା ଏହା ପ୍ରସ୍ତୁତ କରାଯାଏ । ଓଡ଼ିଶାରେ ଭାତ ବଳି ପଡ଼ିଲେ ପଖାଳ କରାଯାଏ ଓ ସକାଳେ ପଖାଳ, ପିଆଜ ଖାଇ ଚାଷୀମାନେ ବିଲକୁ ଯାଆନ୍ତି । "ପଖାଳ ଉକ୍ରଳେ ସଂଜୀବନୀ ସୁଧା - ହରେ ଏକାବେଳେ ତୃଷା, କ୍ଳାନ୍ତି, କ୍ଷୁଧା" । ଥାଇଲାଣ୍ଡରେ ଜାସ୍‌ମିନ୍ ରାଇସ୍ ଓ ରେଡ୍‌କାର୍ଗୋ ରାଇସ୍ ଖାଇବାକୁ ଲୋକେ ପସନ୍ଦ କରନ୍ତି । ଭିଏତ୍‌ନାମରେ ଅଧିକ ବ୍ୟବହୃତ ଚାଉଳର ନାଁ 'ଦୁରହୁରଙ୍ଗ ରାଇସ୍' ଓ 'ନାଗଥମ୍ ରାଇସ୍' । ଭାରତ, ପାକିସ୍ତାନରେ ଉତ୍ପନ୍ନ ଓ ଏବେ ସାରା ପୃଥିବୀରେ ବିଖ୍ୟାତ ଓ ମୂଲ୍ୟବାନ ଚାଉଳ ହେଉଛି 'ବାସୁମତି' ।

ଓଡ଼ିଶାରେ ପ୍ରାୟ ୪୦ ପ୍ରକାର ବାସନା ଚାଉଳ ମିଳେ । କିନ୍ତୁ ପଞ୍ଜାବ, ହରିଆନା ଭଳି ଚାଉଳ ନ ଖାଉଥିବା ରାଜ୍ୟମାନେ ଏବେ ଆମ ପରି ଚାଉଳଖିଆ ରାଜ୍ୟଙ୍କଠାରୁ ଅଧିକ ଚାଉଳ ଉତ୍ପାଦନ କରୁଛନ୍ତି । ଚାଉଳ ରପ୍ତାନିରେ ସବୁଠାରୁ ଆଗୁଆ ଦେଶ ହେଲା

ଥାଇଲାଣ୍ଡ । ତା'ପଛକୁ ଭିଏତ୍‌ନାମ । ଏ ଦେଶର ମହିଳାମାନେ ଚାଉଳରୁ ଯେଉଁ ସୁଆଦିଆ ପିଠା ତିଆରି କରନ୍ତି ତା ନାଁ ହେଲା 'ବନ୍‌ଚୁଙ୍ଗ୍' । ଏ ଅଞ୍ଚଳରେ ଏକ କିମ୍ବଦନ୍ତୀ ଅଛି ଯେ ତିନି ହଜାର ବର୍ଷ ପୂର୍ବେ ହୁଙ୍ଗ୍ ରାଜବଂଶର ୬ଷ ରାଜା ଜଣେ ଚାଷୀଙ୍କ ଘର ତିଆରି ପିଠା 'ବନ୍‌ଚୁଙ୍ଗ୍' ଖାଇ ଏତେ ଖୁସି ହୋଇଗଲେ ଯେ ଏହାର ମୂଲ୍ୟ ସ୍ୱରୂପ ସମ୍ପୃକ୍ତ ଚାଷୀଙ୍କୁ ସମଗ୍ର ରାଜ୍ୟ ଓ ନିଜ ରାଜଗାଦି ଦେଇଦେଲେ । ଏଠାରେ ଆଉ ଏକ ଲୋକପ୍ରିୟ ପ୍ରବାଦ ହେଲା – 'ସ୍ୱାଭାବିକ ସମୟରେ ବିଦ୍ୱାନ ଓ ପଣ୍ଡିତଙ୍କ ସ୍ଥାନ ଆଗ ଧାଡିରେ ଓ ଚାଷୀ ପଛରେ, କିନ୍ତୁ ଦୁର୍ଭିକ୍ଷ ବେଳେ ଚାଷୀଙ୍କ ସ୍ଥାନ ଆଗରେ ଓ ପଣ୍ଡିତମାନେ ତାଙ୍କ ପଛରେ ।'

ପଡୋଶୀ କାମ୍ବୋଡ଼ିଆରେ ରାଇସ୍ – ବନାନା କେକ୍ (ଚାଉଳ କଦଳୀ ବଟା ପିଠଉର ପିଠା) ବିନା ବିବାହ ଉତ୍ସବ ଅସମ୍ପୂର୍ଣ୍ଣ । ସେମିତି ଶ୍ରୀଲଙ୍କାରେ କ୍ଷୀର ଭାତର ସ୍ଥାନ । ଓଡ଼ିଶାରେ ଆଗେ ଭୋଜିର ନାମ ଥିଲା କ୍ଷୀରି-ପିଠା । ଇଜିପ୍ଟରେ ଆଲେକ୍‌ଜାଣ୍ଡ୍ରିଆ ରେଷ୍ଟୋରାଁମାନଙ୍କରେ ସବୁଦିନ ସନ୍ଧ୍ୟାରେ 'ରୁଜ ମୁଆମ୍ମର ବି ଟୟୁର୍' ଖାଇବାପାଇଁ ପ୍ରବଳ ଭିଡ଼ ହୁଏ । ଏହିପରି ଚାଉଳକୁ ନେଇ ପୃଥିବୀରେ ୮ ହଜାର ପ୍ରକାର ସୁସ୍ୱାଦୁ ଖାଦ୍ୟ ପ୍ରସ୍ତୁତ ହୋଇଥାଏ । ଆମେରିକାରେ ଅନେକ ବାପା, ମା ପିଲାର ନାଁ ବା ସାଙ୍ଗିଆ ରଖିଥାନ୍ତି ରାଇସ୍ ବା ଚାଉଳ । ଯେପରିକି କଣ୍ଡୋଲିଜା ରାଇସ୍ (ପୂର୍ବତନ ବିଦେଶ ମନ୍ତ୍ରୀ), ଉଇଲିୟମ୍ ମାର୍ଶ ରାଇସ୍ । ଉଇଲିୟମ୍ ରାଇସ୍‌ଙ୍କ ନାଁରେ ପୃଥିବୀରେ ପ୍ରଥମ ବିଶ୍ୱବିଦ୍ୟାଳୟର ନାଁ ରାଇସ୍ ୟୁନିଭରସିଟି ୧୯୧୨ ମସିହାରେ ପ୍ରତିଷ୍ଠିତ । ଏପରି ଚାଉଳ ସାରା ପୃଥିବୀରେ ସମ୍ମାନିତ ।

ଏବେ ବ୍ୟଙ୍ଗରେ କିଛି :- ଡାଲି ଚାଉଳଙ୍କ ଯୁଗ ଯୁଗ ସମ୍ପର୍କ ଏବେ ବିପଦଗ୍ରସ୍ତ । ଜଣେ ପୁଷ୍ଟିସାର ରାଣୀ ତ ଅନ୍ୟ ଜଣକ ଶ୍ୱେତସାରର ଖଣି । ତେବେ କିଏ ବଡ଼, କିଏ ଛୋଟ ଏ ନେଇ ଉଭୟଙ୍କ ମଧ୍ୟରେ ଶୀତଳ ଯୁଦ୍ଧ ଏବେ ଗରମାଗରମ । ନିର୍ବାଚନ ଇସ୍ତାହାର ପଢି ମନ ଖୁସିରେ ଡାଲି ଚାଉଳକୁ କହିଲା ତୋ ଦାମ୍ କମି କମି ହେଲାଣି କିଲୋକୁ ଟଙ୍କା ଯୋଡିଏ, ମୋ ଦାମ୍ ବଢି ହେଲାଣି ଶହେ କୋଡିଏ । ତୋ ମହତ୍, ଇଜ୍ଜତ ଏବେ ଦି ଟଙ୍କାରେ ଦାଣ୍ଡରେ ହାଟରେ ଗଡ଼ ଗଡୋଉଛି । ମାଟି ଗୋଡି ଦାମ୍ ବି ତୋଠୁ ଅଧିକା । ପୁଣି ତୁ ଏବେ ଯାଇ ରହିଥିବୁ ଦାରିଦ୍ର୍ୟ ସୀମାରେଖା ତଳେ, ମୁଁ ଉଠି ପହଞ୍ଚିଲିଣି ଦାରିଦ୍ର୍ୟ ସୀମା ଡିଆଁ ସିଡି ଉପରେ । ଗ୍ଲୋବାଲ ୱାର୍ମିଂରେ ଏଥର ତୋ କୁଳ ବୁଡ଼ିଯିବ । ଆଉ ଅଧିକ ଅପମାନ ସହି ନ ପାରି ଚାଉଳ ଜବାବ ଦେଲା - ମନେରଖ ଆଗ ଚାଉଳ ପଛେ ଡାଲି । ମୁଁ ଏବେ ହେବି ଗରିବଙ୍କ ପେଟର ଦାନା,

ତୁ ହେବୁ ଧନୀଙ୍କ ଦାମିକା ଖାନା । ଏବଂ ତତେ ଆଉ ଲୋକେ କିଣିବେନି, ନାଁ ବି ଧରିବେନି । ଧୀରେ ଧୀରେ ତତେ ଭୁଲିଯିବେ । ଜାଣିଥା, ଏବେ ତୋ ଲୋକେ ନୋଟ୍ ଦେଇ ମୋ ଲୋକଙ୍କଠୁ ଆଉ ଶସ୍ତାରେ ଭୋଟ୍ କିଣି ପାରିବେ ନାହିଁ । ଏଥର ଦି ଟଙ୍କାରେ ଚାଉଳ ଦେଲେ ସିନା, ଆର ଥରକୁ ଦେବେ ମାଗଣା । ତା ଆର ଥରକୁ ଚାଉଳ ନ ଦେଇ ମତେ ରାନ୍ଧି ଖୁଆଇବେ । ମୋତେ ସାଙ୍ଗରେ ନ ନେଲେ ନିର୍ବାଚନ ଜିତିବା ମୁସ୍କିଲ ହେବ । ତେଣୁ ମୋ ଶକ୍ତି ତୋଠୁ ଅଧିକ । ସବୁ ଶୁଣି ସାରିଲା ପରେ ଡାଲି କହିଲା- ହଉ ହେଲା, ଏସବୁ କଥା ଛାଡ । ଏବେ ନେତା, ବାବୁ ଓ ଲାଲାଙ୍କୁ କହ ଆମ ଦୁହିଁଙ୍କୁ ପୁଣି ଏକାଠି କରି ଦିଅନ୍ତୁ । ବିରହ ଅସହ୍ୟ ହେଲାଣି ।

*୧୬ ଅକ୍ଟୋବର, ୨୦୦୯*



# ବିଳାସ, ଅତିବ୍ୟୟ ଓ ବିବେକ

ବିଦେଶ ରାଜ୍ୟ ମନ୍ତ୍ରୀ ଶଶି ଥରୁର୍ ସରକାରଙ୍କ ମିତବ୍ୟୟିତା ନିଷ୍ପତ୍ତିକୁ ବ୍ୟଙ୍ଗ କରିବା ପରେ କିଛି ଦିନ ହେଲା ଇଂରାଜୀ ଭାଷାର ଦୁଇଟି ଶବ୍ଦ 'ଇକନମି' ଓ 'ଅଷ୍ଟେରିଟି' ବାରମ୍ବାର ଚର୍ଚ୍ଚାକୁ ଆସିଲେଣି । ଶବ୍ଦକୋଷରେ ଏହାର ଅର୍ଥ ହେଉଛି କଠୋରତା, କଷ୍ଟ ବା କ୍ଲେଶଦାୟକ, ଦୁଃସହ-ସରଳତା, ଆତ୍ମନିଗ୍ରହ, ଆତ୍ମସଂଯମ । ଦେଶର ଅର୍ଥବ୍ୟବସ୍ଥାକୁ ସୁଧାରିବାପାଇଁ ମିତବ୍ୟୟ ବା ସ୍ୱଳ୍ପ ଖର୍ଚ୍ଚ । ଅର୍ଥଶାସ୍ତ୍ରୀମାନେ ଏହାକୁ କହନ୍ତି ଖର୍ଚ୍ଚକାଟ, ବନ୍ଦଖର୍ଚ୍ଚ, ବିନିର୍ବ୍ୟୟ, ଅତିବ୍ୟୟ ରୋକିବା ଓ ବିଚାରବନ୍ତ ଭାବରେ ସମ୍ପଦ ଓ ସମ୍ବଳ ପରିଚାଳନା କରିବା । ନେତା, ମନ୍ତ୍ରୀ, ବଡ଼ବାବୁ ଓ କମ୍ପାନିମାନେ ବିଚାରବନ୍ତ ଭାବରେ ଖର୍ଚ୍ଚ କଲେ ଅର୍ଥନୀତି ଓ ସାଧାରଣ ନାଗରିକଙ୍କ ଉପରେ ଏହାର ଭଲ ପ୍ରଭାବ ପଡ଼େ । ତେଣୁ ଏବେ ଜଣେ ମନ୍ତ୍ରୀ କମ୍ପାନିମାନଙ୍କୁ କହିଛନ୍ତି ଯେ ସେମାନେ ମଧ୍ୟ ଉଚ୍ଚପଦସ୍ଥ କର୍ମଚାରୀମାନଙ୍କୁ ରୁଚିବିହୀନ ଅସଭ୍ୟ ମୋଟା ଦରମା ନ ଦିଅନ୍ତୁ । ଏଭଳି କେତେକ କମ୍ପାନି ଜଣକୁ ମାସକୁ ଦରମା ଦିଅନ୍ତି ଦୁଇରୁ ତିନି କୋଟି ଟଙ୍କା । ସେହି ମନ୍ତ୍ରୀଙ୍କ ଭାଷାରେ ଏହା "ଭଲ୍‌ଗାର ସାଲାରି" । ବିଳାସପୂର୍ଣ୍ଣ, ବ୍ୟୟବହୁଳ ଜୀବନଶୈଳୀ ମଧ୍ୟ ସେହିପରି ଏକ ଅସଭ୍ୟତା । ଭାରତରେ କେତେକ କମ୍ପାନିମୁଖ୍ୟଙ୍କ ବାର୍ଷିକ ଦରମା ସାଧାରଣ ଭାରତୀୟଙ୍କ ମୁଣ୍ଡପିଛା ବାର୍ଷିକ ଆୟଠାରୁ ସାଢ଼େବାର ହଜାର ଗୁଣ ଅଧିକ ।

ପୃଥିବୀର ବିଭିନ୍ନ ଧର୍ମରେ ସାଦା, ସରଳ ଜୀବନକୁ ଉଚ୍ଚ ସ୍ଥାନ ଦିଆଯାଇଛି । ଇସ୍‌ଲାମ୍‌ର ସୁଫୀ ସନ୍ଥ ଓ ହିନ୍ଦୁ ଧର୍ମର ସନ୍ନ୍ୟାସୀମାନେ ଏଥିପାଇଁ ପୃଥିବୀ ବିଖ୍ୟାତ । ତପସ୍ୟା ଓ ସାଧନା କାଳରେ ମୁନି, ଋଷିମାନେ ସବୁଠାରୁ ଅଳ୍ପାହାର କରିଥାନ୍ତି ବା ପାଣି ପବନ ଆହାର କରିଥାନ୍ତି । ବାଇବେଲ୍‌ରେ ସରଳ ଜୀବନର ଭୂରି ଭୂରି ପ୍ରଶଂସା କରାଯାଇଛି । ବୌଦ୍ଧ ଧର୍ମରେ ଭିକ୍ଷୁ, ଭିକ୍ଷୁଣୀମାନେ ଭିକ୍ଷା ଉପରେ ଓ ଶ୍ରମଣମାନେ ଶ୍ରମ ଉପରେ ନିର୍ଭର କରି ଚଳନ୍ତି । ଏମାନଙ୍କପାଇଁ ସମ୍ପତ୍ତି ସଞ୍ଚୟ ଓ ବିଳାସ ମନା ।

ଭଗବତ୍ ଗୀତାରେ ବିଳାସହୀନ ସାତ୍ତ୍ୱିକ ଆହାର ବିହାରଦ୍ୱାରା ଈଶ୍ୱରପ୍ରାପ୍ତି ସହଜ ହୁଏ ବୋଲି କୁହାଯାଇଛି । ଏବେ କେରଳର ଆର୍ଚ୍‌ଡିଓସିଜ୍ ଖ୍ରୀଷ୍ଟିୟାନ୍ ଧର୍ମଯାଜକମାନଙ୍କୁ ନିର୍ଦ୍ଦେଶ ଦେଇ କହିଛନ୍ତି ଯେ ସେମାନେ ଖାଦ୍ୟ, ବସ୍ତ୍ର ଓ ଯାତ୍ରାରେ ମିତବ୍ୟୟୀ ହୁଅନ୍ତୁ । ଗୁରୁ ନାନକ କହିଥିଲେ, ଈଶ୍ୱରଙ୍କପାଇଁ ଉଦ୍‌ବିଗ୍ନତା ହେଉଛି ଏକ କୁମ୍ଭାର ଭାଟି, ମିତବ୍ୟୟିତା ଓ ଆତ୍ମସଂଯମ । ତା'ର ନିଆଁ ଏବଂ ପ୍ରେମ ହେଉଛି ତରଳାଇବାପାଇଁ ବ୍ୟବହୃତ ପାତ୍ର ।

ମୋଗଲ ଶାସନ କାଳରେ ବାଦଶାହା ଔରଙ୍ଗଜେବ ଅତ୍ୟନ୍ତ କଠୋର ଓ ସରଳ ଜୀବନ ଯାପନ କରୁଥିଲେ । ଏପରିକି ନିଜର ପୋଷାକ ଚିରି ଗଲେ ନିଜେ ସିଲାଇ ଓ ରଫୁ କରି ପିନ୍ଧୁଥିଲେ । ରାଜା ରାମଚନ୍ଦ୍ର ରାଜ୍ୟ ସୁଖ ତ୍ୟାଗ କରି ବଣ ଜଙ୍ଗଲରେ ସନ୍ନ୍ୟାସୀ ଭଳି ରହିଲେ ଚଉଦ ବର୍ଷ । ଲକ୍ଷ୍ମଣ ଅଖିଆ, ଅପିଆ ରହୁଥିଲେ । ବୁଦ୍ଧ ରାଜପଦ, ବିଳାସ ବ୍ୟସନ ତ୍ୟାଗ କରି ଚାଲି ଯାଇଥିଲେ ନିର୍ବାଣ ସନ୍ଧାନରେ । ରାଜା ବିଶ୍ୱାମିତ୍ର ରାଜ୍ୟସୁଖ ଛାଡି ତପସ୍ୟାପାଇଁ ଚାଲିଗଲେ ଓ ଆଉ ଲେଉଟିଲେ ନାହିଁ । ଜନକ ରାଜା ହୋଇ ମଧ୍ୟ ଋଷିଙ୍କ ଭଳି ସରଳ ଜୀବନ ଯାପନ କରୁଥିଲେ । ଚାଣକ୍ୟ ଏକଦା ଥିଲେ ତତ୍‌କାଳୀନ ଭାରତର ପ୍ରଧାନମନ୍ତ୍ରୀ, କିନ୍ତୁ ଅତ୍ୟନ୍ତ ନିରାଡ଼ମ୍ବର ଭାବରେ ରହୁଥିଲେ, ତଳେ ମଶିଣା ପକାଇ ଶୋଉଥିଲେ, କୁଶ ଆସନରେ ବସୁଥିଲେ । ଦରମା ନେଉ ନଥିଲେ ଏବଂ ଶେଷରେ ପ୍ରଧାନମନ୍ତ୍ରୀ ପଦ ତ୍ୟାଗ କରି ଚାଲି ଯାଇଥିଲେ । ମହାଦେବ ଥିଲେ ଶ୍ମଶାନବାସୀ, ତାଙ୍କର ଘରଦ୍ୱାର ନଥିଲା, ସରୀସୃପ ଓ ପଶୁମାନଙ୍କ ଗହଣରେ ରହୁଥିଲେ ଏହି ପଶୁପତିନାଥ ।

ନିଜର ମିତବ୍ୟୟିତାଯୋଗୁଁ ଗାନ୍ଧୀ ବିଶ୍ୱବିଖ୍ୟାତ । ତାଙ୍କର ଚାଲି ଚଳଣି, ଖାଦ୍ୟ, ବସ୍ତ୍ର, ବାସ - ସରଳତାରେ ପରିପୂର୍ଣ୍ଣ । ଯାତ୍ରା କରୁଥିଲେ ତୃତୀୟ ଶ୍ରେଣୀ ସାଧାରଣ ରେଳ ବଗିରେ । ତାଙ୍କ ପାଖକୁ ଯେଉଁ ଚିଠି ଆସୁଥିଲା, ସେଥିରେ ଥିବା ଖାଲି ସ୍ଥାନରେ ଉତ୍ତର ଲେଖି ପଠାଇ ଦେଉଥିଲେ । ସେ ସଦାବେଳେ କହୁଥିେ. ପୃଥିବୀ ଓ ପ୍ରକୃତିକୁ ରକ୍ଷା କରିବାକୁ ହେଲେ ଯେତିକି ଦରକାର, ତା'ଠାରୁ କମ୍ ବ୍ୟବହାର କର । ଏଥିରୁ ପ୍ରେରଣା ପାଇ ପଣ୍ଡିତ ଜବାହରଲାଲ ନେହେରୁ ନିଜ ଦାମୀ ପୋଷାକ ଛାଡ଼ି ଦେଇଥିଲେ । ଶହେ କୋଟି ଟଙ୍କାର ଆନନ୍ଦ ଭବନ ଦେଶକୁ ଦାନ କରି ବାସହୀନ ହୋଇଥିଲେ । ପ୍ରଧାନମନ୍ତ୍ରୀ ଥିଲା ବେଳେ ଶଶି ଥରୁରଙ୍କ 'ଗାଈ ଗୋରୁ ଶ୍ରେଣୀ' (ବା କ୍ୟାଟଲ୍ କ୍ଲାସ୍) ରେ ଯାତ୍ରା କରୁଥିଲେ । ବିଦେଶ ଗସ୍ତରେ ଗଲାବେଳେ ପଞ୍ଚତାରକା ହୋଟେଲ୍‌ରେ ନ ରହି ସେ ଦେଶରେ ଥିବା ଭାରତୀୟ ଦୂତାବାସରେ ରହୁଥିଲେ ।

ଲାଲ୍ ବାହାଦୂର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ଥିଲା ବେଳେ ଦେଶରେ ଖାଦ୍ୟ ଅନାଟନ ପଡ଼ିଥିଲା । ତେଣୁ ରାତ୍ରି ଭୋଜନ ଛାଡ଼ି ଦେଇଥିଲେ । ଦେଶ ବାହାରେ ଥିଲା ବେଳେ ନିଜ ଖାଦ୍ୟ ନିଜେ ରାନ୍ଧି ଖାଉଥିଲେ । ପ୍ରଧାନମନ୍ତ୍ରୀ ହେଲା ପର୍ଯ୍ୟନ୍ତ ତାଙ୍କର ନିଜ ଗାଡ଼ି ନଥିଲା । ପ୍ରଧାନମନ୍ତ୍ରୀ ହେଲା ପରେ ବ୍ୟକ୍ତିଗତ ବ୍ୟବହାରପାଇଁ ୨୦ ହଜାର ଟଙ୍କା ବ୍ୟାଙ୍କ୍ ଋଣ ନେଇ ଗାଡିଟିଏ କିଣିଥିଲେ । ଗାନ୍ଧୀଙ୍କ ପଟ୍ଟଶିଷ୍ୟ ଓ ଭୂଦାନ ଆନ୍ଦୋଳନର ଜନକ ଆଚାର୍ଯ୍ୟ ବିନୋବା ଭାବେ ପୌନାର ଆଶ୍ରମ ନିଜେ ଓ ସହକର୍ମୀଙ୍କ ଶ୍ରମଦାନରେ ନିର୍ମାଣ କରି ଏକ ଅତ୍ୟନ୍ତ ସରଳ ଜୀବନ ଯାପନ କରୁଥିଲେ । ଆଶ୍ରମର ଅନ୍ତେବାସୀମାନେ ପରିଶ୍ରମ କରି ଖାଦ୍ୟ ଉତ୍ପାଦନ କରୁଥିଲେ । ବିନୋବାଙ୍କଦ୍ୱାରା ଉଦ୍‌ବୁଦ୍ଧ ହୋଇ ଗୋପବନ୍ଧୁ ଚୌଧୁରୀ ଓ ନବକୃଷ୍ଣ ଚୌଧୁରୀ ତାଙ୍କର ସମସ୍ତ ସମ୍ପତ୍ତି ଦାନ କରି ଆଶ୍ରମରେ ରହୁଥିଲେ । ସେହିପରି ଉତ୍କଳମଣି ଗୋପବନ୍ଧୁ, ଉତ୍କଳ ଗୌରବ ମଧୁସୂଦନ ଦେଶପାଇଁ ଧନ ଓ ଜୀବନ ସବୁ ଉତ୍ସର୍ଗ କରି ଦେଇଥିଲେ । ଶରୀର ଶ୍ରମ ନ କଲେ ସାବରମତୀ ଆଶ୍ରମରେ ଭୋଜନ ମିଳୁନଥିଲା ।

ଜୟପ୍ରକାଶ ନାରାୟଣ ୧୯୫୪ ମସିହାରେ ସକ୍ରିୟ ରାଜନୀତିରୁ ଅବସର ନେଇ ଭୂଦାନ ଆନ୍ଦୋଳନରେ ଯୋଗ ଦେଇଥିଲେ ଏବଂ ନିଜର ସବୁ ଜମି ଓ ସମ୍ପତ୍ତି ଦେଶକୁ ଦାନ କରି ଦେଇଥିଲେ । ବାରମ୍ବାର ମନ୍ତ୍ରୀପଦ ପ୍ରତ୍ୟାଖ୍ୟାନ କରିଥିଲେ । ନେହେରୁ କହୁଥିଲେ ଭାରତର ଭାବୀ ପ୍ରଧାନମନ୍ତ୍ରୀ ହେବେ ଜୟପ୍ରକାଶ ନାରାୟଣ । ତେବେ ବି ଜୟପ୍ରକାଶ ସେ ମୋହରେ ପଡ଼ିନଥିଲେ । ଭୂଦାନ ଆନ୍ଦୋଳନ ସଫଳ ହୋଇଥିଲେ, ନକ୍ସଲ ଆନ୍ଦୋଳନ ସୃଷ୍ଟି ହୋଇନଥାନ୍ତା । ଜୟପ୍ରକାଶଙ୍କ ଭଳି ଅନେକ ନେତା ନିଜର ସମ୍ପତ୍ତି ଦେଶକୁ ଦାନ କରିଥିଲେ । ଆମ ଦେଶରେ ଏବେ ବି ଅନେକ ବ୍ୟକ୍ତିଙ୍କ ଜୀବନ ସରଳ ଓ ନିରାଡ଼ମ୍ବର ଏବଂ ଏହିମାନେ ଦେଶର ଗର୍ବ । ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ଯେଉଁ ଉଡ଼ାଜାହାଜ ରଖିଛନ୍ତି, ସେଥିପାଇଁ ବର୍ଷକୁ ଖର୍ଚ୍ଚ ହୁଏ ୪୦୦ କୋଟି ଟଙ୍କା । ଜଣେ ମୁଖ୍ୟମନ୍ତ୍ରୀ ନିଜର ଓ ନିଜ ଦଳୀୟ ବ୍ୟକ୍ତିଙ୍କପାଇଁ ପ୍ରତିମୂର୍ତ୍ତି ନିର୍ମାଣରେ ଖର୍ଚ୍ଚ କଲେଣି ୩୦୦୦ କୋଟି । ଏବେ ସୁପ୍ରିମ୍‌କୋର୍ଟଙ୍କ ଆଦେଶରେ ତାହା ବନ୍ଦ ହୋଇଛି । କିନ୍ତୁ, ସରକାରୀ ଟଙ୍କାରେ ବିଳାସ ସାମଗ୍ରୀର ହିସାବ ନାହିଁ । ଏବେ ଜନ୍ମଦିନରେ ମାୟାବତୀଙ୍କ ଭକ୍ତମାନେ ଦଶକୋଟି ଟଙ୍କାର ନୋଟ୍ ମାଳ ପିନ୍ଧାଇବା ପରେ ମିତବ୍ୟୟପାଇଁ ଉପଦେଶକୁ ଲୋକେ ତାମସା ବୋଲି ଭାବୁଛନ୍ତି ।

ଏପରି ବଦ୍ ଖର୍ଚ୍ଚ ରୋକିବାପାଇଁ ଗଣମାଧ୍ୟମ ଜରିଆରେ (ଟାଇମ୍‌ସ ଅଫ୍ ଇଣ୍ଡିଆ-୨୦.୦୯.୨୦୦୯) ଯେଉଁ ଏଗାରଟି ପରାମର୍ଶ ଆସିଛି, ସେଗୁଡିକ ହେଲା :- ୧)

କେବଳ ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀଙ୍କୁ ଛାଡି ସମସ୍ତ ଏମ୍‌ପି. ଓ ମନ୍ତ୍ରୀ ନିଜ ନିଜ ମାଗଣା ସରକାରୀ ବଙ୍ଗଳା ଛାଡି ଦିଅନ୍ତୁ, ୨) ପରିବାର ଓ ବନ୍ଧୁବାନ୍ଧବଙ୍କପାଇଁ ସରକାରୀ ଗାଡି ବ୍ୟବହାର ନ କରନ୍ତୁ, ୩) ଟେଲିଫୋନ୍ ଓ ବିଜୁଳି ବିଲ୍ ନିଜ ପକେଟ୍‌ରୁ ପଇଠ କରନ୍ତୁ, ୪) ମନଇଚ୍ଛା ସରକାରୀ ବାସଗୃହକୁ ମରାମତି ନ କରନ୍ତୁ, ୫) ନିଜ ନିଜ କାର୍ଯ୍ୟାଳୟକୁ ସଜାଇବାପାଇଁ ଅଯଥା ଖର୍ଚ୍ଚ ନ କରନ୍ତୁ, ୬) ଯେତେଦୂର ସମ୍ଭବ ଦେଶପାଇଁ ଅଦରକାରୀ ବିଦେଶ ଯାତ୍ରା ବନ୍ଦ କରନ୍ତୁ, ୭) ସରକାରୀ ଖର୍ଚ୍ଚରେ ପାର୍ଟି, ଭୋଜି ବନ୍ଦ କରନ୍ତୁ, ୮) ମାଗଣା ରେଳଯାତ୍ରା ଓ ବିମାନଯାତ୍ରା ବନ୍ଦ ହେଉ, ୯) ନିଜ ମନ୍ତ୍ରଣାଳୟ ସହ ସମ୍ପୃକ୍ତ ସରକାରୀ ବା ବେସରକାରୀ ଉଦ୍ୟୋଗଠାରୁ କୌଣସି ସୁବିଧା, ଉପହାର ଇତ୍ୟାଦି ନ ନିଅନ୍ତୁ, ୧୦) ଦଳ କାମପାଇଁ ସରକାରୀ ଯାତ୍ରା, ଗାଡ଼ି ଇତ୍ୟାଦି ବ୍ୟବହାର ନ କରନ୍ତୁ, ୧୧) ନିଜ ନାମରେ ପ୍ରତିମୂର୍ତ୍ତି, ସ୍ମାରକ ନିର୍ମାଣ କରିବାର ଦୁର୍ବଳତାରୁ ଦୂରେଇ ରହନ୍ତୁ ଏବଂ କ୍ଷମତାକୁ ବ୍ୟବସାୟ ଓ ଲାଭପାଇଁ ପ୍ରୟୋଗ ନ କରନ୍ତୁ ।

ଗ୍ଲୋବାଲ ୱାର୍ମିଙ୍ଗ୍ ବା ଉତପ୍ତ ପୃଥିବୀକୁ ସବୁଜ, ଶୀତଳ କରିବାପାଇଁ ସରଳ ଜୀବନ ପ୍ରଣାଳୀ ଉପରେ ଏବେ ଜୋର୍ ଦିଆଯାଉଛି । ଏଥିପାଇଁ ଦୈନନ୍ଦିନ ଆବଶ୍ୟକତାକୁ ସୀମିତ ରଖିବାକୁ ହେବ । ନଦୀମାନେ ସମୁଦ୍ରକୁ ଯେତିକି ଜଳଦାନ କରନ୍ତି, ସମୁଦ୍ର ତା'ର ହଜାରେ ଗୁଣ ଫେରାଇ ଦିଏ । ବୃକ୍ଷଲତା ମାଟିରୁ ଯେତିକି ସାର ନିଅନ୍ତି, ତା'ର ଲକ୍ଷେଗୁଣ ପତ୍ର, ଫୁଲ, ଫଳ ଆକାରରେ ଫେରାଇ ଦିଅନ୍ତି, ଚଢେଇମାନେ ଯେତିକି ଫଳ ଖାଆନ୍ତି, ତା'ଠାରୁ ବହୁ ଗୁଣ ମଞ୍ଜି ଫେରାଇ ପୃଥିବୀରେ ଜଙ୍ଗଲ ସୃଷ୍ଟିରେ ସାହାଯ୍ୟ କରନ୍ତି । କେବଳ ମଣିଷ କ୍ରମେ ଏଇ ବିଚାରଟି ଭୁଲି ଯାଉଛି । ମହାତ୍ମାଗାନ୍ଧୀ କହୁଥିଲେ - 'ଲିଭ୍ ସିମ୍ପଲି ସୋ ଦାଟ୍ ଅଦର୍ସ ମେ ସିମ୍ପଲି ଲିଭ୍' - ସରଳ ଜୀବନ ଯାପନ କର, ଯେପରିକି ଅନ୍ୟମାନଙ୍କପାଇଁ ଜୀବନ ଯାପନ ସରଳ ହେବ । ସେକ୍ସପିଅରଙ୍କ ଭାଷାରେ - ଯେ ଆବଶ୍ୟକତାଠାରୁ କମ୍ ପାଇ ବି ଖୁସି, ସେ ହିଁ ପ୍ରକୃତରେ ଧନୀ । ପରିବର୍ତ୍ତିତ ପରିସ୍ଥିତିରେ ସବୁଲୋକଙ୍କଠାରୁ ମୁନି, ଋଷୀ ବା ଗାନ୍ଧୀଙ୍କ ଭଳି କଠୋର ସରଳତା ଆଶା କରିବା ଅବାସ୍ତବ, କିନ୍ତୁ ଏହା ପଛରେ ଥିବା ବିଚାର ଦର୍ଶନକୁ ଭୁଲିଗଲେ ଜୀବନ ଅଧିକ ଜଟିଳ ଓ ଦୁର୍ବିସହ ହୋଇଯିବ ।

ପ୍ରଖ୍ୟାତ ଚିତ୍ରକର ଲିଓନାର୍ଡୋ ଦା ଭିନ୍‌ସିଙ୍କ ଭାଷାରେ ସରଳତା ହେଉଛି ଏକ ମାର୍ଜିତ, ଉନ୍ନତ ରଚିର ଭାବ ଓ ଆଚରଣ । କନ୍‌ଫୁସିଅସ୍ କହୁଥିଲେ ଜୀବନ ପ୍ରକୃତରେ ସରଳ ଏବଂ ମଣିଷ ଜାଣିଶୁଣି ତା'କୁ ଜଟିଳ କରି ପକାଏ । ଏ ବିଷୟରେ ଆର୍.ଏଲ୍. ଷ୍ଟିଭେନ୍‌ସନ୍‌ଙ୍କ ଉକ୍ତି ସତ୍ୟ ଓ ବାସ୍ତବତାର ଖୁବ୍ ନିକଟ । ସେ କହୁଥିଲେ ଜୀବନର

ସବୁଠାରୁ ଅମୂଲ୍ୟ ଆବଶ୍ୟକତାଗୁଡିକ ମଣିଷର ସବୁଠୁ ନିକଟରେ ଥାଆନ୍ତି । ସେଗୁଡିକ ହେଲେ - ନାକ ପାଖର ନିଃଶ୍ୱାସ, ଆଖି ପାଖରେ ଆଲୋକ, କାନ ପାଖରେ ଶ୍ରବଣ ଶକ୍ତି ଓ ପାଦ ତଳର ଭୂଇଁ, ଘାସ ଓ ଫୁଲ, କର୍ତ୍ତବ୍ୟପାଇଁ ହାତ ଓ ଚାଲିବାପାଇଁ ନିଜ ସାମ୍ନାରେ ଦିଶୁଥିବା ସଠିକ୍ ରାସ୍ତା । ପ୍ରତ୍ୟେକ ଦିନର କର୍ମ ଓ ତା'ବଦଳରେ ଖାଦ୍ୟ ଜୀବନର ସବୁଠୁ ସୁଆଦିଆ ଅନୁଭୂତି ।

ଛତ୍ରପତି ଶିବାଜୀଙ୍କର ଦୀକ୍ଷା ଗୁରୁ ସମର୍ଥ ରାମଦାସ ଭିକ୍ଷା କରି ଚଳୁଥିଲେ । ଏକଥା ଶିବାଜୀଙ୍କ କାନରେ ପଡ଼ିବାରୁ ଗୁରୁଙ୍କ ପାଖକୁ ଯାଇ ନିଜର ସମଗ୍ର ରାଜ୍ୟ ଗୁରୁଙ୍କୁ ଦକ୍ଷିଣା ସ୍ୱରୂପ ଦେବାପାଇଁ ଯାଚିଥିଲେ । ଗୁରୁ ରାମଦାସ ଶିବାଜୀଙ୍କୁ କହିଥିଲେ, "ଏବେ ତମ ରାଜ୍ୟ ମୋର ହେଲା ଓ ତୁମେ ମୋ ତରଫରୁ ରାଜ୍ୟ ଶାସନ କର । ଗରିବ ଓ ଶୋଷିତ ବର୍ଗର ସେବାକର ।" ଶିବାଜୀ ପଚାରିଲେ, "ରାଜ୍ୟ ଆପଣଙ୍କର ହେଲା ବୋଲି ଲୋକେ କେମିତି ଜାଣିବେ ?" ରାମଦାସ ନିଜ ଗେରୁଆ ଚଦରଟି ଶିବାଜୀଙ୍କ ହାତକୁ ବଢ଼ାଇ ଦେଇ କହିଲେ, "ଏହି ଚାଦରଟିକୁ କାଟିକାଟି ଛୋଟଛୋଟ ପତାକା କରି ତମ ସାମ୍ରାଜ୍ୟରେ ବିଭିନ୍ନ ସ୍ଥାନରେ ଉଡ଼ାଇଦିଅ । ପ୍ରଜାମାନେ ଜାଣିବେ ଯେ ଏହା ମୋ ରାଜ୍ୟ, ତୁମର ନୁହେଁ ।" ଏହି କଥା କହି ବସ୍ତ୍ରହୀନ ରାମଦାସ କେବଳ ନିଜ କୌପୀନଟି ପିନ୍ଧି ଶିବାଜୀଙ୍କ ରାଜ୍ୟ ଛାଡ଼ି ଚାଲି ଯାଇଥିଲେ ।

ଏପରି ଉକ୍ତି, ଉଦାହରଣ ଅନେକ । କାମନା ବାସନା କଥା ବୁଦ୍ଧ ଷାଠିଏ ବର୍ଷ ଓ ତାଙ୍କ ଶିଷ୍ୟମାନେ ଅଢେଇ ହଜାର ବର୍ଷ ଧରି ପ୍ରଚାର କରି ଆସୁଛନ୍ତି । ଉପଦେଶ, ପ୍ରବଚନ, ସଭାସମିତିରେ ଭାଷଣ ହେଉଛି । ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ଅର୍ଥମନ୍ତ୍ରୀ ରାଷ୍ଟ୍ର ଉଦ୍ଦେଶ୍ୟରେ ଉଦ୍‌ବୋଧନ ଦେଉଛନ୍ତି । କିନ୍ତୁ ଦେଶରେ ଭୋଗବାଦୀ ସଂସ୍କୃତି ବଢ଼ି ଚାଲିଛି । ଉଚ୍ଚାରଣ ଓ ଆଚରଣ ମଧ୍ୟରେ ଦୂରତା କମୁନାହିଁ । ଏହା ହିଁ ଆଜିର ସମସ୍ୟା ଓ ଆହ୍ୱାନ । ସମାଧାନ ବି ଆମରି ହାତ ପାଖରେ । ଏଥିପାଇଁ ପ୍ରତି ନାଗରିକ ନିଜ ବିବେକକୁ ଜାଗ୍ରତ କରି ରଖିବା ଦରକାର । କାରଣ ପୃଥିବୀରେ ସବୁଠାରୁ କୋମଳ ତକିଆ ହେଲା ନିଜର ସଫାସୁତରା ବିବେକ ।

*୧୨ ନଭେମ୍ବର, ୨୦୦୯*



# ଆଶା, ଆଶଙ୍କା ଭିତରେ ପରିବାରାଣୀ ବାଇଗଣ

ଓଡ଼ିଶାର ଗ୍ରାମାଞ୍ଚଳରେ ସ୍ୱାମୀଙ୍କ କୋପଦୃଷ୍ଟିରେ ପଡ଼ିଥିବା ସ୍ତ୍ରୀଙ୍କ ଦୁଃଖ ଲାଘବ କରିବାପାଇଁ ସଖୀ, ସହଚରୀମାନେ ପରିହାସରେ କହନ୍ତି: "ବାଇଗଣ ପୋକ ପୋକ ନୁହେଁ- ସ୍ୱାମୀଙ୍କର କୋପ କୋପ ନୁହେଁ।" ଏପରି କ୍ଷଣିକ କୋପ ସହିନେଲେ ଦାମ୍ପତ୍ୟ ଜୀବନ ଜଟିଳ ହୁଏ ନାହିଁ। ଏହା ସ୍ୱାମୀ ଓ ସ୍ତ୍ରୀ- ଉଭୟଙ୍କ ପାଇଁ ପ୍ରଯୁଜ୍ୟ। ଯେମିତି କ୍ଷଣକୋପୀଙ୍କ କୋପକୁ ଗୁରୁତ୍ୱ ଦିଆଯାଏ ନାହିଁ, ସେହିପରି ବାଇଗଣ ଭିତରେ ଥିବା ପୋକକୁ କାଢ଼ିକରି ଗୃହିଣୀମାନେ ସୁସ୍ୱାଦୁ ବ୍ୟଞ୍ଜନ ପ୍ରସ୍ତୁତ କରନ୍ତି। ପୁଣି ପରିବେଶବିତ୍‌ମାନେ କହନ୍ତି ଛନଛନିଆ ବାଇଗଣ ଅପେକ୍ଷା ପୋକରା ବାଇଗଣ ସ୍ୱାସ୍ଥ୍ୟକର, କାରଣ ଏଥିରେ ପୋକମରା ବିଷ ଔଷଧ ପଡ଼ିନଥାଏ।

କିନ୍ତୁ ଏବେ ବାଇଗଣ ଗଛର କାଣ୍ଡବିନ୍ଧା ପୋକ ଭାରତ ପ୍ରଧାନମନ୍ତ୍ରୀଙ୍କ ମୁଣ୍ଡବିନ୍ଧାର କାରଣ ହୋଇଛି। ଦେଶର ବିଭିନ୍ନ ଅଞ୍ଚଳରେ ପରିବେଶବିତ୍‌ମାନେ ଜିନ୍ ସ୍ତରରେ ପରିବର୍ତ୍ତନ ଘଟାଇ ବାଇଗଣ ଗଛର କାଣ୍ଡବିନ୍ଧା ପୋକ ପ୍ରତିରୋଧକ କ୍ଷମତା ଓ ଉତ୍ପାଦନ ଶକ୍ତି ବଢ଼ାଇବା ବିପକ୍ଷରେ ସ୍ୱର ଉତ୍ତୋଳନ କରିଛନ୍ତି। ଏ ବିଷୟ ନେଇ ଦେଶର ପରିବେଶ ମନ୍ତ୍ରୀ, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ମନ୍ତ୍ରୀ ଓ କୃଷିମନ୍ତ୍ରୀଙ୍କ ମଧ୍ୟରେ ବିବାଦ ଉପୁଜିଥିବାରୁ ପ୍ରଧାନମନ୍ତ୍ରୀ ଏବେ ସାମୟିକ ଭାବରେ ବିଟି ବାଇଗଣ ପ୍ରଚଳନ ନିଷ୍ପତ୍ତି ସ୍ଥଗିତ ରଖିଛନ୍ତି। କୃଷିମନ୍ତ୍ରୀଙ୍କ ମତ ଯେ ଦେଶର ଖାଦ୍ୟାଭାବ ରୋକିବାପାଇଁ ଦ୍ୱିତୀୟ ସବୁଜ ବିପ୍ଳବର ଆବଶ୍ୟକତା ରହିଛି ଓ ସେହି ପ୍ରକ୍ରିୟାରେ ବିଟି ବାଇଗଣ ଭଳି ବିଭିନ୍ନ ଶସ୍ୟ ଓ ପନିପରିବାର ଜିନ୍ ପରିବର୍ତ୍ତନ ଜରୁରୀ।

ମାଟି ତଳେ ରହୁଥିବା ବାସିଲସ୍ ଥୁରିଞ୍ଜିଏନ୍‌ସିସ୍ ନାମକ ଏକ ବୀଜାଣୁର ସଂକ୍ଷିପ୍ତ ନାମ ହେଲା ବିଟି । ଏହା ଏକ ପରିବର୍ତ୍ତିତ ଡି.ଏନ୍.ଏ ଜ୍ଞାନକୌଶଳ । ଏହାଦ୍ୱାରା ଏକ ପ୍ରଜାତିର ଉଦ୍ଭିଦରୁ ଜିନ୍ ସଂଗ୍ରହ କରି ଅନ୍ୟ ଏକ ଉଦ୍ଭିଦରେ ପ୍ରବେଶ କରାଇ ଜିନ୍ ଫସଲର ସହନଶୀଳତା ଓ ରୋଗପୋକ କ୍ଷମତା ବୃଦ୍ଧି କରାଯାଇଥାଏ । ଭାରତରେ ଜିନ୍ ପରିବର୍ତ୍ତିତ ଫସଲ ହିସାବରେ ଏବେ କେତେବର୍ଷ ହେଲା କେବଳ ବିଟି କପା ବ୍ୟାବସାୟିକ ଭିତ୍ତିରେ ଚାଷ କରାଯାଉଛି ଏବଂ ଆଉ ଏଗାରଟି ଫସଲ ଉପରେ ଜିନ୍ ପରିବର୍ତ୍ତନ ପ୍ରକ୍ରିୟାର ପରୀକ୍ଷା ନିରୀକ୍ଷା ଚାଲିଛି । ଯେହେତୁ କପା ଖାଦ୍ୟଦ୍ରବ୍ୟ ନୁହେଁ ଏବଂ ମକା ଏବଂ ସୋୟା ପ୍ରକ୍ରିୟାକରଣ ପରେ ବ୍ୟବହାର ହେଉଛି, ଏବେ ସମସ୍ତଙ୍କ ଦୃଷ୍ଟି ବାଇଗଣ ଉପରେ ।

ଯେଉଁମାନେ ବିଟି ବାଇଗଣ ସପକ୍ଷରେ ଯୁକ୍ତି କରନ୍ତି, ସେମାନଙ୍କ ମତ ହେଲା ବାଇଗଣ ଚାଷରେ ଯେତିକି ଖର୍ଚ୍ଚ, ତାର ଶତକଡ଼ା ଷାଠିଏ ଭାଗ କୀଟନାଶକ ଔଷଧପାଇଁ ବ୍ୟୟ ହୋଇଥାଏ । କ୍ଷୁଦ୍ର ଓ ନାମମାତ୍ର ଚାଷୀମାନେ ଫସଲରେ ୨୫ରୁ ୫୦ ଥର ପର୍ଯ୍ୟନ୍ତ କୀଟନାଶକ ଔଷଧ ପ୍ରୟୋଗକରି ଖର୍ଚ୍ଚାନ୍ତ ହୋଇଥାନ୍ତି ଏବଂ ଖାଦ୍ୟ ମାଧ୍ୟମରେ ଏ ବିଷ ମଣିଷ ଦେହରେ ପ୍ରବେଶ କରିଥାଏ । ବିଟି ବାଇଗଣରେ କୀଟନାଶକ ବିଷ ଶତକଡ଼ା ଅଶୀଭାଗ କମ୍ ହୋଇଥାଏ ଓ ଉତ୍ପାଦନ ବଢ଼ିଥାଏ । ଅନ୍ୟ ପକ୍ଷରେ ଅନେକ ବିଶେଷଜ୍ଞ ଯୁକ୍ତି କରନ୍ତି ଯେ ଏ ପ୍ରକ୍ରିୟା ମଣିଷ ସ୍ୱାସ୍ଥ୍ୟ ପ୍ରତି ବିପଜ୍ଜନକ ଓ ଜୈବବିବିଧତାକୁ ବିପନ୍ନ କରିଥାଏ, ତେଣୁ ଏ ସମ୍ପର୍କରେ ଅଧିକ ଗବେଷଣା ଆବଶ୍ୟକ ।

ବିଶେଷଜ୍ଞମାନଙ୍କ ଆଶଙ୍କାକୁ ପ୍ରମାଣିତ କରି ଏବେ ବିଶ୍ୱର ସର୍ବବୃହତ୍ ବାୟୋଟେକ୍ କୃଷି କମ୍ପାନି 'ମନ୍‌ସାଣ୍ଟୋ' ମାନିଲେଣି ଯେ ଗୁଜୁରାଟ ରାଜ୍ୟର ବିଟି କପା ନିଜର ରୋଗପୋକ ପ୍ରତିଷେଧକ ଶକ୍ତି କ୍ରମେ କ୍ରମେ ହରାଉଛି । ଏହା ପୂର୍ବରୁ ଜର୍ମାନି ଓ ଅନେକ ୟୁରୋପୀୟ ଦେଶମାନଙ୍କରେ ବିଟି ବାଜରା ଉପରେ ରୋକ୍ ଲଗାଯାଇଛି । ଚାଷୀ ସଂଗଠନମାନଙ୍କର ଆଶଙ୍କା ଯେ ବିଟି ଫସଲ ମଞ୍ଜିରୁ ବିହନ ହେବା କ୍ଷମତା ବ୍ୟୟବହୁଳ ଥିବାରୁ ଆନ୍ତର୍ଜାତିକ ବିଟି ବିହନ ବେପାରୀମାନେ ଚାଷୀଙ୍କୁ ଅଧିକ ନିର୍ଭରଶୀଳ କରାଇ ଶୋଷଣ କରିବେ । ଖାଉଟିମାନଙ୍କପାଇଁ ମଧ୍ୟ ବିପଦ କମ୍ ନୁହେଁ । କାରଣ ଭାରତକୁ ଆମଦାନୀ ଖାଦ୍ୟରେ ବିଟି ଲେଭଲ୍ ନ ଥାଏ । ଏହାକୁ ତନଖି କରିବାକୁ ଆମର ଉନ୍ନତମାନର ପରୀକ୍ଷାଗାର ନାହିଁ ଏବଂ ପରୀକ୍ଷା ନିରୀକ୍ଷା ପ୍ରକ୍ରିୟା ମଧ୍ୟ ଅତ୍ୟନ୍ତ ବ୍ୟୟବହୁଳ । ଗରିବ ଚାଷୀମାନଙ୍କୁ ଅଧିକ ଅମଳ ଓ

ଆୟବୃଦ୍ଧିର ଲୋଭ ଦେଖାଇ ଭାରତୀୟ କୃଷି ବଜାର ଓ ବେପାରକୁ କବ୍‌ଜା କରାଯିବାର ଆଶଙ୍କା ମଧ୍ୟ ରହିଛି । ବାଇଗଣର ଜୈବବିବିଧତା ଲୋପ ହେବାର ଆଶଙ୍କା ବି ରହିଛି ।

ଏପରି ଅନେକ ଆଶା ଆଶଙ୍କା ଘେରରେ ଥିବା ବାଇଗଣର ଜୀବନ କାହାଣୀ ମଧ୍ୟ ବେଶ୍ ଚିତ୍ତାକର୍ଷକ । ଭାରତୀୟ ଉପମହାଦେଶ ହେଉଛି ବାଇଗଣ ଫସଲର ଜନ୍ମଭୂମି । ଏହା ବହୁ ଅଂଶରେ ଏକ ସ୍ୱପରାଗସଂଗମୀ ଉଦ୍ଭିଦ । ଓଡ଼ିଶା, ବଙ୍ଗଳା, ବିହାର, ଗୁଜୁରାଟ, ମହାରାଷ୍ଟ୍ର, ଆନ୍ଧ୍ର, ଉତ୍ତରପ୍ରଦେଶରେ ଏହା ବହୁଳ ଭାବରେ ଚାଷ କରାଯାଏ । ଦେଶରେ ପ୍ରାୟ ଛଅ ଲକ୍ଷ ହେକ୍ଟର ଜମିରେ ବାଇଗଣ ଚାଷ ହୁଏ ଏବଂ ଇଂଲଣ୍ଡ, ଫ୍ରାନ୍‌ସ, ଜର୍ମାନି ଓ ଆରବ ଦେଶସମୂହ ଭାରତୀୟ ବାଇଗଣକୁ ବେଶ୍ ପସନ୍ଦ କରନ୍ତି । ପ୍ରାୟ ୪୦୦୦ ବର୍ଷ ହେଲା ଆମ ଦେଶରେ ପ୍ରାୟ ୨୫୦୦ କିସମର ବାଇଗଣ ଚାଷ ହୋଇଆସୁଛି । କଳା, ଧଳା, ସବୁଜ, ବାଇଗଣି, ହଳଦିଆ- ବିଭିନ୍ନ ରଙ୍ଗର ଓ ଲମ୍ୱା, ଗୋଲାକାର ଆକାରର । ଗାଙ୍ଗେୟ ଉପତ୍ୟକାରେ ଗୋଟିଏ ଲେଖାଏଁ ବାଇଗଣର ଓଜନ ଏକ କିଲୋ ପର୍ଯ୍ୟନ୍ତ ହୋଇଥାଏ । ଗଛ ବଢ଼ିଥାଏ ପ୍ରାୟ ୭ ଆଠଫୁଟ ପର୍ଯ୍ୟନ୍ତ । ଏବେ ବାଇଗଣ ଗଛକୁ ଆମ୍ବଗଛ ଭଳି ଉଚ୍ଚା, ଝାମ୍ପୁଲା ଓ ବାରମାସୀ କରିବାପାଇଁ ଗବେଷଣା ଚାଲୁରହିଛି । ଏହା ସଙ୍ଗେସଙ୍ଗେ ଓଡ଼ିଶାରେ ଥିବା ଭେଜି ବାଇଗଣ, କଣ୍ଟା ବାଇଗଣ ଇତ୍ୟାଦିର ସୁରକ୍ଷା ମଧ୍ୟ ଆବଶ୍ୟକ ।

ଅଣ୍ଡାକୃତି ବାଇଗଣ ଫଳୁଥିବା ଗଛକୁ ଇଉରୋପରେ କହନ୍ତି ଏଗ୍‌ପ୍ଲାଣ୍ଟ୍ । ଅନେକ ପରିମାଣରେ ଜଳୀୟ ଅଂଶ, ପୁଷ୍ଟିସାର, ଶ୍ୱେତସାର ଓ ତନ୍ତୁଜାତୀୟ ପଦାର୍ଥ ତଥା ବିଭିନ୍ନ ଔଷଧୀୟ ତତ୍ତ୍ୱ ଥିବାରୁ ଓ ସୁସ୍ୱାଦୁ ହୋଇଥିବାରୁ ବାଇଗଣ ସର୍ବଜନପ୍ରିୟ ଓ ଅଜାତଶତ୍ରୁ । ଆମ ଦେଶରେ ଆଳୁ ପଛକୁ ବାଇଗଣ ଦ୍ୱିତୀୟ ଲୋକପ୍ରିୟ ପରିବା । ଓଡ଼ିଆଙ୍କ ବାଇଗଣ ପୋଡ଼ା, ପାଗପାଣି, ବଙ୍ଗାଳିଙ୍କ ବେଗୁନ୍ ଭାଜା, ତେଲୁଗୁଙ୍କର ଛୁଇଁ ବାଇଗଣ ସମ୍ବର ଓ ପଞ୍ଜାବୀଙ୍କର ବେଙ୍ଗନ୍ ଭର୍ତ୍ତା ପ୍ରତି ପ୍ରବଳ ଦୁର୍ବଳତା । ସେହିପରି ଆନ୍ଧ୍ରପ୍ରଦେଶରେ ଗୁଚ୍ଚି ବାଙ୍କୟାକୁରା, ତାମିଲ୍‌ନାଡୁରେ କୋଝାମ୍ବୁ, ଗୁଜୁରାଟରେ ସମାରେଲୁ ଶାକ ଓ ଇଙ୍ଗୋ, ବିହାରରେ ବେଙ୍ଗନ୍ ଝୋଙ୍ଗା, କେରଳରେ ଉପେରି, କର୍ଣ୍ଣାଟକରେ ଭାଙ୍ଗିବାଥ୍ ଓ ମହାରାଷ୍ଟ୍ରରେ ଓ୍ୱାଙ୍ଗିଆଚାଭରିତ ନାମରେ ବାଇଗଣ ପ୍ରସ୍ତୁତ ବ୍ୟଞ୍ଜନ ବେଶ୍ ଲୋକପ୍ରିୟ ।

ବାଇଗଣର ସଂସ୍କୃତ ନାମ ଭଟିଙ୍ଗଣ ଓ ଏହାର ବିଶ୍ୱ ଜୟଯାତ୍ରା ପ୍ରକ୍ରିୟାରେ ବିଭିନ୍ନ ଦେଶର ବିଭିନ୍ନ ନାମ । ଇରାନ୍‌ରେ ପହଞ୍ଚିଲା ବେଳକୁ ବାଇଗଣ ନା ହେଇଗଲା

'ବାଡ଼ିଙ୍ଗଣ୍' ଓ ଆରବ ଦେଶମାନଙ୍କରେ ଲୋକେ ଏହାର ନାଁ ଲମ୍ବା କରି କହିଲେ 'ଆଲ୍‌ବାଡ଼ିଙ୍ଗଣ୍' । ସ୍ପେନ୍ ଦେଶରେ ପହଞ୍ଚିଲାବେଳକୁ ସେଠା ଲୋକେ ବାଇଗଣକୁ କହିଲେ, 'ବେରେଞ୍ଜାନା' । ଫ୍ରାନ୍‌ସରେ ଏହାର ନାଁ 'ଅବରଜିନ୍' ଓ ଇଂଲଣ୍ଡରେ 'ବ୍ରିଞ୍ଜାଲ୍' । ସମୟକ୍ରମେ ପର୍ତ୍ତୁଗୀଜ ଓ ସ୍ପେନ୍ ଲୋକେ ଆଖୁ, କଦଳୀ ଓ ବାଇଗଣକୁ ପହଞ୍ଚାଇଲେ ଦକ୍ଷିଣ ଆମେରିକାରେ । ଏହାର ବହୁ ବର୍ଷ ପରେ ବାଇଗଣ ପହଞ୍ଚିଲା ଉତ୍ତର ଆମେରିକାରେ । ତେଣୁ ଏହା ଏକ ବିଡ଼ମ୍ବନାର ବିଷୟ ଯେ ଯେଉଁ ଦେଶରେ ବାଇଗଣ ସବା ଶେଷରେ ପହଞ୍ଚିଲା, ସେଇ ଦେଶର କମ୍ପାନିମାନେ ଏବେ ଆମକୁ ଶିଖାଉଛନ୍ତି ବାଇଗଣ କେମିତି, କେଉଁ ପଦ୍ଧତିରେ ଚାଷ କରାଗଲେ ଭଲ ।

ବାଇଗଣ ଖାଇବାକୁ ଯେମିତି ସୁସ୍ୱାଦୁ, ଏହା ସଂପର୍କରେ କାହାଣୀ, ଲୋକକଥା, କିମ୍ବଦନ୍ତୀ ମଧ୍ୟ ସେତିକି ଚିତ୍ତାକର୍ଷକ । କୁହାଯାଏ, ଭାରତ ଆସିବା ପୂର୍ବରୁ ମୋଗଲମାନେ ବାଇଗଣ ଚାଖି ନ ଥିଲେ । ଆକବର ଥିଲେ ଏକ ବାଇଗଣପ୍ରେମୀ ବାଦ୍‌ଶାହ । ସେ ଦିନେ ବୀରବଲ୍‌ଙ୍କୁ ବେଙ୍ଗନ୍ ଭର୍ତ୍ତା ଖାଇବାକୁ ଦେଇ କଳା ବାଇଗଣର ଉଚ୍ଚ ପ୍ରଶଂସା କରିବାକୁ ଲାଗିଲେ । ସ୍ୱରରେ ସ୍ୱର ମିଳାଇ ବୀରବଲ୍ କହିଲେ, ଜହାଁପନା, ଏହା ଏକ ସ୍ୱର୍ଗୀୟ ପରିବା, ଏହାର ପଟାନ୍ତର ନାହିଁ । ଏହା ପରେ ଆଉଦିନେ ଆକବର ବୀରବଲ୍‌ଙ୍କୁ ମଧ୍ୟାହ୍ନ ଭୋଜନକୁ ଡାକି ବାଇଗଣ ବ୍ୟଞ୍ଜନ ପରଷି ଥିଲେ । ସେଦିନ ବାଇଗଣ ଠିକ୍ ଭାବରେ ସିଝି ନ ଥିଲା । ଆକବର ଖପା ହୋଇ କହିଲେ, ବାଇଗଣ ଗୋଟିଏ ବେକାରିଆ ପରିବା । ବୀରବଲ୍ ଆଉ ଏକ ପାଦ ଆଗକୁ ଯାଇ କହିଲେ, ଆଜ୍ଞା, ଏକଦମ୍ ସତ କଥା । ଏଇଟା ପରିବା ନୁହେଁ ମେଞ୍ଚାଏ କାଦୁଅ, ଯେଉଁ ତିଅଣରେ ପଡ଼େ ତାକୁ ନଷ୍ଟ ଭ୍ରଷ୍ଟ କରିଦିଏ । ଆକବର କହିଲେ ହଇଓ ବୀରବଲ, ତମେ ଏହାକୁ ସ୍ୱର୍ଗୀୟ ପରିବା କହି ଭାରି ପ୍ରଶଂସା କରୁଥିଲ, ଆଜି କାହିଁକି ଏପରି ନିନ୍ଦା କରୁଛ ? ବୀରବଲ ଉତ୍ତର ଦେଇ କହିଲେ, ଜାହାଁପନା, ମୁଁ ଆପଣଙ୍କର ଅନୁଗତ ସେବକ, ବାଇଗଣର ସେବକ ନୁହେଁ ।

ଏହିପରି ଦକ୍ଷିଣଭାରତର ବିଜୟ ନଗରମ୍ ରାଜ୍ୟର ସମ୍ରାଟ କୃଷ୍ଣ ଦେବରାୟ ମଧ୍ୟ ଥିଲେ ଖୁବ୍ ବାଇଗଣପ୍ରିୟ । ସେ ରାଜମହଲରେ ଗୋଟିଏ ବାଇଗଣ ବଗିଚା କରିଥିଲେ ଓ ସବୁ ବାଇଗଣ ନିଜେ ଖାଉଥିଲେ । ଏହି ବଗିଚାରୁ ଗୋଟିଏ ବାଇଗଣ ଚୋରି ହୋଇଯିବାରୁ ସେ ଏପରି ବିବ୍ରତ ହୋଇପଡ଼ିଥିଲେ ଯେ, ବାଇଗଣ ଚୋରକୁ ଧରିବାକୁ ରାଜ୍ୟରେ ଡେଙ୍ଗୁରା ପିଟାଇ ଚୋରକୁ ଫାଶୀ ଦଣ୍ଡ ଓ ଧରିଥିବା ଲୋକକୁ ୫୦୦ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଘୋଷଣା କରିଥିଲେ । ଶ୍ରୀମନ୍ଦିରରେ କୋଠଭୋଗଖିଆଙ୍କ

ଦୈନିକ ବ୍ୟଞ୍ଜନ ବାଇଗଣ ବିନା ଅସମ୍ପୂର୍ଣ୍ଣ। ଆୟୁର୍ବେଦ, ସିଦ୍ଧ, ୟୁନାନୀ ଓ ପ୍ରାକୃତିକ ଚିକିତ୍ସା ପଦ୍ଧତିରେ ବାଇଗଣ ପ୍ରୟୋଗ କରାଯାଇଥାଏ । ଶୁଣାଯାଏ କି ପଣ୍ଡିତ ନେହରୁ ପକ୍ଷାଘାତରେ ଆକ୍ରାନ୍ତ ହୋଇଥିଲା ବେଳେ ବନାରସର ବୈଦ୍ୟମାନେ ତାଙ୍କୁ କୁକୁଡ଼ା ମାଂସ ତ୍ୟାଗ କରି ପ୍ରତିଦିନ ଦୁଇଥର ବାଇଗଣ ପୋଡ଼ା ଖାଇବାକୁ ପରାମର୍ଶ ଦେଇଥିଲେ। କିନ୍ତୁ ବିଟି ବାଇଗଣର ବିଭିନ୍ନ ଔଷଧୀୟ ଗୁଣ ପରିବର୍ତ୍ତିତ ପ୍ରକ୍ରିୟାରେ ଅକ୍ଷୁଣ୍ଣ ରହିବ କି ନାହିଁ ସେ ସଂପର୍କରେ କୌଣସି ଗବେଷଣା ହୋଇନାହିଁ । ବାଇଗଣ ମଣିଷର ଏକ ନିୟମିତ ଓ ଦୈନନ୍ଦିନ ଖାଦ୍ୟ ହୋଇଥିବାରୁ ବିଟି ବାଇଗଣର ମଣିଷ ସ୍ୱାସ୍ଥ୍ୟ ଉପରେ ପ୍ରଭାବ ସଂପର୍କରେ ଅଧିକ ସ୍ୱାଧୀନ ଗବେଷଣା ଆବଶ୍ୟକ ।

କାରଣ ଯେତେବେଳେ କୃଷି ଉତ୍ପାଦନ ବୃଦ୍ଧିପାଇଁ କୀଟନାଶକ ବିଷ ବ୍ୟବହାର କରିବାକୁ ଚାଷୀଙ୍କୁ କୁହାଗଲା, ସେତେବେଳେ ମଣିଷ ସ୍ୱାସ୍ଥ୍ୟ ଓ ପରିବେଶ ଉପରେ ଏହାର କୁପ୍ରଭାବ ନାହିଁ ବୋଲି କୁହାଯାଉଥିଲା । ଏବେ ସାରା ମାନବଜାତି ଏହାର କୁଫଳ ଭୋଗୁଛି । ପୃଥିବୀର ବିଭିନ୍ନ ଅଞ୍ଚଳରେ କୃତ୍ରିମ ଭାବରେ ଜିନ୍ ପରିବର୍ତ୍ତିତ ଫସଲର ତିକ୍ତ ଅନୁଭୂତି ରହିଛି । ଜୀବକୋଷ ମଧ୍ୟରେ ପ୍ରସ୍ତୁତ ହେଉଥିବା ବିଷାକ୍ତ ପଦାର୍ଥ ବ୍ୟବହାର କରି କୀଟ ନାଶକରିବା ଉଦ୍ୟମରେ ବାଇଗଣର ସର୍ବନାଶ ନ ହେଉ । ପୃଥିବୀର ୮୫ ପ୍ରତିଶତ ବାଇଗଣ ଚାଇନା, ଭାରତ, ଇଣ୍ଡୋନେସିଆ ଭଳି ବିକାଶଶୀଳ ଦେଶରେ ହୋଇଥାଏ । ଏଥିରୁ ୫୬ ପ୍ରତିଶତ ଚାଇନା ଓ ୨୬ ପ୍ରତିଶତ ଭାରତରେ ଉତ୍ପାଦିତ ହୁଏ । ତେଣୁ ଏହି ଦୁଇ ଜନବହୁଳ ରାଜ୍ୟର ଖାଦ୍ୟ ଓ ନିରାପତ୍ତା ପ୍ରଶ୍ନ ବିଟି ବାଇଗଣ ସହ ଜଡ଼ିତ । ଭାରତୀୟ ପନିପରିବା ଗବେଷଣା ପ୍ରତିଷ୍ଠାନ ଏ ସଂପର୍କରେ ଆହୁରି ଗବେଷଣା କରନ୍ତୁ । ବିଟି ବାଇଗଣ ସମଗ୍ର ବାଇଗଣ ପ୍ରଜାତିପାଇଁ ଫ୍ରାଙ୍କେନ୍‌ଷ୍ଟିନ୍ ବା ଭସ୍ମାସୁର ରୂପେ ଉଭା ନ ହେଉ। କାଣ୍ଡବିନ୍ଧା ମାରିବାକୁ ଯାଇ ବାଇଗଣ ସହିଦ ନ ହେଉ ।

*୧୦ ମାର୍ଚ୍ଚ, ୨୦୧୦*



# ପାଠକୀୟ...

"ଆପଣଙ୍କ 'ବିକଳ୍ପ ବିଶ୍ୱ' ସ୍ତମ୍ଭକୁ ଖୁବ୍ ମନ ଧ୍ୟାନ ଦେଇ ପଢେ, ବିଶ୍ଳେଷଣରେ ଅଭିଭୂତ ଓ ରୋମାଞ୍ଚିତ ହୁଏ । ଆଜିର 'ଜୈଦି ଓ ଜର୍ଣ୍ଣେଲଙ୍କ ଜୋତା' ପ୍ରବନ୍ଧଟି ମଧ୍ୟ ଖୁବ୍ ଚମତ୍କାର । ଲେଖନୀ ଏମିତି ଚଳଚଞ୍ଚଳ ରହିଥାଉ, ଆଉ ଅଜସ୍ର ପ୍ରବନ୍ଧ-ନିବନ୍ଧ ଲେଖି ଚାଲିଥାନ୍ତୁ । ପୁନର୍ବାର ପ୍ରଣାମ ଆପଣଙ୍କୁ, ଆପଣଙ୍କ ଅମୃତ ହସ୍ତକୁ ଓ ବାଗ୍‌ଦେବୀଙ୍କ ପ୍ରଦତ୍ତ ଅମୋଘ ଲେଖନୀକୁ ।"

-ଗୋପାଳ ମହାପାତ୍ର, ସି-୭, ଆଇ.ଆର.ସି., ନୂଆପଲ୍ଲୀ, ଭୁବନେଶ୍ୱର

ସମ୍ବାଦର "ବିକଳ୍ପ ବିଶ୍ୱ"ରେ ଆପଣଙ୍କ ସବୁ ଲେଖା ପଢେ । ଆଜି (୨୯/୦୧/୨୦୦୯) "ବେଦାନ୍ତ ବିଶ୍ୱବିଦ୍ୟାଳୟରୁ ଆନନ୍ଦ ପାଠଶାଳା ପର୍ଯ୍ୟନ୍ତ" ଲେଖା ପଢି ଅଭିନନ୍ଦନ ଜଣାଉଛି । ମୌଳିକ ସ୍ଥିତି ସୁଧାରିବା ପାଇଁ ଏପରି ଲେଖା ଅତ୍ୟନ୍ତ ଆବଶ୍ୟକ । ଆଗାମୀ ଦିନମାନଙ୍କରେ ଏମିତି ତଥ୍ୟଭିତ୍ତିକ ଦୂରଦୃଷ୍ଟି ସମ୍ପନ୍ନ ନିବନ୍ଧ ଲେଖି ଗଣ କଲ୍ୟାଣ କରନ୍ତୁ । ଆମ ରାଜ୍ୟରେ ଢଙ୍ଗ କି ଛାଞ୍ଚ ବଦଳେ ନାହିଁ । ବାହାର ରଙ୍ଗକୁ ନେଇ ଚର୍ଚ୍ଚା ହୁଏ । ତେଣୁ ଉଦ୍ୟମ ଜାରି ରଖନ୍ତୁ ।"

-ଚିନ୍ମୟ ଭାଇ, ମହାବୀର କଲୋନୀ, ଭୁବନେଶ୍ୱର

"ପଛୁଆ ପ୍ରତିଯୋଗିତା ଓ ଜାତିମୁକ୍ତ ଜୀବନ" ପାଠ କରି ବହୁତ ଖୁସି ହେଲି । ଆପଣଙ୍କ ନୂଆଚିନ୍ତା ଓ ଦୂରଦୃଷ୍ଟି ଦ୍ୱାରା ଆଗାମୀ ଦିନରେ ଜାତି, ଧର୍ମ, ଆଗୁଆ, ପଛୁଆ ଭେଦଭାବ ଦୂର ହେବ ବୋଲି ଭାବୁଛି । ଆପଣ ନିଜେ ୧୯୮୦ ମସିହାରୁ ନିଜର ଜାତିସୂଚକ ସାଙ୍ଗିଆ କାଟି ଦେଇଥିବାରୁ ଆପଣଙ୍କୁ ଅଶେଷ ଧନ୍ୟବାଦ ।"

-ମହେନ୍ଦ୍ର କୁମାର ନାୟକ, ହିଂଜିଳିବାହାଲି, କଳାହାଣ୍ଡି

"ଆପଣଙ୍କ ସଂସ୍କାରମୂଳକ ଲେଖାପାଇଁ ଅନେକ ସାଧୁବାଦ । ଏହାଦ୍ୱାରା ଆମର କୁସଂସ୍କାର ଓ ମାନସିକ ଜଡତା ଦୂର ହେବ । ହେତୁବାଦୀଙ୍କ ଆସନ୍ତା ବାଣୀବିହାର ମିଟିଂକୁ ଯଦି ଆସନ୍ତେ, ଆପଣଙ୍କ ପ୍ରଜ୍ଞା ଦ୍ୱାରା ଉଦ୍‌ଭାଷିତ ହୁଅନ୍ତୁ ।"

**-ପ୍ରଫେସର ଧନେଶ୍ୱର ସାହୁ, ଟଙ୍କପାଣି ରୋଡ୍, ଭୁବନେଶ୍ୱର**

"ଆଜି (୨୮/୦୮/୦୮) ସମ୍ବାଦରେ ଆପଣଙ୍କ ନିବନ୍ଧ "ନୀତିହୀନ ରାଜନୀତି" ପାଠ କଲି ଧାଡିଧାଡି କରି । ଅତ୍ୟନ୍ତ ସାହସିକ ଲେଖା । ମହାତ୍ମା ଗାନ୍ଧୀଙ୍କ ଭୁଲ ହେତୁ ହିଁ ନୀତିହୀନ ରାଜନୀତି ଚାଲିଛି । ସେ ୧୯୨୧ ରେ ଆଣ୍ଠୁ ଛାଡି ଖୋଲା ପୋଷାକ ପିନ୍ଧି ଭୁଲ୍ କଲେ । ମହାତ୍ମା ହୋଇଗଲେ, କିନ୍ତୁ କସ୍ତୁରବାମାନେ ତାଙ୍କ ପଛରେ ଠିଆ ହେଲେ ନାହିଁ । ନୀତିହୀନ ରାଜନୀତିକୁ "ନୀତିଯୁକ୍ତ ରାଜନୀତି" କରି ପାରିଲେ ବାପୁଙ୍କ ସ୍ୱପ୍ନ ସଫଳ ହେବ ।

**-ବିଶ୍ୱାମିତ୍ର ଦାସ, ନିଆଳି**

"ଆପଣଙ୍କ ତଥ୍ୟଭିତ୍ତିକ, ଦୂରଦୃଷ୍ଟିସମ୍ପନ୍ନ ଲେଖାମାନ ସମ୍ବାଦର ବିକଳ୍ପବିଶ୍ୱ ସ୍ତମ୍ଭରୁ ପଢି ଚେତନା ଓ ସାହସ ଜାଗ୍ରତ ହେଉଛି । ନାଗରିକମାନଙ୍କୁ ଆପଣଙ୍କ କଲମ ଶକ୍ତିଶାଳୀ କରୁଥାଉ ।"

**-ମିହିର କୁମାର ସାହୁ, ବି-୮, ଆଇଡିଏଲ୍ କଲୋନି, ରାଉରକେଲା**

"ଅନ୍ୟ ଦୃଷ୍ଟିରେ ଆମେ" ଲେଖାଟି ପଢି ଖୁବ୍ ଆନନ୍ଦିତ ହେଲି" ।

**-ସନାତନ ବିଶି, ପୂର୍ବତନ ମନ୍ତ୍ରୀ, ସମ୍ବଲପୁର**

"ସାମାଜିକ ପାପପୁଣ୍ୟର ନୂଆ ତାଲିକା" ପଢି ସାମ୍ପ୍ରତିକ ସମାଜରେ ପାପ-ପୁଣ୍ୟର ଖେଳ ବୁଝିବା ସହଜ ହେଲା । ପାଠକମାନେ ଏହି ଲେଖା ସାହାଯ୍ୟରେ ନିଜ ଜୀବନରେ କରୁଥିବା ପାପପୁଣ୍ୟ କାର୍ଯ୍ୟ ମୂଲ୍ୟାଙ୍କନ କରିପାରିବେ, ସଚେତନ ଓ ଜାଗ୍ରତ ହେବେ ।

**-ବଂଶୀଧର ସିଂହ, ଦୁର୍ଯ୍ୟୋଧନ ସିଂହ, ଟାଙ୍ଗର ଗାଁ, ସୁନ୍ଦରଗଡ**

"ଆପଣଙ୍କ 'ଅନ୍ଧ ଗଳିରେ ବନ୍ଦ କଏଦୀମାନେ' ଲେଖାଟିରେ ନିରପେକ୍ଷ ଯୁକ୍ତିସିଦ୍ଧ ବିଚାର ଉଚ୍ଚଶିକ୍ଷିତ ବର୍ଗଙ୍କ ଅନ୍ଧବିଶ୍ୱାସ ଉପରେ କୁଠାରଘାତ-ଧନ୍ୟବାଦ ।"

**-ମନୋରଞ୍ଜନ ସାହୁ, ଡାଙ୍ଗ, ବରଗଡ**

"ଆପଣଙ୍କ ପ୍ରତ୍ୟେକ ଲେଖାରେ, ପ୍ରଚଳିତ ସାମାଜିକ ଅର୍ଥନୈତିକ ଓ ବିକାଶଧାରାର ଯେଉଁ ସରଳ ସାବଲୀଳ ବ୍ୟାଖ୍ୟା କରନ୍ତି ତାହା ଦ୍ୱାରା ମୁଁ ଓ ମୋର ଛାତ୍ର ବନ୍ଧୁମାନେ ବିଶେଷ ଭାବରେ ଆକୃଷ୍ଟ ।"

**-ସର୍ବେଶ୍ୱର ପ୍ରଧାନ, ମହାନଦୀ ହଷ୍ଟେଲ, ଜ୍ୟୋତିବିହାର, ବୁର୍ଲା**

"ମାନ୍ୟବରଙ୍କ ଉପସ୍ଥାନ ଓ ଅନ୍ତର୍ଦ୍ଧାନ" ଲେଖାଟି ତଥ୍ୟଭିତ୍ତିକ, ଚିନ୍ତା ଉଦ୍ରେକକାରୀ ଏବଂ ଏହାର ଉପସ୍ଥାପନା ଶୈଳୀ ଚିତ୍ତାକର୍ଷକ । ଅନ୍ୟ ସବୁ ଲେଖା ପଢୁଛି । ଏଗୁଡିକ ସଂକଳିତ ହେଲେ ଓଡ଼ିଆ ବିକାଶ ସାହିତ୍ୟ, ଭ୍ରମଣ ସାହିତ୍ୟ ଓ ଲଳିତ ନିବନ୍ଧ ଭାବରେ ନିଶ୍ଚୟ ପାଠକୀୟ ସ୍ୱୀକୃତି ଲାଭ କରିବ ।

**-ଚିତ୍ତରଞ୍ଜନ ସାହୁ, ଇତିହାସ ବିଭାଗ, ମହାପୁରୁଷ ହାଡିଦାସ ମହାବିଦ୍ୟାଳୟ, ଛତିଆ**

"ଲେଖାଗୁଡିକରେ ତୁମର ସ୍ପଷ୍ଟ, ନିର୍ଭୀକ ଅଭିମତ ପାଇଁ ଅଭିନନ୍ଦନ । ଏଗୁଡିକ ସାମାନ୍ୟ ନିବନ୍ଧ ନୁହେଁ, ଜୀବନ ଯାତ୍ରାର ଆବଶ୍ୟକ ସଂହିତା, ସମାଜ ଗଠନ ଧର୍ମୀ । ତୁମର ସାରସ୍ୱତ ପ୍ରତିଭା ଅଧିକରୁ ଅଧିକ ଉଜ୍ଜ୍ୱଳ ହୋଇ ଜନକଲ୍ୟାଣ ପାଇଁ ପାଥେୟ ହେଉ । ହଳଦିଆ ରଘୁନାଥଙ୍କ ସୁଯୋଗ୍ୟ ସୁପୁତ୍ର ତୁମେ ଆମର ଗର୍ବ । ଏବେ ଓଡ଼ିଶାର ଜନମାନସରେ ଯଶସ୍ୱୀ ହୋଇ ରହିବାପାଇଁ ଆଶୀର୍ବାଦ କରୁଛି ।"

**-ଆଚାର୍ଯ୍ୟ ଦିଗମ୍ବର, ବି-୨୨୯, ନାଲକୋନଗର, ଅନୁଗୋଳ**

"ବୈପ୍ଳବିକ ଅଭିନନ୍ଦନ । ଆପକା ଓଡ଼ିଆ ମେଁ ଏକ୍ ଲେଖ୍ 'ଶ୍ରୀମାନ୍ ଟଏଲେଟ୍' ପଢା । ବହୁତ୍ କୁଛ୍ ଉପାଦେୟ ଚିଜ୍ ହମକୋ ମିଲା । ସାନିଟେସନ୍ କେ ଲିଏ ଆପ୍ ଯୋ ଚାର୍ ବାତ୍ ବତାୟା ଓ ଜରୁରୀ ହୈ । ଜବ୍‌ତକ୍ ହମ ଲୋଗ୍ ଗାନ୍ଧିଜୀକା ଫର୍ମୁଲା ନେହିଁ ଅପନାଏଙ୍ଗେ, ଜୈସେ କି ତୈସେ ରହେଙ୍ଗେ ।"

**-ଅଜିତ୍ କୁମାର, ବଡବ୍ରାହ୍ମଣୀ, ବିଜାପୁର**

"ଅମୂଲ୍ୟ ଲେଖାଗୁଡିକ ପାଇଁ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ପବିତ୍ର ନାମରେ ଆନ୍ତରିକ ଶୁଭେଚ୍ଛା । ଆଜିର ନିବନ୍ଧ 'ଆମ ଶିକ୍ଷା ବ୍ୟବସ୍ଥା ଓ ଅବସ୍ଥା'ର ୮ଟି ପାରା ଓ ୧୩୨ ଧାଡି - ପ୍ରତ୍ୟେକ ଚେତନା ଉଦ୍ଦୀପକ ଓ ମର୍ମସ୍ପର୍ଶୀ ।" 'ଆଳୁଙ୍କୁ ଆନ୍ତର୍ଜାତିକ ସ୍ୱୀକୃତି' ନିବନ୍ଧ ମଧ୍ୟ ଚିତ୍ତାକର୍ଷକ ।"

**-ସଦାନନ୍ଦ ମହାନ୍ତି, ସୁତାହାଟ, ଖ୍ରୀଷ୍ଟିଆନ୍ ସାହି, କଟକ**

"ସମ୍ବାଦରେ ଆପଣଙ୍କ ଲେଖାମାନ ଧାରାବାହିକ ପଢୁଛି । କାଲିକାର ଲେଖା 'ରାମଙ୍କ ନାମ ବଦନାମ ନ କର' ଖୁବ୍ ଉପାଦେୟ । ରାଜନୀତିକୁ ସାମ୍ପ୍ରଦାୟିକରଣ କରିବାପାଇଁ ଯେଉଁ ପ୍ରଚଣ୍ଡ ଉଦ୍ୟମ ଚାଲିଛି ସେତିକି ବେଳେ ଏଭଳି ଲେଖା ଚିନ୍ତାଶୀଳ ମଣିଷକୁ ଚିନ୍ତା ଯୋଗାଇବ । ଆପଣ ମୋର ସେଇ ପୁରୁଣା ଜଣାଶୁଣା ଭଗବାନ ତ ?"

-ପ୍ରଫେସର ଅବନୀ କୁମାର ବରାଳ, ୧୧୮, ଧର୍ମବିହାର, ଭୁବନେଶ୍ୱର

"ଆଜି ସମ୍ବାଦରେ ଆପଣଙ୍କ ଲେଖା "ବିଶ୍ୱାସର ବଜାରୀକରଣ" ପଢି ଅତ୍ୟନ୍ତ କୃତଜ୍ଞ ଓ ଆନନ୍ଦିତ ହେଲୁ ଓ ଆପଣଙ୍କୁ ଶତ ଧନ୍ୟବାଦ । ଏଭଳି ଲେଖା ବାରମ୍ବାର ପ୍ରକାଶ ପାଇଲେ ଆଲୋକର ପଥ ଦେଖାଇବ ।"

ଗଙ୍ଗାଧର ମିଶ୍ର, ସର୍ବୋଦୟ ମେଳା କମିଟି, ପ୍ରଭାତ ଲେନ୍, ପୁରୀ

"ଆପଣଙ୍କ ସବୁ ପ୍ରବନ୍ଧ ନୂଆ ବିଚାରରେ ଭରପୂର । 'କନ୍ୟା ମିଳିବେ ନାହିଁ', 'ବିଦେଶରେ ଶାଢି ଓ ଭାରତପ୍ରେମ', 'ବିଚରା ପୁରୁଷ', 'କପଡା କମ୍ ଚମଡା ବେଶି' ଇତ୍ୟାଦି ନିବନ୍ଧ ଗୁଡିକ ସୁପାଠ୍ୟ, ସୁବିଚାରପୂର୍ଣ୍ଣ ଓ ମସ୍ତିଷ୍କପାଇଁ ପୁଷ୍ଟିକର ଖାଦ୍ୟ । ସଦ୍ୟ ନିବନ୍ଧ 'ର୍‌ୟାଗିଂ ରୋଗ, ଗତ୍ତୁ, ରୂପ ଓ ରୋକିବା ଉପାୟ' - ଶିକ୍ଷାନୁଷ୍ଠାନମାନଙ୍କ ପାଇଁ ନୂତନ ଦିଗ୍‌ଦର୍ଶନ । ସତ କଥା କହିବା ଓ ଲେଖିବାପାଇଁ ସତ୍ ସାହସ ଯୋଗୁଁ ଧନ୍ୟବାଦ ।"

-ସବିତାରାଣୀ ମିଶ୍ର, କଳିଙ୍ଗ ବିହାର, ଭୁବନେଶ୍ୱର

"ବିକଳ୍ପ ବିଶ୍ୱ ସ୍ତମ୍ଭରେ ଆପଣଙ୍କ ପ୍ରତ୍ୟେକଟି ଲେଖା ଅନନ୍ୟ - ମୁଁ ଏଗୁଡିକୁ କେବଳ ପଢେ ନାହିଁ - ସାଇତି ରଖେ ।"

-ଶ୍ରୀମତୀ ଲୋପାମୁଦ୍ରା ମହାନ୍ତି, ପ୍ରାକ୍ତନ ଅଧକ୍ଷା, ରାଜ୍ୟ ମହିଳା କମିଶନ୍

"ଆପଣଙ୍କ ସବୁଲେଖା ଧ୍ୟାନର ସହ ପଢେ । ଆଜିର 'ସ୍ୱତନ୍ତ୍ର ପାହ୍ୟା ରାଜ୍ୟ, କ'ଣ ଓ କାହିଁକି' ଲେଖାଟି ଅତ୍ୟନ୍ତ ସମୟୋପଯୋଗୀ - ଓଡ଼ିଶା ପରିପ୍ରେକ୍ଷୀରେ । ଏବେ ଏହାକୁ ଭିତ୍ତି କରି ଆମର ନ୍ୟାଯ୍ୟ ଦାବି ଉପସ୍ଥାପିତ କରିବା ସହଜ ହେବ । ବହୁତ ଧନ୍ୟବାଦ ।"

-ଶ୍ରୀ ନଗେନ୍ଦ୍ର ପ୍ରଧାନ, ପୂର୍ବତନ ଶିକ୍ଷାମନ୍ତ୍ରୀ

"ବିକଳ୍ପ ବିଶ୍ୱ ସ୍ତମ୍ଭରେ 'ଧୃତରାଷ୍ଟ୍ରଙ୍କ ବଂଶବୃଦ୍ଧି' ନିବନ୍ଧଟି ପଢି ଖୁବ୍ ଖୁସି ହେଲି । ପୁତ୍ର ପୁତ୍ରୀ ମୋହରେ ଅନ୍ଧ ଆଜିର ସବୁ ପିତା ମାତା ଆପଣଙ୍କର ଏହି ଲେଖାଟି ପଢ଼ିବା ଉଚିତ । ପଥଭ୍ରଷ୍ଟ ସମାଜକୁ ଆପଣଙ୍କ ଭଳି ଲେଖକ ଦରକାର । ଆପଣଙ୍କ ପରବର୍ତ୍ତୀ ଲେଖାକୁ ଅପେକ୍ଷା କରି ବସିଛି ।"

**-ସର୍ବଜିତ୍ ସିଂ (ମୁନାଭାଇ), ଡେରା କଲିଏରୀ, ତାଳଚେର**

"ବିକଳ୍ପ ବିଶ୍ୱର ପ୍ରତିଟି ଲେଖା ତଥ୍ୟର ଗୋଲ୍ଡ ମାଇନ୍, ମୁଁ ଏହାର ବିଦଗ୍ଧ ପାଠକ ।"

**-ପ୍ରଫୁଲ୍ଲ କୁମାର ଧଳ, ନିର୍ଦ୍ଦେଶକ, ବ୍ରିକ୍, ବିଶ୍ୱ**

"ଓଡ଼ିଶାରେ ଯେଉଁଠି କିଛି ଜ୍ଞାନ ଓ ବିବେକର ସ୍ଥିତି ଅଛି ଆପଣ ସେଇ କବାଟରେ କରାଘାତ କରୁଛନ୍ତି । ଆପଣଙ୍କ ଲେଖା ସବୁ ଚିନ୍ତାପାଇଁ ଖୋରାକ ଯୋଗାଉଛି ।"

**-ଅଧ୍ୟାପକ କିଶୋର ମେହେର, କଲେଜ ରୋଡ୍, ବରଗଡ**

'ସନ୍ଥ ଭାଲେଣ୍ଟାଇନ୍‌ଙ୍କ ଭାରତୀୟ ଚେଲାମାନେ' ଶୀର୍ଷକ ଲେଖାଟି ପଢି ଆନନ୍ଦର ସୀମା ରହିଲା ନାହିଁ । ଭାଲେଣ୍ଟାଇନ୍ ଡେ ପଛରେ ଏତେ ରହସ୍ୟ, ତଥ୍ୟ ଓ ଇତିହାସ ମୋ ଭଳି ପାଠକମାନେ ଜାଣିନଥିଲେ । ଧନ୍ୟବାଦ ଓ ଚିର କୃତଜ୍ଞତା ଜଣାଉଛି ।

**-ଭବାନୀଶଙ୍କର, ଦେବୀମଣ୍ଡପ ସାହି, ନିମାପଡା**

ଆପଣଙ୍କ ସହ ଦେଖା-ସାକ୍ଷାତ ହୋଇ ପାରୁନାହିଁ; କିନ୍ତୁ ଲେଖା-ସାକ୍ଷାତ ହେଉଛି ପ୍ରତି ମାସରେ ସମ୍ବାଦର 'ବିକଳ୍ପ ବିଶ୍ୱ' ସୌଜନ୍ୟରୁ । ଶୀଘ୍ର ସଂକଳନ କରନ୍ତୁ ଏହି ଅତ୍ୟନ୍ତ ଉପାଦେୟ ଲଳିତ ନିବନ୍ଧଗୁଡିକୁ । ଆମେ ସମସ୍ତେ ଏଥିପାଇଁ ଅପେକ୍ଷା କରିଛୁ ।

**-ଡଃ ବିମଳେନ୍ଦୁ ମହାନ୍ତି, ପ୍ରାକ୍ତନ କୁଳପତି, ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ**

"ଖବରକାଗଜ ପଢା ଛାଡି ଦେଇଛି, କିନ୍ତୁ ଆପଣଙ୍କ ତଥ୍ୟଭିତ୍ତିକ, ସତ୍ୟ ଓ ପ୍ରମାଣ ଆଧାରିତ, ଲେଖାମାନ ପଢୁଛି । ବିଚାର ସ୍ପଷ୍ଟ, ଉପସ୍ଥାପନା ନିର୍ଭୀକ । ଅଭିନନ୍ଦନ ।

**-ପ୍ରଫେସର ରାଧାମୋହନ**

"ଅନ୍ୟ ଦୃଷ୍ଟିରେ ଆମେ" ପଢି ଆତ୍ମହରା ହୋଇ ପଡିଲି ।

**-ମଧୁସୂଦନ ଦାସ, ରାଷ୍ଟ୍ରୀୟ ଯୁବା ପ୍ରକଳ୍ପ**

"ପିସି, ଗୋଡିଭୋଜି, କୁରାଖାତା" ମନ ଧ୍ୟାନ ଦେଇ ପାଠ କଲି । 'ପିସି'ର ମହାତ୍ମ୍ୟ ନ କହିଲେ ଭଲ । ଲେଖାଟି ଅପ୍ରିୟ ସତ୍ୟ ହେଲେ ବି ଅତ୍ୟନ୍ତ ଯୁଗୋପଯୋଗୀ ଓ ଶିକ୍ଷଣୀୟ ।

**-ଗଗନ ବିହାରୀ ମହାନ୍ତି, ଲୋକ ସୁରକ୍ଷା ମଞ୍ଚ, ଯାଜପୁର**

"ଅରଜନକ ପତ୍ର ପାଇ ବିସ୍ମିତ ହେବେ ନାହିଁ । ଅନେକ ଦିନରୁ ଆପଣଙ୍କ ଲେଖାମାନ ପଢ଼ି ବହୁତ ଖୁସି ଲାଗୁଛି । ଏବକାର "ନିର୍ବାଚନ, ଯୋଜନା ଓ ଚେତନା" ଲେଖାଟି ମନଲାଖି ହୋଇଛି । ନୂତନ ରୁଚି, ଶୈଳୀ ଓ ସୁଖପାଠ୍ୟ । ଏ ସବୁକୁ ପୁସ୍ତକ ଆକାରେ ଦେଖିବାକୁ ଅପେକ୍ଷା କରି ରହିଲୁ । ଓଡ଼ିଆ ବିକାଶ ସାହିତ୍ୟ ଋଦ୍ଧିମନ୍ତ ହେବ ।"

**-ରାସ ବିହାରୀ ବେହେରା, ପୂର୍ବତନ ମନ୍ତ୍ରୀ, ମହାବୀର ପଡ଼ା, ଭବାନିପାଟଣା**

ଏହାଛଡା ଟେଲିଫୋନ୍, ଇ-ମେଲ୍ ଜରିଆରେ ବହୁ ବିଶିଷ୍ଟ ବ୍ୟକ୍ତି ଓ ସହସ୍ରାଧିକ ପାଠକ ପାଠିକା 'ବିକଳ୍ପ ବିଶ୍ୱ' ସ୍ତମ୍ଭରେ ପ୍ରକାଶିତ ଲେଖାଗୁଡ଼ିକ ସମ୍ପର୍କରେ ପ୍ରେରଣାପୂର୍ଣ୍ଣ ମତାମତ ଦେଇ ଆସୁଛନ୍ତି । ଏଥିପାଇଁ ସେ ସମସ୍ତଙ୍କ ନିକଟରେ ଲେଖକ କୃତଜ୍ଞ ।

■ ■ ■



## ଲେଖକଙ୍କ ସମ୍ପର୍କରେ .....

ଯୁବ ଓ ସମାଜକଲ୍ୟାଣ ପାଇଁ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଡକ୍ଟର ଭଗବାନପ୍ରକାଶଙ୍କର ଜନ୍ମ ଖୋର୍ଦ୍ଧା ଜିଲ୍ଲା ହଳଦିଆ ଭଗବାନପୁର ଗ୍ରାମରେ ୧୯୪୨ ମସିହା ନଭେମ୍ବର ୧୪ ତାରିଖରେ । କେନ୍ଦ୍ର ମାନବ ସମ୍ବଳ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ, ଯୁବକଲ୍ୟାଣ ବିଭାଗ, ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ, ରାଜ୍ୟଗୋଷ୍ଠୀ ଏସିଆ କେନ୍ଦ୍ର, ମିଳିତ ଜାତିସଂଘର ବିଭିନ୍ନ ମୁଖ୍ୟାଳୟରେ ପରାମର୍ଶଦାତା ଭାବରେ ତଥା ଯୋଜନା କମିଶନ, ନାଗରିକ ସମାଜ ଓ ସ୍ୱେଚ୍ଛାସେବୀ ଆନ୍ଦୋଳନ ସହ ଓତପ୍ରୋତ ଭାବରେ ଜଡ଼ିତ ଡକ୍ଟର ଭଗବାନପ୍ରକାଶଙ୍କର ଦୀର୍ଘ ୩୫ ବର୍ଷର ସମୃଦ୍ଧ ଅଭିଜ୍ଞତା ଉପରେ ଆଧାରିତ ଏହି ଲଳିତ ନିବନ୍ଧ ଗୁଡ଼ିକ । ଦୈନିକ 'ସମ୍ବାଦ'ର ଜନପ୍ରିୟ 'ବିକଳ୍ପ ବିଶ୍ୱ' ସ୍ତମ୍ଭରେ ଧାରାବାହିକ ଭାବରେ ପ୍ରକାଶିତ ଓ ଅତ୍ୟନ୍ତ ପାଠକପ୍ରିୟ ଲେଖାଗୁଡ଼ିକ ତିନିବର୍ଷ ଧରି ରାଜ୍ୟର ଚିନ୍ତାରାଜ୍ୟରେ ଚହଳ ସୃଷ୍ଟି କରିଛି । ଓଡ଼ିଆ ଭାଷାରେ ତଥ୍ୟ ଓ ପ୍ରମାଣ ଆଧାରିତ ବିକାଶ-ଧର୍ମୀ ସାକ୍ଷରତା ଓ ସାହିତ୍ୟ ସୃଷ୍ଟି ପାଇଁ ଏହା ପ୍ରଥମ ପ୍ରଚେଷ୍ଟା ।

